# ବୈଦିକ ସମାଜ, ସାହିତ୍ୟ ଓ ସଂସ୍କୃତି

ତାତ୍ୱିକ ସଂନ୍ଦର୍ଭ

ଲେଖକ - ଡଃ. ଭୋଳାନାଥ ରାଉତ
ପ୍ରକାଶିକା - ଅନସୂୟା ଦାଶ
ଚିତ୍ରୋତ୍ପଳା ପବ୍ଲିକେଶନ୍ସ
ବଟେଶ୍ୱର, ସାଲେପୁର, କଟକ
ମୁଦ୍ରଣ : ବିଶ୍ୱମୁକ୍ତି ପବ୍ଲିକେଶନ
ଏ-୧୬, ସହିଦ ନଗର, ଭୁବନେଶ୍ୱର - ୭
ପ୍ରଥମ ସଂସ୍କରଣ : ଜାନୁୟାରି- ୦୧ - ୨୦୦୬

ମୂଲ୍ୟ : ୧୬୦/-ଟଙ୍କା ମାତ୍ର

**BAIDIKA SAMAJ, SAHITYA O SANSKRUTI**

**Critical Essays**

Writer : **Dr. Bholanath Rout**
*Published By :* **ANSUYA DASH**
**Chitrotpala Publications**
Bateswar, Salepur, Cuttack
Ph- 0671 2352325
*Printed At :* **Vishwamuti Publication**
A-16, Saheed Nagar, Bhubaneswar - 7
*1st Edition :* **January-01 - 2006**

*Price* **Rs. 160/-**

**ISBN NO - 81-86556-39-7**

ଯେଉଁ ଗବେଷକ, ସମୀକ୍ଷକମାନଙ୍କ ଅଶେଷ ଶ୍ରମରେ ବୈଦିକ ସାହିତ୍ୟ, ସଂସ୍କୃତି ସାଧାରଣ ପାଠକକୁ ଆକୃଷ୍ଟ କରି ରଖିଅଛି ସେହି ପୂର୍ବସୂରୀମାନଙ୍କ ହାତରେ ଏ ପୁସ୍ତକକୁ ଅର୍ପଣ କରୁଅଛି ।

*—ଲେଖକ—*

# ଦୁଇପଦ

ହଜାର ହଜାର ବର୍ଷ ଧରି ଯେଉଁ ଭାରତୀୟ ସଂସ୍କୃତି ବିଶ୍ୱରେ ତାହାର ବୈଶିଷ୍ଟ୍ୟ ପ୍ରତିପାଦନ କରିଅଛି ତାହାର ମୂଳାଧାର ହେଉଛି ବୈଦିକ ସଂସ୍କୃତି । ବୈଦିକ ସଂସ୍କୃତିର ଦ୍ରଷ୍ଟା ଓ ସ୍ରଷ୍ଟା ଥିଲେ ତତ୍କାଳୀନ ମୁନୀ ଋଷି । ସେମାନେ ପରମ୍ପରାକୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରିଅଛନ୍ତି । ଏହି ସଂସ୍କୃତିରେ ସାମାଜିକ ଓ ସାଂସ୍କୃତିକ ସଂଘର୍ଷର ଇତିହାସ ରହିଅଛି । ପରମ୍ପରାର ଭିତ୍ତିଭୂମି ଉପରେ ଏହା ପ୍ରତିଷ୍ଠା ଲାଭ କରିଥିଲେ ମଧ୍ୟ ନୂତନ ଲାଗି ଏହାର ଦ୍ୱାର ସର୍ବଦା ଉନ୍ମୁକ୍ତ ରହିଅଛି । ସେ ସମଗ୍ର ବିଶ୍ୱର ଚ୍ୱରିଆଡୁ ନୂଆ ନୂଆ ଚିନ୍ତାଧାରା ଆସୁ ବୋଲି ଆହ୍ୱାନ କରିଅଛନ୍ତି । ସେମାନେ ବ୍ୟକ୍ତି ଚେତନାର ବହୁ ଊର୍ଦ୍ଧ୍ୱସ୍ତରକୁ ଯାଇ ପାରିଥିଲେ ।

ଏହି ବଳିଷ୍ଠ ଚିନ୍ତାଧାରାର ପରିପ୍ରକାଶ ପ୍ରଥମେ 'ସପ୍ତ ସିନ୍ଧୁ' ଅଞ୍ଚଳରେ ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଏହା ସମଗ୍ର ଭାରତ ବର୍ଷରେ ସଂପ୍ରସାରିତ ହୋଇଥିଲା ଏବଂ ଭାରତର ସୀମା ଡେଇଁ ମଧ୍ୟ ଏସିଆ, ଆଫ୍ରିକା ଓ ଇଉରୋପ ଆଦି ଅଞ୍ଚଳକୁ ପରିବ୍ୟାପ୍ତ ହୋଇଥିଲା । ଯେତେ ପୁରାତନ ହେଲେ ମଧ୍ୟ ଆମେ ବେଦକୁ ଛାଡ଼ି ପାରିନାହୁଁ । ବୈଦିକ ସମାଜ, ସାହିତ୍ୟ ଓ ସଂସ୍କୃତି ଆମର ଦିଗ୍‌ଦର୍ଶକ । ଆନନ୍ଦ ଓ ସନ୍ତୋଷ ହେଉଛି ବୈଦିକ ସଂସ୍କୃତିର ପ୍ରବହମାନ ଧାରା । ଫଳରେ ବୈଦିକ ଋଷି ସର୍ବଦା ଆଶାବାଦୀ ଥିଲେ । ବୈଦିକ ଋଷିମାନଙ୍କର ଦୃଷ୍ଟିଭଙ୍ଗୀ ସହିତ ଆଧୁନିକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବହୁ ସାମଞ୍ଜସ୍ୟ ରହିଅଛି ।

ସାଂପ୍ରତିକ ଯୁଗରେ ବିଶ୍ୱ ଆମର ଖୁବ୍ ନିକଟତର ହୋଇଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମନ୍ୱୟ ବେଳକୁ ବେଳ ଅଧିକରୁ ଅଧିକତର ହେଉଛି । ସମୟକ୍ରମେ ଆମେ ପ୍ରାଚୀନ ବୈଦିକ ସଂସ୍କୃତିର ଊର୍ଦ୍ଧ୍ୱ ଚେତନାରୁ ଓହରି ଆସି ବସ୍ତୁବାଦୀ ଚେତନା ପ୍ରତି ଅଧିକ ଆଗ୍ରହାନ୍ୱିତ ହେଉଅଛୁ । ମାତ୍ର ଏକଥା ନିଶ୍ଚିତ ସତ୍ୟ ଯେ ବୈଦିକ ସଂସ୍କୃତିରେ ପରିପୁଷ୍ଟ ଆମର ସମାଜ ଆମକୁ ବହୁ ଭାବରେ ନିୟନ୍ତ୍ରିତ କରି ଦିଗ୍‌ଭ୍ରଷ୍ଟ ନହେବା ପାଇଁ ସତର୍କ କରୁଅଛି । ସେହି ବୈଦିକ ସଂସ୍କୃତି, ସମାଜ ଓ ସାହିତ୍ୟ କ'ଣ ତାହାର ଏକ ସାଧାରଣ ଧାରଣା ପାଠକଙ୍କ ନିକଟରେ ଉପସ୍ଥାପିତ କରିବା ପାଇଁ ଏ ପୁସ୍ତକରେ ଚେଷ୍ଟା କରାଯାଇଛି । ବେଦ, ଉପନିଷଦ ଓ ବେଦାଙ୍ଗ ଆଦି ହେଉଛି ଅନନ୍ତ ସମୁଦ୍ର ଭଳି । ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଗବେଷକ ଏହାର ତର୍ଜମା କରି ବୈଦିକ ସଂସ୍କୃତିର ସାରତତ୍ତ୍ୱ ଆମ ନିକଟରେ ଅତ୍ୟନ୍ତ ଚିନ୍ତାଶୀଳ ତଥା ବୁଦ୍ଧିଦୀପ୍ତ ଭାବରେ ଉପସ୍ଥାପିତ କରିଅଛନ୍ତି । ଏହାର ଦାର୍ଶନିକତା ଓ ଆଧ୍ୟାତ୍ମିକତାର ଚରମ ନିର୍ଯାସ କିଭଳି ସମଗ୍ର ବିଶ୍ୱ ସଂସ୍କୃତିକୁ ପ୍ରଭାବିତ କରିଛି ତାହା ଦର୍ଶାଇଅଛନ୍ତି । ଓଡ଼ିଆରେ ବୈଦିକ ସଂସ୍କୃତି ସଂପର୍କରେ ବହୁ ପଣ୍ଡିତ , ବିଦ୍ୱାନ ଓ ଗବେଷକମାନେ ସମୀକ୍ଷା କରି ଅଛନ୍ତି । ଏହି ପୁସ୍ତକ ବିଶିଷ୍ଟ ପାଶ୍ଚାତ୍ୟ ଓ ଭାରତୀୟ ବେଦଜ୍ଞମାନଙ୍କର ଗବେଷଣାର ସଂଗ୍ରହ ମାତ୍ର ।

ପ୍ରାଧ୍ୟାପକ ଅଭିନ୍ନ ଚନ୍ଦ୍ର ଦାସଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି, ବିଶିଷ୍ଟ ଗବେଷକ ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତିର ବୈଦିକ ପର୍ବ ଗୁଡ଼ିକ ଏ ପୁସ୍ତକର ମୁଖ୍ୟ ସହାୟକ ଗ୍ରନ୍ଥ । ତାହା ସହିତ ଇଂରେଜୀ, ହିନ୍ଦୀ, ବଙ୍ଗଳା ଭାଷାରେ ରଚିତ କେତେକ ବୈଦିକ ସମାଲୋଚନା ଗ୍ରନ୍ଥ

ଗୁଡ଼ିକୁ ଅଧ୍ୟୟନ କରି ତା'ର ସାରକଥା ଏ ପୁସ୍ତକରେ ସନ୍ନିବେଶିତ କରିଅଛି । ଯେତେ ଅନୁଧ୍ୟାନ କରିଅଛି ସେତେ ନୂଆ ନୂଆ କଥା ଉପଲବ୍ଧ ହୋଇଅଛି । ଏହି ବିଶାଳ ଜ୍ଞାନ ସାଗରକୁ ମନ୍ଥନ କରିବାର ସାମର୍ଥ୍ୟ ମୋର ନାହିଁ । ପୂର୍ବସୂରୀମାନଙ୍କର ପଦାଙ୍କ ଅନୁସରଣ କରିଅଛି ମାତ୍ର । ତ୍ରୁଟିତ ନିଶ୍ଚୟ ଥିବ ସହୃଦୟତାରେ ପାଠକମାନେ ମାର୍ଜନା କରିବେ ।

ଏ ପୁସ୍ତକରେ ୯ଟି ପରିଛେଦ ସ୍ଥାନିତ ହୋଇଅଛି । ପରିଛେଦ ଗୁଡ଼ିକର ଶୀର୍ଷକ ହେଉଛି ବୈଦିକ କାଳ ଓ ଏହାର କଳନା (ପ୍ରଥମ), ବେଦର ଉତ୍ପତ୍ତି ଓ ପରିଚୟ (ଦ୍ୱିତୀୟ) , ବୈଦିକ ସଂହିତୋତ୍ତର ସାହିତ୍ୟ (ତୃତୀୟ), ବୈଦିକ ସମାଜ (ଚତୁର୍ଥ), ବୈଦିକ ଶିକ୍ଷା, ଧର୍ମ ଓ ଆଧ୍ୟାତ୍ମିକତା (ପଞ୍ଚମ), ବୈଦିକ ରାଷ୍ଟ୍ର, ଶାସନ, ସମର ବିଦ୍ୟା, ଗ୍ରାମ ଓ ନଗର (ଷଷ୍ଠ), ବୈଦିକ ସଂସ୍କୃତି ଓ କର୍ମକାଣ୍ଡ (ସପ୍ତମ), ବୈଦିକ ଦର୍ଶନ (ଅଷ୍ଟମ) ଓ ବୈଦିକ ଆର୍ଥିକ ଜୀବନ (ନବମ) । ଶାରିରୀକ ଓ ଆତ୍ମିକ ଉଭୟ ସୁଖ ସାଧନ ଲାଗି ଏ ସଂସ୍କୃତି ଥିଲା ସମଧିକ ସଚେତନ । ପାଠକ ପାଠିକା ସମ୍ବେଦନଶୀଳତା ନେଇ ଏ ପୁସ୍ତକ ପାଠ କଲେ ମୋର ଶ୍ରମ ସାର୍ଥକ ହେବ ।

ଆଲୋଚନା କଲାବେଳେ ପୂର୍ବ ସୂରୀମାନଙ୍କର ସମୀକ୍ଷା ଯେଉଁଠି ମୋତେ ଉଦ୍‌ବୁଦ୍ଧ କରିଅଛି ସେ ସ୍ଥାନରେ ତାଙ୍କର ରଚନାକୁ ମୁଁ ମୋର ଆଲୋଚନାର ଦିଗ୍‌ବଳୟକୁ ଘେନି ଆସିଛି ଉଦ୍ଧୃତାଂଶ ଦେଇ । ସେହିମାନେ ହିଁ ମୋର ମାର୍ଗଦର୍ଶକ । ମୋ ଭଳି ଜଣେ ବେଦ ଅନଭିଜ୍ଞ ବ୍ୟକ୍ତି ସେମାନଙ୍କ କୃପାରୁ ହିଁ ଏ ପୁସ୍ତକ ରଚନା କରିବାକୁ ସମର୍ଥ ହୋଇଅଛି । ତେଣୁ ସେମାନଙ୍କୁ ପୁସ୍ତକର ପ୍ରକାଶନ ଅବକାଶରେ ମୋର ଭକ୍ତିପୂତ କୃତଜ୍ଞତା ଜ୍ଞାପନ କରୁଅଛି । ମୁଁ କେବଳ ଏ ପୁସ୍ତକର ସଂଗ୍ରାହକ ମାତ୍ର । ଅନେକ ବନ୍ଧୁ ଉତ୍ସାହିତ କରିଛନ୍ତି ଏ ପୁସ୍ତକ ରଚନା କରିବା ପାଇଁ, ସେମାନେ ଏ ଅବସରରେ ଧନ୍ୟବାଦର ପାତ୍ର । ଅଧ୍ୟାପକ କୁଳମଣି ଦାଶଙ୍କ ସାହାଯ୍ୟ ଭୁଲିବାର ନାହିଁ । ସମସ୍ତ ଚେଷ୍ଟା ସତ୍ତ୍ୱେ କେତେକ ମୁଦ୍ରଣ ତ୍ରୁଟି ପରିଲକ୍ଷିତ ହେଉଥିବାରୁ ସୁଧୀ ପାଠକଙ୍କ ନିକଟରେ କ୍ଷମା ମାଗି ନେଉଛି ।

ଏ ପୁସ୍ତକର ପ୍ରକାଶନ ଦାୟିତ୍ୱ 'ଚିତ୍ରୋତ୍ପଳା ପବ୍ଲିକେସନ, ସାଲେପୁର' ର ସତ୍ତ୍ୱାଧିକାରୀ ଶ୍ରୀ ସଦାଶିବ ଦାସ ଗ୍ରହଣ କରି ମୋର ଶ୍ରମ ସାର୍ଥକ କରିଥିବାରୁ ମୁଁ ତାଙ୍କ ନିକଟରେ ଗଭୀର ଭାବରେ କୃତଜ୍ଞ । ଅକ୍ଷର ସଜ୍ଜାରେ ଶ୍ରୀ ପ୍ରିଣ୍ଟର୍ସ, ଜଗତସିଂହପୁରର ଆନ୍ତରିକତା ଭୁଲିହେବ ନାହିଁ ।

***ଭୋଳାନାଥ ରାଉତ***

—•—

## ସୂଚିପତ୍ର

### ପ୍ରଥମ ପରିଚ୍ଛେଦ



### ଦ୍ୱିତୀୟ ପରିଚ୍ଛେଦ



### ତୃତୀୟ ପରିଚ୍ଛେଦ

## ଚତୁର୍ଥ ପରିଚ୍ଛେଦ



## ପଞ୍ଚମ ପରିଚ୍ଛେଦ

## ଷଷ୍ଠ ପରିଚ୍ଛେଦ



## ସପ୍ତମ ପରିଚ୍ଛେଦ

## ଅଷ୍ଟମ ପରିଚ୍ଛେଦ



## ନବମ ପରିଚ୍ଛେଦ

# ପ୍ରଥମ ପରିଚ୍ଛେଦ

## ବୈଦିକ କାଳ ଓ ଏହାର କଳନା

ବେଦର ରଚନା, ବୈଦିକ ସଭ୍ୟତା ଓ ସଂସ୍କୃତିର ସମୟ ନିରୂପଣ କରିବା ଏତେ ସହଜ ବ୍ୟାପାର ନୁହେଁ । ଏ ସମ୍ପର୍କରେ ବହୁ ଗବେଷକ ଭିନ୍ନ ମତ ପ୍ରଦାନ କରିଥାନ୍ତି । ଅନେକ ସମୟରେ ଏହି ମତଗୁଡ଼ିକୁ ପର୍ଯ୍ୟାଲୋଚନା କଲାବେଳେ ଏହାର ବିରୋଧି ମତ ଗୁଡ଼ିକ ଆମ ନିକଟରେ ଏଭଳି ଭାବରେ ଠିଆ ହୁଅନ୍ତି ଯେ ସେଗୁଡ଼ିକ ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ପ୍ରଦାନ କରିବା ସହଜ ହୁଏନା । କେତେକ ଏହାକୁ ଖ୍ରୀଷ୍ଟପୂର୍ବ ୧୨୦୦ ରୁ ଖ୍ରୀଷ୍ଟପୂର୍ବ ୧୫୦୦ ଶତାବ୍ଦୀ ମଧ୍ୟରେ ବୋଲି କହିଥାନ୍ତି । ଏହାର ସମୟକୁ ଭାରତତତ୍ତ୍ୱବିତ୍‌ମାନେ ଖ୍ରୀଷ୍ଟପୂର୍ବ ୧୫୦୦ରୁ ଖ୍ରୀଷ୍ଟପୂର୍ବ ୧୩୦୦କୁ ଘେନି ଆସି ଅଛନ୍ତି । ହେଲେ ପାଶ୍ଚାତ୍ୟ ତତ୍ତ୍ୱବିତ୍‌ମାନଙ୍କର ମତ ଆଜି ଅଧିକ ଭାବରେ ଗୃହୀତ ଏବଂ ପ୍ରସାରିତ । ଯାହାହେଉ ଏହି ଭାରତୀୟ ପଣ୍ଡିତମାନେ ସିନ୍ଧୁ ସଭ୍ୟତାକୁ ଗ୍ରହଣ କରି ତାହାର ଜନକ ଆର୍ଯ୍ୟେତର ଦ୍ରାବିଡ ବୋଲି କହିଅଛନ୍ତି । ତେଣୁ ସେମାନେ ଏହାକୁ ଖ୍ରୀଷ୍ଟପୂର୍ବ ୨୫୦୦ରୁ ୧୭୨୦ ମଧ୍ୟରେ ସ୍ଥାନିତ କରିଅଛନ୍ତି ।(୧)

ମାକ୍‌ସମୁଲାର ବୈଦିକ ମନ୍ତ୍ର ଗୁଡ଼ିକୁ ଖ୍ରୀଷ୍ଟପୂର୍ବ ୧୦୦୦ କିମ୍ବା ୧୫୦୦, କିମ୍ବା ୨୦୦୦ କିମ୍ବା ୩୦୦୦ରେ ସୃଷ୍ଟି ହୋଇଛି କି ନାହିଁ ସେ କଥା କେହି କହି ପାରିବେ ନାହିଁ ବୋଲି ମତବ୍ୟକ୍ତ କରିଛନ୍ତି । (୨) ଜର୍ମାନ, ଭାରତ ତତ୍ତ୍ୱବିଦ୍ ଉଇଣ୍ଟରନିଜ୍‌ଙ୍କର ମତ ମଧ୍ୟ ଅନେକାଂଶରେ ମ୍ୟାକ୍‌ସମୁଲାରଙ୍କ ମତକୁ ସମର୍ଥନ କରିଅଛି ।(୩) ବୈଦିକ କାଳ ସଂପର୍କରେ ଉଇଣ୍ଟର୍‌ନିଜ୍ ଏବଂ ଅନ୍ୟାନ୍ୟ ପାଶ୍ଚାତ୍ୟ ପଣ୍ଡିତ ମାନଙ୍କର ମତ (ଖ୍ରୀଷ୍ଟ ପୂର୍ବ ୧୨୦୦ - ୧୫୦୦ ) କୁ ଅନୁଶୀଳନ କଲେ ଜଣାପଡେ କୌଣସି ଜାତିର ଇତିହାସ ଅତି ପ୍ରାଚୀନ ଥିଲେ ତାହାର ସଂସ୍କୃତି ଓ ଐତିହ୍ୟ ବିଷୟରେ ଜାଣିବା ପାଇଁ ଆମକୁ ପରମ୍ପରାର ଆଶ୍ରୟ ନେବାକୁ ହୁଏ । ଅନେକ ମତ ପ୍ରଦାନ କରନ୍ତି ଆର୍ଯ୍ୟମାନେ ବାହାରୁ ଭାରତକୁ ଆସିଥିଲେ ଏବଂ ଏ ଦେଶରେ ତାଙ୍କ ବସତି ସ୍ଥାପନ କରିଥିଲେ । ତେଣୁ ଐତିହାସିକ ଦୃଷ୍ଟି କୋଣରୁ ଏହାର ସତ୍ୟତା ଗ୍ରହଣ କରିବାକୁ ହେଲେ ପରମ୍ପରାକୁ ଦେଖିବାକୁ ହେବ । ସେହି ଦୃଷ୍ଟିରୁ ଇୟୁରୋପୀୟ ପଣ୍ଡିତମାନେ ବେଦର କାଳ ନିରୂପଣ କରିବାକୁ ଯାଇ ଯେଉଁ ତଥାକଥିତ ସତ୍ୟକୁ ଗ୍ରହଣ କରିଅଛନ୍ତି ସେଗୁଡ଼ିକର ଅନୁଶୀଳନ ଆବଶ୍ୟକ ।

ଆର୍ଯ୍ୟମାନେ ମଧ୍ୟ ଏସିୟାରେ କାସ୍‌ପିୟାନ୍ ହ୍ରଦ କୂଳରେ ଥିଲେ । କାହାରି କାହାରି ମତରେ ଇୟୁରୋପର ହଙ୍ଗେରୀ ଅଞ୍ଚଳରେ ବା କୃଷ୍ଣ ସାଗର କୂଳରେ କିମ୍ବା ଭଲ୍‌ଗା ନଦୀ କୂଳରେ ବାସ କରୁଥିଲେ । ସେମାନେ ଭାରତକୁ-ଆସି ଏକ ନଗରନିଷ୍ଠ ସଭ୍ୟତାର ସମ୍ମୁଖୀନ ହେଲେ । ଏହା ହେଉଛି ସୈନ୍ଧବ ସଭ୍ୟତା ଯାହାର କାଳ ଖ୍ରୀଷ୍ଟପୂର୍ବ ୨୫୦୦ ରେ ସ୍ଥାନିତ ହୋଇଛି । ଏହି ଗୋଷ୍ଠୀର ଲୋକଙ୍କ ଦେହର ରଙ୍ଗ ଥିଲା କଳା ଏବଂ ଏମାନଙ୍କ ସହିତ ଆର୍ଯ୍ୟମାନଙ୍କର ଯୁଦ୍ଧ ହୋଇଥିଲା । ଏମାନେ ଦାସ ବା ଦସ୍ୟୁ ନାମରେ ବେଦରେ ବର୍ଣ୍ଣିତ । ଏହି ଦସ୍ୟୁ ଓ ଦାସ ଶବ୍ଦ ଦୁଇଟି ମଧ୍ୟ ସମୋଧିକ ବିବଦମାନ । ଋଗ୍ ବେଦରେ ୭୯ ଟି ସ୍ଥାନରେ ଦସ୍ୟୁ ନାମରେ ଉଲ୍ଲେଖ ଅଛି ଏବଂ ୫୬ ଟି ସ୍ଥାନରେ ଦାସ ନାମର ଉଲ୍ଲେଖ ଅଛି । ଏହ ସ୍ଥାନମାନଙ୍କରେ ଇନ୍ଦ୍ରଙ୍କ ସହାୟତାରେ ଆର୍ଯ୍ୟମାନେ ଦସ୍ୟୁ

ଏବଂ ଦାସମାନଙ୍କ ସହିତ ଯୁଦ୍ଧ କରିଥିଲେ ଏବଂ ବିଜୟ ହାସଲ କରିଥିଲେ । ପରବର୍ତ୍ତୀ ସମୟରେ ଯାସ୍କ ( ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀ) ବୈଦିକ ଶବ୍ଦର ବାଖ୍ୟା ତାଙ୍କର ଗ୍ରନ୍ଥ ନିରୁକ୍ତରେ କରିଅଛନ୍ତି । ସେହି ନିରୁକ୍ତରେ ସେ ବର୍ଣ୍ଣନା କରିଅଛନ୍ତି ଦସ୍ୟୁ ଓ ଦାସ ଶବ୍ଦ 'ଦସ' ଧାତୁରୁ (ନଷ୍ଟ କରିବା ଅର୍ଥରେ) ନିଷ୍ପନ୍ନ । (୪) ଯିଏ ଯେଉଁ କାରଣରୁ ଉତ୍ପନ୍ନ ଫସଲର କ୍ଷତି ଘଟାଏ ବା କୃଷି ଆଦି କର୍ମର କ୍ଷତି କରେ ସେ ହେଲା ଦସ୍ୟୁ । ଦାସ ଶବ୍ଦର ବ୍ୟାଖ୍ୟା ମଧ୍ୟ ଠିକ୍ ଅନୁରୂପ ଭାବରେ ସେ କରିଅଛନ୍ତି । ତାଙ୍କ ମତରେ ଯେ ଆର୍ଯ୍ୟମାନଙ୍କର କର୍ମ ( କର୍ତ୍ତବ୍ୟ ) କରିବାରେ ବାଧା ଜନ୍ମାଏ ସେ ହେଲା ଦାସ । ଏହି ଦାସମାନେ ଆର୍ଯ୍ୟମାନଙ୍କ ସହିତ ଯୁଦ୍ଧ କରି ଦକ୍ଷିଣ ଭାରତକୁ ଚାଲି ଆସିଲେ । ଏମାନେ ହେଉଛନ୍ତି ଦ୍ରାବିଡ ଜାତି ଏବଂ ଆଧୁନିକ ତେଲୁଗୁ, ତାମିଲ୍, ମାଲାୟାଲି ମାନଙ୍କର ପୂର୍ବଜ । ଏମାନେ ମଧ୍ୟ ହେଉଛନ୍ତି ଆଫ୍‌ଗାନିସ୍ଥାନ ଓ ବେଲୁଚି ସ୍ଥାନରେ ଥିବା ବ୍ରାହୁଇ ଗୋଷ୍ଠୀର ପୂର୍ବଜ । ତେଣୁ ଏହି ଆର୍ଯ୍ୟମାନେ ତାଙ୍କ ସହିତ ଯୁଦ୍ଧ କରି ତାଙ୍କ ସଭ୍ୟତାକୁ ନଷ୍ଟ କରିଦେଇ ଥିଲେ ।

ଆର୍ଯ୍ୟ ଶବ୍ଦର ବ୍ୟାଖ୍ୟା କରି କୁହାଯାଇଛି ଭାରତୀୟ ପରମ୍ପରାରେ ଆର୍ଯ୍ୟ ଶବ୍ଦ କୌଣସି ଜାତି ଅର୍ଥରେ ପ୍ରଯୁଜ୍ୟ ନୁହେଁ । ଏହା ଏକ ଜୀବନ ଧାରା । ଏହା ଏକ ଜୀବନ ଦର୍ଶନ । ଏହା ଏକ ସୁମହାନ ପନ୍ଥା । ଆର୍ଯ୍ୟ ଶବ୍ଦର ଅର୍ଥ ଏବେବି ବିବଦମାନ ଅବସ୍ଥାରେ ରହିଅଛି । ଭାଷା ଭିତ୍ତିରେ ମାକ୍ସମୁଲାର୍ ଆର୍ଯ୍ୟ ଶବ୍ଦର ବାଖ୍ୟା କରିବାକୁ ଗଲାବେଳେ ଅନ୍ୟ ପାଶ୍ଚାତ୍ୟ ପଣ୍ଡିତମାନେ ଜାତି ଭିତ୍ତିରେ ଏହାକୁ ବ୍ୟାଖ୍ୟା କରିବାର ଉଦ୍ୟମ କରିଅଛନ୍ତି । ସେମାନଙ୍କ ମଧ୍ୟରେ ଗୌରବର୍ଣ୍ଣ, ଦୀର୍ଘ ନାସା ବିଶିଷ୍ଟ ନୀଳଚକ୍ଷୁ ର ଲୋକମାନେ ହେଲେ ଆର୍ଯ୍ୟ । ନୃତାତ୍ତ୍ୱିକ ଭାଷାରେ ସେମାନଙ୍କୁ କୁହାଗଲା 'ନର୍ଡିକ୍'।(୫)

ମହାମନୀଷି ଶ୍ରୀ ଅରବିନ୍ଦ ପାଶ୍ଚାତ୍ୟ ଦୃଷ୍ଟିକୋଣକୁ ସମାଲୋଚନା କରିଛନ୍ତି ।(୬) ଶ୍ରୀ ଅରବିନ୍ଦ ଆର୍ଯ୍ୟ ଶବ୍ଦର ଅର୍ଥ ପ୍ରସଙ୍ଗରେ ଯଥାର୍ଥତ କହିଛନ୍ତି ଯେ ଆର୍ଯ୍ୟ ହେଉଛନ୍ତି ସେହିମାନେ ଯେଉଁମାନେ ଆଲୋକର ଅନ୍ୱେଷା କରନ୍ତି ଏବଂ ଦିବ୍ୟଜ୍ଞାନର ଉପଲବ୍ଧି ପାଇଁ ଆଗ୍ରହ ପ୍ରକାଶ କରନ୍ତି । ଋଗ୍ ବେଦର ପ୍ରଥମ ମଣ୍ଡଳରେ କୁହାଯାଇଛି ଯେ ସମସ୍ତ ଦେବତା ମିଶି ଅଗ୍ନିଙ୍କଠାରେ ଆର୍ଯ୍ୟଙ୍କ ଲାଗି ଜ୍ୟୋତି ପ୍ରଦାନ କରିଛନ୍ତି । (୭) ନିରୁକ୍ତକାର ଯାସ୍କଙ୍କ ମତରେ ଆର୍ଯ୍ୟ ଶବ୍ଦର ଅର୍ଥ ହେଲା ଈଶ୍ୱର ପୁତ୍ର । ଈଶ୍ୱରଙ୍କ ପୁତ୍ର ହେବା ଦ୍ୱାରା ତାଙ୍କର ଗୁଣମାନ ଆର୍ଯ୍ୟ ଠାରେ ପ୍ରତିଭାତ । ଏଣୁ ଆର୍ଯ୍ୟ ଶବ୍ଦର ଅର୍ଥ ହେଲା ସକଳ ଗୁଣର ଆଧାର, ସଂସ୍କୃତ ବା ସଭ୍ୟ । ଋଗ୍ ବେଦର ଗୋଟିଏ ମନ୍ତ୍ରର ବ୍ୟାଖ୍ୟା କରିବାକୁ ଯାଇ ସାୟଣାଚାର୍ଯ୍ୟ କହିଛନ୍ତି ଯେଉଁ ବ୍ୟକ୍ତିଙ୍କ ପାଖକୁ ଜ୍ଞାନ, ବୋଧ ଓ ବୁଦ୍ଧି ପାଇବା ଲାଗି ସମସ୍ତେ ଯାଆନ୍ତି ସେ ହେଲେ ଆର୍ଯ୍ୟ ।(୮) ଭାରତ ପରମ୍ପରାରେ କ୍ରମେ ବହୁ ବର୍ଷ ପର୍ଯ୍ୟନ୍ତ ସ୍ତ୍ରୀ ସ୍ୱାମୀଙ୍କୁ ଅର୍ଯ୍ୟପୁତ୍ର ବୋଲି ସମ୍ବୋଧନ କରୁଥିଲେ ଏବଂ ସ୍ୱାମୀ ମଧ୍ୟ ସ୍ତ୍ରୀଙ୍କୁ ଆର୍ଯ୍ୟା ବୋଲି ସମ୍ବୋଧନ କରୁଥିଲେ । ଆର୍ଯ୍ୟ ଶବ୍ଦ ଭଦ୍ର ଅର୍ଥରେ ବ୍ୟବହୃତ । ମନୁ ଆର୍ଯ୍ୟ ଶବ୍ଦର ଅର୍ଥ ପ୍ରକାଶ କରି କହିଅଛନ୍ତି "ଯେ ନିଜ କର୍ତ୍ତବ୍ୟ ଅନୁସାରେ କାମ କରନ୍ତି ଏବଂ ଯାହା ଅକର୍ତ୍ତବ୍ୟ ତାହା କରନ୍ତି ନାହିଁ । ଯେ ସଦାଗ୍ରହରେ ରହଥାନ୍ତି ସେହି ବ୍ୟକ୍ତି ହେଉଛନ୍ତି ଆର୍ଯ୍ୟ । ତେଣୁ ମନୁଙ୍କ କହିବା ଅନୁସାରେ ଆର୍ଯ୍ୟ ଅର୍ଥ ଏକ ସୁ ସଭ୍ୟ ଓ ସୁ ସଂସ୍କୃତ ବ୍ୟକ୍ତି ।(୯) । ଏହି ଅର୍ଥ ଭାରତୀୟ ପରମ୍ପରାରେ ଅନୁସୃତ ହୋଇ

ଆସୁଅଛି ଏବଂ ଆର୍ଯ୍ୟମାନେ ଯେଉଁଠି ବସତି ସ୍ଥାପନ କଲେ ତାହାକୁ ଆର୍ଯ୍ୟାବର୍ତ୍ତ ବୋଲି କୁହାଗଲା । ଏହି ଆର୍ଯ୍ୟବର୍ତ୍ତ ସାତ ଗୋଟି ନଦୀର ଉପତ୍ୟକାଞ୍ଚଳ ଯାହା ବୈଦିକ ସାହିତ୍ୟରେ ସପ୍ତସିନ୍ଧୁ ନାମରେ ବିଦିତ । ଅତଏବ ଆମେ ଦେଖିବାକୁ ପାଇବା ଯେ ବୈଦିକ କାଳରେ ଆର୍ଯ୍ୟ ଶବ୍ଦର ଅର୍ଥ ସର୍ବଦା ଭଦ୍ର ବା ସଭ୍ୟ ବୋଲି ଗ୍ରହଣ କରାଯାଇଛି । ପୃଥିବୀର ସର୍ବ ପ୍ରାଚୀନ ଗ୍ରନ୍ଥ ଋଗ୍‌ବେଦ କୁ ଯଦି ଦେଖାଯାଏ ତାହାଲେ ଏହି ଆର୍ଯ୍ୟ ଶବ୍ଦ ଋଗ୍ ବେଦରେ ୩୩ ଥର ଓ ଅଥର୍ବ ବେଦରେ ୧୬ ଥର ଉଲ୍ଲେଖ କରାଯାଇଛି । ଏଥିରୁ ଅନୁମିତ ହୁଏ ସିନ୍ଧୁ ସଭ୍ୟତା ଅତ୍ୟନ୍ତ ପ୍ରାଚୀନ ଏବଂ ଏହାର କାଳ ନିରୂପଣ କରିବାକୁ ଯାଇ ଐତିହାସିକ ତଥା ପ୍ରତ୍ନତତ୍ତ୍ୱବିତ୍‌ମାନେ କୁହନ୍ତି 'ହରପ୍ପିୟ' ସଭ୍ୟତାରେ, ସିନ୍ଧୁ ବା ବୈଦିକ ସଭ୍ୟତାର ପ୍ରଭାବ ଅନୁମିତ ହେଉଥିବାରୁ ଏହା ଅତ୍ୟନ୍ତ ପ୍ରାଚୀନ ସଭ୍ୟତା ଏବଂ ଏହାର ସମୟ ନିର୍ଦ୍ଧାରଣ କରିବାକୁ ଯାଇ ସେମାନେ କୁହନ୍ତି ଯେ ବୈଦିକ ଆର୍ଯ୍ୟମାନଙ୍କର ସମାଜ ପିତୃକୈନ୍ଦ୍ରିକ ଥିବାର ଅନୁମାନ କରାଯାଏ । ସିନ୍ଧୁ ସଭ୍ୟତାରୁ ଯେଉଁ ମୃଣ୍ମୟ ମୂର୍ତ୍ତି ଗୁଡିକ ମିଳୁଛି ତାହା ବୈଦିକ ଆର୍ଯ୍ୟମାନଙ୍କ ସଭ୍ୟତାର ଚିହ୍ନ ଏବଂ ଉପନିଷଦ ରଚନାର ବହୁ ପୂର୍ବରୁ ଏ ସଭ୍ୟତା ଗଢିଉଠିଥିଲା । ଛାନ୍ଦୋଗ୍ୟ ଉପନିଷଦ ଓ ଐତରେୟ ଉପନିଷଦ୍‌ରେ ଏହି ପିତୃ ପରିଚୟ ଗୁଡିକ ମିଳୁ ଥିବାରୁ ଏବଂ ଏହାର ସମୟ ଖ୍ରୀଷ୍ଟପୂର୍ବ ୧୨୦୦ରୁ ୮୦୦ ମଧ୍ୟରେ ହୋଇ ଥିବାରୁ ବେଦର ରଚନାକୁ ଏହାର ପୂର୍ବକୁ ଟାଣି ନେବାକୁ ହୁଏ । ଆର୍ଯ୍ୟ ମାନଙ୍କର ମୂଳ ଗ୍ରନ୍ଥ ବେଦ ଏବଂ ତାଙ୍କର ସଂସ୍କୃତି ହେଉଛି ବୈଦିକ । 'କଲ୍ୟାଣ ରମଣ' ଏହି ସଭ୍ୟତାକୁ ଖ୍ରୀଷ୍ଟପୂର୍ବ ୫୦୦୦ରୁ ଖ୍ରୀଷ୍ଟପୂର୍ବ ୩୦୦୦ ବୋଲି କହିଅଛନ୍ତି ।(୧୦)

ବାଲ୍ ଗଙ୍ଗାଧର ତିଳକ୍ ଜ୍ୟୋତିଷତାତ୍ତ୍ୱିକ ଦୃଷ୍ଟି କୋଣରୁ ବିଗ୍ଭର କରି ବୈଦିକ କାଳକୁ ଖ୍ରୀଷ୍ଟପୂର୍ବ ୪୫୦୦ କୁ ନେଇ ଯାଇଛନ୍ତି । (୧୧) କେ.ଏନ୍.ଦୀକ୍ଷିତ୍ ଅନ୍ୟ ଜଣେ ପ୍ରସିଦ୍ଧ ଜ୍ୟୋତର୍ବିତ୍ ପଣ୍ଡିତ ଏହି କାଳକୁ ଗ୍ରହଣ କରଥିଲେ ମଧ୍ୟ ଏହି ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ତୈତ୍ତିରୀୟ ସଂହିତାର ଆଶ୍ରୟ ନେଇଛନ୍ତି । (୧୨) ପ୍ରଥମ ସୃଷ୍ଟି ହୋଇଥିବା ବୃହସ୍ପତି ତିଷ୍ୟନକ୍ଷତ୍ରରେ ରହିଥିଲେ । ଜ୍ୟୋତିଷ ଶାସ୍ତ୍ର ଗଣନା ଅନୁଯାୟୀ ଏହି ଘଟଣାଟି ଖ୍ରୀଷ୍ଟପୂର୍ବ ୪୬୫୦ ରେ ଘଟିଥିବ ବୋଲି ଦିକ୍ଷୀତ୍ ହିସାବ କରି ଦେଖାଇ ଦେଲେ ଏବଂ କହିଲେ ଯେ ତୈତ୍ତିରୀୟ ସଂହିତା ( ଯର୍ଜୁର୍ବେଦୀୟ ) ଖ୍ରୀଷ୍ଟପୂର୍ବ ୪୬୫୦ ରେ ସୃଷ୍ଟି ହୋଇଥିବାରୁ ଋଗ୍ ବେଦକୁ ଖ୍ରୀଷ୍ଟପୂର୍ବ ୬୦୦୦ରେ ସ୍ଥାନିତ କରାଯାଇପାରେ । ମାତ୍ର ଏହି ସିଦ୍ଧାନ୍ତରେ କେତେକ ତ୍ରୁଟି ଥିବାର କେତେକ ଗବେଷକ ମନେ କରନ୍ତି । ଶତ୍‌ପଥ ବ୍ରାହ୍ମଣରେ ଗୋଟିଏ ଘଟଣାରେ ବର୍ଣ୍ଣନା କରାଯାଇଛି କୃତ୍ତିକା ନକ୍ଷତ୍ର ପୁଞ୍ଜ ପୂର୍ବ ଦିଗକୁ ଛାଡନ୍ତି ନାହିଁ । ଏମାନେ ସର୍ବଦା ପୂର୍ବ ଦିଗରେ ଉଦୟ ହୁଅନ୍ତି । ମାତ୍ର ଉପରୋକ୍ତ ଗଣନାରେ ବର୍ତ୍ତମାନ କାଳର ବ୍ୟବହୃତ ହୋଇଥିବାରୁ ମନେହୁଏ ସମ୍ପୃକ୍ତ ଋଷି ଏ ଘଟଣାଟି ନିଜ ଆଖିରେ ଦେଖିଥିବେ ଫଳତଃ ଶତ୍‌ପଥ ବ୍ରାହ୍ମଣର ରଚନା କାଳକୁ ଖ୍ରୀଷ୍ଟପୂର୍ବ ୩୦୦୦ରେ ସ୍ଥାନିତ କରାଯାଇ ପାରିବ । ଫଳରେ ଋଗ୍‌ବେଦର ସୃଷ୍ଟି କୁ ଖ୍ରୀଷ୍ଟପୂର୍ବ ୬୦୦୦ରେ ସ୍ଥାନିତ କରିବା ହୁଏତ ତ୍ରୁଟିପୂର୍ଣ୍ଣ ହୋଇପାରେ । ରାଧାକୁମୁଦ ମୁଖାର୍ଜୀ ପ୍ରମାଣ କରିଛନ୍ତି ଯେ ବ୍ରାହ୍ମଣ ଗ୍ରନ୍ଥ ଗୁଡିକର କାଳ ଖ୍ରୀଷ୍ଟପୂର୍ବ ୩୦୦୦ରୁ ଖ୍ରୀଷ୍ଟପୂର୍ବ ୨୦୦୦ ମଧ୍ୟରେ ସୀମାବଦ୍ଧ । (୧୩) । ଶତ୍‌ପଥ ବ୍ରାହ୍ମଣର ରଚନା ଖ୍ରୀଷ୍ଟପୂର୍ବ ୩୦୦୦ ଯଦି ହୁଏ ଋଗ୍‌ବେଦକୁ ଖ୍ରୀଷ୍ଟପୂର୍ବ ୪୫୦୦ରେ ସ୍ଥାନିତ କରାଯାଇ ପାରିବ । ଅପ୍ରବୁଦ୍ଧ ବୋଲି ଆଉ ଜଣେ ଜ୍ୟୋତିର୍ବିଦ୍ ଋଗ୍‌ବେଦକୁ ୪୦୦୦ରେ ସ୍ଥାନିତ କରିଛନ୍ତି । (୧୪) ପି. ଭି. କାଣେ ବେଦର ରଚନା କାଳକୁ ୫୦୦୦ରୁ ୩୦୦୦ ମଧ୍ୟରେ ସ୍ଥାନିତ କରିଛନ୍ତି । (୧୫)

ଲୋକମାନ୍ୟ ତିଳକ୍ ଋଗ୍‌ବେଦକୁ ଅତି ପ୍ରାଚୀନ ଗ୍ରନ୍ଥ ରୂପେ ସ୍ୱୀକାର କରିଛନ୍ତି । ମୃଗଶିରା ନକ୍ଷତ୍ରରେ ବସନ୍ତ ସମ୍ପାତକୁ ତିଳକ ସ୍ୱୀକାର କରିଅଛନ୍ତି । ତୈତ୍ତିରୀୟ ସଂହିତା ଅନୁସାରେ ଫାଲ୍‌ଗୁନ ପୂର୍ଣ୍ଣିମା ବର୍ଷର ମୁଖ୍ୟ । ପୂର୍ଣ୍ଣ ଚନ୍ଦ୍ରମା ଫାଲଗୁନୀ ନକ୍ଷତ୍ରରେ ରହିଲେ ସୂର୍ଯ୍ୟ ନିଶ୍ଚୟ, ମୃଗଶିରା ନକ୍ଷତ୍ରରେ ରହିବେ ଏବଂ ସେତେକି ବେଳେ ବସନ୍ତ ସମ୍ପାତ ଘଟିବ । ଋଗ୍‌ବେଦର ଅନ୍ତର୍ଗତ ଅନେକ ଆଖ୍ୟାୟିକା ସୂଚନା ଦ୍ୱାରା ଉକ୍ତ ଗ୍ରହସ୍ଥିତି ସମର୍ଥିତ ହୋଇଛି । ମୃଗଶିରା ନକ୍ଷତ୍ରରେ ଘଟିଥିବା ବସନ୍ତ ସଂପାତ ସମୟ ପ୍ରାୟ ଖ୍ରୀ.ପୂ. ୨୦୦୦ ବର୍ଷର ପୂର୍ବର ଘଟଣା; କାରଣ ମୃଗଶିରା ଠାରୁ କୃତ୍ତିକା ପର୍ଯ୍ୟନ୍ତ ଫେରିବାକୁ ତାହାକୁ ଦୁଇଟି ନକ୍ଷତ୍ର ଅତିକ୍ରମ କରିବାକୁ ପଡିଥିବ ( ୯୭୨x୨=୧୯୪୪) ତେଣୁ ଯେଉଁ ମନ୍ତ୍ରରେ ମୃଗଶିରା ନକ୍ଷତ୍ର ଘଠିତ ବସନ୍ତ ସମ୍ପାତ ଉଲ୍ଲିଖିତ ହୋଇଛି ସେ ମନ୍ତ୍ରର ସମୟ ପ୍ରାୟ (୨୫୦୦+୧୯୪୪=୪୪୪୪) ଅର୍ଥାତ୍ ୪୫୦୦ ବିକ୍ରମ ପୂର୍ବରୁ ଘଟଣା ହୋଇଥିବ ।

ପୁନର୍ବସୁ ନକ୍ଷତ୍ରର ଦେବତା ହେଉଛି ଅଦିତି । ତେଣୁ ଅଦିତିଙ୍କୁ ଦେବ ଜନନୀ କୁହାଯାଏ । ଏହାର ତାତ୍‌ପର୍ଯ୍ୟ ହେଉଛି ପୁନର୍ବସୁ ନକ୍ଷତ୍ରରେ ବସନ୍ତ ସମ୍ପାତ ଅଟେ ଓ ସେହି ଦିନକୁ ବର୍ଷ ଓ ଦେବଯାନର ଆରମ୍ଭ ବୋଲି ସ୍ୱୀକାର କରାଯାଇଛି । ପୁନର୍ବସୁରେ ସୂର୍ଯ୍ୟଙ୍କର ସଂକ୍ରମଣ ଆରମ୍ଭ ହେଲେ ଦେବତାମାନଙ୍କର ପବିତ୍ର କାଳ ( ଉତ୍ତରାୟଣ, ଦେବଯାନ ) ଆରମ୍ଭ ହେଉଥିଲା । ଏହି କାଳ ଦୁଇଟି ନକ୍ଷତ୍ରର ପଛକୁ ଗ୍ଭଲିଯାଇ ଘଟିଥିବାରୁ ମୃଗଶିରା ଘଟିତ ସମୟ ଠାରୁ ଦୁଇ ହଜାର ବର୍ଷର ପୂର୍ବରୁ ବୋଲି କୁହାଯାଇପାରେ । ଅର୍ଥାତ୍ ତିଳକ୍ ଅଦିତି ଯୁଗକୁ ଖ୍ରୀ.ପୂ. ୬୦୦୦-୪୦୦୦ ଭିତରେ ସ୍ୱୀକାର କରିଅଛନ୍ତି । ଏହ ଅଦିତି ଯୁଗ ଭାରତୀୟ ସଂସ୍କୃତିର ସର୍ବାପେକ୍ଷା ପ୍ରାଚୀନ ଯୁଗ । ପୃଥିବୀର ଅନ୍ୟ କୌଣସି ସଭ୍ୟତା ଓ ସଂସ୍କୃତିରେ ଏପରି ଯୁଗର କଳ୍ପନା ଦେଖା ଦିଏ ନାହିଁ । ଲୋକମାନ୍ୟ ତିଳକ୍ ବୈଦିକ ଯୁଗକୁ ଗ୍ଭରିଭାଗରେ ବିଭକ୍ତ କରିଛନ୍ତି ।

**୧- ଅଦିତ କାଳ** ( ଖ୍ରୀ.ପୂ. ୬୦୦୦ - ୪୦୦୦)

ଏହି ସମୟରେ ଉପାସ୍ୟ ଦେବତାଙ୍କ ନାମ, ଗୁଣ, ଚରିତ୍ର ବର୍ଣ୍ଣନା ସଙ୍କଳିତ ବିଧି ବାକ୍ୟର ରଚନା ଗଦ୍ୟ ଓ ପଦ୍ୟରେ ହୋଇଥିଲା ।

**୨- ମୃଗଶିରା କାଳ** ( ୪୦୦୦ - ୨୫୦୦ ଖ୍ରୀ.ପୂ )

ଏହା ହେଉଛି ଭାରତୀୟ ଆର୍ଯ୍ୟ ସଭ୍ୟତାର ଗୌରବାବହ ଯୁଗ । ଏହି ସମୟରେ ଋଗ୍‌ବେଦର ଅଧିକାଂଶ ମନ୍ତ୍ର ସଙ୍କଳିତ ହୋଇଥିଲା । ଏହା କ୍ରିୟାଶୀଳ ଯୁଗ ରୂପେ ବିଦିତ ।

**୩- କୃତ୍ତିକା କାଳ** ( ଖ୍ରୀ.ପୂ. ୨୫୦୦ ରୁ ୧୪୦୦)

ଏହି ସମୟରେ ତୈତ୍ତିରୀୟ ସଂହିତା, ଶତ୍‌ପଥ ବ୍ରାହ୍ମଣ ଆଦି କେତେକ ବ୍ରାହ୍ମଣ ଗ୍ରନ୍ଥ ରଚିତ ହୋଇଅଛି । ବେଦାଙ୍ଗ ଜ୍ୟୋତିଷ ମଧ୍ୟ ଏହି ଯୁଗରେ ରଚନା ।

**୪- ଶେଷ କାଳ** ( ଖ୍ରୀ.ପୂ. ୧୪୦୦ - ୫୦୦)

ଏହି ସମୟରେ ଶ୍ରୌତସୂତ୍ର, ଗୁହ୍ୟସୂତ୍ର, ଦର୍ଶନ ସୂତ୍ରାଦି ରଚିତ ହୋଇଛି ।

ଲୋକମାନ୍ୟ ତିଳକ୍ ଜ୍ୟୋତିଷ ଗଣନାର ଆଧାର ଉପରେ ଖ୍ରୀ. ପୂ. ୬୦୦୦ରେ ଭାରତୀୟ ସଭ୍ୟତାର ଆରମ୍ଭକୁ ପ୍ରତିପାଦନ କରିଛନ୍ତି । ପ୍ରଫେସର ଜାକୋବି ଖ୍ରୀ.ପୂ. ୩୦୦୦ରେ ଭାରତ ସଭ୍ୟତାକୁ ସ୍ୱୀକାର କରିଛନ୍ତି । ଜାକୋବିଙ୍କ ସିଦ୍ଧାନ୍ତ 'ଗୃହ୍ୟ ସୂତ୍ର' ଉପରେ ବର୍ଣ୍ଣିତ 'ଧ୍ରୁବ ଦର୍ଶନ' ଉପରେ ଆଧାରିତ । ତେଣୁ ତିଳକଙ୍କ ଭଳି ଏତେ ପୂର୍ବକୁ ସେ ଯାଇ ପାରି ନାହାନ୍ତି । ଏହି ସବୁ ବିଷୟକୁ ବିଗ୍ରରକୁ ନେଇ ଆମେ ଏକ ଯୁକ୍ତି ଯୁକ୍ତ ନିର୍ଣ୍ଣୟରେ ପହଞ୍ଚି ପାରିବା ଯେ ଋଗ୍ ବେଦର ରଚନା କାଳ ଖ୍ରୀଷ୍ଟପୂର୍ବ ୪୫୦୦ । ସେହିପରି ଅନ୍ୟାନ୍ୟ ସଂହିତା ଗୁଡିକର ଶେଷ ମନ୍ତ୍ର ରଚନାକୁ ଖ୍ରୀଷ୍ଟପୂର୍ବ ୩୦୦୦ ଠାରୁ ଅଧିକ ଅର୍ବାଚୀନ ବୋଲି କହିହେବ ନାହିଁ ।(୧୬)

କୌଣସି ସଭ୍ୟତାର କାଳ ନିରୂପଣ କଲାବେଳେ ପୌରାଣିକ ପ୍ରମାଣର ମଧ୍ୟ ବିଗ୍ରର କରାଯାଇଥାଏ । ପୁରାଣର ବର୍ଣ୍ଣନା ଅନୁଯାୟୀ ମହାଭାରତ ଯୁଦ୍ଧ ପରେ ହସ୍ତିନାପୁର ବନ୍ୟା ପ୍ଲାବିତ ହୋଇ ଯାଇଥିଲା । ଫଳଶ୍ରୁତି ସ୍ୱରୂପ କୁରୁ ସାମ୍ରାଜ୍ୟ ରାଜଧାନୀ କୌଶାମ୍ବିକୁ ସ୍ଥାନାନ୍ତରିତ ହୋଇଥିଲା । ଭୂ ଖନନ ଫଳରେ ସେଠାରୁ ମିଳୁଥିବା ରଞ୍ଜିତ ଧୂସର ପାତ୍ର ଉପରେ ବଢି ପାଣି ପଙ୍କୁ ସ୍ତର ଆବିଷ୍କୃତ ହୋଇଛି । ଅନ୍ୟ ଏକ ବର୍ଣ୍ଣନା ଅନୁଯାୟୀ ଦ୍ୱାରକା ନଗରୀ ସମୁଦ୍ର ମଧ୍ୟରେ ଜଳମଗ୍ନ ହୋଇଥିଲା । ସୁପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ଏସ୍. ଆର. ରାଓ ଆରବ ସାଗରରେ ଭୂଖନନ ଫଳରେ ସମୁଦ୍ର ଗର୍ଭରେ ମଗ୍ନ ହୋଇଥିବା ସହରର ଧ୍ୱଂସାବଶେଷ ଆବିଷ୍କାର କରିଛନ୍ତି ଏବଂ ପ୍ରମାଣ କରନ୍ତି ଯେ ଏ ଉଭୟ ନଗର ଜଳମଗ୍ନ ହେବାର ପ୍ରମାଣ ମିଳୁଛି । ଏହି ପ୍ରଳୟ ସମ୍ପର୍କରେ ଯେଉଁ ବର୍ଣ୍ଣନା ଦିଆ ଯାଇଛି ତାହା ଅନୁଧ୍ୟାନ କଲେ ବୈଦିକ କାଳ ସମ୍ପର୍କରେ କଛିଟା ସୂତ୍ର ମିଳି ପାରିବ । ଏହି ବର୍ଣ୍ଣନା ମୁଖ୍ୟତଃ ଶତ୍‌ପଥ ବ୍ରାହ୍ମଣର ( ଖ୍ରୀଷ୍ଟପୂର୍ବ ୩୦୦୦) ବର୍ଣ୍ଣନା ଉପରେ ଭିତ୍ତି କରିଥିବାର ବିଶ୍ୱାସ ଯୋଗ୍ୟ ଓ ମହତ୍ତ୍ୱପୂର୍ଣ୍ଣ । ଶତ୍‌ପଥ ବ୍ରାହ୍ମଣରେ ପ୍ରଳୟ ସମ୍ପର୍କରେ କୁହାଯାଇଛି - "ଥରେ ବୈବସ୍ୱତ ମନୁ ତର୍ପଣ କଲାବେଳେ ତାଙ୍କ ହାତରେ ଛୋଟ ମାଛଟିଏ ଆସି ପଡ଼ିଲା । ସେ କାତର ହୋଇ ତାଙ୍କ ଶରଣ ମାଗିଲା । ମନୁ ତାହାକୁ ଶରଣ ଦେଲେ । ଭବିଷ୍ୟତରେ ଗୋଟିଏ ବଡ ବଢି ହେବ ବୋଲି ସେ ମନୁଙ୍କୁ ସାବଧାନ କରିବା ସହିତ ସେତେବେଳେ ସେ ଆସି ତାଙ୍କୁ ରକ୍ଷା କରିବ ବାଲି ପ୍ରତିଶ୍ରୁତି ଦେଲା । ମନୁ ତାଙ୍କୁ ପାଳିଲେ । କ୍ରମେ ବଡ ହେବାରୁ ତାହାକୁ ନେଇ ସମୁଦ୍ରରେ ଛାଡି ଦେଲେ । ସତକୁ ସତ ମାଛର ଭବିଷ୍ୟତ ବାଣୀ ଫଳିଲା । ବିରାଟ ପ୍ରଳୟଙ୍କରୀ ବନ୍ୟା ଆସିଲା । ଜୀବ ଜନ୍ତୁ ସବୁ ନଷ୍ଟ ହୋଇ ଗଲେ । ମାଛଟିର ଉପଦେଶରେ ମନୁ ଡଙ୍ଗାଟିଏ ତିଆରି କଲେ ଏବଂ ତାହାକୁ ମାଛର ସିଂଘରେ ବାନ୍ଧିଲେ । ମାଛ ଡଙ୍ଗାଟିକୁ ଟାଣି ଟାଣି ଉତ୍ତର ଗିରି (ହିମାଳୟ) ପାଖକୁ ନେଲା ଏବଂ ସେଠାରେ ଡଙ୍ଗାଟିକୁ ବଢିପାଣି ନ କମିବା ପର୍ଯ୍ୟନ୍ତ ଗୋଟିଏ ଗଛରେ ବାନ୍ଧି ଦେବା ପାଇଁ କହିଲା । ମନୁ ତାହାହିଁ କଲେ । କ୍ରମେ ବଢିପାଣି ଛାଡିଗଲା ଏବଂ ମନୁ ଉଦ୍ଧାର ପାଇଗଲେ"। ମହାଭାରତରେ ଏହି ସ୍ଥାନଟିର ନାମ ନୌ ବନ୍ଧନ ବୋଲି କୁହାଯାଇଛି । ସାରା ମାନବ ଜାତିର ଅବଶେଷ ହୋଇ ଏକମାତ୍ର ମନୁ ରହିଗଲେ । କିଛି କାଳ ପରେ ଶ୍ରଦ୍ଧା ନାମ୍ନୀ ଜଣେ ସ୍ତ୍ରୀ ଜନ୍ମ ହେଲେ । ତାଙ୍କରି ଠାରୁ ମନୁଙ୍କ ଔରସରୁ ମାନବୀ ପ୍ରଜା ସୃଷ୍ଟି ହେଲେ । ମନୁଙ୍କର ସନ୍ତାନ ବୋଲି ମଣିଷମାନଙ୍କୁ କୁହାଯାଇଛି ମାନବ (୧୭) । ବାଇବେଲ୍‌ରେ ମଧ୍ୟ ଏତାଦୃଶ ଖଣ୍ଡ ପ୍ରଳୟର କଥା ବର୍ଣ୍ଣିତ ହୋଇଛି । ଇରାନୀୟ - ମାନଙ୍କର ପରମ୍ପରା ଅନୁସାରେ ଏହି ପରି ପ୍ରଳୟ

ଘଟିଥିବାର 'ବେଣ୍ଡିଦାଦ୍' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ମେସୋପଟାମିୟା ଅଞ୍ଚଳରେ ଏତାଦୃଶ ପ୍ରଳୟ ଘଟିଥିବାର ପ୍ରମାଣ ରହିଛି ।(୧୮) ପୌରାଣିକ ବର୍ଣ୍ଣନାରେ ମନୁ ବୈବସ୍ବତଙ୍କର ପରବର୍ତ୍ତୀ ରାଜାମାନଙ୍କର ତାଲିକା ଦିଆଯାଇଛି । ସେଠାରେ କୁହାଯାଇଛି ଯେ ଏହି ପ୍ରଳୟ ମହାଭାରତ ଯୁଦ୍ଧର ୯୫ ପୁରୁଷ ପୂର୍ବରୁ ଘଟିଥିଲା । ମହାଭାରତ ଯୁଦ୍ଧ ଘଟିଥିଲା ଖ୍ରୀ.ପୂ. ୧୪୦୦ରେ ।(୧୯) ୯୫ ପୁରୁଷ ଖୁବ୍ ଲମ୍ବା ସମୟ ଥିବାରୁ ପ୍ରତି ପୁରୁଷ ପାଇଁ ହାରାହାରି ୧୮ ବର୍ଷ ଧରି ଧରିଲେ ପ୍ରଳୟର ସମୟ ଆସି ପହଞ୍ଚୁଛି· ( ୯୫ x ୧୮+ ୧୪୦୦) ଖ୍ରୀ.ପୂ. ୩୧୧୦ ରେ । ଏହା ମେସୋପଟାମିୟା ପ୍ରଳୟ ସମୟ ସହିତ ପ୍ରାୟ ମେଳ ଖାଉଛି । ଇରାନୀୟ ମେସୋପଟାମିୟ ପରମ୍ପରାରେ ଯେଉଁ ପ୍ରଳୟର ବର୍ଣ୍ଣନା ହୋଇଛି ଅଥବା ବାଇବେଲ୍‌ରେ ଯେଉଁ ପ୍ରଳୟ କଥା କୁହାଯାଇଛି ତାହା ଶ୍ରୁତ ମୁଖରେ ସପ୍ତସିନ୍ଧୁ ଦେଶରୁ ବାହାରକୁ ଯାଉଛି । ମନେ ହେଉଛି ଏହାର ମୌଳିକ କଥା ବସ୍ତୁ ହେଉଛି ଗୋଟିଏ ଏବଂ ତାହାର ଐତିହାସିକ ସତ୍ୟତା ବିଦ୍ୟମାନ ।

କେତେକଙ୍କ ମତରେ ଯଦି ଏତେ ବଡ ମହାପ୍ରଳୟ ବେଦର ପୂର୍ବରୁ ଘଟିଥିଲା ତାହେଲେ ଋଗ୍‌ବେଦରେ ଏହାର ବର୍ଣ୍ଣନା ନରହିଲା କିପରି ? ଯଦିଓ ଜଣେ ମନୁଙ୍କର ନାମ ଋଗ୍‌ବେଦରେ ବର୍ଣ୍ଣନା କରାଯାଇଛି ସେ ମହାପ୍ରଳୟ ସହିତ ସଂପୃକ୍ତ ବୈବସ୍ବତ ମନୁ ନୁହଁନ୍ତି । ସେ ହେଉଛନ୍ତି ବ୍ରହ୍ମାଙ୍କର ପୁତ୍ର ମନୁ । ସ୍ମୃତି ଶାସ୍ତ୍ର ରଚୟିତା ମନୁ ଏ ଉଭୟ ମନୁଙ୍କ ଠାରୁ ପୃଥକ୍ କଲ୍ୟାଣ ରମଣ ଏହାକୁ ମହାପ୍ରଳୟ ମନୁ ସହିତ ସଂପୃକ୍ତ କରି ନାହାଁନ୍ତି କାରଣ ଋଗ୍‌ବେଦରେ ଏହି ମହାପ୍ରଳୟର କଥା ବର୍ଣ୍ଣିତ ହୋଇନାହିଁ ଏବଂ ସେ ମନୁ ସ୍ୱୟମ୍ଭୂ ହୋଇ ପାରିଥାନ୍ତି । (୨୦) ଋଗ୍‌ବେଦରେ ମହାପ୍ରଳୟ କଥା ବର୍ଣ୍ଣନା କରାଯାଇ ନଥିବାରୁ ସଂଶିତ ପ୍ରଳୟ ଋଗ୍‌ବେଦ ରଚନାର ପରେ ଘଟିଛି । ମନେ ହୁଏ ଏହି ରଚନାର ବହୁ ବର୍ଷ ପରେ 'ଅହୁର୍ ମଜଦା' ( ଅସୁରମଘବା ) ଙ୍କ ଉପାସକ ଅସୁରମାନେ ଆର୍ଯ୍ୟମାନଙ୍କ ଦ୍ୱାରା ସପ୍ତସିନ୍ଧୁ ଦେଶରୁ ବିତାଡିତ ହୋଇ ପଶ୍ଚିମ ଦିଗକୁ ପଳାଇ ଯାଇଛନ୍ତି । ମହାଭାରତୀୟ ପରମ୍ପରାରେ ଗଡ଼ି ଆସିଥିବା ମହାପ୍ରଳୟର ବର୍ଣ୍ଣନା ସମ୍ପର୍କରେ ହୁଏତ ନିମ୍ନୋକ୍ତ ସିଦ୍ଧାନ୍ତଟି ନିଆଯାଇ ପାରେ । ଆର୍ଯ୍ୟମାନେ ଦକ୍ଷିଣ ଅଞ୍ଚଳରେ ରହୁଥିଲେ ଏବଂ ବଢି ହେବା ଦ୍ୱାରା ସେମାନଙ୍କ ଘର ଦ୍ୱାର ବୁଡି ଯାଇଥିବ । ଯଦି କେତେଜଣ ରକ୍ଷାପାଇ ଯାଇଥିବେ ସେମାନେ ଡଙ୍ଗାରେ ବସି ଉତ୍ତର ଅଭିମୁଖରେ ହିମାଳୟ ଅଞ୍ଚଳକୁ ଯାତ୍ରା କରିଥିବେ । ହୁଏତ ହିମାଳୟର ପାଦ ଦେଶରେ ଥିବା ସ୍ଥାନ ଗୁଡିକ ଉଚ୍ଚ ଏବଂ ବନ୍ୟା ଛାଡି ଯିବା ପରେ ସେମାନେ ପୁଣି ନିଜ ନିଜର ଦୈନନ୍ଦିନ ଜୀବନ ଆରମ୍ଭ କରିଥିବେ । ଏହି ବନ୍ୟା ସମ୍ପର୍କରେ ଅନୁଧ୍ୟାନ କରି ଋଗ୍‌ବେଦୀୟ ଭୂଗୋଳ ସହିତ ପରିଚିତ ଅବିନାଶ ଚନ୍ଦ୍ର ଦାଶ ବର୍ତ୍ତମାନ ରାଜପୁତନାର 'ଥର୍' ମରୁଭୂମି ସେତେବେଳେ ସମୁଦ୍ର ଗର୍ଭରେ ଥିଲା ଏବଂ ଏହି ସମୁଦ୍ର ଆରବସାଗର କୁ ଲାଗି ଥିଲା ବୋଲି କହିଛନ୍ତି । ଏହା ଥିଲା ସପ୍ତସିନ୍ଧୁ ଅଞ୍ଚଳର ଦକ୍ଷିଣ ଏବଂ ଦକ୍ଷିଣରେ ବିନ୍ଧ୍ୟ ପର୍ବତ ପର୍ଯ୍ୟନ୍ତ ସ୍ପର୍ଶ କରିଥିଲା । ଏହାକୁ କୁହାଯାଉଥିଲା ଦକ୍ଷିଣ ସମୁଦ୍ର ଏବଂ ବର୍ତ୍ତମାନର ଉତ୍ତର ପ୍ରଦେଶ, ବିହାର ଓ ବଙ୍ଗଳାକୁ ନେଇ ଏହି ସମୁଦ୍ର ଗଠିତ ହୋଇଥିଲା । ବର୍ତ୍ତମାନର ଗଙ୍ଗା ନଦୀ ଖୁବ୍ ଛୋଟ ଥିଲା ; ତାହାର ପ୍ରାଧାନ୍ୟ ନଥିଲା କହିଲେ ଚଳେ । ଭୂଗର୍ଭରେ ଆନ୍ଦୋଳନ ଘଟି ସମୁଦ୍ର ପତନ ଉପରକୁ ଉଠିଗଲା ଏବଂ ଏହି ଜଳରାଶି ଚ୍ଚରିଆଡେ ବିକ୍ଷିପ୍ତ ହୋଇଗଲା । କେତେକ ନଦୀର ଗତି ପଥ ମଧ୍ୟ ବଦଳିଗଲା ଫଳରେ ଭୀଷଣ ବନ୍ୟାର ଆର୍ବିଭାବ ଘଟିଥିଲା । ଏହା ହେଉଛି ଶତ୍‌ପଥ ବ୍ରାହ୍ମଣରେ

ବର୍ଣ୍ଣିତ ବହୁ ଚର୍ଚ୍ଚିତ ପ୍ରଳୟର କାହାଣୀ । ରାଜସ୍ଥାନ ମରୁଭୂମିରେ ଯେଉଁ ସମୁଦ୍ର ହ୍ରଦ ରହିଛି ତାହା ସେହି ଦକ୍ଷିଣ ସମୁଦ୍ରର ଅଂଶ ବିଶେଷ । ସମୁଦ୍ର ସ୍ଥାନରେ ମରୁଭୂମି ଦେଖା ଦେବାରୁ ସରସ୍ୱତୀ ନଦୀ ମରୁଭୂମି ମଧ୍ୟରେ ଲୀନ ହୋଇଗଲା ଏବଂ ସରସ୍ୱତୀ ନଦୀ ଯେଉଁ ସ୍ଥାନରେ ଲୀନ ହୋଇଛି ସେହି ସ୍ଥାନକୁ ଏବେ ବିନାଶନ ବୋଲି କୁହାଯାଉଛି । ଋଗ୍‌ବେଦରେ ସ୍ପଷ୍ଟ ଭାବରେ ବର୍ଣ୍ଣିତ ହୋଇଛି ଯେ ସରସ୍ୱତୀ ନଦୀ ସିଧା ସଳଖ ସମୁଦ୍ରରେ ଯାଇ ପଡିଥିଲା । (୨୧) ଖାଲି ସରସ୍ୱତୀ ନଦୀ ନୁହେଁ ଶତଦ୍ରୁ ନଦୀ ମଧ୍ୟ ସମୁଦ୍ରରେ ପଡ଼ିଥିଲା । ଏହି ଦୁଇ ନଦୀ ପଡ଼ିଥିବା କଥା ମଧ୍ୟ ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି । (୨୨) ଏହି ଦୁଇ ନଦୀ ଯେ ସମୁଦ୍ରରେ ପଡିଥିଲେ ଓ ଏହି ସମୁଦ୍ର ଯେ ହେଉଛି ରାଜସ୍ଥାନର ପୁତନା ସମୁଦ୍ର ଏ ସମ୍ପର୍କରେ ତାଙ୍କର ମତ ଦୃଢ଼ । (୨୩) ରାଜସ୍ଥାନର 'ଥର୍' ମରୁଭୂମି ଯେ ପ୍ରାଚୀନ କାଳରେ ସମୁଦ୍ର ଗର୍ଭରେ ଥିଲା ଏକଥା ସ୍ପଷ୍ଟ ଭାବରେ ବିଦିତ । ( ୨୪)

ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ସପ୍ତସିନ୍ଧୁ ଦେଶର ପୂର୍ବ ଓ ପଶ୍ଚିମରେ ସମୁଦ୍ର ଥିବାର ଉଲ୍ଲେଖ ମିଳେ । ବର୍ଣ୍ଣିତ ସମୁଦ୍ର ଭିତରୁ ପଶ୍ଚିମ ସମୁଦ୍ରର ସତ୍ତା ଏପର୍ଯ୍ୟନ୍ତ ବିଦ୍ୟମାନ୍ କିନ୍ତୁ ପୂର୍ବ ସମୁଦ୍ରର ସନ୍ଧାନ ମିଳୁନାହିଁ । ପୁଣି ଆଉ ଏକ ମନ୍ତ୍ରରେ ଆର୍ଯ୍ୟ ନିବାସର ଚତୁର୍ଦ୍ଦିଗରେ ଚାରିଟି ସମୁଦ୍ର ବିଦ୍ୟମାନ ଥିବା କଥା ଉଲ୍ଲିଖିତ ହୋଇଛି । ପଶ୍ଚିମରେ ଆରବ ସାଗର ଏ ପର୍ଯ୍ୟନ୍ତ ବିଦ୍ୟମାନ । ଦକ୍ଷିଣ ସମୁଦ୍ର ନିଶ୍ଚୟ ରାଜପୁତନାର ମରୁଭୂମିରେ ଥିଲା । ଉତ୍ତର ସମୁଦ୍ର ନିଶ୍ଚୟ ଉତ୍ତର ଦିଗରେ ଥିଲା । କାରଣ ଭୂଗର୍ଭବେତାମାନଙ୍କ ମତରେ ଏସିଆର ଉତ୍ତରରେ ଓ ପାରସ୍ୟର ଉତ୍ତରରେ ବିଶାଳ ସାଗର ସତ୍ତା ଥିଲା ଯାହାକୁ ସେମାନେ ଭୂମଧ୍ୟ ସାଗର ବୋଲି କହନ୍ତି । ଏହି ସାଗର ର ସମ୍ପର୍କ 'ଆର୍କଟିକ୍' ସାଗର ସହିତ ଥିଲା । ବର୍ତ୍ତମାନ କୃଷ୍ଣ ସାଗର, କାଶ୍ୟପ ସାଗର, ବଲ୍‌କାଶ ହ୍ରଦ, ସେହି ସାଗରର ଚିହ୍ନ ସ୍ୱରୂପ ବିଦ୍ୟମାନ । ସେ ସମୟରେ ସମଗ୍ର ଗାଙ୍ଗେୟ ଉପତ୍ୟକା ହିମାଳୟର ପାଦଦେଶ ଓ ଆସାମ୍ ସାଗର ଗର୍ଭରେ ଥିଲା । ତେଣୁ ଗଙ୍ଗାର ବର୍ଣ୍ଣନା ଋଗ୍‌ବେଦରେ ବିଶେଷ ଭାବରେ ଦେଖା ଦିଏ ନାହିଁ । ସେତେବେଳେ ପଞ୍ଜାବରେ ଶୀତର ପ୍ରାବଲ୍ୟ ପରିଲକ୍ଷିତ ହେଉଥିଲା । ତେଣୁ ସେ କାଳର ଆର୍ଯ୍ୟ ତାର ବର୍ଷାରମ୍ଭକୁ 'ହିମ' ନାମରେ ନାମିତ କରିଛି । ଭୂତତ୍ତ୍ୱବିତ୍‌ମାନେ ଅନୁମାନ କରିଛନ୍ତି 'ପ୍ଲିଷ୍ଟୋସିନ୍' ବା ପୂର୍ବ 'ପ୍ଲିଷ୍ଟୋସିନ୍' କାଳର କଥା । ସେମାନଙ୍କ ମତରେ କାଳକ୍ରମେ ରାଜପୁତନା ସମୁଦ୍ର ଗର୍ଭରୁ ଉଠିବା ସଂଗେ ସଂଗେ ହିମାଳୟର ପାଦଦେଶ ଓ ଗାଙ୍ଗେୟ ଉପତ୍ୟକା ମଧ୍ୟ ସମୁଦ୍ରରୁ ଉଠି ସମତଳ ଭୂମିରେ ପରିଣତ ହୋଇଛି । ସମୁଦ୍ର ଓ ହିମ ପ୍ରବାହ ଅନ୍ତର୍ହିତ ହେବା ପରେ ସରସ୍ୱତୀର ଜଳ ପ୍ରବାହ କ୍ଷୀଣ ରୂପରେ ପ୍ରବାହିତ ହୋଇ ରାଜପୁତନାର ମରୁଭୂମିର ସିକତାରେ ଲୀନ ହୋଇଯାଇଛି । ପୁଣି ପଞ୍ଜାବର ଜଳବାୟୁରେ ଉଷ୍ଣତା ପ୍ରବେଶ କରିଛି । ଉପର୍ଯ୍ୟୁକ୍ତ ଭୂଗର୍ଭ ସମ୍ବନ୍ଧୀ ଘଟଣା ପ୍ରାୟ ଖ୍ରୀ.ପୂ. ୨୫.୦୦୦ ବର୍ଷ ତଳର । ତେଣୁ ଋଗ୍‌ବେଦ ଖ୍ରୀ.ପୂ. ୨୫୦୦୦ ବର୍ଷ ପୂର୍ବେ ରଚିତ ହୋଇଛି । କିନ୍ତୁ ଏହି ମତ ଗ୍ରହଣ ଯୋଗ୍ୟ ନୁହେଁ ( ୨୪ କ) ।

ଇରାନୀୟମାନଙ୍କର ପ୍ରାଚୀନ ଧର୍ମ ଗ୍ରନ୍ଥ 'ଜେନ୍ଦ ଆବେସ୍ଥାର' ବର୍ଣ୍ଣନାରୁ ମଧ୍ୟ 'ଐରଣବୈଜୋ' ( ଆର୍ଯ୍ୟଭୂମି) ଅଞ୍ଚଳରେ ହଠାତ୍ କୌଣସି କାରଣରୁ ଜଳବାୟୁର ପରିବର୍ତ୍ତନ ହୋଇଥିବା କଥା ସୂଚନା ମଳିଥାଏ । 'ଐରଣବୈଜୋ' ର ସୃଷ୍ଟି ସମ୍ପର୍କରେ ଭଗବାନ୍ "ଅହୁର ମଜଦା" ( ଅସୁର ମଘବା ) କହିଛନ୍ତି ଯେ ଆର୍ଯ୍ୟମାନଙ୍କ ଲାଗି ସେ ଗୋଟିଏ ସୁନ୍ଦର ଦେଶ ସୃଷ୍ଟି କରିଥିଲେ ।

କିନ୍ତୁ ପରମାତ୍ମା ଅଙ୍ଗମୈନୁ ଆସି ତାକୁ ନଷ୍ଟ କରିଦେଲେ । (୨୫) ସମୁଦ୍ର ମାତିଯିବା ଫଳରେ ଯେଉଁ ଖଣ୍ଡ ପ୍ରଳୟ ସପ୍ତ ସନ୍ଧୁ ଦେଶରେ ସୃଷ୍ଟି ହୋଇଥିଲା ତାହା ହୁଏତ ବହୁତ ଦିନ ଧରି ରହିଥିଲା । ଫଳରେ ଜଳବାୟୁରେ ପରିବର୍ତ୍ତନ ଘଟିଲା । ତେଣୁ ମରୁଭୂମିର ଉଦ୍‌ଭବ ହେଲା ।

ଏହି ସବୁ ଦୃଷ୍ଟିରୁ ବିଗ୍ୱର କଲେ. ଶତପଥ ବ୍ରାହ୍ମଣରେ ବର୍ଣ୍ଣିତ ପ୍ରଳୟ ଏହି ଗ୍ରନ୍ଥ ରଚନାର ବହୁ ପୂର୍ବରୁ ଘଟିଥିବାର ବିଶ୍ୱାସ କରାଯାଏ ଏବଂ ସମ୍ଭବତଃ ଏହାର ସମୟ ହେଉଛି ଖ୍ରୀ.ପୂ. ୩୧୦୦ ।

ମିଶରୀୟ ସଭ୍ୟତାକୁ ଖ୍ରୀ.ପୂ. ୩୨ରେ ସ୍ଥାନିତ କରାଯାଇଛି । ବୈଦିକ ସଭ୍ୟତା ଏଠାରୁ ପ୍ରାଚୀନ ଏବଂ ଏହାର ସମୟ ଖ୍ରୀ.ପୂ. ୪୫୦୦ ବୋଲି ପୂର୍ବରୁ କୁହାଯାଇଛି । ଏହାର କାରଣ ସ୍ୱରୂପ କୁହାଯିବ :-

(କ) "ବୈଦିକ ପରମ୍ପରାରେ ଶତପଥ ବ୍ରାହ୍ମଣର ବର୍ଣ୍ଣନା ଅନୁଯାୟୀ ବୈବସ୍ୱତ ମନୁ ହେଲେ ପ୍ରଥମ ମନୁଷ୍ୟ । ଯାହାଙ୍କ ଠାରୁ ପରେ ଅନ୍ୟ ମନୁଷ୍ୟ ମାନଙ୍କର ସୃଷ୍ଟି ହୋଇଥିଲା ।

ବୈବସ୍ୱତ ମନୁ ଐତିହାସିକ ପୁରୁଷ ନହେଲେ ମଧ୍ୟ ପାରମ୍ପରିକ ସାଂସ୍କୃତିକ ଇତିହାସରେ ଜଣେ ପ୍ରବାଦ ପୁରୁଷ ଭାବରେ ବର୍ଣ୍ଣିତ ହୋଇଥିଲେ । ଏହାଙ୍କ ନାମକୁ ଅନୁସରଣ କରି ସଂପୃକ୍ତ ମିଶରର ପ୍ରଥମ  ବିଖ୍ୟାତ ନାମ ରଖା ଯାଇଥିଲା 'ମେନ୍‌ସ୍' ।

(ଖ) "ବୈଦିକ ଭାଷାରେ ସ୍ୱର୍ଗୀୟ ପିତୃପୁରୁଷକୁ କୁହାଯାଉଥଲା ଦ୍ୟୌପିତୃ । ମିଶରୀୟ ଭାଷାରେ ତାଙ୍କୁ କୁହା ଯାଉଥିଲା 'ଦେବପତଃ' । ଭାରତୀୟ ପରମ୍ପରା ଭଳି ମିଶରୀୟ ପରମ୍ପରାରେ ମଧ୍ୟ 'ପିତୃଗଣ' ଥିଲେ ପୂଜ୍ୟ" ।

(ଗ) "ବୈଦିକ ଦେବ ସବିତାଙ୍କ ଅନୁକରଣରେ ମିଶରୀୟ ଦେବଙ୍କୁ କୁହାଯାଉଥିଲା 'ହାଥୋର୍' ।"

(ଘ) "ଋଗ୍‌ବେଦରେ ସୂର୍ଯ୍ୟଙ୍କୁ ସକଳ ଜଗତର ଆତ୍ମା ସ୍ୱରୂପ ଗଣାଯାଉଥିଲା । ଏହାରି ଅନୁକରଣରେ 'ହୋରସ୍'ଙ୍କୁ ଜଗତର ଆତ୍ମା ବୋଲି ମିଶରୀୟମାନେ ବିଶ୍ୱାସ କରୁଥିଲେ" ।

(ଙ) "ବୈଦିକ ପରମ୍ପରାରେ ଆଦି ରାଜବଂଶ ହେଲା ସୂର୍ଯ୍ୟବଂଶ । ମନୁ. ଇକ୍ଷ୍ୱାକୁ. ରାମଚନ୍ଦ୍ର ଇତ୍ୟାଦି ବିଖ୍ୟାତ ରାଜାମାନେ ଥିଲେ ସୂର୍ଯ୍ୟବଂଶୀ । ଏହାରି ଅନୁକରଣରେ ମିଶରୀୟ ରାଜାମାନେ ତାଙ୍କ ରାଜଧାନୀର ନାମ ଦେଇଥିଲେ 'ହେଲି ଓ ପୋଲି' ବା 'ସୂର୍ଯ୍ୟ ପୁରୀ'। ସୂର୍ଯ୍ୟଙ୍କ ସହିତ ରାଜକୀୟ ପରମ୍ପରାକୁ ସଂଯୁକ୍ତ କରିବା ଧାରଣାଟି ହେଉଛି ନିଛକ ବୈଦିକ" ।

(ଚ) "ରାମଚନ୍ଦ୍ରଙ୍କ କାଳ ହେଉଛି ଖ୍ରୀ.ପୂ. ୨୩୫୦ରୁ ଖ୍ରୀ.ପୂ. ୧୯୫୦ । ରାମଙ୍କୁ ଭଗବାନଙ୍କର ଅବତାର ବୋଲି କୁହାଯାଏ । ମିଶର୍ ସମ୍ରାଟ୍ 'ରାମସେସ୍ ଦୁଇ' ହେଉଛନ୍ତି ମିଶରର ସମ୍ରାଟ । ତାଙ୍କୁ ମଧ୍ୟ ଭଗବାନଙ୍କ ଅବତାର ବୋଲି ମିଶରୀୟମାନେ ମାନୁଥିଲେ" ।

ମିଶର୍ ବ୍ୟତୀତ ବ୍ୟାବିଲୋନ୍‌ରେ ମଧ୍ୟ ବୈଦିକ ସଂସ୍କୃତିର ପ୍ରଭାବ ପଡିଥିବାର ଅନୁମାନ କରାଯାଏ । ମହାଭାରତର ମନୁ. ଶ୍ରୀକୃଷ୍ଣ. ଅର୍ଜ୍ଜୁନ ଇତ୍ୟାଦି ଯେଉଁ ଚରିତ୍ର ଅଛନ୍ତି ଏସବୁ ଗୁଡିକର

ପ୍ରଭାବ 'ବାବିଲୋନ'ରେ ଦେଖିବାକୁ ମିଳୁଛି । ସେଠାକାର ସମ୍ରାଟ 'ହାମୁରାବି' ( ଖ୍ରୀ.ପୂ. ୨୧୦୦ ) ସୂର୍ଯ୍ୟଙ୍କ ଠାରୁ ଜ୍ଞାନୋପଦେଶ ଶୁଣିଥିବାର ଗୋଟିଏ ଚିତ୍ର ପର୍ବତ ଗାତ୍ରରେ ଅଙ୍କିତ ହୋଇଥିବାର ଦେଖିବାକୁ ମିଳେ । ଏହା ବୈଦିକ ପ୍ରଭାବର ଏକ ସ୍ପଷ୍ଟ ନିଦର୍ଶନ । (୨୬)

"ଏ.ଡି. ପୁସଲକର୍" ବହୁ ତଥ୍ୟ ପରିବେଷଣ ପୂର୍ବକ ଏହାକୁ ଖ୍ରୀଷ୍ଟପୂର୍ବ ୨୫୫୦ରୁ ଖ୍ରୀଷ୍ଟପୂର୍ବ ୨୩୫୦ ଭିତରେ ସ୍ଥାନିତ କରିଛନ୍ତି । ପର୍ଶୁରାମ ହେଉଛନ୍ତି ଭୃଗୁବଂଶୀୟ ବ୍ରାହ୍ମଣ । ସେମାନେ ମଧ୍ୟ ବ୍ୟବସାୟ କରୁଥିଲେ । ସେମାନଙ୍କର ଆର୍ଯ୍ୟମାନଙ୍କ ବିରୋଧି ପଣିମାନେ ତାଙ୍କର ବନ୍ଧୁଥିଲେ । ସେଥିପାଇଁ ଭୃଗୁମାନଙ୍କୁ ଦେଶଦ୍ରୋହୀ ଆଖ୍ୟା ଦେଇ ସେମାନଙ୍କୁ ଦମନ କରିବା ପାଇଁ ଆର୍ଯ୍ୟମାନେ ଉଦ୍ୟମ କରିଥିଲେ । 'ହୈହୟ ବଂଶ'ର ରାଜା କାର୍ତ୍ତବୀର୍ଯ୍ୟାର୍ଜୁନ ଏହାର ନେତୃତ୍ୱ ନେଇ ଭୃଗୁମାନଙ୍କୁ ଦମନ କରିଥିଲେ । କନ୍ତୁ ଭୃଗୁବଂଶର ପରଶୁରାମ ଏହି ବଂଶର ରାଜାମାନଙ୍କୁ ମାରି ଭୃଗୁମାନଙ୍କର ପ୍ରାଧାନ୍ୟ ଫେରାଇ ଆଣିଥିଲେ । ଭୃଗୁମାନେ ଆରବ ସାଗର ଉପକୂଳରେ ବହୁ ବନ୍ଦର ସ୍ଥାପନ କରିଥିଲେ । ତନ୍ମଧ୍ୟରେ 'ସୁର୍ପାରକ' ହେଉଛି ସବୁଠାରୁ ବଡ ବନ୍ଦର । ଏଠାରୁ ବୌଦ୍ଧ ଯୁଗରେ ମଧ୍ୟ ବହୁ ପୋତ ବହିର୍ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରୁଥିଲେ । ପରଶୁରାମ କାଳର ବହୁ ଶତ ବର୍ଷ ପୂର୍ବରୁ ବେଦ ମନ୍ତ୍ର ଗୁଡିକ ରଚନା ହୋଇଥିଲା । ( ୨୭)

କୌଣସି ପ୍ରାଚୀନ ଗ୍ରନ୍ଥ ଓ ସାହିତ୍ୟ କାଳ ନିର୍ଣ୍ଣୟ କରିବାକୁ ଗବେଷକଙ୍କୁ ପ୍ରଥମତଃ ବ୍ରାହ୍ମଣ, ଜୈନ ଏବଂ ବୌଦ୍ଧ ସାହିତ୍ୟ ଉପରେ, ଦ୍ୱିତୀୟତଃ ଶିଳାଲେଖ, ତାମ୍ର ଲିପି, ପ୍ରାଚୀନ ମୁଦ୍ରା ଇତ୍ୟାଦି ଉପରେ, ତୃତୀୟତଃ ପ୍ରାଚୀନ ପାଶ୍ଚାତ୍ୟ ସାହିତ୍ୟ ଉପରେ ଅର୍ଥାତ୍ ଗ୍ରୀକ୍, ଲାଟିନ୍, ଚୀନୀୟ ସାହିତ୍ୟ ଉପରେ ନିର୍ଭର କରିବାକୁ ପଡେ । ବେଦର ରଚନା କାଳ ନିର୍ଣ୍ଣୟ କରିବାରେ ଶିଳାଲେଖ ଓ ପାଶ୍ଚାତ୍ୟ ସାହିତ୍ୟ ବିଶେଷ କିଛି ସାହାଯ୍ୟ କରେନା । ତେଣୁ ଉପରୋକ୍ତ ଆଲୋଚନା ସହିତ ବେଦର ରଚନା କାଳ ସମ୍ପର୍କରେ ଅନ୍ୟ କେତେକ କଥାକୁ ବିଚାରକୁ ନିଆଯାଇ ପାରେ ।

ଭାରତୀୟ ଆସ୍ତିକ ହିନ୍ଦୁଙ୍କ ପାଇଁ ବେଦର ରଚନା କାଳର ପ୍ରଶ୍ନ ଉଠେ ନାହିଁ । ସେମାନଙ୍କ ମତରେ ବେଦ ଅପୌରୁଷେୟ, ଅନାଦି, ନିତ୍ୟ, କାଳାତୀତ । ତେଣୁ ତାର ରଚନା କାଳ ନିରୂପଣ କରିବା ଅସମ୍ଭବ । ଭିନ୍ନ ଭିନ୍ନ ସମୟରେ ମହର୍ଷିମାନଙ୍କର ସ୍ୱତଃ ସିଦ୍ଧ ଅନ୍ତଃକରଣରେ ସମାଧି ଅବସ୍ଥାରେ ମନ୍ତ୍ର ସ୍ୱୟଂ ପ୍ରକାଶିତ ହୋଇଛି । ଋଷିମାନେ ମନ୍ତ୍ରକୁ ଦର୍ଶନ କରିଛନ୍ତି । ମନ୍ତ୍ରକୁ ପ୍ରଣୟନ କରି ନାହାନ୍ତି । 'ଋତମ୍ଭରା' ପ୍ରଜ୍ଞା ଦ୍ୱାରା ମନ୍ତ୍ରଙ୍କୁ କଣ୍ଠସ୍ଥ କରି ରକ୍ଷା କରିଅଛନ୍ତି । ତେଣୁ ସେମାନଙ୍କ ମତରେ ବେଦ ରଚନାର ଅର୍ଥ ହେଲା- "ଯସ୍ୟ ନିଶ୍ୱସିତଂ ବେଦାଃ" - ବ୍ରହ୍ମର ନିଃଶ୍ୱାସକୃତ ମନ୍ତ୍ରକୁ ଧ୍ୟାନନେତ୍ର ଦ୍ୱାରା ସାକ୍ଷାତ କର ।(୨୮)

ମାକ୍ସମୂଲାର୍‌ଙ୍କ ମତରେ "ବୌଦ୍ଧଧର୍ମର ଉଦୟ ପୂର୍ବରୁ ବ୍ରାହ୍ମଣ ଗ୍ରନ୍ଥ ରଚନା ହୋଇ ସାରିଥିଲା । କାରଣ ବୌଦ୍ଧମାନେ ବୈଦିକ ଯାଗ ଯଜ୍ଞର ତୀବ୍ର ସମାଲୋଚନା କରିଛନ୍ତି । ବୈଦିକ ଯୁଗର ସାହିତ୍ୟକୁ ସେ ଚାରି ଭାଗରେ ବିଭକ୍ତ କରିଛନ୍ତି । ଯଥା- ଛନ୍ଦ କାଳ, ମନ୍ତ୍ରକାଳ, ବ୍ରାହ୍ମଣ କାଳ ଏବଂ ସୂତ୍ର କାଳ । ପ୍ରତ୍ୟେକ ଯୁଗ ଭିତରେ ୨୦୦ ବର୍ଷର ବ୍ୟବଧାନକୁ ସେ ସ୍ୱୀକାର କରିଛନ୍ତି ଅର୍ଥାତ୍ ଗୋଟିଏ ଯୁଗର ଆରମ୍ଭ ଏବଂ ଗ୍ରନ୍ଥ ନିର୍ମାଣ ଓ ପ୍ରତିଷ୍ଠା ପାଇଁ ଅନ୍ତତଃ ୨୦୦ ବର୍ଷ ସମୟ ଲାଗଥିବ ।

'ସୂତ୍ରକାଳ' ହେଉଛି ବୈଦିକ ଯୁଗର ଶେଷକାଳ । ଏହି 'ସୂତ୍ରକାଳ'ର ଭିତରେ ଦୁଇ ପ୍ରକାର ସାହିତ୍ୟ ରଚିତ ହୋଇଛି । ଯଥା- ଅନୁକ୍ରମଣୀ ଏବଂ ପରିଶିଷ୍ଟ । ଶୌନିକ ଋଗ୍‌ବେଦର ଅନୁକ୍ରମଣୀ ଗୁଡିକ ରଚନା କରିଛନ୍ତି ଏବଂ କାତ୍ୟାୟନ ଋଗ୍‌ବେଦର ଦୁଇଟି 'ସର୍ବାନୁକ୍ରମଣୀ' ଓ ଶୁକ୍ଳ ଯର୍ଜୁବେଦର ଗୋଟିଏ 'ସର୍ବାନୁକ୍ରମଣୀ' ରଚନା କରିଛନ୍ତି । ଏହି ସୂତ୍ର ଯୁଗ ଭିତରେ ଗୃହ୍ୟ ସୂତ୍ରର ନିର୍ମାଣ ମଧ୍ୟ ଅନ୍ତର୍ଭୁକ୍ତ । ( ୨୯) ବୁଦ୍ଧଦେବଙ୍କର ଦେହାବସାନ ଏବଂ ଅଶୋକଙ୍କ ସମୟ ଯଥାକ୍ରମେ ଖ୍ରୀ.ପୂ. ୪୮୩ ଏବଂ ଖ୍ରୀ.ପୂ. ୨୭୦ ବୋଲି ପ୍ରମାଣିତ ହୋଇଛି । ଚନ୍ଦ୍ରଗୁପ୍ତଙ୍କ ସମୟ ଖ୍ରୀ.ପୂ. ୩୨୧ ରୁ ଖ୍ରୀ.ପୂ.୨୯୭ ଏବଂ କାତ୍ୟାୟନ ଚନ୍ଦ୍ରଗୁପ୍ତଙ୍କର ମନ୍ତ୍ରୀ ଥିଲେ ଏବଂ ଯାହାର ସମୟ ହେଉଛି ଖ୍ରୀ.ପୂ. ୩୨୫ । ଯଦି ମାକ୍‌ସ୍‌ମୁଲାର୍‌ଙ୍କ ଗଣନା ଅନୁସାରେ ପ୍ରତ୍ୟେକ କାଳର ସାହିତ୍ୟକୁ ୨୦୦ ବର୍ଷର ବ୍ୟବଧାନରେ ସୃଷ୍ଟି ହୋଇଛି ବୋଲି ବିଗ୍ରହକୁ ନିଆଯାଏ ତାହେଲେ 'ଛାନ୍ଦ କାଳ'ର ସମୟ ହେଉଛି ଖ୍ରୀଷ୍ଟପୂର୍ବ ୧୨୦୦ରୁ ଖ୍ରୀ.ପୂ. ୧୦୦୦ । ମାକ୍‌ସମୁଲାର୍‌ଙ୍କ ମତରେ ଋଗ୍‌ବେଦ ଆଜି ଠାରୁ ୩୨୦୦ ବର୍ଷ ତଳେ ରଚିତ ହୋଇଛି । ପଣ୍ଡିତ ମାକ୍‌ସମୁଲାର୍‌ଙ୍କ ଉପରୋକ୍ତ ମତକୁ ବହୁ ଗବେଷକ ସ୍ୱୀକାର କରିପାରନ୍ତି ନାହିଁ । 'ହ୍ୱିଟନିଙ୍ଗ୍'ଙ୍କ ମତରେ ଖ୍ରୀ.ପୂ. ୨୦୦୦ରୁ ଖ୍ରୀ.ପୂ. ୧୫୦୦ ମଧ୍ୟରେ 'ଛାନ୍ଦ କାଳ' ଆସିବ । 'ଏ.କେ.ଜି' ଖ୍ରୀ.ପୂ ୨୦୦୦ ଠାରୁ ଆହୁରି ଅଧିକ ସମୟ ମଧ୍ୟ କଳ୍ପନା କରିଛନ୍ତି । 'ବେନଫେ' ଉକ୍ତ ମତକୁ ସମର୍ଥନ କରିଅଛନ୍ତି । (୩୦) ୱବର୍‌ଙ୍କ ମତରେ ଅର୍ଯ୍ୟମାନେ ଖ୍ରୀ.ପୂ. ୧୬୦୦ରେ ସିନ୍ଧୁ ଉପତ୍ୟକାରେ ବସତି ସ୍ଥାପନ କରିଥିଲେ । ଜର୍ମାନ୍ ବିଦ୍ୱାନ 'ଜାକୋବି' ଜ୍ୟୋତିଷ ଗଣନାର ଆଧାର ଉପରେ ବେଦର ରଚନା କାଳକୁ ଖ୍ରୀ.ପୂ. ୪୩୦୦ ବର୍ଷରେ ପ୍ରତିଷ୍ଠିତ କରାଇ ପାଶ୍ଚାତ୍ୟ ବିଦ୍ୱାନଙ୍କ ମନରେ ଏକ ଅଭୂତପୂର୍ବ ଆଲୋଡନ ସୃଷ୍ଟି କରିଥିଲେ । (୩୧)

ଶିଳାଲେଖରୁ ପ୍ରମାଣିତ ହୁଏ ଖ୍ରୀ.ପୂ. ୩୦୦ ପୂର୍ବେ ଭାରତୀୟ ଆର୍ଯ୍ୟ ଦକ୍ଷିଣ ଭାରତରେ ବିଜୟ ଲାଭ କରିଥିଲେ । କିନ୍ତୁ 'ଭ୍ୟୁଲର୍'ଙ୍କ ମତରେ ଖ୍ରୀପୂ. ୭୦୦ କିମ୍ବା ଖ୍ରୀ.ପୂ. ୬୦୦ ପୂର୍ବରୁ ଦକ୍ଷିଣରେ ଆର୍ଯ୍ୟମାନଙ୍କର ବିଜୟ ସହିତ ବ୍ରାହ୍ମଣ୍ୟ ଧର୍ମର ପ୍ରଭାବ ସ୍ଥାପିତ ହୋଇ ସାରିଥିଲା । ଏହି ଆଧାର ଉପରେ ଅନୁମାନ କରାଯାଇଛି ଖ୍ରୀ.ପୂ. ୧୨୦୦ ବା ଖ୍ରୀପୂ. ୧୫୦୦ ପୂର୍ବରୁ ଆର୍ଯ୍ୟମାନେ ଆଫଗାନିସ୍ଥାନ ଅଞ୍ଚଳରେ ବସତି ସ୍ଥାପନ କରି ସାରିଥିଲେ । ଦକ୍ଷିଣରେ ଆର୍ଯ୍ୟ ବିଜୟ ଫଳରେ 'ବୌଧାୟନ ଓ ଆପସ୍ତମ୍ବ' ଆବିର୍ଭାବ ଘଟିଥିଲା । ଏହି ଦୁଇଟି ଗ୍ରନ୍ଥ ରଚିତ ହେବାକୁ ବହୁ ସମୟ ଲାଗି ଥିବ କିନ୍ତୁ 'ଭ୍ୟୁଲର୍'ଙ୍କ ମତର ସତ୍ୟତା ନ ଥିଲା ଭଳି ମନେ ହେଉଛି । କାରଣ ବୈଦିକ ସାହିତ୍ୟର ଆରମ୍ଭରୁ ଶେଷକାଳ ମଧ୍ୟରେ ଆର୍ଯ୍ୟମାନେ ସିନ୍ଧୁ ନଦୀ ଠାରୁ ଆରମ୍ଭ କରି ଗଙ୍ଗା ଭିତରେ ଥିବା ପ୍ରଦେଶରେ ନିଜର ଆଧିପତ୍ୟ ବିସ୍ତାର କରି ସାରିଥିଲେ । ଫଳରେ ଆର୍ଯ୍ୟମାନେ ଦକ୍ଷିଣ ଭାରତରେ ଏମାନଙ୍କ ଆଧିପତ୍ୟ ବିସ୍ତାର କରିବା ପାଇଁ ବହୁକାଳ ନେଇଥିବେ ଏଥିରେ ସନ୍ଦେହ ନାହିଁ । ତେଣୁ 'ଭ୍ୟୁଲର'ଙ୍କ ମତ ଯୁକ୍ତି ସଙ୍ଗତ ନୁହେଁ ।

ଡ. ହ୍ୟାଙ୍କ୍ ଏସିଆ ମାଇନର୍‌ର ( ତୁର୍କୀ) ବୋଗାଜବୋଇ ନାମକ ସ୍ଥାନରେ ଗୋଟିଏ ଶିଳାଲେଖ ଆବିଷ୍କାର କରିଛନ୍ତି । ତାହା ବେଦର କାଳ ନିର୍ଣ୍ଣୟରେ ସାହାଯ୍ୟ କରେ । ପଶ୍ଚିମ ଏସିଆର

ଏହି ସ୍ଥାନରେ ଦୁଇଟି ପ୍ରାଚୀନ ଜାତି ବାସ କରୁଥିଲେ । ଗୋଟିଏ ଜାତିର ନାମ 'ହିତ୍ତିତି' ଓ ଅନ୍ୟଟିର ନାମ 'ମିତାନି'। ଦୁଇ ଜାତି ମଧରେ ଥରେ ଯୁଦ୍ଧ ହୋଇଥିଲା । ନିଜ ନିଜର ସଂରକ୍ଷଣ ନିମିତ୍ତ ଦୁଇଜାତି ନିଜ ନିଜର ଦେବତାଙ୍କୁ ଆହ୍ୱାନ କରିଥିଲେ । ଶେଷରେ ସନ୍ଧି ହେଲା । ମିତାନୀ ରାଜା ନିଜ ଶତ୍ରୁର କନ୍ୟାକୁ ବିବାହ କଲେ । ସେହି ସନ୍ଧିରେ ଗୁରୋଟି ବୈଦିକ ଦେବତାଙ୍କ ନାମ ଉଲ୍ଲେଖ ଥିଲା ।

'ମିତାନି' ଜାତିର ଦେବତାଙ୍କ ଭିତରେ 'ଇନ୍ଦ୍ର, ବରୁଣ, ମିତ୍ର, ନାସତ୍ୟୌ' ଦେବତାଙ୍କର ନାମ ଥିଲା । ଏଥିରୁ ଜଣାପଡେ 'ମିତାନି' ଜାତି ଭାରତୀୟ ବୈଦିକ ଆର୍ଯ୍ୟ ଜାତିର ଗୋଟିଏ ଶାଖା ଏବଂ ସେହି ଶାଖା ଭାରତରୁ ଯାଇ ପଶ୍ଚିମ ଏସିଆରେ ବସତି ସ୍ଥାପନ କରିଥିଲେ । ଐତିହାସିକ ପ୍ରମାଣ ବଳରେ ପଶ୍ଚିମ ଏସିଆ ଓ ଭାରତର ସମ୍ବନ୍ଧ ସେହି ସମୟରେ ପ୍ରମାଣିତ ହୋଇଛି । ଉପଯୁକ୍ତ ଶିଳା ଲେଖର ସମୟ ହେଉଛି ଖ୍ରୀ. ପୂ. ୧୪୦୦ । (୩୨) ଏହି ସମୟର ବହୁତ ପୂର୍ବରୁ ଆର୍ଯ୍ୟଗଣ ଆର୍ଯ୍ୟାବର୍ତ୍ତରେ ବୈଦିକ ଧର୍ମ ପ୍ରଗ୍ରର କରି ସାରିଥିଲେ ।

କେତେକ ବିଦ୍ୱାନ ମତ ଦିଅନ୍ତି ଋଗ୍‌ବେଦ ନିଶ୍ଚୟ 'ଜେନ୍ଦ୍‌ଆବେସ୍ତା' ର ପୂର୍ବବର୍ତ୍ତୀ । 'ଜେନ୍ଦ୍‌ଆବେସ୍ତା' ସହିତ ଋଗ୍‌ବେଦର ଭାଷାଗତ ଅନେକ ସାମ୍ୟ ପରିଲକ୍ଷିତ ହୁଏ । ଐତହାସିକମାନଙ୍କ ମତରେ ଯୋରାଷ୍ଟର, ପର୍ସିଆ ର ରାଜା ଜରକ୍‌ସେସ୍‌ଙ୍କର ଆକ୍ରମଣ ଖ୍ରୀ.ପୂ. ୪୮୦ ର ଘଟଣା । ତେଣୁ ଯୋରାଷ୍ଟର ନିଶ୍ଚୟ ( ୪୮୦ + ୬୦୦୦ ) = ୬୪୮୦ ଖ୍ରୀ.ପୂ. ରୁ ଜୀବିତ ଥିଲେ । ତେଣୁ ଋଗ୍‌ବେଦ ପ୍ରାୟ ଖ୍ରୀ.ପୂ./ ୬୫୦୦ ବର୍ଷ ତଳର ରଚନା । (୩୩)

ଉପରୋକ୍ତ ବିଭିନ୍ନ ଭୌଗଳିକ, ଭୂତାତ୍ତ୍ୱିକ, ଜ୍ୟୋତିର୍ବିଦ୍ୟା ଭିତ୍ତିକ ତଥା ବେଦ ମନ୍ତ୍ର ଭିତ୍ତିକ ପ୍ରମାଣମାନ ବିଗ୍ୱର କଲେ ଆମେ ଜାଣି ପାରିବା ଯେ ବୈଦିକ କାଳ ଖ୍ରୀ.ପୂ. ୪୫୦୦ରୁ ଖ୍ରୀ.ପୂ. ୩୦୦୦ ମଧ୍ୟରେ ସୀମା ବଦ୍ଧ । ବିଭିନ୍ନ ଅନୁଶୀଳନରୁ ଏହା ବିଗ୍ୱର ଯୋଗ୍ୟ ଯେ ଋଗ୍‌ବେଦର ପ୍ରଥମ ମନ୍ତ୍ର ଖ୍ରୀପୂ. ୪୫୦୦ରୁ ଖ୍ରୀପୂ. ୩୦୦୦ ମଧ୍ୟରେ ରଚିତ ହୋଇ ଥିବାର ସମ୍ଭାବନା ଅଧିକ । ତେଣୁ ଋଗ୍‌ବେଦର ପ୍ରଥମ ମନ୍ତ୍ର ଖ୍ରୀ.ପୂ. ୪୫୦୦ରୁ ପ୍ରାଚୀନତର ହୋଇ ନଥାଇପାରେ ଏବଂ ସର୍ବଶେଷରେ ରଚିତ ଅଥର୍ବ ବେଦର ଶେଷ ମନ୍ତ୍ର ଖ୍ରୀ.ପୂ. ୩୦୦ ଠାରୁ ଆହୁରି ଅଧିକ କାଳ ଅର୍ବାଚୀନ ନୁହେଁ । ( ୩୪)



# ଦ୍ୱିତୀୟ ପରିଚ୍ଛେଦ

## ବୈଦିକ ସାହିତ୍ୟ

**(୧) ବେଦର ଉତ୍ପତ୍ତି** - ବିଦ୍ (ଜ୍ଞାନେ) ଧାତୁରୁ ବେଦ ଶବ୍ଦ ନିଷ୍ପନ ହୋଇଛି । ବେଦ ସ୍ୱରୂପ ନିର୍ଣ୍ଣୟ କରିବା ଅତ୍ୟନ୍ତ କଷ୍ଟକର ହୋଇଥିଲେ ହେଁ ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ ଏହି ଚାରି ଗ୍ରନ୍ଥକୁ ବେଦର ସଂଜ୍ଞା ଦିଆଯାଇଛି । (୧)

ମନ୍ତ୍ରରେ ବ୍ୟଖ୍ୟାରେ କୁହାଯାଇଛି ଯାହା ଦ୍ୱାରା ଯଜ୍ଞାନୁଷ୍ଠାନ କରାଯାଏ ଏବଂ ଅଭିଳଷିତ ଦେବତାର ନାମକୁ ଭଜନ କରାଯାଏ ତାହା ହେଉଛି ମନ୍ତ୍ର ।(୨)

ବ୍ରାହ୍ମଣ ଶବ୍ଦକୁ ବୃହ (ବର୍ଦ୍ଧନେ) ଧାତୁରୁ ନିଷ୍ପନ କରାଗଲେ ବ୍ରାହ୍ମଣର ଅର୍ଥ ହେବ ବର୍ଦ୍ଧନ ବା ବିସ୍ତାର ଅର୍ଥାତ ଯଜ୍ଞ । ତେଣୁ ବ୍ରାହ୍ମଣ ଗ୍ରନ୍ଥରେ ଯଜ୍ଞାନୁଷ୍ଠାନର ବିସ୍ତୃତ ବର୍ଣ୍ଣନା ଓ ମନ୍ତ୍ରର ବ୍ୟାଖ୍ୟା ମଧ୍ୟ ଲିପିବଦ୍ଧ ହୋଇଛି । ଆରଣ୍ୟକ ଗ୍ରନ୍ଥରେ ମହର୍ଷି ବା ବାନପ୍ରସ୍ଥୀମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ଯଜ୍ଞ ମହାବ୍ରତ ତଥା ହୋତ୍ରାଦିର ବର୍ଣ୍ଣନା ସନ୍ନିବେଶିତ ହୋଇଛି । ଉପନିଷଦ୍ ହେଉଛି ବୈଦିକ ସାହିତ୍ୟର ଅନ୍ତିମ ଭାଷା । ଏଥିରେ ବ୍ରହ୍ମ ବିଦ୍ୟାର ଅନୁଶୀଳନ ଘଟିଛି । ମାନବ ଜନ୍ମ, ଜରା, ମୃତ୍ୟୁର ପ୍ରପଞ୍ଚରୁ ମୁକ୍ତି ଲାଭ କରି ଅକ୍ଷୟ ସୁଖର କିଭଳି ଅଧିକାରୀ ହୋଇପାରିବ ତାହା ଏଥିରେ ଅନୁଶୀଳିତ ହୋଇଛି । ଏଥିରେ ମଧ୍ୟ ଅତ୍ମା ପରମାତ୍ମାଙ୍କର ସ୍ୱରୂପ ତଥା ସେମାନଙ୍କର ପାରସ୍ପାରିକ ସମ୍ପର୍କ ବର୍ଣ୍ଣିତ ହୋଇଛି ।

ବେଦ ପ୍ରକୃତରେ ଏକ ; କିନ୍ତୁ ମନ୍ତ୍ରର ସ୍ୱରୂପ ଭେଦରୁ ବେଦର ସ୍ୱରୂପ ଭେଦ କଳ୍ପିତ ହୋଇଛି । ବେଦ ତ୍ରୟୀ - ଋଗ୍, ଯଜୁଃ, ସାମ । ପାଦ ଯୁକ୍ତ ଅର୍ଥ - ସମନ୍ୱିତ ଛନ୍ଦୋବଦ୍ଧ ମନ୍ତ୍ରକୁ ଋଗ୍ ବା ଋଗ୍ ଏବଂ ଏହି ମନ୍ତ୍ର ଗୁଡିକ ଯେଉଁଥିରେ ସଂକଳିତ ହୋଇଛି ତାହା ହେଉଛି ଋଗ୍‌ବଦ । ଋଗ୍ ଗୁଡିକର ବିଭିନ୍ନ ସ୍ୱର ଲହରୀରେ ଗାୟନକୁ 'ସାମ' କୁହାଯାଏ । ଏଥିରୁ ସାମ ବେଦର ନାମ କରଣ କରାଯାଇଛି । ଋଗ୍ ଓ ସାମର ବ୍ୟତିରିକ୍ତ ମନ୍ତ୍ରକୁ ଯଜୁସ୍ କୁହାଯାଏ । ଯଜୁସ୍ ମନ୍ତ୍ର ଯେଉଁଥିରେ ସଂକଳିତ ହୋଇଛି ତାହାକୁ ଯଜୁର୍ବେଦ କୁହାଯାଏ । କେତେକ ଗବେଷକ ବେଦରେ ଗଦ୍ୟ, ପଦ୍ୟ ଓ ଗାନ ଥିବାରୁ ତାହାକୁ ତ୍ରୟୀ କହିଥାନ୍ତି । ଅନ୍ୟକେତେକ ବେଦରେ କର୍ମ ଉପାସନା ଓ କର୍ମକାଣ୍ଡ ଥିବାରୁ ଏହାକୁ ତ୍ରୟୀ ନାମରେ ଅଭିହିତ କରିଛନ୍ତି । ଅଥର୍ବ ବେଦରେ ସଂହରାତ୍ମକ, ରକ୍ଷାତ୍ମକ ଦୁଷ୍ଟ - ପ୍ରେତାଦିଙ୍କର ନିବାରଣ ମନ୍ତ୍ର ସନ୍ନିବେଶିତ ହୋଇ ଥିବାରୁ ଏହାକୁ ପ୍ରଥମେ ବେଦ ରୂପେ ଗଣନା କରାଯାଉ ନଥିଲା । ଏହା ତତ୍‌କାଳୀନ ସାଧାରଣ ଲୋକଙ୍କର ଆଦରଣୀୟ ଗ୍ରନ୍ଥ ଥିଲା । 'ପୁରୁଷ ସୁକ୍ତ'ରେ ଅଥର୍ବ ବେଦର ଉଲ୍ଲେଖ ନାହିଁ । ଫଳରେ ତାହାକୁ 'ଅଥର୍ବାଙ୍ଗି ରସଃ' କୁହାଯାଏ । ଅର୍ଥାତ୍ 'ଅଥର୍ବନ୍ ଅଙ୍ଗିରସଙ୍କ ଗୁହ୍ୟ ବିଦ୍ୟା' ବୋଲି ଏହାକୁ କୁହାଯାଉଛି । ଫଳରେ ଅଥର୍ବ ବେଦ ପୂର୍ବରୁ ବେଦ ରୂପରେ ପରିଗଣିତ ହେଉନଥିଲା । ପରେ ତାହା ବେଦର ମର୍ଯ୍ୟାଦା ଲାଭ କଲା ।

ଆସ୍ତିକ ମତରେ ବେଦ ଅପୌରୁଷେୟ ; ଅର୍ଥାତ୍ ବେଦକୁ କେହି ରଚନା କରି ନାହାନ୍ତି ବା ବେଦ ମନୁଷ୍ୟକୃତ ନୁହେଁ । (୨କ) ସମାଧି ଅବସ୍ଥାରେ ମୁନି ଋଷିମାନଙ୍କ ମନରେ

ବେଦ ସ୍ୱୟଂ ପ୍ରକାଶ ଲାଭ କରିଛି । ସେମାନେ ବେଦ ମନ୍ତ୍ରକୁ ଦେଖିଛନ୍ତି । (୩) ମୁନିଋଷିମାନେ ପ୍ରଜ୍ଞା ଦ୍ୱାରା ବେଦକୁ କଣ୍ଠସ୍ଥ କରି ଶିଷ୍ୟ ପରମ୍ପରାକୁ ଶିକ୍ଷା ଦେଇଛନ୍ତି । ବେଦ ଅନାଦି, ନିତ୍ୟ, କାଳାତୀତ । ଋଗ୍‌ବେଦର ପୁରୁଷ ସୂକ୍ତରେ ତିନି ବେଦର ଉତ୍ପତ୍ତି କଥା କୁହାଯାଇଛି । (୪) ଅଥର୍ବ ବେଦରେ କୁହାଯାଇଛି ଋଗ୍, ସାମ୍, ଯଜୁଃ ଏବଂ ଅଥର୍ବ ବେଦର ଉତ୍ପତ୍ତି କିଭଳି ସମାହିତ ହୋଇଛି । (୫)

ଶତ୍‌ପଥ ବ୍ରାହ୍ମଣ ଗ୍ରନ୍ଥରେ ଋଗ୍‌ବେଦ ଅଗ୍ନିରୁ, ଯର୍ଜୁ ବେଦ ବାୟୁରୁ ଏବଂ ସାମ ବେଦ ସୂର୍ଯ୍ୟଙ୍କ ଠାରୁ ଉତ୍ପନ୍ନ ହୋଇଥିବା କଥା କୁହାଯାଇଛି । ମନୁସ୍ମୃତିରେ ଋଗ୍‌ବେଦ ଅଗ୍ନିଙ୍କର ସ୍ତୁତିରେ ଯଜୁର୍ବେଦ, ବାୟୁଙ୍କର ସ୍ତୁତିରେ ଆରମ୍ଭ ହୋଇଛି । ଶତ୍‌ପଥ ବ୍ରାହ୍ମଣରେ ବାକ୍, ମନ, ନିଃଶ୍ୱାସ ସହିତ ତିନି ବେଦର ଅଭିନ୍ନତା ପ୍ରତିପାଦିତ ହୋଇଛି । ପୁରାଣରେ ବ୍ରହ୍ମାଙ୍କ ମୁଖରୁ ବେଦର ଉତ୍ପତ୍ତି କଥା କୁହାଯାଇଛି । ବ୍ରହ୍ମାଙ୍କର ଚାରି ମୁଖରୁ ଚାରି ବେଦର ଉତ୍ପତ୍ତି ହୋଇଛି । ହରିବଂଶରେ କୁହାଯାଇଛି ଯଜ୍ଞ ବିଧାନ ନିମିତ୍ତ ଋଗ୍, ଯଜୁ ଓ ସାମର ସୃଷ୍ଟି ହୋଇଛି । ମହାଭାରତରେ ସରସ୍ୱତୀ ଏବଂ ବେଦକୁ ଭଗବାନ୍‌ଙ୍କର ମାନସ ସମ୍ଭୂତ ବୋଲି କୁହାଯାଇଛି । ମାର୍କଣ୍ଡ ପୁରାଣରେ କୁହାଯାଇଛି ବ୍ରହ୍ମାଙ୍କର ମୁଖରୁ ବେଦର ଉତ୍ପତ୍ତି ଏବଂ ଏହାକୁ ରାଜସ, ତାମସ ଏବଂ ଅନ୍ଧକାର ଓ ପବିତ୍ରତାର ନିଦର୍ଶନ ବୋଲି କୁହାଯାଇଛି ।(୬)

ଏହି ପୃଷ୍ଠଭୂମିରେ ବୈଦିକ ସାହିତ୍ୟର ଆଲୋଚନା ଏକାନ୍ତ ଆବଶ୍ୟକ । ବେଦର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଜାଣିବାକୁ ହେଲେ ତାହାର ଗୋପନ ବାଣୀଗୁଡିକର ଅର୍ଥ ଉପଲବ୍ଧିକୁ ଆଣିବାକୁ ହେବ । ବୈଦିକ ସାହିତ୍ୟ ୫ ଭାଗରେ ବିଭକ୍ତ । ସେଗୁଡ଼ିକ ହେଲା:-(କ) ସଂହିତା, (ଖ) ବ୍ରାହ୍ମଣ, (ଗ) ଆରଣ୍ୟକ, (ଘ) ଉପନିଷଦ୍, (ଙ) ବେଦାଙ୍ଗ ।

ଋଗ୍‌ବେଦ, ସାମବେଦ, ଯର୍ଜୁବେଦ ଓ ଅଥର୍ବ ବେଦକୁ ଚାରି ଗୋଟି ସଂହିତା ବୋଲି କୁହାଯାଏ । କେତେ ଗୁଡିଏ ମନ୍ତ୍ରର ଏକତ୍ରୀକରଣ ( ସଂହତି) ଏ ଗ୍ରନ୍ଥ ଗୁଡିକରେ କରାଯାଇଥିବାରୁ ଏହାକୁ ସଂହିତା ବୋଲି କୁହାଯାଏ ।

## (୨) ବେଦର ପରିଚୟ

**(କ) ଋଗ୍ ବେଦ** – ଭାଷା ଓ ଭାବଧାରାରୁ ବିଚାର କଲେ ଏକଥା ସ୍ପଷ୍ଟ ଯେ ବୈଦିକ ସାହିତ୍ୟର ସମସ୍ତ ରଚନା ଭିତରେ ଋଗ୍‌ବେଦ ସବୁ ଠାରୁ ପ୍ରାଚୀନ ଓ ମହତ୍ତ୍ୱପୂର୍ଣ୍ଣ । ଋଗ୍‌ବେଦରୁ ଆଦିମ ଆର୍ଯ୍ୟର ସମସ୍ତ କଳ୍ପନା ଦେଖିବାକୁ ମିଳିଥାଏ । ଋଗ୍‌ବେଦ ଭାବ ଗାରିମାରେ ପରିପୂର୍ଣ୍ଣ । କମନୀୟ କବିତାର ବିଭବ ଏବଂ ସଂଗୀତର ସ୍ୱର ମୂର୍ଚ୍ଛନାରେ ଏହା ସରସ ଓ ଅଳଙ୍କୃତ । ପୃଥିବୀର କୌଣସି ପ୍ରାଚୀନ ରଚନା ଋଗ୍‌ବେଦର ସମକକ୍ଷ ହୋଇପାରିବ ନାହିଁ ।(୭)

ପୁରୁଷ ସୂକ୍ତରେ ଋଗ୍ ବେଦର ଉତ୍ପତ୍ତି ସମ୍ପର୍କରେ କୁହାଯାଇଛି । ସାୟଣାଚାର୍ଯ୍ୟ ତାଙ୍କ ଋଗ୍‌ବେଦ ଭାଷ୍ୟ ଭୂମିକାରେ ଋଗ୍‌ବେଦର ପ୍ରାଚୀନତା ପ୍ରତିପାଦିତ କରିଛନ୍ତି । (୮) ତୈତ୍ତିରୀୟ ସଂହିତା ଅନୁସାରେ ଯଜୁର୍ବେଦ ଦ୍ୱାରା ଯଜ୍ଞ କାର୍ଯ୍ୟ ବିହିତ କରାଗଲେ ତାହା ଶିଥିଳ ହୁଏ । ମାତ୍ର ଋଗ୍‌ବେଦ ଅନୁସାରେ ଯଜ୍ଞ

ବିଧାନ କରାଗଲେ ତାହା ଦୃଢ ହୁଏ । ଏଥିରୁ ଋଗ୍‌ବେଦର ପ୍ରାଥମ୍ୟ ଜଣାପଡେ । ଋଗ୍ ବେଦର ଦୁଇପ୍ରକାର ବିଭାଜନ ଦେଖାଯିଏ ।(୧) ଅଷ୍ଟକ, ଅଧ୍ୟାୟ ଏବଂ ସୂକ୍ତ । ୨) ମଣ୍ଡଳ, ଅନୁବାକ ଏବଂ ସୂକ୍ତ ।

ଋଗ୍‌ବେଦ ଆଠଟି ଅଷ୍ଟକରେ ବିଭକ୍ତ । ପ୍ରତ୍ୟେକ ଅଷ୍ଟକ ୮ ଅଧ୍ୟାୟ ଯୁକ୍ତ । ଫଳରେ ଋଗ୍‌ବେଦ ୬୪ ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟର ଅବାନ୍ତର ବିଭାଗକୁ ବର୍ଗ କୁହାଯାଏ । ଋଗ୍‌ବେଦର ଅନ୍ତର୍ଗତ ବର୍ଗର ସଂଖ୍ୟା ହେଉଛି ୨୦୦୬ । ଏହି ବିଭାଜନ ଅତି ପ୍ରାଚୀନ ବୋଲି ଗବେଷକମାନେ ମତବ୍ୟକ୍ତ କରିଥାନ୍ତି । ଦ୍ୱିତୀୟ ବିଭାଜନ ଅନୁସାରେ ସମଗ୍ର ଋଗ୍‌ବେଦ ୧୦ ଖଣ୍ଡରେ ବିଭକ୍ତ । ଏହାକୁ ମଣ୍ଡଳ କୁହାଯାଏ । ମଣ୍ଡଳରେ ସନ୍ନିବେଶିତ ମନ୍ତ୍ର ସମୂହକୁ ସୂକ୍ତ କୁହାଯାଏ । ସୂକ୍ତ ର ଖଣ୍ଡକୁ ମନ୍ତ୍ର ବା ଋଗ୍ କୁହାଯାଏ । ଋଗ୍‌ବେଦର ସୂକ୍ତର ସଂଖ୍ୟା ହେଉଛି ୧୦୨୮ ଏବଂ ମନ୍ତ୍ରର ସଂଖ୍ୟା ହେଉଛି ୧୦, ୫୮୦ । ଏହି ମଣ୍ଡଳ ବିଭାଜନ ଅଷ୍ଟକ ବିଭାଜନ ଅପେକ୍ଷା ଅର୍ବାଚୀନ, ଐତିହାସିକ ଓ ବୈଜ୍ଞାନିକ ମଧ୍ୟ ।

କେତେକ ପାଶ୍ଚାତ୍ୟ ବିଦ୍ୱାନ ଋଗ୍‌ବେଦର ମଣ୍ଡଳରେ ଉଭୟ ପ୍ରାଚୀନ ଏବଂ ଅର୍ବାଚୀନ ମନ୍ତ୍ର ସଂକଳିତ ହୋଇଛି ବୋଲି କହିଥାନ୍ତି । ଦ୍ୱିତୀୟ ମଣ୍ଡଳରୁ ଆରମ୍ଭ କରି ସପ୍ତମ ମଣ୍ଡଳ ପର୍ଯ୍ୟନ୍ତ ଏହା ପ୍ରାଚୀନ ବୋଲି ସେମାନଙ୍କର ମତ । ଏହି ମଣ୍ଡଳ ବଂଶାନୁମଣ୍ଡଳ  ଭାବରେ ଖ୍ୟାତ । କାରଣ ପ୍ରତ୍ୟେକ ମଣ୍ଡଳ ଋଷି ମାନଙ୍କର ବିଶିଷ୍ଟ ପରମ୍ପରା ସହିତ ସମ୍ପର୍କିତ । ଦ୍ୱିତୀୟ ମଣ୍ଡଳଠାରୁ ସପ୍ତମ ମଣ୍ଡଳ ସହିତ ସଂପର୍କିତ ଋଷିମାନଙ୍କର ନାମ ଯଥାକ୍ରମେ ହେଉଛି - ଗୃତ୍ସମଦ, ବିଶ୍ୱାମିତ୍ର, ବାମଦେବ, ଅତ୍ରି, ଭରଦ୍ୱାଜ, ବଶିଷ୍ଠ । ଅଷ୍ଟମ ମଣ୍ଡଳରେ ଥିବା ସୂକ୍ତ କଣ୍ୱ ଓ ଅଙ୍ଗିରା ମହର୍ଷିଙ୍କର ବଂଶଜମାନେ ଗ୍ରହଣ କରିଅଛନ୍ତି । ନବମ ମଣ୍ଡଳରେ ସୋମଦେବତା 'ପରକ ସୂକ୍ତ'ଓ ସୋମରସ ପାନ ବିଷୟକ ସୂକ୍ତର କ୍ରମ ସଂକଳିତ ହୋଇଛି । ଏଥିରେ ସୋମରସ ନିଗିରଣ କରି ଦେବତାଙ୍କୁ ଅର୍ପଣ କରିବା ଓ ପ୍ରସାଦ ସ୍ୱରୂପ ଗ୍ରହଣ କରି ଆନନ୍ଦ ଉଲ୍ଲାସରେ ବିଭୋର ହେବାର ବର୍ଣ୍ଣନା ଏଥିରୁ ମିଳେ ।

ନବମ ମଣ୍ଡଳରେ ସୋମ କେବଳ ଦେବତାଙ୍କର ପ୍ରିୟ ପାନୀୟ ରୂପେ ବର୍ଣ୍ଣିତ ହୋଇନାହିଁ ; ଏହା ମଧ୍ୟ ଆକାଶର ଚନ୍ଦ୍ର ସହିତ ତୁଳନୀୟ ବୋଲି କୁହାଯାଇଛି । ଏହି ମଣ୍ଡଳରେ ସୋମ ଯଜ୍ଞର ସମ୍ପର୍କ ଅଛି । ସୋମକୁ ପବମାନ ମଧ୍ୟ କୁହାଯାଉଛି । ତେଣୁ ନବମ ମଣ୍ଡଳକୁ ପବମାନ ମଣ୍ଡଳ ମଧ୍ୟ କୁହାଯାଇଥାଏ । କେତେକ ଗବେଷକ ପ୍ରଥମ ମଣ୍ଡଳ ଓ ଦଶମ ମଣ୍ଡଳ ପରେ ସଂଯୁକ୍ତ ହୋଇଛି ବୋଲି ଅନୁମାନ କରନ୍ତି । ଭାଷା, ଛନ୍ଦ, କଳ୍ପନା ଓ ଦାର୍ଶନିକ ତତ୍ତ୍ୱରୁ ଜଣା ପଡ଼େ ଦଶମ ମଣ୍ଡଳ ପରବର୍ତ୍ତୀ ରଚନା । ଅନୁକ୍ରମଣିକାରେ ପ୍ରଥମ ମଣ୍ଡଳ, ନବମ ମଣ୍ଡଳ ଓ ଦଶମ ମଣ୍ଡଳର ଅନ୍ତର୍ଗତ ପ୍ରତ୍ୟେକ ସୂକ୍ତରେ ଋଷିଙ୍କର ନାମ ଦେଖିବାକୁ ମିଳିଥାଏ । ସେହି ଋଷିମାନଙ୍କ ଭିତରେ କେତେକ ବିଦୁଷୀ ରମଣୀମାନଙ୍କର ନାମ ମଧ୍ୟ ଦେଖିବାକୁ ମିଳେ ।

**ଋଗ୍‌ବେଦର ଶାଖା** – ଭାଗବତ ଅନୁସାରେ ବ୍ୟାସଦେବ ବୈଦିକ ସାହିତ୍ୟର ରକ୍ଷା ନିମିତ୍ତ 'ପୈଲ' ଙ୍କୁ ଋଗ୍‌ବେଦ, କବି 'ଜୈମିନି' ଙ୍କୁ ସାମବେଦ, 'ବୈଶମ୍ପାୟନ'ଙ୍କୁ ଯଜୁର୍ବେଦ ଓ 'ଦାରୁଣ ଓ ସୁମନ୍ତୁ ମୁନି'ଙ୍କୁ  ଅଥର୍ବ ବେଦ ପଢାଇ ଥିଲେ । ସେହି ମୁନିମାନେ ନିଜ ଗୁରୁଙ୍କ ଠାରୁ ପଢିଥିବା ବେଦକୁ ଶିଷ୍ୟ- ପ୍ରଶିଷ୍ୟମାନଙ୍କୁ ପଢାଇଲେ । ତେଣୁ ଏ ବିଶାଳ ବେଦ ବିଭିନ୍ନ ଶାଖାରେ ବିସ୍ତାର ଲାଭ କରିଛି ।

ଯେତେ ଶାଖା ପ୍ରଚଳିତ ଅଛି ସେତେ ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ ମଧ୍ୟ ଅଛି । ବୈଦିକ ସାହିତ୍ୟର ବହୁତ ଅଂଶ କାଳକ୍ରମେ ଲୋପ ପାଇ ଯାଇ ଥିବାର ଅନୁମାନ କରାଯାଏ । ବୈଦିକ ଶାଖାର ବିସ୍ତୃତ ବର୍ଣ୍ଣନା 'ପୁରାଣ' ଓ 'ଚରଣ ବ୍ୟୂହ'ରେ ଉପଲବ୍ଧ ହୁଏ । ମହାଭାଷ୍ୟକାର 'ପତଞ୍ଜଳି' ଋଗ୍‌ବେଦର ୨୧ ଶାଖା, ଯଜୁର୍ବେଦର ୧୦୦, ସାମ ବେଦର ୧୦୦୦ ଏବଂ ଅଥର୍ବ ବେଦର ୯ ଟି ଶାଖା ଥିବା ଉଲ୍ଲେଖ କରିଛନ୍ତି ।(୯) 'ଶୌନକ' ଋଗ୍‌ବେଦର ୫ଟି ଶାଖା କଥା କହିଥାନ୍ତି । (୧୦) ଯଥା- ଶାକଲ, ବାଷ୍କଳ, ଅଶ୍ୱଳାୟନ, ଶାଂଖ୍ୟାୟନ, ମାଣ୍ଡୂକାୟନ । ବର୍ତ୍ତମାନ ଋଗ୍‌ବେଦର କେବଳ 'ଶାକଲ' ଶାଖା ଟି ମିଳୁଛି । 'ବାଷ୍କଳ' ଶାଖା ଯଦିଓ ସଂହିତା ରୂପରେ ମିଳୁ ନାହିଁ ତଥାପି ତାର ଉଦ୍ଧରଣ ଅନେକ ସ୍ଥାନରେ ମିଳେ । ଏ ଉଭୟ ଶାଖାରେ ତାରତମ୍ୟ ଦୃଷ୍ଟି ଗୋଚର ହୁଏ । ଶାକଲ ଶାଖାରେ ୧୦୧୭ ସୂକ୍ତ, କିନ୍ତୁ ବାଷ୍କଳ ଶାଖା ରେ ୧୦୨୫ ସୂକ୍ତ ଥିବା କୁହାଯାଇଛି । ଅଶ୍ୱଳାୟନ ସଂହିତା ଓ ବ୍ରାହ୍ମଣର କୌଣସି ଅସ୍ତିତ୍ୱ ମିଳୁନାହିଁ । କିନ୍ତୁ ତାର ଉଦ୍ଧରଣ କେବଳ ଦେଖାଯାଏ । ଅଶ୍ୱଳାୟନ ଗୃହ୍ୟ ସୂତ୍ର ଓ ଶ୍ରୌତ ସୂତ୍ର ବ୍ୟତୀତ ତାର ଅନ୍ୟ ଶାଖା ଦେଖାଯାଏ ନାହିଁ । ଶାଂଖ୍ୟାୟନ ସଂହିତାରେ ମଧ୍ୟ ସେହି ଅବସ୍ଥା । ଶାଂଖ୍ୟାୟନର ବ୍ରାହ୍ମଣ ଓ ଆରଣ୍ୟକ ବ୍ୟତୀତ ତାହାର ଅନ୍ୟ ଶାଖା ଲୁପ୍ତ ହୋଇଯାଇଛି । ପୂର୍ବ ପ୍ରଚଳିତ ମାଣ୍ଡୂକାୟନ ଶାଖା ମଧ୍ୟ ଆଜି ବିଲୁପ୍ତ ଅବସ୍ଥାରେ ।(୧୧)

### ଋଗ୍ ବେଦର ବିଷୟ ବିସ୍ତାର

ଋଗ୍‌ବେଦରେ ଯେଉଁ ମନ୍ତ୍ରଗୁଡିକ ସଂକଳିତ ହୋଇଛି ତାହା ପ୍ରାକୃତିକ ଶକ୍ତିର ପ୍ରତୀକ । ଦେବାଦେବୀମାନଙ୍କ ପୂଜା ଓ ଆବାହନରେ ଏହା ମୁଖ୍ୟତଃ ପର୍ଯ୍ୟବେଷିତ । ଯଜ୍ଞ ଅବସରରେ ବୈଦିକ ଋଷି ସାଂସାରିକ ଅଭିବୃଦ୍ଧିରେ ଦେବତାଙ୍କୁ ଆବାହନ କରୁଥିଲେ । ମନ୍ତ୍ର ଗୁଡିକ ଋଷିମାନଙ୍କର ନିର୍ମଳ ଅନ୍ତଃକରଣର ପରିପ୍ରକାଶ ମାତ୍ର । ମନ୍ତ୍ରଗୁଡିକ ପୁରୋହିତର ରଚନା ଯାହା ନିର୍ଦ୍ଦିଷ୍ଟ ଯଜ୍ଞାନୁଷ୍ଠାନ ନିମନ୍ତେ ଉଦ୍ଦିଷ୍ଟ ହୋଇଥିଲା । ଋଗ୍‌ବେଦର ମନ୍ତ୍ର ବିଷୟରେ କୁହାଯାଏ ଏହି ମନ୍ତ୍ର ବା କବିତାରେ ଭାବର ଗାରିମା, ଶିଶୁସୁଲଭ ସରଳତା ଓ କଳ୍ପନାର ବିଳାସ ମଧ୍ୟ ଦେଖାଯାଏ । ଅଧିକାଂଶ ସୂକ୍ତ ଦେବତାଙ୍କ ଆହ୍ୱାନ ଓ ଯଶଗାନରେ ପ୍ରଯୁକ୍ତ ହୋଇଛି । ଏହା ଆଡଲ୍‌ଫ କେଇଜିଙ୍କ ଧାରଣା । (୧୨)

ଋଗ୍‌ବେଦର ସୂକ୍ତ ଗୁଡିକ ଭାରତୀୟ ସାହିତ୍ୟ ଓ ଧର୍ମ ଧାରଣାର ପ୍ରାଚୀନତମ ରଚନା । ଏକଥା ସତ୍ୟ ଯେ, ବେଦମାନଙ୍କ ମଧ୍ୟରେ ଋଗ୍‌ବେଦ ହେଉଛି ପ୍ରାଚୀନତମ । ଭାରତୀୟ ପରମ୍ପରାରେ ଏହାକୁ ତ କେବଳ ସର୍ବ ପ୍ରାଚୀନ ଗ୍ରନ୍ଥ ବୋଲି ଗ୍ରହଣ କରାଯାଏ ନାହିଁ, ବେଦ ହିସାବରେ ସର୍ବ ପ୍ରଧାନ । ଋଗ୍‌ବେଦର ପୁରୁଷ ସୂକ୍ତରେ ବିଭିନ୍ନ ବେଦମାନଙ୍କ ସୃଷ୍ଟି ପ୍ରସଙ୍ଗରେ କୁହାଯାଇଛି ବେଦୋକ୍ତ ସଂପୃକ୍ତ ପଂକ୍ତିରେ ସମସ୍ତ ଋଗ୍‌ଗୁଡିକର ଆହୁତି ଫଳରେ ସାମ ମନ୍ତ୍ର ଗୁଡିକର ସୃଷ୍ଟି ହେଲା ; ସେଥିରୁ ସୃଷ୍ଟି ହେଲା ଛନ୍ଦ । ସେଥିରୁ ଯଜୁର୍ବେଦର ସୃଷ୍ଟି ହେଲା । (୧୩)

ଋଗ୍‌ବେଦରୁ ଭାରତୀୟ ସଂସ୍କୃତିର ଆରମ୍ଭ ହେଲା ଏ କଥା ଠିକ୍ ନୁହେଁ । ଅର୍ଥାତ୍ ପୂର୍ବରୁ କିଛି ନ ଥିଲେ ହଠାତ୍ ଏଭଳି ସାହିତ୍ୟ ଓ ସଂସ୍କୃତି ଉଦ୍ଭବ ସମ୍ଭବ ହୋଇ ନଥାନ୍ତା । ତେଣୁ ଋଗ୍‌ବେଦ ରଚନା ପୂର୍ବରୁ ଯେଉଁ ସାହିତ୍ୟ ଓ ସଂସ୍କୃତି ଥିଲା ତାହା ବୈଦିକ ସଂସ୍କୃତି ସହିତ ସମକକ୍ଷ ହୋଇ ନପାରେ । ମାତ୍ର ଏକ ସମୃଦ୍ଧ ସଂସ୍କୃତି ଥିବାର ଅନୁମାନ କରାଯାଏ । କାରଣ ଏହି ଋଗ୍‌ବେଦରେ ଯେଉଁ ଋଷିମାନେ ପଥ ଦେଖାଇଛନ୍ତି, ସେହି ପୂର୍ବଜମାନଙ୍କ ଉଦ୍ଦେଶ୍ୟରେ ନମସ୍କାର କରାଯାଇଛି । (୧୪)

ଓଲ୍‌ଡେନବର୍ଗ ଋଗ୍‌ବେଦର ସୂକ୍ତ ଗୁଡିକ ଭାରତୀୟ ସାହିତ୍ୟ ଓ ଧର୍ମ ଧାରଣାର ପ୍ରାଚୀନତମ ରଚନା ବୋଲି କହିଅଛନ୍ତି । ଏହି ସୂକ୍ତ ଗୁଡିକରେ ବୁଦ୍ଧିର ବିକାଶ ଲକ୍ଷ୍ୟ କରାଯାଏ । ଦେବୋତ୍ତର ସ୍ତୁତି ନିମନ୍ତେ ମନ୍ତ୍ରଗୁଡିକ ପ୍ରଯୁକ୍ତ ହୋଇଛି । କେତେକ ମନ୍ତ୍ର ଅକପଟ ନିର୍ମଳ ହୃଦୟର ପ୍ରାଥମିକ ଓ ଧାର୍ମିକ ଅଭିବ୍ୟକ୍ତି । କେତେକ ପ୍ରାରମ୍ଭିକ କବିତା ମଧ୍ୟ ଯାଜ୍ଞିକ କବିତା । ଋଗ୍‌ବେଦର ସୂକ୍ତରେ ପୁରାଣ ଓ ଇତିହାସର ପ୍ରାରମ୍ଭିକ ଉନ୍ମେଷ ଦେଖାଦିଏ । ଦେବତାମାନଙ୍କୁ ଚର୍ମ ଚକ୍ଷୁରେ ବୈଦିକ ଗାୟକ ଦର୍ଶନ କରି ପାରୁଥିଲା । ବୈଦିକ ଭାରତୀୟମାନେ ଏପରି ଏକ ସଂସ୍କୃତି ଲାଭ କରିଥିଲେ ଯାହାକି ଇଉରୋପୀୟ ସଂସ୍କୃତି ଠାରୁ ଅନେକ ସ୍ଥଳରେ ଭିନ୍ନ ଥିଲା ଏବଂ ସେହି ସଂସ୍କୃତିକୁ ଆଲେକଜାଣ୍ଡର ଭାରତରେ ପ୍ରବେଶ କରି ଅନୁଭବ କରିପାରି ଥିଲେ ।(୧୫)

"ଉତ୍ତର ପରମ୍ପରାକୁ ସମ୍ମାନ ଦେଖାଇବା, ଭଲ ଲୋକଙ୍କୁ ଜାତି ବର୍ଣ୍ଣ ନିର୍ବିଶେଷରେ ଆଦର କରି ଦେବତା ସ୍ଥାନ କରିବା ଥିଲା ବୈଦିକ ସଂସ୍କୃତିର ଏକ ବିଶିଷ୍ଟ ବିଭାବ । ସେଥିପାଇଁ ପୃଥିବୀର ଅନେକ ସଂସ୍କୃତି ମରି ହଜି ଯାଇଥିଲେ ମଧ୍ୟ ଏ ସଂସ୍କୃତି ଏ ପର୍ଯ୍ୟନ୍ତ ବି ଭାସ୍ୱର ରହିଛି " । (୧୬)

ଋଗ୍‌ବେଦର ଋଷିମାନେ କେବଳ ବ୍ରାହ୍ମଣ ଥିଲେ ; ତାହା ନୁହେଁ । ଅନେକ ଋଷି ବ୍ରାହ୍ମଣେତର ଗୋଷ୍ଠିର ଥିଲେ । ସେତେବେଳେ ଜାତିଗତ ବନ୍ଧନ ଦୃଢ ନ ଥିଲା ; କର୍ମ ଓ ଗୁଣ ଅନୁସାରେ ଜାତିର ନିର୍ଣ୍ଣୟ କରାଯାଉଥିଲା । ସେତେବେଳେ ଗୁଣୀ ଶୂଦ୍ର ମଧ୍ୟ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜା ପାଉଥିଲା । ଋଷି କକ୍ଷିବାନ୍ ଶୂଦ୍ର ଥିଲେ । ତାଙ୍କ ଝିଅ ଋଷିକା ଘୋଷା ଥିଲେ ଶୂଦ୍ରାଣୀ । ବିବସ୍ୱାନଙ୍କ ପୁଅ ମନୁ , ବିଶ୍ୱାମିତ୍ରଙ୍କ ପୁଅ ଅଷ୍ଟକ, ଋଷଭ, ଦେବରାଟ, କତ, ପ୍ରଜାପତି ଆଦି ସମସ୍ତେ ଥିଲେ କ୍ଷତ୍ରିୟ । ବିଶ୍ୱାମିତ୍ର ନିଜେବି କ୍ଷତ୍ରିୟ ଥିଲେ । ରୋମଶା, ବ୍ରହ୍ମବାଦିନୀ, ଅପାଳା, ଆତ୍ରେୟୀ, ଉର୍ବଶୀ, ଅଦିତି ଆଦି ଋଷିକା ପୁରୁଷମାନଙ୍କ ଭଳି ପ୍ରତିଷ୍ଠା ଅର୍ଜନ କରିଥିଲେ । ସାଧାରଣରେ ଭାବିବା ଭଳି ବେଦ ଚର୍ଚ୍ଚା ଲାଗି ସେତେବେଳେ ଶୂଦ୍ର ଗୋଷ୍ଠୀ ଓ ନାରୀ ଜାତିମାନଙ୍କ ପାଇଁ ବାରଣ ନଥିଲା ।(୧୭)

ଋଗ୍‌ବେଦରେ ବହୁ ଦେବତାଙ୍କର ସ୍ତୁତି କରାଯାଇଛି । କିନ୍ତୁ ସେମାନଙ୍କର ପ୍ରତିମା ପୂଜା କରାଯାଇ ନାହିଁ । ପ୍ରତିମା ପୂଜାର କଳ୍ପନାହିଁ ସେତେବେଳେ କରାଯାଇ ନ ଥିଲା । ପ୍ରତିମାର କଳ୍ପନା ନ ଥିବାରୁ ମନ୍ଦିର ମଧ୍ୟ ନ ଥିଲା । ଆର୍ଯ୍ୟମାନେ ଜୀବନର ଉତ୍ସାହରେ ଥିଲେ ଭରପୂର । ପ୍ରକୃତି କୋଳରେ ସେମାନେ ଆନନ୍ଦର ସ୍ପର୍ଶ ପାଉଥିଲେ । ଆନନ୍ଦାତି ଶଯ୍ୟ ଭିତରେ ସେମାନେ ଆନନ୍ଦମୟ ପରମାତ୍ମାଙ୍କର ଆରାଧନା କରୁଥିଲେ । ଏହି ଚିନ୍ତା ତତ୍‌କାଳୀନ ବୈଦିକ ସମାଜକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । (୧୮)

ଋଗ୍‌ବେଦୀୟ ଆର୍ଯ୍ୟମାନେ ବହୁ ଦେବତା ଆରାଧନା କରୁଥିଲେ । ଆଧ୍ୟାତ୍ମିକ ଦିଗ୍‌ବଳୟରେ ସେମାନଙ୍କର ସୀମା ଖୁବ୍ ପ୍ରଶସ୍ତ ଥିଲା । ଋଗ୍‌ବେଦକୁ ତଥା ଅନ୍ୟ ତିନି ବେଦର ମନ୍ତ୍ରମାନ ପ୍ରତୀକାତ୍ମକ ଅର୍ଥରେ ପ୍ରଯୁକ୍ତ । ଏଗୁଡିକର ବାହ୍ୟ ଅର୍ଥ ଏବଂ ଭିତର ଅର୍ଥ ଭିନ୍ନ । ଶ୍ରୀ ଅରବିନ୍ଦ ଏହି ପ୍ରତୀକାତ୍ମକ ଅର୍ଥର ବିଶଦ୍ ଆଲୋଚନା କରିଛନ୍ତି । (୧୯) ଆର୍ଯ୍ୟମାନେ ପ୍ରକୃତିର ବିଭିନ୍ନ ରୂପକୁ ଆରାଧନା କରିଥିଲେ । ସେମାନେ ବହୁ ଦେବତାଙ୍କ ମଧ୍ୟରେ ଏକ ଦେବତାର ସନ୍ଧାନ ପାଇଥିଲେ । ବହୁ ସ୍ୱର ମଧ୍ୟରେ ଏକ ସ୍ୱର ଶୁଣୁଥିଲେ । ବହୁ ସୌରଭ ମଧ୍ୟରେ ଏକ ସୌରଭର ଗନ୍ଧରେ ମୁଗ୍‌ଧ ହେଉଥିଲେ ।

ତେଣୁ ସେମାନେ କହୁଥିଲେ 'ସୂର୍ଯ୍ୟ ଆତ୍ମା ଜଗତଃ ତସ୍ଥୂଷଷ୍ଚ '।(୨୦) ସୂର୍ଯ୍ୟ ବା ସୃଷ୍ଟିକର୍ତ୍ତା ପରମାତ୍ମା ହେଉଛନ୍ତି ସକଳ ଗତିଶୀଳ ଓ ଜଡବସ୍ତୁର ଆତ୍ମା ସ୍ୱରୂପ । ତେଣୁ ଏହାର ଅର୍ଥ ହେଲା ପରମାତ୍ମା ସର୍ବତ୍ର ବିଦ୍ୟମାନ । ଅନ୍ୟ ଏକ ମନ୍ତ୍ରରେ ମଧ୍ୟ 'ସେହି ଏକ ସର୍ବତ୍ର ଅସ୍ତିତ୍ୱମୟ ପରମାତ୍ମାଙ୍କୁ ପଣ୍ଡିତ ଲୋକମାନେ ଅନେକ ପ୍ରକାର ଡାକିଥାନ୍ତି । କିଏ ଡାକନ୍ତି ଇନ୍ଦ୍ର ନାମରେ, କିଏ ଡାକନ୍ତି ବରୁଣ ନାମରେ, କିଏ ଡାକନ୍ତି ଅଗ୍ନି ନାମରେ ଏବଂ କିଏ ଡାକନ୍ତି ମାତରିଶ୍ୱା ନାମରେ । ସେ ହେଉଛନ୍ତି ଦିବ୍ୟରୂପ ଧାରୀ ସୁପର୍ଣ୍ଣ ଓ ଗୁରୁତ୍ମାନ୍ '। ବହୁତ୍ୱରେ ଏହି ଯେଉଁ ଏକତ୍ୱର ଆବିଷ୍କାର କରାଯାଇଛି, ତାହା ବେଦର ଏକ ଗୁରୁତ୍ୱପୂର୍ଣ୍ଣ ସଂଧାନ ।(୨୧)

ଋଷି ବାମଦେବ, ସ୍ୱୟଂ ଦିବ୍ୟଜ୍ଞାନର ଆଲୋକରେ ଆଲୋକିତ ହୋଇ 'ଗୋପନବାଣୀ' (ନିନ୍ୟା ବର୍ଗଂସି) କହୁଛନ୍ତି ବୋଲି ଋଗ୍ ବେଦରେ ଗୋଟିଏ ସ୍ଥାନରେ ସ୍ୱୀକାର କରାଯାଇଛି । (୨୨) ଏହି ବାଣୀ ଯେତେବେଳେ ତାଙ୍କ ହୃଦୟରେ ଗୁଞ୍ଜରି ଉଠିଥିଲା, ତାଙ୍କ ଚକ୍ଷୁ ଦିବ୍ୟାଲୋକରେ ଝଲସି ଉଠିଥିଲା । ସେତେବେଳେ ସେ ଦେଖିଥିଲେ ତାଙ୍କର ଓ ଭଗବାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଏହିଠାରୁ ଅଦ୍ୱୈତବାଦର ଉନ୍ମେଷ ହେଲା ଓ ଉପନିଷଦ୍ ଯୁଗରେ ଏହାର ଭୂୟୋବିକାଶ ଘଟିଲା । (୨୩) ତେଣୁ କୁହାଯାଇଛି 'ମୁଁ ହେଉଛି ମନୁ, ମୁଁ ବି ହେଉଛି ସୂର୍ଯ୍ୟ । ଅନ୍ୟତ୍ର ମଧ୍ୟ କୁହାଯାଇଛି ' ମୁଁ ବି ବରୁଣ '।(୨୪)

ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଐକ୍ୟବୋଧ ଏକ ଉଚ୍ଚାଙ୍ଗ ଦାର୍ଶନିକ ଚିନ୍ତାଧାରା । ଲୌକିକ ଜୀବନ ଛଡା ଦିବ୍ୟ ଜୀବନର ସ୍ୱାଦ ଉପଲବ୍ଧି କରିବା ପାଇଁ ଋଗ୍‌ବେଦରେ ଯଥେଷ୍ଟ ଉପାଦାନ ଥିଲା, ଏଥିରେ ସନ୍ଦେହ ନାହିଁ । ଲୌକିକ ଜୀବନ ଓ ଦିବ୍ୟ ଜୀବନ ମଧ୍ୟରେ ଏକ ସମନ୍ୱୟ ସ୍ଥାପନ କରିବାର ଚେଷ୍ଟା ଏଥିରେ କରାଯାଇଥିଲା । ସେଇଥିପାଇଁ ଏହା ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଥିଲା । ବାସ୍ତବିକ ଏହି ସମନ୍ୱୟ ହିଁ ଥିଲା ଦୁଇ ପ୍ରକାର । ବିରୋଧି ଧାରାର ପ୍ରାଣ । ସେଇଥିପାଇଁ ଏହା ହଜାର ହଜାର ବର୍ଷ ପରେ ମଧ୍ୟ ଏକ ଜୀବନ୍ତ ସଂସ୍କୃତି ରୂପରେ ରହି ଆସିଛି ଭାରତୀୟ ସଂସ୍କୃତିକୁ ସମାଚ୍ଛନ୍ନ କରି । ଏ ସଂପର୍କରେ ନେହୁରୁଙ୍କ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ ।(୨୫)

ଋଗ୍‌ବେଦୀୟ ଆର୍ଯ୍ୟମାନେ ଯେଉଁ ଜୀବନରେ ହର୍ଷ ପୁଲକରେ ମାତି ଜୀବନ ସହିତ ସନ୍ଧି ସ୍ଥାପନ କରିଥିଲେ ତାହା କେବଳ ଏହି ଲୌକିକ ଜୀବନ ନୁହେଁ ; ଯାହାର ଉଦ୍ଦେଶ୍ୟ କେବଳ ଜନ୍ମ ହେବା, ଖାଇବା ପିଇବା, ମଜା କରିବା ଓ ଶେଷରେ ମରିବା । ଲୌକିକ ଜୀବନର ଜୟଗାନ ଋଗ୍‌ବେଦରେ କରାଯାଇଥିଲେ ମଧ୍ୟ ପାରଲୌକିକ ଜୀବନ ସଂପର୍କରେ ଆର୍ଯ୍ୟ ଋଷିମାନେ ସଂପୂର୍ଣ୍ଣ ଅବହିତ ଥିବାର ଜଣାପଡ଼େ । ଯେଉଁମାନେ ଆଧ୍ୟାତ୍ମିକ ସ୍ତରରେ ଜାଗ୍ରତ ନୁହଁନ୍ତି, ତାଙ୍କୁ ଋଗ୍‌ବେଦର ମନ୍ତ୍ର ରାଶି କଦାପି ଉପଲବ୍ଧ ହେବ ନାହିଁ ବୋଲି ସ୍ପଷ୍ଟ ଭାବରେ କୁହାଯାଇଛି ।(୨୬)

ବେଦରେ ଏହି ଯେଉଁ ଗୋପନବାଣୀ (ନିନ୍ୟା ବଚାଂସି ) ଋଷିମାନଙ୍କ କଣ୍ଠରୁ ସ୍ଫୁରିଥିଲା ତାହା ନିଶ୍ଚିତ ଭାବରେ ଲୌକିକ ଜୀବନର ଆନନ୍ଦ ଲାଗି ନୁହେଁ । ତାହାର ଉଦ୍ଦେଶ୍ୟ ଥିଲା, ଏକ ଦିବ୍ୟ ଆନନ୍ଦର ଉପଲବ୍ଧି । ଏହି ଆନନ୍ଦର ଉପଲବ୍ଧି ଋଷିମାନେ କରି ପାରି ଥିଲେ ଏବଂ ସେହି ମାନସିକ ସ୍ତରକୁ ଅନ୍ୟମାନଙ୍କୁ ନେବା ଲାଗି ଚେଷ୍ଟିତ ଥିଲେ । ଶ୍ରୀ ଅରବିନ୍ଦ ଏହାର ଏକ ଯଥାର୍ଥ ତର୍ଜମା କରିଛନ୍ତି ।(୨୭)

**ଋଗ୍‌ବେଦର ଦାର୍ଶନିକ ସୂକ୍ତ –**

ଋଗ୍‌ବେଦରେ ପ୍ରାୟ ୧୨ଟି ଦାର୍ଶନିକ ସୂକ୍ତ ସଂକଳିତ ହୋଇଅଛି । ଏହି ଦାର୍ଶନିକ ସୂକ୍ତ ମଧ୍ୟରେ ଭାରତୀୟ ଦାର୍ଶନିକ ପରମ୍ପରାର ମୂଳବୀଜ ନିହିତ ରହିଛି । ଦାର୍ଶନିକ ସୂକ୍ତ ମଧ୍ୟରେ ପୁରୁଷ ସୂକ୍ତ ( ୧୦/୯୦) ନାସଦୀୟ ସୂକ୍ତ ( ୧୦/ ୧୨୯) ହିରଣ୍ୟ ଗର୍ଭ ସୂକ୍ତ (୧୦/୧୨୧) ଓ ବାକ୍ ସୂକ୍ତ ( ୧୦/ ୧୪୫) ଗୁଡିକ ଗମ୍ଭୀରତା ତଥା ଅନୁଭୂତି ହେତୁ ପ୍ରସିଦ୍ଧ । (୨୮)

**ପୁରୁଷ ସୂକ୍ତ –** 'ପୁରୁଷ ସୂକ୍ତ'ର ରଚନା ବେଳକୁ ଆର୍ଯ୍ୟମାନଙ୍କର ସୃଷ୍ଟି କର୍ତ୍ତା ଭଗବାନଙ୍କ ସଂପର୍କରେ ଚିନ୍ତାଧାରାର ପୁଷ୍କଳ ବିକାଶ ଘଟିଥିଲା । ଏହି ବିକଶିତ ଚିନ୍ତାଧାରାର ଅନୁବର୍ତ୍ତୀ ହୋଇ ନାରାୟଣ ଋଷିଙ୍କ କଣ୍ଠରୁ ନିସୃତ ହୋଇଥିଲା - "ସେ ହେଉଛନ୍ତି ବିରାଟ ପୁରୁଷ । ତାଙ୍କର ହଜାରେ ମୁଣ୍ଡ, ହଜାରେ ଆଖି, ହଜାରେ ପାଦ । ସେ ସାରା ବିଶ୍ୱକୁ ଆଚ୍ଛନ୍ନ କରି ତାହା ମଧ୍ୟରେ ଦଶ ଅଙ୍ଗୁଳି ପରିମିତ ସ୍ଥାନରେ ରହିଛନ୍ତି । (୨୯) ଏଠାରେ ବିରାଟ ପୁରୁଷଙ୍କର ସର୍ବତ୍ର ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ବଦ୍ୟମାନତାକୁ ଦଶାଙ୍ଗୁଳି ପରିମିତ ସ୍ଥାନରେ ରହିବା ଭଙ୍ଗୀରେ ସାଙ୍କେତିକ ଭାଷାରେ ପ୍ରକାଶ କରାଯାଇଛି । ଏହା ଏକ ରହସ୍ୟବାଦୀ ଓ ଦାର୍ଶନିକ ଚିନ୍ତାଧାରାର ପରିସ୍ଫୁରଣ । ଏ ସଂପର୍କରେ ରାଧାକୃଷ୍ଣନ୍‌ଙ୍କର ମତକୁ ବିଗ୍ରହକୁ ନିଆ ଯାଇପାରେ । (୩୦) 'ପୁରୁଷସୂକ୍ତ'ର ଦାର୍ଶନିକତା ଓ ତାହାର ପରବର୍ତ୍ତୀ ଦାର୍ଶନିକ ତଥା ଆଧ୍ୟାତ୍ମିକ ଚିନ୍ତାଧାରା ଉପରେ ପ୍ରଭାବ ବିଷୟରେ ଅଗ୍ରୱାଲ ଏକ ମତ ପୋଷଣ କରିଛନ୍ତି ଯାହା ପ୍ରଣିଧାନ ଯୋଗ୍ୟ । (୩୧) ରବୀନ୍ଦ୍ରନାଥ ଠାକୁର ଏ ସଂପର୍କରେ ଏକ ସ୍ୱତନ୍ତ୍ର ମତ ପ୍ରଦାନ କରିଛନ୍ତି । ଏହା କବିତ୍ୱ ରସ ରେ ଭରପୁର ଥିବା ଅନ୍ୟାନ୍ୟ ଦାର୍ଶନିକ ଚିନ୍ତାଧାରା ସମ୍ବଳିତ ସୂକ୍ତ ଗୁଡିକ ପ୍ରତି ମଧ୍ୟ ସମଧିକ ପ୍ରଯୁଜ୍ୟ ।(୩୨)

ବହୁ ପ୍ରାଚୀନ କାଳରେ ଭାରତୀୟମାନଙ୍କ ମନରେ ଦୈବଶକ୍ତି ସମ୍ବନ୍ଧରେ ସନ୍ଦେହ ସୃଷ୍ଟି ହୋଇଥିଲା । ଋଗ୍‌ବେଦରେ ଅପ୍ରତ୍ୟକ୍ଷ ରୂପରେ ବ୍ରହ୍ମ ଓ ଇନ୍ଦ୍ରଙ୍କର ସ୍ତୁତି ମିଳେ । ସେଥିରେ 'ସେ ହେଉଛି ଇନ୍ଦ୍ର'ର ପୁନରାବୃତ୍ତି ହୋଇଛି । (୩୩) ଏଥିରେ ଜଣାପଡେ ଏପରି ଏକ ବିଶ୍ୱାସ ଥିଲା, ଇନ୍ଦ୍ର ଅଛନ୍ତି ନା ନାହିଁ ; ଏବଂ ଇନ୍ଦ୍ର କାହାନ୍ତି ? ଏକଥା ମଧ୍ୟ ପଚରାଯାଉଥିଲା ବା କୁହାଯାଇଛି । (୩୪) ଏହିପରି ଅବିଶ୍ୱାସ ପୂର୍ଣ୍ଣ ସନ୍ଦେହ ଅନ୍ୟ କେତେକ ସୂକ୍ତରେ ମଧ୍ୟ ଉପଲବ୍ଧ ହୁଏ । ଉଦାହରଣ ସ୍ୱରୂପ ଋଗ୍‌ବେଦର ଅଷ୍ଟମ ମଣ୍ଡଳର ଅନ୍ତର୍ଗତ ସୂକ୍ତରେ ଇନ୍ଦ୍ର ବୋଲି କେହି ନାହିଁ ଏକଥା ମଧ୍ୟ କୁହାଯାଇଛି । ପୁରୋହିତ ଦ୍ୱାରା ଇନ୍ଦ୍ରଙ୍କର ଆମନ୍ତ୍ରଣ ପରେ ନିଜେ ଇନ୍ଦ୍ର ଅସ୍ତିତ୍ୱ ଓ ମହତ୍ୱକୁ ପ୍ରମାଣ କରିବା ନିମନ୍ତେ ପ୍ରକଟିତ ହୋଇଛନ୍ତି । ମୁଁ ହେଉଛି ଇନ୍ଦ୍ର ବୋଲି କହି ଅଛନ୍ତି । (୩୫) ଯଦି ସର୍ବଶକ୍ତିମାନ ଏବଂ ଆଦରଣୀୟ ଦେବତା ଇନ୍ଦ୍ରଙ୍କ ବିଷୟରେ ଏହି ସନ୍ଦେହ ଉତ୍ପନ୍ନ ହୋଇଛି ; ତାହେଲେ ଅନ୍ୟାନ୍ୟ ଦେବତାଙ୍କ ସଂପର୍କରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ । ଋଗ୍‌ବେଦର ଦଶମ ମଣ୍ଡଳର କେତେକ ମନ୍ତ୍ରରେ ସୃଷ୍ଟିର ଉତ୍ପାଦନ, ସୃଷ୍ଟିର ରକ୍ଷକ , ତଥା ଏକ ଦେବତା ରୂପରେ ପ୍ରଜାପତିଙ୍କୁ ସ୍ତୁତି କରାଯାଇଛି । ଏହି ପ୍ରଜାପତି କେତେକ ସ୍ଥାନରେ ହିରଣ୍ୟଗର୍ଭ, ଅନ୍ୟ କେତେକ ସ୍ଥାନରେ ପୁରୁଷ ବୋଲି ଉକ୍ତ ହୋଇଅଛନ୍ତି । ଦଶମ ମଣ୍ଡଳର ୨୨୧ ସୂକ୍ତରେ ଅନ୍ତର୍ଗତ ପ୍ରତ୍ୟେକ ମନ୍ତ୍ରର ଶେଷରେ "କସ୍ମୈ ଦେବାୟ ହବିଷା ବିଧେମ"ର ଅନୁବର୍ତ୍ତନ ଦେଖାଦିଏ । (୩୬) ଏହି 'କସ୍ମୈ' ପଦର ଅର୍ଥ ବିଷୟରେ ବିଦ୍ୱାନମାନଙ୍କର ମତଭେଦ ରହିଅଛି । ଏଠାରେ ଅପ୍ରତ୍ୟକ୍ଷ ଭାବରେ ଦେବତା ବହୁତ୍ୱ କିମ୍ବା ପ୍ରଜାପତିଙ୍କ ପ୍ରତି ଅଧିକ ଆଦର ସୂଚିତ

ହେଉଛି । ମନେ ହୁଏ ଆଦିମ ଯୁଗ ମାନବର କୌତୁକଭରା ମନର ଏହା ଏକ ଅଭିବ୍ୟକ୍ତି । ବୋଧହୁଏ ଆଦିମ ମାନବ ସେହି ଦେବତାର ପୂଜାକୁ ଜାଣିବାକୁ ଚାହୁଁଥିଲା । ଯେଉଁଥିପାଇଁ ସେ ହବିଷ ବିଧାନ କରୁଥିଲା । ଏହା ଥିଲା ପାଶ୍ଚାତ୍ୟ ତତ୍ତ୍ୱବିତ୍‌ମାନଙ୍କର ମତ । କିନ୍ତୁ ପ୍ରାଚ୍ୟ ତତ୍ତ୍ୱବିତ୍ ଯାସ୍କ ଓ ସାୟଣ ଆଦି ବ୍ୟାଖ୍ୟାକାରମାନେ 'କଃ' କୁ ପ୍ରଜାପତି ଶବ୍ଦ ରୂପରେ ଗ୍ରହଣ କରିଅଛନ୍ତି । ସେମାନଙ୍କ ମତରେ 'କଃ' ଶବ୍ଦ ଆନ୍ତରିକ ଶ୍ରଦ୍ଧାର ସହିତ ପ୍ରଜାପତିଙ୍କ ନିମିତ୍ତ ପ୍ରଯୁକ୍ତ ହୋଇଛି । (୩୭)

"ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନ ମାହୁଃ" । ଏହି ଉକ୍ତିରୁ ପ୍ରତ୍ୟେକ ବସ୍ତୁ ଏକ ବ୍ରହ୍ମର ଅତିରିକ୍ତ କିଛି ନୁହେଁ । ପ୍ରକୃତିରେ ଯାହା ସବୁ ଦୃଶ୍ୟମାନ, ଜନପ୍ରିୟ ବିଶ୍ୱାସରେ ଯେଉଁ ଦେବତା ମାନେ କଳ୍ପିତ ହୋଇ ଅଛନ୍ତି ସେ ବ୍ରହ୍ମର ଅତିରିକ୍ତ ଅନ୍ୟ କିଛି ନୁହଁନ୍ତି । (୩୮) ଋଗ୍‌ବେଦରେ ପୁରୁଷ ସୂକ୍ତ ଦାର୍ଶନିକ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସେଥିରେ ପୁରୁଷଙ୍କର ଆଧ୍ୟାତ୍ମିକ କଳ୍ପନା ପ୍ରକଟିତ ହୋଇଛି । "ପୁରୁଷଙ୍କର ସହସ୍ର ନେତ୍ର, ଓ ସହସ୍ର ପାଦର ବର୍ଣ୍ଣନା ଦେଖିବାକୁ ମିଳେ । ତାଙ୍କର ଶିର, ନେତ୍ର ଓ ପାଦ ସଂଖ୍ୟାତୀତ । ବିଶ୍ୱର ସମସ୍ତ ମରଣଶୀଳ ପ୍ରାଣୀ ତାଙ୍କର ଏକ ଚତୁର୍ଥାଂଶ ବୋଲି ତତ୍ତ୍ୱବିତ୍‌ମାନଙ୍କର ମତ । ତାଙ୍କର ଅମୃତ ତ୍ରିପାଦ ଆକାଶରେ ରହିଅଛି । ସେ ହେଉଛନ୍ତି ଏକ ମାତ୍ର ପୁରୁଷ, ଯେ ବିଶ୍ୱର ପ୍ରାଚୀନ କାଳରେ ଆର୍ବିଭୂତ ହୋଇଥିଲେ ଏବଂ ଭବିଷ୍ୟତରେ ମଧ୍ୟ ଆବିର୍ଭୂତ ହେବେ" । (୩୯) ଏହା ହେଉଛି 'ସର୍ବେଶ୍ୱର' ବାଦର ନମୁନା । ଏହି ସୂକ୍ତରେ ସୃଷ୍ଟି ପ୍ରକ୍ରିୟା ସଂପର୍କରେ ଯେଉଁ ଉଲ୍ଲେଖ ରହିଛି, ସେଥିରେ କୁହାଯାଇଛି, ସୃଷ୍ଟିର ଉତ୍ପତ୍ତି ନିମିତ୍ତ ଯଜ୍ଞର ଆବଶ୍ୟକତା ହୁଏ ଏବଂ ଦେବତାମାନେ ସେହି ପୁରୁଷ ଉଦ୍ଦେଶ୍ୟରେ ଯଜ୍ଞରେ ବଳି ପ୍ରଦାନ କରୁଥିଲେ । ନାନା ପ୍ରାଣୀଙ୍କର ଉତ୍ପତି ସମ୍ଭବ ହୋଇଥଲା ଏହି ସୂକ୍ତରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ଜାତିର ଉତ୍ପତ୍ତି କଥା କୁହାଯାଇଛି ।

**ହିରଣ୍ୟ ଗର୍ଭସୂକ୍ତ** – ହିରଣ୍ୟଗର୍ଭ ସୃଷ୍ଟିର ଆଦ୍ୟରେ ବିଦ୍ୟମାନ ଥିଲେ । ସେ ପୃଥ୍ୱୀ, ଆକାଶ, ଅନ୍ତରୀକ୍ଷ ଓ ସମସ୍ତ ବିଶ୍ୱକୁ ଧାରଣ କରିଅଛନ୍ତି । ସେ ହେଉଛନ୍ତି ସକଳ ଭୂତର ରାଜା । ତାଙ୍କରି ଇଂଗିତରେ ସମସ୍ତ ପରିଚାଳିତ ହେଉଅଛି । ସୃଷ୍ଟିର ପାଳନ ଓ ରକ୍ଷଣର ଭାର ତାଙ୍କରି ହାତରେ ନ୍ୟସ୍ତ ହୋଇଅଛି । ତେଣୁ ତାଙ୍କୁ ଦେବାଧିଦେବ ଭାବରେ ଗ୍ରହଣ କରାଯାଇଛି ।( ୩୯କ) ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଋଗ୍‌ବେଦରେ ଅନେକ ସୂକ୍ତର ମନ୍ତ୍ରଗୁଡିକ ଦୁର୍ଜ୍ଞେୟ ଓ ଦୁର୍ବୋଧ୍ୟ । ଏହି ସୂକ୍ତମାନଙ୍କରେ କେତେକ ପ୍ରହେଳିକାର ଅର୍ଥ ସହଜରେ ବୁଝି ହୁଏ ନାହିଁ ।(୪୦)

**ନାସଦୀୟ ସୂକ୍ତ** – ସୃଷ୍ଟି ସମ୍ବନ୍ଧୀୟ ଏକ ଜଟିଳ ଜିଜ୍ଞାସା ସୂତ୍ର । ଶୂନ୍ୟରୁ ସୃଷ୍ଟି ସଂଭବି ଥିବା ଚିନ୍ତାଧାରାଟି ଏଠାରେ ଦ୍ୟୋତିତ । ଏହି ସୂକ୍ତର ପ୍ରଥମ ମନ୍ତ୍ର 'ନାସଦ୍' । ନାସଦ୍ ଶବ୍ଦରୁ ଏହା ଆରମ୍ଭ ହୋଇଛି । ତେଣୁ ଏହାକୁ 'ନାସଦୀୟ' ସୂକ୍ତ ବୋଲି କୁହାଯାଇଛି । ଏହାର ପ୍ରଥମ ମନ୍ତ୍ରରେ କୁହାଯାଇଛି "ସେତେବେଳେ ସତ୍ ନଥିଲା କି ଅସତ୍ ନଥିଲା । ବାୟୁ ମଣ୍ଡଳ ନ ଥିଲା, କିମ୍ବା ତାହାକୁ ଅତିକ୍ରମ କରି ଆକାଶ ନ ଥିଲା । କିଏ, କାହାକୁ , କେଉଁଠି, କାହାର ମଙ୍ଗଳ ବିଧାନ ନିମିତ୍ତ ଆବରଣ କରିଥିଲା? କେଉଁ ଗହନ ଓ ଗଭୀର ଜଳ ବା ସେତେବେଳେ ଥିଲା (୪୧) ଏହି ସୂକ୍ତର ସପ୍ତମ ମନ୍ତ୍ରର ଶେଷ ପଂକ୍ତିଟିରେ ପୁଣି କୁହାଯାଇଛିଯେ ସେ ଏହାର ଅଧ୍ୟକ୍ଷ ହୋଇ ଆକାଶରେ ଅଛନ୍ତି । ସେ ଏହାକୁ ଜାଣିଥିଲେ, ଜାଣିଥିବେ, ଅଥବା ଜାଣି ନଥିବେ ।(୪୨) ଏହି ସୃଷ୍ଟି ରହସ୍ୟ ଓ ସୃଷ୍ଟି କର୍ତ୍ତାଙ୍କ ସଂପର୍କରେ ଏହି ଯେଉଁ

ପ୍ରଶ୍ନମାନ ଆର୍ଯ୍ୟ ଋଷିମାନଙ୍କର ମୁଣ୍ଡକୁ ଭାରାକ୍ରାନ୍ତ କରିଥିଲା ତାହାର ଫଳଶ୍ରୁତି ଘଟିଥିଲା ଉପନିଷଦର ବ୍ରହ୍ମ ଜିଜ୍ଞାସାରେ । 'ବ୍ରହ୍ମ ସୂତ୍ର'ର ପ୍ରଥମ ସୂତ୍ରରେ ତେଣୁ କୁହାଯାଇଥିଲା,'ଅଥାତୋ ବ୍ରହ୍ମ ଜିଜ୍ଞାସା' । ଏହି ନାସଦୀୟ ସୂକ୍ତ କେତେ ମହାନ୍ ତାହା ଅବିନାଶ ଚନ୍ଦ୍ରଙ୍କର ମନ୍ତବ୍ୟରୁ ସହଜରେ ଅନୁମେୟ ହୁଏ । (୪୩)

**ଲୌକିକ ସୂକ୍ତ** – ଋଗ୍‌ବେଦରେ କେତେକ ଲୌକିକ ଓ ବ୍ୟବହାରିକ ସୂକ୍ତ ମଧ୍ୟ ରହିଅଛି । ସେଗୁଡିକୁ ଅବିଶ୍ୱର ସୂକ୍ତ ମଧ୍ୟ କୁହାଯାଇପାରେ । ଏହାର କାରଣ ହେଉଛି ସେଗୁଡିକ ଲୌକିକ ବ୍ୟବହାର ତଥା ଲୋକସଂସ୍କୃତି ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ଏହି ଧରଣର ସୂକ୍ତ ଅଥର୍ବ ବେଦରେ ପର୍ଯ୍ୟାପ୍ତ ଭାବରେ ରହିଥିଲେ ମଧ୍ୟ ଋଗ୍‌ବେଦରେ ପ୍ରାୟ ୩୦ ଟି ସୂକ୍ତରେ ଏହି ମନ୍ତ୍ର ଦେଖା ଯାଇଥାଏ । ସେହି ମନ୍ତ୍ରରେ ରାକ୍ଷସ ଓ ଭୂତର ପ୍ରଭାବକୁ ବିନାଶ କରୁଥିବା ମନ୍ତ୍ରଗୁଡିକ ସନ୍ନିବେଶିତ ହୋଇଛି । ରୋଗ ନିରାକରଣ, ଗର୍ଭରକ୍ଷା, ଦୁଃସ୍ୱପ୍ନ, ଅପଶକୁନର ପ୍ରଭାବ ନଷ୍ଟ ନିମିତ୍ତ ମନ୍ତ୍ରଗୁଡିକ ପରିଲକ୍ଷିତ ହୁଏ । ମାୟାନାଶ, ଧନଧାନ୍ୟ, ଗୋ ସଂପଦ ବୃଦ୍ଧି ଏବଂ ପ୍ରଗାଢ଼ ନିଦ୍ରା ନିମିତ୍ତ କେତେକ ପ୍ରାର୍ଥନା ଏହି ସୂକ୍ତ ମାନଙ୍କରେ ରହିଅଛି । ଅନେକ ସୂକ୍ତରେ ପ୍ରାଚୀନ ଭାରତୀୟ ଶିକ୍ଷା ପଦ୍ଧତିର ସୂଚନା ମଧ୍ୟ ମିଳିଥାଏ । କେତେକ ସୂକ୍ତରେ ବିନୋଦ ପ୍ରଧାନ କଳ୍ପନା ମଧ୍ୟ ଦେଖିବାକୁ ମିଳେ ।

ଋଗ୍‌ବେଦରେ କେତେକ ମନ୍ତ୍ରକୁ ଧର୍ମ ନିରପେକ୍ଷ କବିତାରୁ ଉତ୍ପନ୍ନ ବୋଲି ସ୍ୱୀକାର କରାଯାଇପାରେ । କେତେକ ମନ୍ତ୍ରର ଭାଷା ନିରସ ଓ କଳାଶୂନ୍ୟ । କେତେକ ମନ୍ତ୍ରରେ ସାହିତ୍ୟିକ ସୌନ୍ଦର୍ଯ୍ୟ ଓ ବୀରତ୍ୱପୂର୍ଣ୍ଣ କଳ୍ପନା ଓ କଳାଗତ ଚାତୁରୀ ପ୍ରସ୍ଫୁଟିତ ହୋଇଛି । ଆଉ କେତେକ ଧର୍ମ ନିରପେକ୍ଷ କବିତାରେ ଧାର୍ମିକ ଓ ଯାଜ୍ଞିକ କବିତାର ମଧୁର ମିଶ୍ରଣ ଭଳି ଦେଖାଦିଏ । (୪୪) ପ୍ରକାଶ୍ୟ ଭାବରେ ବହୁ ସ୍ଥଳେ ଲୌକିକ ସୁଖ ସ୍ୱାଚ୍ଛନ୍ଦ୍ୟ ହାସଲ କରିବା ପାଇଁ ବୈଦିକ ଆର୍ଯ୍ୟମାନେ ଦେବତାମାନଙ୍କୁ ବହୁ ସ୍ତୁତି କରିବା ଦେଖାଯାଇଛି । "ଜାଗତିକ ଆଶା, ନିରାଶା, ସ୍ନେହ, ପ୍ରେମ, ସୁଖ, ଦୁଃଖ, ପ୍ରଣୟ , ବିରହ, ରୋଗ, ବ୍ୟାଧି ଆଦି ସକଳ ବିଷୟ ଋଗ୍‌ବେଦର ମନ୍ତ୍ରଗୁଡିକ ଆଚ୍ଛନ୍ନ କରି ରଖିଅଛି"। (୪୫) ଏହି ଲୌକିକ ବସ୍ତୁଗୁଡିକର ଅବତାରଣାରେ ସୁନ୍ଦର ଉପମାମାନ ଦିଆଯାଇଛି । ଯାହାର ଉଦାହରଣରୁ ଏହା ସ୍ପଷ୍ଟ ଅନୁମିତ ହେବ । ଉଦାହରଣ ସ୍ୱରୂପ :-

(କ) "ବାପାଙ୍କୁ ପୁଅ ସୁବିଧାରେ ମିଳି ପାରିଲା ଭଳି ଭକ୍ତଙ୍କୁ ଭଗବାନ ସୁବିଧାରେ ମିଳିପାରିବେ"।(୪୬)

(ଖ) "ଅଗ୍ନିଙ୍କର ଶିଖାକୁ କେଶ ସହିତ ତୁଳନା କରାଯାଇଛି"। (୪୭)

(ଗ) "ଚକର ହାଲଟି ସମସ୍ତ ଅରଗୁଡିକୁ ଘେରି ରହିଥିଲା ଭଳି ଅଗ୍ନି ସମସ୍ତ ଦେବତାଙ୍କୁ ଘେରି ରହିଛନ୍ତି" ।(୪୮)

(ଘ) "ପ୍ରାର୍ଥନା ଗୁଡିକୁ ଖୁବ୍ ସୁନ୍ଦର ଭାବରେ ବୁଣା ହୋଇଥିବା ଲୁଗା ସହିତ ତୁଳନା କରାଯାଇଛି" ।(୪୯)

(ଙ) "ସୁନ୍ଦରୀ ସ୍ତ୍ରୀଟିଏ ଗାଧୋଇ ଆସିଲେ ଯେମିତି ଦିଶେ ଉଷା ଦେବୀ ଠିକ୍ ସେମିତି ଦିଶୁଛନ୍ତି" । (୫୦)

(ଚ) "ଦିନ ଓ ରାତି ସୂର୍ଯ୍ୟଙ୍କର ଯଥାକ୍ରମେ ପୁଅ ଝିଅ ଭଳି ଦିଶୁଛନ୍ତି" । (୫୧)

(ଛ) "ଜ୍ୱଳନ୍ତ ଅଗ୍ନି ବାଳକ ଭଳି ପ୍ରତୀତ ହେଉଅଛନ୍ତି"। (୫୨)

(ଜ) "ଆକାଶର କନ୍ୟା ଉଷା ହେଉଛନ୍ତି ନିତ୍ୟ ଯୌବନ ସଂପନ୍ନା, ଶୁକ୍ଳ ବସ୍ତ୍ରାନ୍ୱିତା, ଏକସୁନ୍ଦରୀ ନାରୀ ଭଳି"।( ୫୩)

(ଝ) "ପତ୍ନୀ ପତିଙ୍କ ପାଖକୁ ଯିବା ପାଇଁ ଇଚ୍ଛା କରି ଭଲ ଶାଢୀ ପିନ୍ଧି ହସି ହସି ଗଲାଭଳି ଉଷା ଦେବୀ ସୂର୍ଯ୍ୟଦେବଙ୍କ ପାଖକୁ ଆସିଥାନ୍ତି"। (୫୪)

(ଞ) "ଯାହାଙ୍କର ସ୍ୱାମୀ ନାହିଁ, ସେଇ ସ୍ତ୍ରୀ ଧନ ଲାଗି ବାପଘରକୁ ଆସିଲା ଭଳି ଉଷା ବାପ ଘରକୁ ଆସନ୍ତି ! ଏହାର ତାତ୍ପର୍ଯ୍ୟ ହେଲା ସେ ସକାଳେ ଆବିର୍ଭୂତ ହୁଅନ୍ତି"।(୫୫)

(ଟ) "ଭଣ୍ଡାରୀ ମୁଣ୍ଡକୁ ଲଣ୍ଡାକରି ଦେଲା ଭଳି ଅଗ୍ନିଦେବ ଭୂମିକୁ ଲଣ୍ଡାକରି ଦେଇଥାନ୍ତି"।(୫୬)

(ଠ) "ମାଆ ପୁଅକୁ ଲୁଗାକାନିରେ ଘୋଡାଇ ରଖିଲା ଭଳି ଆଗୋ ଭୂମି ମାଆ ! ତୁମେ ମଧ୍ୟ ଏହି ଶବକୁ ନିଜ କୋଳରେ ଘୋଡାଇ ରଖ"।(୫୭)

ଏଥିରୁ ସ୍ପଷ୍ଟ ପ୍ରତୀତ ହେବ ଯେ ବୈଦିକ ସାହିତ୍ୟରେ ଧାର୍ମିକ, ଆଧ୍ୟାତ୍ମିକ, ଦାର୍ଶନିକ ଓ ଲୌକିକ ସକଳ ବିଷୟ ଭରପୂର ହୋଇ ରହିଛି । ଦେଶର ଉନ୍ନତି ସାଧନ କରିବାକୁ ଏକତା ଓ ସଂହତିର ଯେ ଆବଶ୍ୟକତା ରହିଛି ଏକଥା ଆର୍ଯ୍ୟ ଋଷିମାନେ ସହଜରେ ଉପଲବ୍ଧି କରିଥିଲେ । ସେମାନଙ୍କ ମତରେ ଇଚ୍ଛା ଶକ୍ତି ଗୁଡିକର ମିଳନରେ ସଂହତି ଦୃଢୀଭୂତ ହୁଏ । ସେଥିପାଇଁ ସେମାନେ ସେମାନଙ୍କର ଉଦ୍‌ବୋଧନୀ ବାଣୀରେ କହିଛନ୍ତି - "ତୁମ୍ଭେମାନେ ସମସ୍ତେ ଏକ ସଙ୍ଗରେ ଚ୍ଚଲି, ଗୋଟିଏ କଥା କୁହ । ମନରେ ଏକ କଥା ଚିନ୍ତାକର, ପୂର୍ବେ ଦେବତାମାନେ ଏକ ମନ ହୋଇ ସେମାନଙ୍କର ଭାଗ ନେବା ପାଇଁ ସମର୍ଥ ହୋଇଥିଲେ"। (୫୮) ସ୍ୱାମୀ ବିବେକାନନ୍ଦ ଋଗ୍‌ବେଦର ଏହି ଉଦ୍‌ବୋଧନୀ ବାଣୀ ପ୍ରତି ଲକ୍ଷ୍ୟ କରି କହିଛନ୍ତି "ଦେବଗଣ ଏକ ଚିତ୍ତ ବୋଲି ମାନବର ଉପାସନା ଯୋଗ୍ୟ ହୋଇଛନ୍ତି । ସମାଜ ଗଠନର ଏହାହିଁ ରହସ୍ୟ । ପୁଣି ତୁମେ ଯେତିକି ଆର୍ଯ୍ୟ, ଦ୍ରାବିଡ, ବ୍ରାହ୍ମଣ, ଅବ୍ରାହ୍ମଣ ପ୍ରଭୃତି ତୁଚ୍ଛ ବିଷୟକୁ ଧରି ବିବାଦରେ ବ୍ୟସ୍ତ ରହିବ ସେତିକି ତୁମେ ଭବିଷ୍ୟତ ଭାରତର ଉପାଦାନ ସ୍ୱରୂପ ଶକ୍ତି ସଂଗ୍ରହ ଠାରୁ ଅନେକ ଦୂରରେ ଅବସ୍ଥିତ ରହିବ"। (୫୯)

ଆର୍ଯ୍ୟେତର ଲୋକମାନଙ୍କ ସହିତ ଭାଗବତ ଓ ସାଂସ୍କୃତିକ ଆଦାନ ପ୍ରଦାନ ଫଳରେ କେତେକ ନୂତନ ଦେବତା ଆର୍ଯ୍ୟଦେବ ମଣ୍ଡଳ ମଧ୍ୟରେ ପ୍ରବେଶ କରିଥିଲେ । ତାହା ବ୍ୟତୀତ ଆର୍ଯ୍ୟମାନେ ମଧ୍ୟ କେତେକ ଦେବତାଙ୍କ ନାମ ମଧ୍ୟ ସୃଷ୍ଟି କରିଥିଲେ । 'ଶ୍ରଦ୍ଧା', ଏହି ନୂତନ ସୃଷ୍ଟି ମଧ୍ୟରୁ ଜଣେ ଦେବୀ । ତାଙ୍କରି ଭଳି 'ଅରଣ୍ୟାନି' ଅନ୍ୟ ଏକ ଦେବୀ ରୂପରେ ମଧ୍ୟ ଆରାଧିତା ହେଉଥିଲେ । (୬୦)

**ସଂବାଦ ସୂକ୍ତ** – ଋଗ୍‌ବେଦରେ ଆଉ କେତେକ ସୂକ୍ତ ବଦ୍ୟମାନ, ଯେଉଁ ଗୁଡିକୁ ସଂବାଦ ସୂକ୍ତ କୁହାଯାଏ । ଏଗୁଡିକ କାହାଣୀ ମୂଳକ । ଏଥିରେ ଦୁଇ ପକ୍ଷର କଥୋପକଥୋନ ରୀତି ରହିଅଛି । ଅନେକ ଏହି ସଂବାଦ ସୂକ୍ତକୁ ଅର୍ଦ୍ଧ ମହାକାବ୍ୟ ଧର୍ମୀ ତଥା ଅର୍ଦ୍ଧ ନାଟକୀୟ କବିତା ବୋଲି କୁହନ୍ତି । ଭାରତୀୟ ପୁରାଣ ସାହିତ୍ୟରେ ଓ ବୌଦ୍ଧ ସାହିତ୍ୟରେ ଏହି ଧରଣର ବାର୍ତ୍ତାଳାପପ୍ରଧାନ ରଚନା ଦେଖାଦିଏ ।

ଏହି ଧରଣର୍ ସୂକ୍ତ ସର୍ବମୋଟ ୨୦ ଟି ଋଗ୍‌ବେଦରେ ରହିଅଛି । ପାଶ୍ଚାତ୍ୟ ଗବେଷକ ଓଲଡେନ୍‌ବର୍ଗଙ୍କ ଭଳି ବିଦ୍ୱାନମାନେ ଏହି କାହାଣୀ ଗୁଡିକ ଋଗ୍‌ବେଦ ସୃଷ୍ଟିର ବହୁପୂର୍ବରୁ ଲୋକମୁଖରେ ପ୍ରଚଳିତ ଥିଲା ବୋଲି କହିଅଛନ୍ତି । ଏଗୁଡିକ ଗଦ୍ୟ ପଦ୍ୟ ମିଶ୍ରିତ ଚମ୍ପୂ କାବ୍ୟ ଭଳି । ପଦ୍ୟର ଲୋକପ୍ରିୟତା ହେତୁ ସେ ଅଂଶଟି ଋଗ୍‌ବେଦରେ ସ୍ଥାନିତ ହୋଇଗଲା । ମାତ୍ର ଗଦ୍ୟାଂଶଟି କାଳକ୍ରମେ ଲୋକେ ଭୁଲିଗଲେ ।(୬୧)

ଏହି ମତ ସର୍ବବାଦୀ ସମ୍ମତ ନୁହେଁ । କାରଣ ପ୍ରାଚ୍ୟ ବେଦବିତ୍‌ମାନଙ୍କ ମତରେ ଗଦ୍ୟ ସୃଷ୍ଟି, ଋଗ୍‌ବେଦ ସୃଷ୍ଟିର ବହୁ ବର୍ଷ ପରେ ହୋଇଛି । ସେମାନଙ୍କ ମତରେ ଯଜୁର୍ବେଦରେହିଁ ପ୍ରଥମ ଗଦ୍ୟ ସାହିତ୍ୟର ସୂଚନା ମିଳି ଅଛି । ଏହି ସବୁ ସୂକ୍ତ ଗୁଡିକରେ କାହାଣୀର ସଂପୂର୍ଣ୍ଣତା ବିଦ୍ୟମାନ । ତେଣୁ ଗଦ୍ୟ ଆକାରରେ କିଛିଟା ଅଂଶ ରହିଗଲା ବୋଲି ଭାବିବା ଠିକ୍ ନୁହେଁ । ଏହି କାହାଣୀ ଗୁଡିକ ସୂକ୍ତ ଆକାରରେ ପ୍ରକାଶ କରିବା ଥିଲା, ବୈଦିକ ଆର୍ଯ୍ୟମାନଙ୍କର ଅଭିନବ ସୃଷ୍ଟି । ଭାରତୀୟ ନାଟକ ସାହିତ୍ୟର ଏହା ଥିଲା ଆଦ୍ୟ ଅବସ୍ଥା । ଏହି ଶୈଳୀ ଓ ଭାବକୁ ବା ବିଷୟବସ୍ତୁକୁ ଅବଲମ୍ବନ କରି ପରବର୍ତ୍ତୀ କାଳରେ ସଂସ୍କୃତ ସାହିତ୍ୟରେ ଉତ୍ତୁଙ୍ଗ ନାଟକ ସୌଧମାନ ନିର୍ମିତ ହୋଇଛି । ବୈଦିକ ପୁରୂରବା ଉର୍ବଶୀ ଉପାଖ୍ୟାନ ଏହାର ଉଦାହରଣ । (୬୨) ଋଗ୍‌ବେଦର ସଂବାଦ ସୂକ୍ତ ଭିତରେ ପୁରୂରବା ଉର୍ବଶୀକୁ ଛାଡି ଦେଲେ ସରମା ପଣି, ଯମ- ଯମୀ ସଂବାଦ,ସୂର୍ଯ୍ୟା ସୂକ୍ତି ଓ ବଶିଷ୍ଠ ଓ ବିଶ୍ୱାମିତ୍ର ସଂବାଦ ସୂକ୍ତ ଆଦି ପ୍ରଧାନ ।

**ପୁରୂରବା ଉର୍ବଶୀ ସମ୍ବାଦ** - ଦେବାଙ୍ଗନା ଉର୍ବଶୀ ସହିତ ରାଜା ପୁରୂରବାଙ୍କର ପ୍ରଣୟ ବ୍ୟାପାର ବର୍ଣ୍ଣିତ ହୋଇଛି ପୁରୂରବା ଉର୍ବଶୀ ସଂବାଦ ସୂକ୍ତରେ । ଏହି ସୂକ୍ତରେ ଉର୍ବଶୀ କେତେକ ସର୍ତ୍ତ ଆରୋପ କରିଛନ୍ତି ଏବଂ ପୁରୂରବା ଏଥିରେ ସହମତ ପ୍ରକାଶ କରିଛନ୍ତି । ମାତ୍ର ଏହି ସର୍ତ୍ତ ରକ୍ଷାରେ ପୁରୂରବା କେତେକ ବ୍ୟତିକ୍ରମ କରିବାରୁ ଉର୍ବଶୀ ଆତ୍ମହତ୍ୟା କରିବା ପାଇଁ ପ୍ରୟାସୀ ହୋଇଛି । ମାତ୍ର ପୁରୂରବାଙ୍କ ହସ୍ତକ୍ଷେପ ଫଳରେ ଉର୍ବଶୀ ଏଥିରୁ ବିରତ ହୋଇଛନ୍ତି ଏବଂ ପୁରୂରବା ଓ ଉର୍ବଶୀଙ୍କ ପୁନର୍ମିଳନ ଘଟିଛି ।

ଏହି ପ୍ରଣୟାତ୍ମକ କାହାଣୀ ଅତି ମର୍ମସ୍ପର୍ଶୀ ଭାବରେ ବେଦରେ ବର୍ଣ୍ଣିତ ହୋଇଛି । କେତେକ ବେଦତତ୍ତ୍ୱବିତ୍‌ମାନେ ମନେ କରନ୍ତି, ଦେବାସୁରଯୁଦ୍ଧ ବା ଆର୍ଯ୍ୟ ବା ଆର୍ଯ୍ୟୋତ୍ତର ଗୋଷ୍ଠୀ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲା ତାହା ଫଳରେ ଅନ୍ୟାନ୍ୟ ପଦାର୍ଥ ମଧ୍ୟରେ ଉର୍ବଶୀ ଆବିର୍ଭୂତ ହୋଇଥିଲେ । ଏହାର ତାତ୍ପର୍ଯ୍ୟ ହେଲା ସାମୁଦ୍ରିକ ଯୁଦ୍ଧରେ ଅସୁରମାନେ ପରାସ୍ତ ହୋଇଥିଲେ ଏବଂ ଦେବତାଙ୍କୁ ବା ଆର୍ଯ୍ୟଙ୍କୁ ଉର୍ବଶୀ ମିଳିଥିଲେ । ପୁରୂରବା ଉର୍ବଶୀ ଉପାଖ୍ୟାନଟି ଏହି ଐତିହାସିକ ସଂଘର୍ଷର ପୃଷ୍ଠଭୂମି ଉପରେ ଲିଖିତ ହୋଇଛି ବୋଲି ତତ୍ତ୍ୱବିତ୍‌ମାନେ ମନେ କରନ୍ତି । ପରବର୍ତ୍ତୀ ସାହିତ୍ୟରେ ଏହି ପ୍ରଣୟ କାହାଣୀ କାଳିଦାସ ଏବଂ ଅନ୍ୟ ବହୁ କବି ଓ ନାଟ୍ୟକାରଙ୍କ ଦ୍ୱାରା କାବ୍ୟ ବା ନାଟକ ଭାବରେ ରଚିତ ହୋଇଛି ।

**ଯମ - ଯମୀ ସମ୍ବାଦ** — ଯମ- ଯମୀ ସମ୍ବାଦରେ ତତ୍‌କାଳୀନ ଏକ ସାମାଜିକ କୁତ୍ସିତ ପ୍ରଥା ସଂପର୍କରେ ବର୍ଣ୍ଣନା କରାଯାଇ ତାହାର ନିନ୍ଦା କରାଯାଇଛି । ଯମ ଓ ଯମୀ ହେଉଛନ୍ତି ଯାଆଁଳା ଭାଇ ଭଉଣୀ ରୂପେ

ବର୍ଣ୍ଣିତ । ଭଉଣୀ ଯମୀ ବାସନା ଓ ଆସକ୍ତିର ଭାବନାରେ ଉତ୍ତେଜିତ ହୋଇ ଭାଇ ଯମଙ୍କୁ ତାହା ପୂରଣ କରିବା ନମିତ୍ତ ବାରମ୍ବାର ଆହ୍ୱାନ କରିଛି । ଯମୀ ଯୁବତୀ, ଯୌବନ ମଦରେ ସେ ମତୁଆଲା ହୋଇ ଉଠିଛି ଏବଂ ପୁରୁଷର ସାନ୍ନିଧ୍ୟ ଖୋଜିଛି । ଭାଇ ଯମ ସୁନ୍ଦର ପୁରୁଷ ଓ ଯୁବକ । ସେ ଧାଇଁ ଆସି ଯମ ପାଖରେ ଅତି ଆକୁଳ ଭାବରେ ପ୍ରଣୟ ନିବେଦନ କରିଛି ମାତ୍ର ଯମ ଏହି ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଛନ୍ତି । କାରଣ ଭାଇ ଭଉଣୀଙ୍କର ଏ ପ୍ରକାର ସଂପର୍କ ଅବୈଧ ଏବଂ ଏଥିରୁ ବିରତ ହେବାପାଇଁ ଭଉଣୀ ଯମୀକୁ ବାରମ୍ବାର ବୁଝାଇଛନ୍ତି । ମାତ୍ର ଯମୀ ଭାବ ବିହ୍ୱଳ ଏବଂ ଉତ୍ତେଜିତ ହୋଇ କହିଛି - "ତୁ ପୁରୁଷତ୍ୱହୀନ ଅଟୁ । ପୁରୁଷୋଚିତ୍ତ ଭାବନା ତୋ ଭିତରେ ନାହିଁ ଓ ଭାବୁକ ହୃଦୟ ମଧ୍ୟ ତୋ ଠାରେ ନାହିଁ"। ତାହାର ଉତ୍ତରରେ ଯମ କହିଛି "ତୁ ସେହି ପୁରୁଷଙ୍କୁ ଆଲିଙ୍ଗନ କର ଯାହାଠାରେ ଭାବୁକ ହୃଦୟ ଓ ପୁରୁଷର ପୁରୁଷତ୍ୱ ତୀବ୍ର ଭାବରେ ବିଦ୍ୟମାନ" । ଶେଷରେ ଯମଙ୍କ କଥା ରହିଛି । ଯମୀଙ୍କ ପ୍ରଣୟ ଯାଚଞ୍ଚା ନିଷ୍ଫଳ ହୋଇଛି । ଏହି ସୂକ୍ତରେ ମାନବ ଜାତିର ଉତ୍ପତ୍ତି ତଥା ସଂପ୍ରସାରଣର ବାର୍ତ୍ତାଳାପ ନିହିତ ରହିଛି ।(୬୩)

**ସରମା ପଣି ସୂକ୍ତ** – ସରମା ପଣି ସୂକ୍ତରେ ଆର୍ଯ୍ୟ ଓ ପଣିମାନଙ୍କ ମଧ୍ୟରେ ହୋଇଥିବା ବିବାଦ ସଂପର୍କରେ କିଛିଟା ସୂଚନା ମିଳୁଛି । ପଣିମାନେ ଆର୍ଯ୍ୟମାନଙ୍କର ଗୋଧନ ଗ୍ରେଇ ନେଇ ଅନ୍ଧାରିଆ ଗୁହା ଭିତରେ ଲୁଚାଇ ରଖିଛନ୍ତି । ସେ ସ୍ୱର୍ଗର କୁକୁର ସରମାଙ୍କୁ ପଣିମାନଙ୍କ ନିକଟକୁ ଦୂତ ଭାବରେ ପଠାଇଛନ୍ତି । ପଣିମାନେ ଇନ୍ଦ୍ରଙ୍କ ସଂପର୍କରେ ସଂପୂର୍ଣ୍ଣ ଅନଭିଜ୍ଞ ଥାଆନ୍ତି । ସେମାନେ ଇନ୍ଦ୍ରଙ୍କ ପରିଚୟ ଜିଜ୍ଞାସା କରିଛନ୍ତି । ସରମା ଇନ୍ଦ୍ରଙ୍କ ପ୍ରବଳ ପରାକ୍ରମ ବିଷୟରେ ପଣିମାନଙ୍କୁ ସଚେତନ କରି ଦେଇଛି । ବଳଦେବ ଉପାଧ୍ୟାୟଙ୍କ ଉକ୍ତି ଏ ସଂପର୍କରେ ଯଥାର୍ଥ ।୬୪)

**ସୂର୍ଯ୍ୟ ସୂକ୍ତ** – ଋଗ୍‌ବେଦରେ ଦଶମ ମଣ୍ଡଳର ଅନ୍ତର୍ଗତ ସୂର୍ଯ୍ୟ ସୂକ୍ତକୁ ସମ୍ବାଦ ସୂକ୍ତ ମଧ୍ୟରେ ଗଣନା କରାଯାଇଛି । ସେହି ସୂକ୍ତରେ ସୂର୍ଯ୍ୟଙ୍କର ବିବାହ ବର୍ଣ୍ଣିତ ହୋଇଛି । ଉକ୍ତ ସୂକ୍ତରେ ୪୭ ଟି ମନ୍ତ୍ର ଅଛି । ସେହି ମନ୍ତ୍ରରେ ପ୍ରାଚୀନ ବିବାହ ବିଧି ଓ ଆଚରଣ ସୂଚିତ ହୋଇଛି । ହିନ୍ଦୁର ବିବାହରେ ଆଜି ମଧ୍ୟ ସେହି ପ୍ରାଚୀନ ବିଧି ବିଧାନରୁ କେତେକ ପ୍ରଚଳିତ ଥିବାର ଅନୁମାନ କରାଯାଇଛି । 'ସୂର୍ଯ୍ୟ ସୂକ୍ତରେ ବିବାହିତା ବରକନ୍ୟାଙ୍କର ପ୍ରେମର ଅଭିବ୍ୟଞ୍ଜନା, ବିବାହ ଉତ୍ସବରେ ଦର୍ଶକଗଣଙ୍କର ମନୋଗତ ଭାବର ବ୍ୟଞ୍ଜନା, ନୂତନ ଗୃହରେ ନବଦମ୍ପତିଙ୍କର ଅନୁରାଗର ସ୍ୱାଗତ ସମ୍ଭାଷଣ ତଥା ଆଶୀର୍ବାଦ ଆଦି ସୁନ୍ଦର ରୂପରେ ଚିତ୍ରିତ ହୋଇଛି । ( ୬୫)

ଋଗ୍‌ବେଦରେ ଅନେକ ଆଖ୍ୟାନ ବା ସମ୍ବାଦ ସୂକ୍ତକୁ ପୌରାଣିକ ତଥା ଧାର୍ମିକ ଦୃଷ୍ଟିରୁ ବାଖ୍ୟା କରାଯାଇଛି । ଋଗ୍‌ବେଦରୁ ପ୍ରମାଣିତ ହୁଏ ଯେ କେବଳ ଭାରତୀୟ ସାହିତ୍ୟରେ ନୁହେଁ ବରଂ ପୃଥିବୀର ଅନ୍ୟାନ୍ୟ ସାହିତ୍ୟରେ ମହାକାବ୍ୟର ପ୍ରାରମ୍ଭିକ ସ୍ୱରୂପ ଥିଲା ଗଦ୍ୟ ପଦ୍ୟାତ୍ମକ । **Irish** ଏବଂ **Scandinavian** ସାହିତ୍ୟ ବ୍ରାହ୍ମଣ ଓ ଉପନିଷଦର କେତେକ ଆଖ୍ୟାନ, ମହାଭାରତର ପ୍ରାଚୀନ ଭାଗ, ବୌଦ୍ଧ ସାହିତ୍ୟ, ନୀତିକଥା ତଥା ଲୋକକଥା ନାଟକ ଓ ଚମ୍ପୂ କାବ୍ୟ ଉକ୍ତ ମତକୁ ପୂର୍ଣ୍ଣ ସମର୍ଥନ କରେ । ( ୬୬)

ଏହି ସୂକ୍ତ ଗୁଡିକରୁ ବୈଦିକ ଆର୍ଯ୍ୟମାନଙ୍କର ତତ୍‌କାଳୀନ ସାମଜିକ ସ୍ଥିତି ସଂପର୍କରେ ସୂଚନା ମିଳିଥାଏ ।

(କ) ଉର୍ବଶୀ ବୋଧହୁଏ ଏଭଳି ଏକ ଗୋଷ୍ଠୀର ନାରୀ ଯେଉଁମାନେ ମେଷ୍ଠାକୁ ସାଙ୍କେତିକ ଦେବତା ଭାବରେ ପୂଜା କରୁଥିଲେ ଏବଂ ଆର୍ଯ୍ୟମାନଙ୍କ ନିକଟରେ ଏ ପୂଜା ଥିଲା ଘୃଣିତ ।

(ଖ) ପୁରରବା ପ୍ରାଥମିକ ଅବସ୍ଥାରେ ଏ ଭଳି ପୂଜାକୁ ନିଜ ଉଆସରେ ପ୍ରଶ୍ରୟ ଦେଇଥିଲେ ମଧ୍ୟ ପରେ ସାମଜିକ ଚାପରେ ଏହାର ପ୍ରତିରୋଧ କରିବାକୁ ବାଧ୍ୟ ହୋଇଥିଲେ । ଏହା ଫଳରେ ଉର୍ବଶୀ ତାଙ୍କୁ ତ୍ୟାଗ କରିଥିଲେ ।

(ଗ) ଆର୍ଯ୍ୟମାନେ ପ୍ରତିମା ପୂଜକ ନ ଥିଲେ କିମ୍ବା ଦେବତାଙ୍କ ସଙ୍କେତ ଭାବରେ କୌଣସି ପଶୁ ପକ୍ଷୀଙ୍କୁ ପୂଜା କରୁ ନଥିଲେ । ଏ ପ୍ରକାର ପୂଜା ଆର୍ଯ୍ୟେତର ଗୋଷ୍ଠୀରେ ପ୍ରଚଳିତ ଥିଲା । କାଳକ୍ରମେ ଉଭୟ ସଂସ୍କୃତିର ପାରସ୍ପରିକ ଆଦାନ ପ୍ରଦାନ ଓ ଆନ୍ତଃକ୍ରିୟା ଫଳରେ ଏହା ଆର୍ଯ୍ୟ ଗୋଷ୍ଠୀ ମଧ୍ୟରେ ପ୍ରବେଶ କରିଥିଲା ।

(ଘ) ଗୋଧନ ଆର୍ଯ୍ୟମାନଙ୍କର ଏକ ମୁଖ୍ୟ ସଂପଦ ରୂପେ ଗଣ୍ୟ ହେଉଥିଲା । ସେମାନେ ମୁଖ୍ୟତଃ ଥିଲେ କୃଷିଜୀବୀ ଓ ଗୋପାଳକ ।

(ଙ) ପଣିମାନେ ଥିଲେ ଆର୍ଯ୍ୟେତର ଏବଂ ସେମାନେ ଆର୍ଯ୍ୟମାନଙ୍କ ଗୋଧନ ଅପହରଣ କରି ନେଉଥିଲେ ।

(ଚ) ପଣିମାନେ ଇନ୍ଦ୍ର କ'ଣ ଜାଣି ନଥିଲେ ଏବଂ ତାଙ୍କର ଉପାସନା ମଧ୍ୟ କରୁଥିଲେ ।

(ଛ) ଆର୍ଯ୍ୟମାନେ ଇନ୍ଦ୍ରଙ୍କ ଉପାସକ ଥିଲେ । ତାଙ୍କରି ସାହାଯ୍ୟରେ ସେମାନେ ପଣିମାନଙ୍କ କବଳରୁ ଗୋଧନକୁ ଉଦ୍ଧାର କରିଥିଲେ ।

(ଜ) ସକଳ ପ୍ରକାର ସଂଗ୍ରାମରେ ଆର୍ଯ୍ୟମାନେ ଇନ୍ଦ୍ରଙ୍କର ସହାୟତା କାମନା କରୁଥିଲେ ।

(ଝ) ଭାଇ ଭଉଣୀଙ୍କ ମଧ୍ୟରେ ପ୍ରଣୟ ସମ୍ଭବତଃ ସେତେବେଳେ କାଁ ଭାଁ କେଉଁଠି ପ୍ରଚଳିତ ଥିଲା । ଏହା ବୋଧହୁଏ ଥିଲା ଆର୍ଯ୍ୟେତର ସଂସ୍କୃତିର ଦୁଷ୍ଟଭାବର ଏକ ଫଳଶ୍ରୁତି ।

(ଞ) ଏ ପ୍ରକାର ପ୍ରଣୟ ଆର୍ଯ୍ୟମାନଙ୍କ ପାଖରେ ଥିଲା ଅତୀବ ଘୃଣିତ ଏବଂ ସେମାନେ ଶତ ମୁଖରେ ଏହାର ନିନ୍ଦା କରୁଥିଲେ । 'ଯମ' ହେଉଛନ୍ତି ନିୟମର ସଂକେତ । ତାଙ୍କ ମୁଖରେ ଏହାର ନିନ୍ଦା କରାଯିବାର ତାତ୍ପର୍ଯ୍ୟ ହେଲା, ଏକ ଟାଣୁଆ ସାମାଜିକ ନିୟମ ବନ୍ଧା ଗଲା ଯେ ଭାଇ ଭଉଣୀ ବିବାହ ଏଣିକି କରିବାକୁ ହେବ ନାହିଁ ; ଏହା ଅବୈଧ (୬୭)

**ଶ୍ରଦ୍ଧା ସୂକ୍ତ** – ଋଗ୍‌ବେଦର ଦଶମ ମଣ୍ଡଳରେ ଯେଉଁ ସୂକ୍ଷ୍ମାତିସୂକ୍ଷ୍ମ ବିଷୟବସ୍ତୁଗୁଡିକର ଚର୍ଚ୍ଚା ହୋଇଛି ତନ୍ମଧ୍ୟରୁ 'ଶ୍ରଦ୍ଧା' ସଂପର୍କୀୟ ବିଷୟଟି ଅନ୍ୟତମ । ଶ୍ରଦ୍ଧାର ଗୁରୁତ୍ୱ ଉପଲବ୍ଧି କରି ଆର୍ଯ୍ୟମାନେ ଏହାକୁ ଏକ ଦେବୀ ଭାବରେ ଗ୍ରହଣ କରିଛନ୍ତି ଏବଂ ଏହା ସଂପର୍କରେ ଯେଉଁ ସୂକ୍ତିଟି ରଚିତ ହୋଇଛି,

ତାହା ଦଶମ ମଣ୍ଡଳସ୍ଥ ୧୫୧ ତମ ସୂକ୍ତ ଭାବରେ ପରିଚିତ । ବୈଦିକ ସକଳ କର୍ମାନୁଷ୍ଠାରେ ୬ଟି ମାତ୍ର ମନ୍ତ୍ର ଥିଲେ ହେଁ ଏ ସୂକ୍ତଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବୈଦିକ ସକଳ ବିବାହ, ବ୍ରତ, କର୍ମାନୁଷ୍ଠାନ ଓ ଯଜ୍ଞାନୁଷ୍ଠାନରେ ଏଗୁଡିକର ଆବୃତ୍ତି ହୁଏ । ପ୍ରତ୍ୟେକ କର୍ମର ପ୍ରଥମେ ସଂକଳ୍ପ କରିବାକୁ ପଡିଥାଏ । ସେଥିପ୍ରତି ଶ୍ରଦ୍ଧାନ୍ୱିତ ଭାବ ଆସିଲେ ସେହି କର୍ମ ସଫଳ ଭାବରେ ସମାହିତ ହୁଏ । ଶ୍ରଦ୍ଧା ନ ହେଲେ ଉଦ୍ୟମ ମଧ୍ୟ ସମ୍ଭବ ହୁଏ ନାହିଁ । ସକଳ ପ୍ରକାର କର୍ମ କରିବା, ସକଳ ପ୍ରକାର ଜ୍ଞାନ ଅର୍ଜନ କରିବା ଏପରିକି ଭଗବାନଙ୍କୁ ବିଶ୍ୱାସ କରିବା ମଧ୍ୟ ଶ୍ରଦ୍ଧା ସାପେକ୍ଷ । ସେଇଥିପାଇଁ ଗୀତାରେ କୁହାଯାଇଛି 'ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ' (୬୮) ଅର୍ଥାତ୍ ଶ୍ରଦ୍ଧାବାନ୍ ଲୋକ ଜ୍ଞାନ ଲାଭ କରିଥାଏ । ଶ୍ରଦ୍ଧାର ଏହି ମାହାତ୍ମ୍ୟଟିକୁ ବୈଦିକ ଆର୍ଯ୍ୟମାନେ ସମ୍ୟକ୍ ଭାବରେ ଉପଲବ୍ଧି କରିଥିଲେ ଏବଂ ଏହାକୁ ଦେବୀ ରୂପରେ ଆରାଧନା କରୁଥିଲେ । ଏହି ମନ୍ତ୍ର ଗୋଟିଏ ସ୍ଥାନରେ କୁହାଯାଇଛି 'ଶ୍ରଦ୍ଧା ମନସ୍ୟା ଶୃଣ୍ୱତେ ଦତ୍ତୀତୟେ', ଅର୍ଥାତ୍ ଇନ୍ଦ୍ର ଶ୍ରଦ୍ଧାଳୁ ମନରେ ଋଷି ମାନଙ୍କର ସ୍ତୁତିକୁ ଶୁଣନ୍ତି । ଆର୍ଯ୍ୟ ଋଷି ଶ୍ରଦ୍ଧାର ଅଧିକାରୀ ହେବା ଲାଗି ପ୍ରାର୍ଥନା କରି ଶ୍ରଦ୍ଧା ଦେବୀଙ୍କୁ କହିଛନ୍ତି 'ଶ୍ରଦ୍ଧେ ଶ୍ରଦ୍ଧାପୟେହ ନାଃ' । ଅର୍ଥାତ୍ ଆଗୋ ଶ୍ରଦ୍ଧାଦେବୀ ! ଆମ ସମସ୍ତଙ୍କୁ ତୁମେ ଏହି ସଂସାରରେ ଶ୍ରଦ୍ଧାର ଭାଜନ କରାଅ । (୬୯) ଅତଏବ ଶ୍ରଦ୍ଧା ବା ବିଶ୍ୱାସ ବା ନିଷ୍ଠା ରଖି ସକଳ କାର୍ଯ୍ୟ ସଂପାଦନା କରିବା ଉଚିତ୍ ବୋଲି ବୈଦିକ ଆର୍ଯ୍ୟମାନଙ୍କର ଧାରଣା ଥିଲା ଏବଂ ଶ୍ରଦ୍ଧାନ୍ୱିତ ଜୀବନ ଏକ ସଫଳ ଜୀବନ ବୋଲି ସେମାନେ ବିଶ୍ୱାସ କରୁଥିଲେ ।

**ଦାନ ସ୍ତୁତି –** ଋଗ୍‌ବେଦରେ କେତେକ ଧର୍ମ ନିରପେକ୍ଷ ଓ ଧାର୍ମିକ କବିତାର ମଧ୍ୟବର୍ତ୍ତୀ କବିତା ଉପଲବ୍ଧ ହୁଏ । ସେପରି କବିତାକୁ ଦାନ ସ୍ତୁତି କୁହାଯାଏ ଓ ସେଗୁଡିକର ସଂଖ୍ୟା ପ୍ରାୟ ୪୦ । ସେଥି ଭିତରୁ କେତେକ ସୂକ୍ତକୁ ବିଜୟ ସୂକ୍ତ ମଧ୍ୟ କୁହାଯାଏ । ଇନ୍ଦ୍ର ବିଜୟ ପ୍ରଦାନ କରୁଥିବାରୁ କେତେକ ସୂକ୍ତରେ ଇନ୍ଦ୍ରଙ୍କର ସ୍ତୁତି ଗାନ କରାଯାଇଛି । କେତେକ ସ୍ତୁତିରେ ଆନନ୍ଦିତ ହୋଇ ବୈଦିକ ଗାୟକ ରକ୍ଷକଙ୍କୁ ସ୍ତୁତି କରିଛି । "ବେଦର ଦାନ ସ୍ତୁତି କୌଣସିବ୍ୟକ୍ତି ବିଶେଷର ଦାନ ସ୍ତୁତି ନୁହେଁ । ବରଂ ଦାନର ପ୍ରରୋଚନା ନିମିତ୍ତ ଆଖ୍ୟାନର କଳ୍ପନା ମନ୍ତ୍ର ଉପରେ ଆଧାରିତ ହୋଇ ପଡିଛି"। (୭୦)

ଋଗ୍‌ବେଦର ଦଶମ ମଣ୍ଡଳରେ କେତେକ ଅନ୍ତ୍ୟେଷ୍ଟି କ୍ରିୟା ସମ୍ବନ୍ଧ ସୂକ୍ତ କର୍ମକାଣ୍ଡ ଦୃଷ୍ଟିରୁ ଗୁମ୍ଫିତ ହୋଇଅଛି । ସେଥିରୁ ଅନୁମିତ ହୁଏ, ପ୍ରାଚୀନ ଭାରତରେ ଆଜି ପରି ମଧ୍ୟ ଶବଦାହ ପ୍ରଥା ଚଳୁଥିଲା । ପ୍ରାଚୀନ ଭାରତୀୟ ଆର୍ଯ୍ୟ ଶବକୁ ମଧ୍ୟ ପୋତି ଦେଉଥିଲେ । ଅନେକ ସମୟରେ ଶବଦାହ ପରେ ଅସ୍ଥିଗୁଡିକୁ ଏକତ୍ରୀତ କରି ଗୋଟିଏ ପାତ୍ରରେ ମାଟି ମଧ୍ୟରେ ପୋତି ଦେଉଥିଲେ । ଅସ୍ଥି ପାତ୍ରକୁ ମାଟିରେ ପୋତିବା ଅବସରରେ ଉକ୍ତ ମନ୍ତ୍ର ଗୁଡିକ ଉଚ୍ଚରିତ ହେଉଥିଲା । (୭୧) ଏହି ମଣ୍ଡଳ ଅନ୍ତର୍ଗତ ମନ୍ତ୍ର ସୂକ୍ତ ଗୁଡିକ ଶବଦାହ ସଂପର୍କିତ । "ସେହି ମନ୍ତ୍ରମାନଙ୍କରେ କୁହାଯାଇଛି ଦାହ ସଂସ୍କାର ନିମିତ୍ତ ଚିତାଗ୍ନି ଚୟନ ପରେ ଶବକୁ ଅଗ୍ନିରେ ରଖି ଅଗ୍ନିକୁ ପ୍ରଜ୍ୱଳିତ କରାଯାଏ ଏବଂ ଅଗ୍ନି ଯେପରି ଶବକୁ ଆତ୍ମସାତ୍ କରିଥାଏ ପୁରୋହିତ ସେହିପରି ଋଗ୍‌କୁ (ମନ୍ତ୍ର) ଉଚ୍ଚାରିତ କରେ । ଶବଦାହ ପ୍ରଥା ଯେ ଏ ସମୟରେ ପ୍ରଚଳିତ ଥିଲା ତାହା ଉପରଲିଖିତ ଦୃଷ୍ଟାନ୍ତରୁ ସ୍ପଷ୍ଟ ପ୍ରତୀୟମାନ ହେଉଛି । (୭୨)

କେବଳ ଦଶମ ମଣ୍ଡଳରେ ନୁହେଁ ଋଗ୍‌ବେଦର ପ୍ରଥମ ମଣ୍ଡଳରେ ଥିବା ଦ୍ୱାସୁପର୍ଣ୍ଣା ମନ୍ତ୍ରଟିରେ ମଧ୍ୟ ଦାର୍ଶନିକ - ତତ୍ତ୍ୱଟିଏ ସମଧିକ ଭାବରେ ଅନ୍ତର୍ନିହିତ । ସେଥିରେ କୁହାଯାଇଛି 'ଗୋଟିଏ ଓସ୍ତ

ଗଛରେ ସାଙ୍ଗ ହୋଇ ସୁନ୍ଦର ଡେଣା ଥିବା ଚଢେଇ ଦିଓ ଟି ବସିଛନ୍ତି । ଗୋଟିଏ ଓସ୍ଥ ଫଳ ଖାଉଛି, ଅନ୍ୟଟି ନିର୍ବିକାର ଚିତ୍ତରେ ଚାହିଁ ରହିଛି ’।(୭୩) ସାଂକେତିକ ଭାଷାରେ ଜୀବ ପରମର କଥା ଏଠାରେ କୁହାଯାଇଛି । ଜୀବାତ୍ମା ସୁଖ ଦୁଃଖର ଫଳ ଭୋଗୁଛନ୍ତି ; କିନ୍ତୁ ପରମାତ୍ମା ନିର୍ଲିପ୍ତ ହୋଇ ରହିଛନ୍ତି । ଏହାର ସଂକେତ - ଧର୍ମିତା ଏହି ଅର୍ଥଟିକୁ ଗୁଢ଼ କରି ରଖିଅଛି । ଏହି ଭଳି ଅନେକ ଦାର୍ଶନିକ ସୂକ୍ତ ଏହି ମଣ୍ଡଳରେ ରହିଅଛି ।

**(ଖ) ଯଜୁର୍ବେଦ** - “ଅଧ୍ୱର୍ଯ୍ୟୁ ପୁରୋହିତ ନିମିତ୍ତ ଯଜୁଷ ସଂଙ୍କଳିତ ହୋଇଛି ଯର୍ଜୁବେଦରେ” ।(୭୪) ଋଗ୍ ଓ ସାମ ଠାରୁ ପୃଥକ ଗଦ୍ୟାତ୍ମକ ମନ୍ତ୍ରକୁ ଯଜୁର୍ନାମରେ ଅଭିହିତ କରାଯାଇଛି । ଯେଉଁଥିରେ ଅକ୍ଷର ସଂଖ୍ୟା ହେଉଛି ଅନିଶ୍ଚିତ ; ତେଣୁ ଏହାକୁ ଗଦ୍ୟାତ୍ମକ ଯଜୁଃ ବୋଲି କୁହାଯାଇଛି । (୭୫) ବେଦର ଦୁଇଟି ସଂପ୍ରଦାୟ ଦେଖାଯାଏ । ଯଥା- ବ୍ରହ୍ମ ସଂପ୍ରଦାୟ ଓ ଆଦିତ୍ୟ ସଂପ୍ରଦାୟ । ପ୍ରଥମ ସଂପ୍ରଦାୟର ପ୍ରତିନିଧି ହେଉଛି କୃଷ୍ଣ ଯଜୁର୍ବେଦ ଓ ଦ୍ୱିତୀୟର ପ୍ରତିନିଧି ହେଉଛି ଶୁକ୍ଳ ଯଜୁର୍ବେଦ । ଶୁକ୍ଳ ଯର୍ଜୁବେଦରେ ଅଗ୍ନିହୋତ୍ର, ଦଶପର୍ଣ୍ଣ ମାସାଦି, ଯଜ୍ଞାନୁଷ୍ଠାନ ନିମିତ୍ତ ଆବଶ୍ୟକୀୟ ମନ୍ତ୍ର ସଂକଳିତ ହୋଇଛି । କୃଷ୍ଣ ଯଜୁର୍ବେଦରେ ମନ୍ତ୍ର ସହିତ ନିୟୋଜକ ବ୍ରାହ୍ମଣର ମଧ୍ୟ ସମିଶ୍ରଣ ଘଟିଛି । ମନ୍ତ୍ର ଓ ବ୍ରାହ୍ମଣର ମିଶ୍ରଣ ହେତୁ ତାହାକୁ କୃଷ୍ଣ ଯଜୁର୍ବେଦ କୁହାଯାଏ । ଶୁକ୍ଳ ଯଜୁର୍ବେଦରେ ମନ୍ତ୍ର ଅମିଶ୍ରିତ ରୂପରେ ଥିବାରୁ ତାହାକୁ ଶୁକ୍ଳ କୁହାଯାଉଛି । ଯଜୁର୍ବେଦ ବାସ୍ତବିକ ବୈଦିକ ଗଦ୍ୟ ରଚନା ଅଟେ । ଏହାର ଭାଷା ଋଗ୍‌ବେଦର ଭାଷାକୁ ଅନୁସରଣ କରିଛି । କେତେକ ସ୍ଥଳରେ ଯଜୁର୍ବେଦର ମନ୍ତ୍ର ଓ ଋଗ୍‌ବେଦର ମନ୍ତ୍ର ମଧ୍ୟରେ ସାମ୍ୟ ମଧ୍ୟ ପରିଲକ୍ଷିତ ହୁଏ । ତେଣୁ ଏହାର ସୃଷ୍ଟି ଋଗ୍‌ବେଦ ସୃଷ୍ଟିର ବହୁ ପରେ ହୋଇଛି ବୋଲି ପଣ୍ଡିତମାନେ ଯଥାର୍ଥ ମତ ଦେଇଛନ୍ତି । (୭୬) ଶୁକ୍ଳ ଯଜୁଃ ଓ କୃଷ୍ଣ ଯଜୁର୍ବେଦର ମୌଳିକ ପାର୍ଥକ୍ୟ ହେଲା ମନ୍ତ୍ର ଓ ବ୍ରାହ୍ମଣର ସଜ୍ଜିକରଣରେ । ଶୁକ୍ଳ ଯଜୁର୍ବେଦରେ ମନ୍ତ୍ର ଗୁଡିକ ସନ୍ନିବେଶିତ ହୋଇଥିଲାବେଳେ କୃଷ୍ଣ ଯଜୁଃରେ ଉଭୟେ ମନ୍ତ୍ର ଓ ବ୍ରାହ୍ମଣର ଏକତ୍ର ସନ୍ନିବେଶର କଥା କୁହାଯାଇଛି । ଏଠି ପ୍ରଶ୍ନ ହୁଏ ; ବ୍ରାହ୍ମଣର ପୁଣି ଅର୍ଥ କଣ ? ବ୍ରହ୍ମ ବିଷୟକ ବର୍ଣ୍ଣନା ଯେଉଁ ଗ୍ରନ୍ଥରେ ରହିଥାଏ ତାହାକୁ କୁହାଯାଏ ବ୍ରାହ୍ମଣ । ଯଜ୍ଞର ଅନ୍ୟ ନାମ ହେଉଛି ବ୍ରାହ୍ମଣ । କେଉଁ ପଦ୍ଧତିରେ ବିଭିନ୍ନ ଯଜ୍ଞମାନ ସମାହିତ କରିବାକୁ ହେବ ତାହା ଏଥିରେ ବର୍ଣ୍ଣିତ । ଶୁକ୍ଳ ଯଜୁର୍ବେଦ ଗ୍ରନ୍ଥରେ ବ୍ରାହ୍ମଣ ଅଂଶଟିକୁ ବାଦ ଦିଆଯାଇଥିବାରୁ ଏହାକୁ ଅପେକ୍ଷାକୃତ ଶୁଦ୍ଧ ବୋଲି କୁହାଯାଇଥାଏ । ବ୍ରାହ୍ମଣ ମନ୍ତ୍ର ଏକାଠି ମିଶି ରହିଥିବାରୁ କୃଷ୍ଣ ଯଜୁଃକୁ ଏକ ନିକୃଷ୍ଟତମ ରଚନା ବୋଲି କୁହାଯାଇଥାଏ । କୃଷ୍ଣ ଯଜୁର୍ବେଦରେ ବୈଦିକୋତର କେତେକ ଚିନ୍ତାଧାରାର ଅବତାରଣା କରା ଯାଇଥିବାରୁ ଏହାକୁ ବୈଦିକ ପଣ୍ଡିତମାନେ କୃଷ୍ଣ ଯଜୁର୍ବେଦ କହି ନିନ୍ଦା କରୁଥିଲେ ବୋଲି କେତେକ ବିଦ୍ୱାନ ମତ ଦେଇଥାନ୍ତି । ସେମାନେ ଆହୁରି ମଧ୍ୟ କୁହନ୍ତି ଯେ ଅବୈଦିକ ଚିନ୍ତାଧାରାର ବୈଦିକ ଚିନ୍ତାଧାରାକୁ ଅଲଗା କରିଦେବା ଲାଗି ପରେ ଶୁକ୍ଳ ଯଜୁର୍ବେଦର ସୃଷ୍ଟି ହୋଇଥିଲା । ବାଚସ୍ପତି ଗୈରୋଲା ଏଥିରେ ସହମତ ।(୭୭) ଏହି ସଂହିତାରେ ଯେଉଁ ମନ୍ତ୍ରଗୁଡିକ ସନ୍ନିବିଷ୍ଟ ସେଗୁଡିକ ମୁଖ୍ୟତଃ ବିଭିନ୍ନ ପ୍ରକାର ଯଜ୍ଞାନୁଷ୍ଠାନମାନ କଲାବେଳେ ବୋଲାଯିବା ପାଇଁ ଉଦ୍ଦିଷ୍ଟ ଥିଲେ ମଧ୍ୟ ସେଗୁଡିକ କେବଳ କର୍ମକାଣ୍ଡନିଷ୍ଠ କେତେକ ଶୁଷ୍କ ମନ୍ତ୍ରର ସମାହାର ବୋଲି କହି ହେବନାହିଁ । ସେଗୁଡିକରେ ମଧ୍ୟ ଉଚ୍ଚ ଦାର୍ଶନିକ ଚିନ୍ତାଧାରା ଏବଂ ସାମଗ୍ରିକ ମାନବ କଲ୍ୟାଣ ବୋଧର ଆକୁଳତା ବିଦ୍ୟମାନ । ‘ବହୁ ଜନା ହିତାୟ ବହୁ ଜନ ସୁଖାୟ’ ଚିନ୍ତାଧାରା ମଧ୍ୟ ସେଗୁଡ଼ିକରେ ଅନୁରଣିତ । ମଣିଷକୁ

ପୃଥିବୀ ପୃଷ୍ଠରୁ ବିଛିନ୍ନ ନ କରାଇ ଉଚ୍ଚତମ ଚେତନା ସ୍ତରକୁ ଆଗେଇ ନେବା ଲାଗି ସୁବିପୁଳ ଉପଦେଶାତ୍ମକ ଉଦ୍‌ବୋଧନ ବାଣୀ ଏଥିରେ ମଧ୍ୟ ବିଦ୍ୟମାନ । ଏହା ଭିତରେ ଯେଉଁ ସାହିତ୍ୟ ରହିଛି ତାହା ମୁଖ୍ୟତଃ ମାନବ ଜାତିର କଲ୍ୟାଣ ସାଧନ ନିମିତ୍ତ ଉଦ୍ଦିଷ୍ଟ । ଏ ସଂପର୍କରେ ସ୍ୱାମୀ ସର୍ବାନନ୍ଦଙ୍କ ବାଣୀ ଗ୍ରହଣୀୟ ।(୭୮)

ମୁନି ବୈଶମ୍ପାୟନ ବେଦବ୍ୟାସଙ୍କ ଠାରୁ ଯଜୁର୍ବେଦ ଅଧ୍ୟୟନ କରିଥିଲେ । ବୈଶମ୍ପାୟନ ଯାଜ୍ଞବଲ୍‌କ୍ୟ ମୁନିଙ୍କୁ ପଠିତ ବେଦକୁ ପଢାଇଲେ କିନ୍ତୁ କୌଣସି କାରଣରୁ ବୈଶମ୍ପାୟନ ଯାଜ୍ଞବଲକଙ୍କ ଉପରେ ରାଗିଯାଇ ସେ ଯେଉଁ ବେଦ ପଢାଇଥିଲେ ତାହାକୁ ଫେରସ୍ତ ମାଗିଲେ । ଗୁରୁଙ୍କୁ ସମ୍ମାନ ପ୍ରଦର୍ଶନ କରି ଯାଜ୍ଞବଲ୍‌କ ପଠିତ 'ଯଜୁର୍ଷ'କୁ ବାନ୍ତିକଲେ । ଠିକ୍ ସେହି ସମୟରେ ନିକଟରେ ଥିବା ବୈଶମ୍ପାୟନଙ୍କ ଅନ୍ୟ ଶିଷ୍ୟ 'ତିତ୍ତିର' ପକ୍ଷୀ ରୂପ ଧାରଣ କରି ସେହି ବାନ୍ତିକୁ ପିଇଗଲେ । 'ତିତ୍ତିର' ପକ୍ଷୀ ରୂପରେ ବମିତ 'ଯଜୁଷ'କୁ ପାନ କରି ଯାଇଥିବାରୁ ତାହାର ନାମ କୃଷ୍ଣ ଯଜୁର୍ବେଦ ହେଲା । ତାହା ପରେ ଯାଜ୍ଞବଲକ୍ ସୂର୍ଯ୍ୟଉପାସନା କରି ସୂର୍ଯ୍ୟଙ୍କର ଅନୁଗ୍ରହରେ ଶୁକ୍ଳ ଯଜୁର୍ବେଦ ଲାଭ କଲେ । ଯଜୁର୍ବେଦ ବୈଦିକ କର୍ମକାଣ୍ଡ ସହିତ ଘନିଷ୍ଠ ଭାବରେ ସଂପର୍କିତ । ତେଣୁ ଏହାକୁ ଯଜୁର୍ବେଦ ସଂହିତା ବୋଲି କୁହାଯାଏ ।

**ଯଜୁର୍ବେଦର ବିଷୟ ବିବେଚନ –** ଶୁକ୍ଳ ଯଜୁଃକୁ 'ବାଜସନେୟୀ ସଂହିତା' ବୋଲି କୁହାଯାଏ । ଶୁକ୍ଳ ଯଜୁର୍ବେଦର ଦୁଇଟି ଶାଖା ବର୍ତ୍ତମାନ ମିଳୁଛି । (୧) କାଣ୍ୱ (୨) ମାଧ୍ୟନ୍ଦିନ । କାଣ୍ୱ ଶାଖା ଦକ୍ଷିଣ ଭାରତରେ ଏବଂ ମାଧ୍ୟନ୍ଦିନ ଉତ୍ତର ଭାରତରେ ପ୍ରଚଳିତ ହେଉଛି । ମାଧ୍ୟନ୍ଦିନ ଶାଖାର ଏହି ଯେଉଁ ବାଜସନେୟୀ ସଂହିତା ରହିଛି ସେଥିରେ ସୂର୍ଯ୍ୟ ତାଙ୍କର ଉପଦେଶକୁ ବାଜି (ଘୋଡା) ରୂପରେ ପ୍ରଦାନ କରୁଥିବାରୁ ଏହାର ନାମ 'ବାଜସନେୟୀ ସଂହିତା' ରଖାଯାଇଛି । ବାଜସନିଙ୍କ ପୁଅ ଯାଜ୍ଞବଲ୍‌କ୍ୟ ଯେ କି ମିଥିଳାର ରାଜା ଜନକଙ୍କ ରାଜସଭା ମଣ୍ଡନ କରିଥିଲେ ; ସେ ଥିଲେ ଜଣେ ବିରାଟ ଜ୍ଞାନୀ ପୁରୁଷ । ପ୍ରଥମେ ସେ ଜନକଙ୍କ ଠାରୁ ବ୍ରହ୍ମ ବିଦ୍ୟା ଶିଖି ଥିଲେ ମଧ୍ୟ ପରେ ଏହା ଉପରେ ଅଧିକ ଗବେଷଣା କରି ପ୍ରଚଣ୍ଡ ବ୍ରହ୍ମଜ୍ଞାନୀ ହୋଇଥିଲେ । ଏହାଙ୍କର ପ୍ରଭାବରେ ଏହାଙ୍କ ପତ୍ନୀ ମୈତ୍ରେୟୀ ମଧ୍ୟ ସମାଧିକ୍ୟ ବ୍ରହ୍ମବାଦିନୀ ହୋଇ ପାରିଥିଲେ । ରାଧା କୁମୁଦ ମୁଖାର୍ଜୀ ଯଥାର୍ଥରେ ଯାଜ୍ଞବଲ୍‌କ୍ୟଙ୍କ ପ୍ରତି ପ୍ରଂଶସାର ଅର୍ଘ୍ୟ ଦେଇ ଯାଇଛନ୍ତି ।(୭୯)

ବିଷ୍ଣୁ ପୁରାଣରେ କୃଷ୍ଣ ଯଜୁର୍ବେଦସ୍ଥ ତୈତ୍ତିରିୟ ସଂହିତାର ସୃଷ୍ଟି ଓ ଶୁକ୍ଳ ଯଜୁର୍ବେଦର ସୃଷ୍ଟି ସଂପର୍କରେ ଗୋଟିଏ ଆଖ୍ୟାୟିକା ରହିଅଛି । ଏଠାରେ ତାହା ଉଦ୍ଧାର କରାଯାଇପାରେ । ଏହା ହେଲା – ଯାଜ୍ଞବଲ୍‌କ୍ୟ ଥିଲେ ମିଥିଳା ନିବାସୀ ବାଜସନିଙ୍କ ପୁତ୍ର । ବାଜସନି ଜଣେ ମହାଦାନୀ ଥିଲେ । ସେଥିପାଇଁ ତାଙ୍କ ନାମ ଥିଲା ବାଜସନୀ । ଯାଜ୍ଞବଲ୍‌କଙ୍କ ମାମୁଁ ଥିଲେ ବୈଶମ୍ପାୟନ ଯେ କି ବ୍ୟାସଦେବଙ୍କର ଏକ ପ୍ରମୁଖ ଶିଷ୍ୟ ଥିଲେ । ବୈଶମ୍ପାୟନ ବ୍ୟାସଙ୍କ ଠାରୁ ଯଜୁର୍ବେଦ ଶିକ୍ଷାକରି ତାଙ୍କ ଭଣଜା ଓ ଶିଷ୍ୟ ଯାଜ୍ଞବଲ୍‌କ୍ୟଙ୍କୁ ଶିଖାଇଥିଲେ । ଏହି ବିଷୟରେ ପୂର୍ବରୁ କାହାଣୀର ଯେଉଁ ଅବତାରଣା କରାଯାଇଛି ସେଥିରୁ ଯାଜ୍ଞବଲ୍‌କ୍ୟଙ୍କ ବେଦପ୍ରାପ୍ତ ସଂପର୍କରେ ସବିଶେଷ ସୂଚନା ମିଳିଅଛି । ଫଳରେ ସୂର୍ଯ୍ୟ ଯେ କି ଯାଜ୍ଞବଲ୍‌କ୍ୟଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କରିଥିଲେ ; ଆର୍ଯ୍ୟମାନଙ୍କ ମଧ୍ୟରେ ପରମ୍ପରାରେ ଦୃଢ ବିଶ୍ୱାସ ଆସିଥିଲା ସୂର୍ଯ୍ୟ ହେଉଛନ୍ତି ଦିବ୍ୟଜ୍ଞାନର ଅଧିକାରୀ । ଏହାର ପ୍ରଭାବ ମଧ୍ୟ ଭାରତ ବାହାରେ ଦେଖିବାକୁ ମିଳିଥାଏ ।

କେହି କେହି ପ୍ରଶ୍ନ କରିପାରନ୍ତି ଯଜୁର୍ବେଦର ରଚନା କଣ ଏତେ ପ୍ରାଚୀନ ? ପୂର୍ବରୁ ବୈଦିକ କାଳ ସଂପର୍କରେ ଯେଉଁ ନିର୍ଣ୍ଣୟ ଦିଆଯାଇଛି ତାହା ବିଗ୍ରହକୁ ନେଲେ ଏହା ବହୁ ପ୍ରାଚୀନ ବୋଲି ବିବେଚନା କରାଯାଇପାରିବ । ଶୁକ୍ଳ ଯଜୁର୍ବେଦରେ ବସ୍ତୁବାଦ ଓ ଆଧ୍ୟାତ୍ମିକତା ମଧ୍ୟରେ ଏକ ସମନ୍ୱୟ ଅଣାଯାଇଛି ଏବଂ ମାନବ ଜୀବନରେ ପୂର୍ଣ୍ଣତା ଆଣିବାକୁ ହେଲେ ତ୍ୟାଗ ଓ ଭୋଗର ସମନ୍ୱୟ ହିଁ ଜୀବନକୁ ମହିମାନ୍ୱିତ କରାଇପାରେ ବୋଲି ଉପଦେଶ ଦିଆଯାଇଛି । ଶୁକ୍ଳ ଯଜୁର୍ବେଦର ଅନୁସାରୀ 'ଇଶାବାସ୍ୟୋପନିଷଦ' ରେ ଏହି ସମନ୍ୱୟ ବାଦର ମନ୍ତ୍ର ସ୍ପଷ୍ଟ ଭାବରେ ଅନୁରଣିତ ଏବଂ ଏହାର ସ୍ୱାକ୍ଷର ଆମେ ପ୍ରଥମ ମନ୍ତ୍ରଟିରେ ହିଁ ପାଇଥାଉ । ଯେଉଁଠି କୁହାଯାଇଛି -

ଇଶା ବାସ୍ୟମିଦଂ ସର୍ବଂ ଯତ୍‌କିଞ୍ଚିତ୍ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍ । (୮୦)

ଯୁଗଯୁଗ ଧରି ଭାରତରେ ଜ୍ଞାନ ଓ କର୍ମକୁ ନେଇ ଦୁଇ ଗୋଷ୍ଠୀ ମଧ୍ୟରେ ବିବାଦ ଲାଗି ଆସିଥିଲା । ଗୋଟିଏ ଗୋଷ୍ଠୀ କର୍ମ ମାର୍ଗର ସ୍ତାବକ ଥିଲାବେଳେ ଅପର ଗୋଷ୍ଠୀ ଥିଲେ ଜ୍ଞାନ ମାର୍ଗର ସ୍ତାବକ । ଶେଷରେ ଋଷି ଜୈମିନି ଓ ବ୍ୟାସ ଏହି ଚିନ୍ତାଧାରାକୁ ଦୁଇଟି ପୃଥକ୍ ପୃଥକ୍ ଦାର୍ଶନିକ ଭିତ୍ତିଭୂମିରେ ଆଣିଥିଲେ । ଜୈମିନି ଥିଲେ କର୍ମବାଦୀ । ସେ ତାଙ୍କ ଦର୍ଶନର ନାମ ଦେଲେ ମିମାଂସା । ବ୍ୟାସ ଥିଲେ ଜ୍ଞାନବାଦୀ । ସେ ତାଙ୍କ ଦର୍ଶନର ନାମ ଦେଲେ ବେଦାନ୍ତ । ଯାଜ୍ଞବଲ୍‌କ୍ୟ ଏହି ଦୁଇ ଦର୍ଶନ ମଧ୍ୟରେ ସମନ୍ୱୟ ଅଣାଇଲେ । ଏହି ସମନ୍ୱୟ ଭାବ ସକଳ କ୍ଷେତ୍ରରେ ଆଚ୍ଛନ୍ନ କରି ଆସିଛି । ଏବେ ମଧ୍ୟ ସେହି ଭାବର ବଳିଷ୍ଠ ପ୍ରଭାବ ଆମ ଉପରେ ପଡୁଛି ଏବଂ ଯାଜ୍ଞବଲ୍‌କ୍ୟଙ୍କ ବହୁ ବର୍ଷ ପରେ ବୁଦ୍ଧଦେବ ଯେଉଁ ମଧ୍ୟମ ପନ୍ଥାଟି ଆବିଷ୍କାର କରିଥିଲେ ତାହାର ମୂଳବୀଜ ନିହିତ ଥିଲା ଯାଜ୍ଞବଲ୍‌କ୍ୟଙ୍କ ଦ୍ୱାରା ସୃଷ୍ଟ ଶୁକ୍ଳଯଜୁର୍ବେଦ ମଧ୍ୟରେ (୮୧) । ଉପରୋକ୍ତ ଆଲୋଚନା ଦୃଷ୍ଟେ ଆମେ ନିମ୍ନ ଲିଖିତ ନିର୍ଣ୍ଣୟ ଗୁଡ଼ିକରେ ପହଞ୍ଚି ପାରିବା ।

(କ) "ଜ୍ଞାନ ଓ କର୍ମକୁ ନେଇ ପାରମ୍ପରିକ ଦୁଇ ମତବାଦ ମଧ୍ୟରେ ବହୁ ବର୍ଷ ଧରି ବିବାଦ ଲାଗିରହିଥିଲା ଏବଂ ପରସ୍ପର ବିରୋଧୀ ଏହି ଦୁଇ ମତବାଦର ତର୍କର ଘୂର୍ଣ୍ଣି ମଧ୍ୟରେ ସାଧାରଣ ଲୋକଙ୍କ ମୁଣ୍ଡ ଗୋଳମାଳିଆ ଧରି ଯାଉଥିଲା" ।

(ଖ) "ପରମ୍ପରା ବିରୋଧରେ ବିଦ୍ରୋହ କରିବାର ମନୋଭାବ ବେଳେ ବେଳେ ଉଦିତ ହେଉଥିଲେ ମଧ୍ୟ ତାହା ବଳିଷ୍ଠ ନେତୃତ୍ୱର ଅଭାବରୁ ପ୍ରକଟିତ ହୋଇ ପାରୁ ନଥିଲା" ।

(ଗ) "ଯାଜ୍ଞବଲ୍‌କ୍ୟଙ୍କ ଆବିର୍ଭାବ ରେ ଏହି ବିଦ୍ରୋହୀ ଗୋଷ୍ଠୀ ବଳଶାଳୀ ହୋଇଉଠିଥିଲେ ଏବଂ ସେମାନଙ୍କର ନେତୃତ୍ୱ ନେଇଥିଲେ ଯାଜ୍ଞବଲ୍‌କ୍ୟ" ।

(ଘ) "ଏଥିପାଇଁ ଏହି ବିରୋଧୀ ଗୋଷ୍ଠୀଙ୍କୁ ପ୍ରାଥମିକ ଅବସ୍ଥାରେ ବହୁ ନିନ୍ଦା, ଅପମାନ ଓ ଲାଞ୍ଛନା ଭୋଗ କରିବାକୁ ପଡିଥିଲା" ।

(ଙ) " ଏହି ପରିସ୍ଥିତିରେ ସମସ୍ତଙ୍କର ଗ୍ରହଣଯୋଗ୍ୟ ଏକ ସମନ୍ୱୟ ଧର୍ମୀ ଚିନ୍ତାଧାରାର ପ୍ରବର୍ତ୍ତନ ଯାଜ୍ଞବଲ୍‌କ୍ୟ କରିଥିଲେ" ।

(ଚ) "ଏହାର ଫଳଶ୍ରୁତି ସ୍ୱରୂପ "ଯଜୁର୍ବେଦ ସଂହିତା" ଏକ ପରିଶୁଦ୍ଧ ରୂପ ନେଲା । ତେଣୁ ତାହାକୁ କୁହାଗଲା 'ଶୁକ୍ଳ ଯଜୁର୍ବେଦ' । ଅପେକ୍ଷାକୃତ ନିଚତର ଚିନ୍ତାଧାରାର ଆଧାର ଥିବା ଦୃଷ୍ଟିରୁ ସଂସ୍କାରବାଦୀ ମାନଙ୍କ ମତରେ ଯଜୁର୍ବେଦର ଅପର ଭାଗଟିକୁ କୁହାଗଲା କୃଷ୍ଣ ଯଜୁର୍ବେଦ" ।

(ଛ) "ସୂର୍ଯ୍ୟ ଯେ ସକଳ ଜ୍ଞାନର ଆଧାର । ଏହି ପରମ୍ପରାଗତ ଧାରଣାଟି କେବଳତ ଭାରତ ଭୂମିରେ ପ୍ରତିଷ୍ଠିତ ହୋଇ ନଥିଲା ; ଏହା ଏଠାରୁ ଯାଇ ବିଦେଶରେ 'ବ୍ୟାବିଲୋନ୍'ଦେଶରେ ମଧ୍ୟ ପ୍ରଭାବ ବିସ୍ତାର କରିଥିଲା "।(୮୧କ)

**ଶୁକ୍ଳ ଯଜୁର୍ବେଦ** – ଶୁକ୍ଳ ଯଜୁର୍ବେଦର ଦୁଇଟି ଶାଖା ବର୍ତ୍ତମାନ ଦେଖିବାକୁ ମିଳୁଛି । ଶୁକ୍ଳ ଯଜୁର୍ବେଦର ମାଧ୍ୟନ୍ଦିନ ଶାଖାର ପ୍ରମୁଖ ସଂହିତା 'ବାଜସନେୟୀ ସଂହିତା' ନାମରେ ଖ୍ୟାତ । ବାଜସନେୟୀ ସଂହିତାରେ ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟରେ ଦର୍ଶ, ପୌର୍ଣ୍ଣମାସ, ପିତୃ ପିଣ୍ଡ ଯଜ୍ଞ ସମ୍ବନ୍ଧୀ ମନ୍ତ୍ର ମିଳେ । ତୃତୀୟ ଅଧ୍ୟାୟରେ ଦୈନିକ ଅଗ୍ନିହୋତ୍ର ( ଅଗ୍ନି ମଧ୍ୟରେ ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାକାଳରେ ହବନ କାର୍ଯ୍ୟକୁ ଅଗ୍ନିହୋତ୍ର କୁହାଯାଏ ) ସଂକଳିତ ହୋଇଛି । ଏହି ଅଧ୍ୟାୟରେ ସୋମଯଜ୍ଞ ଓ ସୋମ ଯଜ୍ଞ ସହିତ ସଂପର୍କିତ ପଶୁ ଯଜ୍ଞର ମନ୍ତ୍ର ମଧ୍ୟ ମିଳେ । ଚତୁର୍ଥରୁ ଆରମ୍ଭ କରି ଅଷ୍ଟମ ଅଧ୍ୟାୟ ପର୍ଯ୍ୟନ୍ତ ଅଗ୍ନିଷ୍ଟୋମ ଆଦି ଯଜ୍ଞର ବର୍ଣ୍ଣନା ମିଳେ । ସେଥିରେ ଏକ ଦିନ ଭିତରେ ସମାପ୍ତ ଲାଭ କରୁଥିବା 'ବାଜପେୟ' ଯଜ୍ଞର ମଧ୍ୟ ବର୍ଣ୍ଣନା ରହିଅଛି । ସେହି ଯଜ୍ଞକୁ ସେ କାଳର ରାଜା ଓ ଯୋଦ୍ଧାମାନେ ସଂପାଦନା କରୁଥିଲେ । ଏହି ଭଳି ଭାବରେ ବାଜସନେୟୀ ସଂହିତାର ବିଭିନ୍ନ ଯଜ୍ଞ, କର୍ମ ଏ ସବୁର ଉଲ୍ଲେଖ ରହିଅଛି । ଏଥିରେ ୧୮୪ ପଦାର୍ଥର ଆଲମ୍ବନରେ ବଳିର ନିର୍ଦ୍ଦେଶ ଦିଆଯାଇଛି । ସେ ଆଲମ୍ବନ ବାସ୍ତବ ନ ହୋଇ ପ୍ରତୀକ ଆଲମ୍ବନ ରୂପରେ ଉଲ୍ଲିଖିତ ହୋଇଛି ; ଯଥା- ପୁରୋହିତ ବର୍ଗ ନିମିତ୍ତ ବ୍ରାହ୍ମଣର, ରାଜକୁଳ ପାଇଁ ପରାକ୍ରମୀ ଯୋଦ୍ଧାର, ସନ୍ନ୍ୟାସୀ ନିମିତ୍ତ ଶୂଦ୍ରର , କୋଳାହଳ ନିମିତ୍ତ ଗାୟକର, ଅନ୍ଧକାର ନିମିତ୍ତ ଚୋରର , ଗୀତ ନିମିତ୍ତ ଅଭିନେତାର, ମୃତ୍ୟୁ ନିମିତ୍ତ ବ୍ୟାଧର, ଉତ୍ସବର ଆନନ୍ଦ ନିମିତ୍ତ ବୀଣା ବାଦକର, ନିଦ୍ରା ନିମିତ୍ତ ନେତ୍ର ହୀନର, ଅକ୍ଷ ନିମିତ୍ତ ଦ୍ୟୂତକାରର, ସ୍ୱର୍ଗଃ ନିମିତ୍ତ ମୁଣ୍ଡିତ ମସ୍ତକ ଖଲ୍ୱାଟ ଆଦିଙ୍କର ପ୍ରତୀକାଲମ୍ବନ ବା ଦାନ ହେଉଥିଲା । (୮୨) ଏଥିରେ ମଧ୍ୟ ରାଜାଙ୍କର ଅଭିଷେକ ବେଳେ କରାଯାଇଥିବା ରାଜସୂୟ ଯଜ୍ଞକଥା ଲେଖାଯାଇଛି । ରାଜସୂୟ ଯଜ୍ଞବେଳେ ପଶା ଖେଳ, ଅସ୍ତ୍ରଖେଳ ଇତ୍ୟାଦି କରାଯାଉଥିଲା । ତାହାର ବିଧି ବିଧାନ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଛି । ଏହାର ଅନ୍ୟ ଅଧ୍ୟାୟ ଗୁଡିକରେ ଅଶ୍ୱମେଧ, ପୁରୁଷମେଧ, ଆଦି ଯଜ୍ଞଗୁଡିକ ବିଷୟରେ ବର୍ଣ୍ଣନା କରାଯାଇଛି । ଏହି ଯଜୁର୍ବେଦରେ ଋଗ୍‌ବେଦର ହିରଣ୍ୟଗର୍ଭ ସୂକ୍ତ ବର୍ଣ୍ଣିତ ।

ଋଗ୍‌ବେଦ ଭଳି ଶୁକ୍ଳ ଯଜୁର୍ବେଦରେ ମଧ୍ୟ ଅତି ଉଚଙ୍ଗ ଚିନ୍ତାଧାରାର ତରଙ୍ଗ ସୃଷ୍ଟି ହୋଇଛି । ଋଗ୍‌ବେଦରେ ଯେଉଳି ଋଷି ନିଜର ଭଦ୍ରଭାବନାକୁ ପ୍ରକଟିତ କରିବାକୁ ଯାଇ କହୁଥିଲେ ଆମପାଇଁ ଚାରିଆଡୁ ଭଦ୍ରଚିନ୍ତାମାନ ଆସୁ, ଭଲକଥା ଚିନ୍ତାକରୁ , ଭଦ୍ରବାଣୀ ଶୁଣିବା ପାଇଁ କର୍ଣ୍ଣ ଉତ୍‌କର୍ଣ୍ଣ ହେଉ । (୮୩) ସେଥିପାଇଁ ସେ ଭଗବାନଙ୍କୁ ପ୍ରାର୍ଥନା କରି କହୁଥିଲେ "ଭଦ୍ରଃ କର୍ଣ୍ଣେଭିଃ ଶୃଣୁୟାମଃ"। ଏହାର ତାତ୍ପର୍ଯ୍ୟ ହେଉଛି ଆମେ ସବୁବେଳେ ଭଲକଥା କାନରେ ଶୁଣୁଥାଉ । ଠିକ୍ ଅନୁରୂପ ଚିନ୍ତାଧାରାର

ଝଙ୍କାର ଶୁକ୍ଳ ଯଜୁର୍ବେଦର ୩୨ ତମ ଅଧ୍ୟାୟସ୍ଥ ପ୍ରଥମ ଛଅଗୋଟି ମନ୍ତ୍ରରେ ଦେଖିବାକୁ ମିଳେ । ଏହାକୁ ଶିବ ସଂକଳ୍ପ ଉପନିଷଦ ବୋଲି କୁହାଯାଏ । ଏହି ଉପନିଷଦରେ 'ମୋ ମନରେ କଲ୍ୟାଣକାରୀ ସଂକଳ୍ପର ଉଦୟ ହେଉ'ବୋଲି କୁହାଯାଇଛି । (୮୪) । କେବଳ ଦୈବ ଆଶିର୍ବାଦରେ ହିଁ ଏଭଳି ଶୁଭ ଚିନ୍ତନ ସମ୍ଭବ ଏବଂ ଏହି ଆଶୀର୍ବାଦ ଫଳରେ ତାହାର ଅଧିକାରୀ ଆର୍ଯ୍ୟ ଋଷିମାନେ ହୋଇପାରୁଥିଲେ । ସେମାନେ ଚିନ୍ତା ଓ କର୍ମକୁ ପରସ୍ପର ସହିତ ସମନ୍ୱିତ କରି ରଖି ପାରିଥିଲେ । ଚିନ୍ତା ଓ କର୍ମ ସହିତ ସମନ୍ୱୟ ରକ୍ଷାକାରୀ ସଫଳ କର୍ମମୟ ଜୀବନ ଯାପନ ପାଇଁ ଭାରତୀୟ ସାଂସ୍କୃତିକ ପରମ୍ପରା ଯୁଗେ ଯୁଗେ ଯେଉଁ ଆହ୍ୱାନ ଦେଇ ଆସିଛି ତାହାର ମୂଳଭିତ୍ତି ଥିଲା ଏଇଠି । ରାଧାକୃଷ୍ଣ ଏ ସଂପର୍କରେ ତାଙ୍କର ଯେଉଁ ମତାମତ ପ୍ରଦାନ କରିଛନ୍ତି ଏହା ବିଶେଷ ପ୍ରଣିଧାନ ଯୋଗ୍ୟ । (୮୫)

ଶୁକ୍ଳ ଯଜୁର୍ବେଦର ଅନ୍ତିମ ୪୦ଟି ଅଧ୍ୟାୟ ହେଉଛି 'ଈଶା ବାସ୍ୟୋପନିଷଦ୍'। ଏଥିରେ ଆଠ ଗୋଟି ମନ୍ତ୍ର ଅଛି । ଏହା ଆକାରରେ ସମସ୍ତ ଉପନିଷଦ୍ ଠାରୁ କ୍ଷୁଦ୍ରତମ । ମାତ୍ର ଏହା ସମସ୍ତ ଉପନିଷଦ୍ ଠାରୁ ଗୌରବର ଅଧିକାରୀ । ମହାତ୍ମାଗାନ୍ଧୀଙ୍କ ମତରେ ଏହି ଉପନିଷଦ୍‌ର ପ୍ରଥମ ମନ୍ତ୍ରଟିରେ ହିଁ ସାରା ଭାରତୀୟ ସଂସ୍କୃତିର ତୁଙ୍ଗ ଚିନ୍ତାଧାରା ନିହିତ ରହିଅଛି । ଶୁକ୍ଳ ଯଜୁର୍ବେଦର କାଣ୍ୱ ଶାଖା ବର୍ତ୍ତମାନ ମହାରାଷ୍ଟ୍ରର ପ୍ରାନ୍ତ ଦେଶରେ ପ୍ରଚଳିତ ।

**କୃଷ୍ଣ ଯଜୁର୍ବେଦ** – ବର୍ତ୍ତମାନ କୃଷ୍ଣ ଯଜୁର୍ବେଦର କେବଳ ଚାରୋଟି ଶାଖା ମିଳୁଅଛି ।

(୧) ତୈତ୍ତରୀୟ, (୨) ମୈତ୍ରାୟଣୀ, (୩) କଠ ଏବଂ (୪) କପିଷ୍ଠଳ କଠ

**ତୈତିରୀୟ ସଂହିତା** – ଦକ୍ଷିଣ ଭାରତରେ ତୈତ୍ତରୀୟ ସଂହିତାର ପ୍ରସାର ପରିଲକ୍ଷିତ ହୁଏ । ଏହା କାଣ୍ଡ, ପ୍ରପାଠକ ଓ ଅନୁବାକ୍‌ରେ ବିଭକ୍ତ । ଏଥିରେ ୭ କାଣ୍ଡ, ୪୪ ପ୍ରପାଠକ , ୬୩୧ ଅନୁବାକ୍ ଅଛି । ଏଥିରେ ପୌରଡାଙ୍କ , ଯାଜମାନ, ବାଜପେୟ, ରାଜସୂୟ ଆଦି ବିଭିନ୍ନ ଯଜ୍ଞାନୁଷ୍ଠାନର ସୁନ୍ଦର ବର୍ଣ୍ଣନା ମିଳେ ।

**ମୈତ୍ରାୟଣୀ ସଂହିତା** – ମୈତ୍ରାୟଣୀ ସଂହିତା ପଦ୍ୟ ଓ ଗଦ୍ୟାତ୍ମକ । ଏଥିରେ ମନ୍ତ୍ର ଓ ତନ୍ନିୟୋଜକ ବ୍ରାହ୍ମଣର ମିଶ୍ରଣ ଘଟିଛି । ଏହା ଚାରି କାଣ୍ଡରେ ବିଭକ୍ତ । ଏହି ସଂହିତାର ଅନେକ ମନ୍ତ୍ର, କଠ, ତୈତ୍ତରୀୟ, ମାଧ୍ୟନ୍ଦିନ ଓ କାଣ୍ୱ ସଂହିତାରେ ଦେଖିବାକୁ ମିଳେ ।

**କଠ ସଂହିତା** – କଠ ସଂହିତା ମଧ୍ୟ ଦେଶରେ ପ୍ରସାର ଲାଭ କରିଥିଲା । କଠ ସଂହିତା ପ୍ରତ୍ୟେକ ଗ୍ରାମରେ ପଠିତ ହେଉଥିଲା । ଏଥିରେ ୪୦ ଟି ସ୍ଥାନକ, ୧୩ ଅନୁବଚନ, ୮୪୩ ଅନୁବାକ ଓ ୩୦୯୧ ମନ୍ତ୍ର ରହିଅଛି ।

**କପିଷ୍ଠଳ ସଂହିତା** – କପିଷ୍ଠଳ ହେଉଛି ଜଣେ ଋଷିଙ୍କର ନାମ । ପାଣିନୀଙ୍କ 'କପିଷ୍ଠଳ ଗୋତ୍ରେ' । କପିଷ୍ଠଳ ସଂହିତା ୮ ଅଷ୍ଟକରେ ବିଭକ୍ତ । ସେଥିରୁ ପ୍ରଥମ ଅଷ୍ଟକ କେବଳ ଉପଲବ୍ଧ ହେଉଛି । ଅନ୍ୟ ଅଷ୍ଟକ ଗୁଡିକର ତ୍ରୁଟି ଅଂଶ ମିଳୁଛି । କେତେକ ଅଷ୍ଟକର ମଧ୍ୟଭାଗ ମିଳୁନାହିଁ ।

ଯଜୁର୍ବେଦରେ ମିଳୁଥିବା ପଦ୍ୟ ଅଂଶ କୌଣସି କୌଣସି ଠାରେ ଲୟ ଓ ତାଳର ଅନୁଗତ ଓ କୌଣସି କୌଣସି ଠାରେ କାବ୍ୟ କଳା ରୂପେ ଗୃହୀତ । ଅଧିକାଂଶ ମନ୍ତ୍ର ଋଗ୍‌ବେଦରୁ ଆନୀତ । ବାସ୍ତବିକ ସରଳ ଗଦ୍ୟର ନିଦର୍ଶନ ମିଳେ ଯଜୁର୍ବେଦରେ । ଯଜୁର୍ବେଦରେ କେବଳ ସଂକ୍ଷିପ୍ତ ସୂତ୍ରାତ୍ମକ ଶବ୍ଦରେ ପବିତ୍ର କର୍ମର ଉଦ୍ଦେଶ୍ୟରେ ଅଭିବ୍ୟଞ୍ଜନା କରାଯାଇଛି । ଯଜୁର୍ବେଦରେ ଅଂସଖ୍ୟ ବାକ୍ୟ ମିଳେ ଯେଉଁଥିରେ ଅସ୍ପଷ୍ଟଭାବ ପରିଲକ୍ଷିତ ହୋଇଥାଏ ଏବଂ ବାକ୍ୟ ଗୁଡିକର ପାରସ୍ପରିକ ସଂପର୍କ ନାହିଁ । ଯଜୁର୍ବେଦରେ କେତେକ ପ୍ରହେଳିକା ମଧ୍ୟ ପରିଦୃଷ୍ଟ ହୁଏ । ଯଜୁର୍ବେଦର ଅନେକ ପ୍ରାର୍ଥନାରେ ଏକାକ୍ଷର ଲକ୍ଷିତ ହୁଏ । ବହୁଦିନ ପରେ ଭାରତୀୟ ତନ୍ତ୍ର ସାହିତ୍ୟରେ ପୁଣି ସେହି ଏକାକ୍ଷର ଶବ୍ଦ ପ୍ରବେଶ କରିଅଛି ।

ଯଜୁର୍ବେଦ ସଂହିତା ଅବାନ୍ତର କାଳୀନ ଭାରତୀୟ ଦାର୍ଶନିକ ପରମ୍ପରାର ନିଦର୍ଶନ । ଯଜୁର୍ବେଦ ଜ୍ଞାନ ବିନା ବ୍ରାହ୍ମଣ ଗ୍ରନ୍ଥରେ ନିହିତ ଥିବା ଦାର୍ଶନିକ ଚିନ୍ତାଧାରା ବୁଝି ହେବ ନାହିଁ । ତେଣୁ ଭାରତୀୟ ସଂସ୍କୃତିରେ ଜ୍ଞାନ ପାଇଁ ଯଜୁର୍ବେଦ ସଂହିତା ପଠନରେ ଆବଶ୍ୟକତା ରହିଅଛି ।

**(ଗ) ସାମବେଦ-** ଉଦ୍‌ଗାତା ନାମକ ଋତ୍ୱିକ ନିମିତ୍ତ ସାମବେଦ ସଂଙ୍କଳିତ ହୋଇଛି । ସାମବେଦକୁ ଯେ ଉତ୍ତମ ରୂପେ ହୃଦୟଙ୍ଗମ କରିଛି ସେ ବେଦର ତତ୍ତ୍ୱ ଜାଣେ । (୮୬) ଭଗବତ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ସାମବେଦକୁ ନିଜର ସ୍ୱରୂପ ବୋଲି କହିଛନ୍ତି ।(୮୭) ଋଗ୍‌ବେଦ ତଥା ଅଥର୍ବ ବେଦରେ ସାମବେଦର ପ୍ରଶଂସା ପରଲିକ୍ଷିତ ହୁଏ । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ପକ୍ଷୀମାନଙ୍କର ଗାନକୁ ସାମଗାନ ପରି ମଧୁର ବୋଲି କୁହାଯାଇଛି ।

କେତେକଙ୍କ ମତରେ ସାମବେଦ ଏକ ସ୍ୱତନ୍ତ୍ର ବେଦ ନୁହେଁ । ଏହା ଋଗ୍ ବେଦର ଗୋଟିଏ ଅଂଶ । ଋଗ୍‌ବେଦରେ ଯେଉଁ ମନ୍ତ୍ର ଗୁଡିକ ସ୍ୱର ଲୟ ରଖି ବୋଲିବାର କଥା ସେଗୁଡିକୁ ପରେ ସଂକଳିତ କରି ସାମବେଦର ସୃଷ୍ଟି କରାଯାଇଛି । କେତେକଙ୍କ ମତରେ ବ୍ୟାସଦେବ ଏହାକୁ ଭାଗ ଭାଗ କରିଥିଲେ । କିନ୍ତୁ କେତେବେଳେ କେଉଁ ପରିସ୍ଥିତିରେ କାହାଦ୍ୱାରା ଏହା ଭାଗ ଭାଗ କରାଯାଇଥିଲା ସେ କଥା ନିର୍ଦ୍ଦିଷ୍ଟ ଭାବରେ କହିହେବ ନାହିଁ । ଏହି ସ୍ଥିତି ପ୍ରତି ଲକ୍ଷ୍ୟ କରି ବି. କେ. ଘୋଷ୍‌ଙ୍କ ଉକ୍ତି ଯଥାର୍ଥ (୮୮) ସାମଗାନ ଅତି ପ୍ରାଚୀନ କାଳରୁ ପ୍ରଚଳିତ । ଜୈମିନୀ ସୂତ୍ରରେ କୁହାଯାଇଛି 'ଗୀତଷୁ ସାମାଖ୍ୟା' । ସାମ ଶବ୍ଦର ଅର୍ଥ ହେଉଛି ସ୍ୱର ବା ଗୀତ । ଛାନ୍ଦୋଗ୍ୟ ଉପନିଷଦ୍‌ରେ କୁହାଯାଇଛି 'ଋଚି ଅଧ୍ୟୁଢଂ ସାମ'। ଋଗ୍ ଓ ସାମର ପାରସ୍ପରିକ ନିଗୂଢ଼ ସଂପର୍କକୁ ଖ୍ୟାପନ କରିବା ନିମିତ୍ତ ସେହି ଦୁଇଟି ଭିତରେ ଦାମ୍ପତ୍ୟ ଭାବ କଳ୍ପିତ ହୋଇଛି । 'ସନ୍ତାନ ଉତ୍ପତ୍ତି ନିମିତ୍ତ ପତି ପତ୍ନୀକୁ ଡାକି କହୁଛି । ମୁଁ ହେଉଛି ସାମ ଓ ତୁ ହେଉଛି ଋଗ୍ ସ୍ୱରୂପା । ମୁଁ ଆକାଶ, ତୁ ହେଉଚୁ ପୃଥ୍ୱୀରୂପା । ତେଣୁ ଆସ ଆମେ ଦୁହେଁ ମିଶି ପ୍ରଜା ଉତ୍ପନ୍ନ କରିବା । ଛାନ୍ଦୋଗ୍ୟ ଉପନିଷଦ୍‌ରେ ସ୍ୱର ସାମର ସ୍ୱରୂପ କୁହାଯାଉଛି । (୮୯) ବୃହଦାରଣ୍ୟକ ଉପନିଷଦ୍‌ରେ ସାମ ଶବ୍ଦର ସୁନ୍ଦର ବ୍ୟୁତ୍ପତ୍ତି ଦିଆଯାଇଛି । 'ସା' ଶବ୍ଦର ଅର୍ଥ ହେଉଛି ଋକ୍ ଏବଂ 'ଆମ୍' ଶବ୍ଦର ଅର୍ଥ ହେଉଛି ଗାନ୍ଧାର ଆଦି ସ୍ୱର । ତେଣୁ ସାମ ଶବ୍ଦର ବ୍ୟୁତ୍ପତ୍ତି ଗତ ଅର୍ଥ ହେଉଛି ଋକ୍ ସହିତ ସଂପର୍କିତ ସ୍ୱର ଯୁକ୍ତ ଗାୟନ । (୯୦) ଉପରୋକ୍ତ ବିଗ୍ରହ 'ସା ଋକ୍ ତତ୍ ସାମ' (୯୧) ଅର୍ଥାତ୍ ଯାହା 'ଋକ୍' ତାହା ହେଉଛି 'ସାମ୍' । ଏଠାରେ 'ଋକ୍ ଏବଂ ସାମ୍' ଭିତରେ ସ୍ୱାମୀ

ଓ ସ୍ତ୍ରୀଙ୍କ ସଂପର୍କ ଚିରନ୍ତନ ଏବଂ ଅବିଚ୍ଛେଦ୍ୟ । ଋକ୍ ଓ ସାମର ସଂପର୍କ ମଧ୍ୟ ଅନୁରୂପ ଅଥର୍ବ ବେଦରେ କୁହା ଯାଇଛି । ସେଠାରେ ସ୍ୱାମୀ ସ୍ତ୍ରୀଙ୍କୁ କହୁଛନ୍ତି "ମୁଁ ସାମ ହେଲେ ତୁମେ ହେଉଛ ଋକ୍ । ମୁଁ ଆକାଶ ହେଲେ ତୁମେ ହେଉଛ ପୃଥିବୀ "।(୯୨) ଏହି ପୃଷ୍ଠଭୂମିରେ ସସାମବେଦର ମୂଲ୍ୟାୟନ କରିବାକୁ ହେଲେ ସାଧାରଣ ଭାବରେ ଋଗ୍ ବେଦ ଠାରୁ ଏହାର କିଛି ସ୍ୱତନ୍ତ୍ର ଐତିହାସିକ ଓ ସାହିତ୍ୟିକ ମୂଲ୍ୟ ନାହିଁ ବୋଲି ଧରି ନେବାକୁ ପଡିବ । ବି. କେ. ଘୋଷଙ୍କ ଉକ୍ତି ଏଠାରେ ପ୍ରଣିଧାନ ଯୋଗ୍ୟ । (୯୩) 'ଯେଉଁ ଋକ୍ ଉପରେ ସାମ ଗୀତ ହେଉଥିଲା ତାହା ବୈଦିକ କାଳରେ 'ସାମଯୋନି' ନାମରେ ବିଦିତ । ଭାରତୀୟ ପରମ୍ପରା ଯେପରି ସ୍ୱୀକାର କରେ ଗୋଟିଏ ବିଶେଷ ସାମ କୌଣସି ବିଶେଷ ଛନ୍ଦରେ ଗୀତ ହେଉଥିଲା । ଠିକ୍ ସେହିପରି ପାଶ୍ଚାତ୍ୟ ପରମ୍ପରା ମଧ୍ୟ ସ୍ୱୀକାର କରେ ଗୋଟିଏ ଛନ୍ଦ କୌଣସି ବିଶିଷ୍ଟ ତାଳ ଓ ଲୟରେ ଗୀତ ହେଉଥିଲା ; ଯଦିଓ ଗୋଟିଏ ଛନ୍ଦ ବିଭିନ୍ନ ତାଳ ଓ ଲୟରେ ଏବଂ ଗୋଟିଏ ତାଳ ବିଭିନ୍ନ ଛନ୍ଦରେ ପ୍ରଯୁକ୍ତ ହୋଇପାରେ , ତଥାପି କେତେକ ପରିଗଣିତ ଛନ୍ଦ ଏପରି ଥିଲା ଯେ ତାହାକୁ ଯୋନି କୁହାଯାଉଥିଲା । (୯୪)

ସାମବେଦର ମୋଟ ମନ୍ତ୍ର ସଂଖ୍ୟା ହେଉଛି ୧୮୭୫ । ଏଥିରୁ ୯୯ ଟି ମନ୍ତ୍ରକୁ ଛାଡି ଦେଲେ ବାକି ତକ ମନ୍ତ୍ର ହେଉଛି ଋଗ୍‌ବେଦର । ଅବଶ୍ୟ ବେଳେ ବେଳେ ଋଗ୍‌ବେଦୀୟ ମନ୍ତ୍ର ଗୁଡିକ ସାମାନ୍ୟ କିଛି ପରିବର୍ତ୍ତନ ଘଟି ସେଗୁଡିକ ସ୍ଥାନିତ ହୋଇଛନ୍ତି । ଏହି ୯୯ଟି ସାମ ମନ୍ତ୍ର ବର୍ତ୍ତମାନ ସାମ ବେଦର ଦୁଇ ଶାଖା 'ଶାକାଳ' ଶାଖାରୁ ଉପଲବ୍ଧ ହେଉଛି । ପଣ୍ଡିତମାନଙ୍କ ମତରେ ସାଂଖ୍ୟାୟନ ଶାଖାଟି ଚିରଦିନ ପାଇଁ ହଜି ଯାଇଥିବାରୁ ଏଥିରୁ ସ୍ଥାନିତ ହୋଇଥିବା ଏହି ୯୯ ଟି ମନ୍ତ୍ର ମଧ୍ୟ ଆଉ ମିଳେ ନାହିଁ । ଯାହା ହେଉ, ସାମବେଦର ମୂଳ ଯେ ଋଗ୍‌ବେଦ, ଏକଥା ଅସ୍ୱୀକାର କରାଯାଇପାରିବ ନାହିଁ । ସାମବେଦର ବିଭାଗୀକରଣରୁ ଆମେ ଜାଣି ପାରିବା ଏହା କିପରି ନିବିଡ ଭାବରେ ଋଗ୍‌ବେଦ ସହିତ ସଂପର୍କିତ । ଏହା ଦୁଇ ଭାଗରେ ବିଭକ୍ତ – 'ଆର୍ଚ୍ଚିକ ଓ ଗାନ' । 'ଆର୍ଚ୍ଚିକ' ମଧ୍ୟ ଦୁଇଭାଗରେ ବିଭକ୍ତ ଯଥା – 'ପୂର୍ବାର୍ଚ୍ଚିକ ଓ ଉତ୍ତରାର୍ଚ୍ଚିକ୍' । ଏ ଦୁଇଟିର ମଝିରେ ମାତ୍ର ଦଶ ଗୋଟି ମନ୍ତ୍ରଥିବା 'ମହାନାମ୍ନ୍ୟାର୍ଚ୍ଚିକ' ବିଦ୍ୟମାନ । 'ଆର୍ଚ୍ଚିକ' କହିଲେ ଋଗ୍ ଗୁଡିକର ସମୂହ ବୋଲି କୁହାଯାଏ । ଅତଏବ, ସାମବେଦର ଦୁଇଟି ଯାକ ଭାଗରେ ଋଗ୍ ଗୁଡିକ ଯେ ସଂଗ୍ରହିତ ହୋଇଛି ସେହି ଭାବ ଏଥିରୁ ନିଷ୍କାସିତ । ସେଥିପାଇଁ ଛାନ୍ଦୋଗ୍ୟ ଉପନିଷଦରେ ଆଉ ଠାଏ ଯଥାର୍ଥରେ କୁହାଯାଇଛି 'ଋକ୍ ଉପରେ ସାମ ଆରୂଢ' ଏହାର ତାତ୍ପର୍ଯ୍ୟ ହେଲା ସାମବେଦ ଋଗ୍‌ବେଦ ଭିତ୍ତିକ ।(୯୫) ସାମବେଦ ଋଗ୍‌ବେଦ ଭିତ୍ତିକ ହେଲେ ମଧ୍ୟ ବୈଦିକ ସଂହିତା ଗୁଡିକ ମଧ୍ୟରେ ତାହାର ଗୌରବ କିଛି କମ୍ ନୁହେଁ । ଏଣୁ ବୃହଦ୍ଦେବତାରେ ଗୋଟିଏ ସ୍ଥାନରେ କୁହାଯାଇଛି ଯେ ସାମ ମନ୍ତ୍ରଗୁଡିକୁ ଜାଣନ୍ତି ସେ ବେଦର ତତ୍ତ୍ୱ ଜାଣନ୍ତି ବୋଲି ବୁଝିବାକୁ ହେବ ।(୯୬) ସେଥିପାଇଁ ସେଦିନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନିଜର ବିଭୂତି ବିଷୟରେ ବୁଝାଇବାକୁ ଯାଇ କହିଥିଲେ ମୁଁ ହେଉଛି ସକଳ ବେଦମାନଙ୍କ ମଧ୍ୟରେ ସାମବେଦ । (୯୭) ସାମଗାନରେ ପ୍ରାଣ ଶୁଦ୍ଧି ହୁଏ ବୋଲି ଋଷିମାନଙ୍କର ଧାରଣା ଥିଲା । ତେଣୁ ସେମାନେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରି କହୁଥିଲେ "ମୁଁ ସାମମନ୍ତ୍ର ଦ୍ୱାରା ପ୍ରାଣ ପ୍ରାଚୁର୍ଯ୍ୟ ପାଏଁ "।(୯୮)

## ବିଷୟ ବିବେଚନ – ସାମଗାନ

"ସାମବେଦର ଅଧ୍ୟୟନରୁ ଜଣାପଡେ ପ୍ରାରମ୍ଭିକ କାଳରେ ତାଳ, ଲୟ ଓ ବାଦ୍ୟ ମଧ୍ୟ ମୌଖିକ ରୂପରେ ଶିକ୍ଷା ଦିଆ ଯାଉଥିଲା । ପରବର୍ତ୍ତୀ କାଳରେ ତାହାକୁ ଗାନ ନାମରେ ଅଭିହିତ କରାଗଲା । 'ଗାନ' ଶବ୍ଦ 'ଗୌ' ଧାତୁରୁ ଉତ୍ପନ୍ନ ହୋଇଛି । ଅକ୍ଷରର ସମ୍ପୂର୍ଣ୍ଣ ଆୟାମ, ଅକ୍ଷରର ପୁନରାବୃତ୍ତି ଏବଂ ଅକ୍ଷରର ସଂଗୀତାନୁକୂଳ, ଶାବ୍ଦିକ ପରିବର୍ତ୍ତନ , ଔ, 'ହୋବା' 'ହାଉଥା' ଯାହାକୁ କି 'ସ୍ତୋଭ' କୁହାଯାଏ ଇତ୍ୟାଦିକୁ ସାମବିକାର କୁହାଯାଏ"। ସାମବିକାର ହେଉଛି ୬ ପ୍ରକାର । (୧) ବିକାର, (୨) ବିଶ୍ଲେଷଣ, (୩) ବିକର୍ଷଣ, (୪) ଅଭ୍ୟାସ, (୫) ବିରାମ, (୬) ସ୍ତୋଭ । ଭାରତୀୟ ସଙ୍ଗୀତ ଶାସ୍ତ୍ର ମୂଳାଧାର ହେଉଛି ସାମଗାନ । ଜଣାପଡେ ସାମଗାନରୁ ବିଭିନ୍ନ ରାଗ ରାଗିଣୀର ଉତ୍ପତ୍ତି ହୋଇଛି । ସାମଗାନ ପଦ୍ଧତି ଅତି ଜଟିଳ । ତାଳ ଓ ଲୟ ସହିତ ଉତ୍ତମ ରୂପେ ଗୀତ ହେଉଥିବା ସାମଗାନର ସ୍ୱର ମୂର୍ଚ୍ଛନା ଶ୍ରୋତାର ମନରେ ଆନନ୍ଦର ଲହରୀ ଖେଳାଇ ଦେଇଥାଏ ।(୯୯) ନାରଦ ଶିକ୍ଷା ଅନୁସାରେ 'ସାମ'ର ସ୍ୱର ମଣ୍ଡଳ ହେଉଛି, ୭ ସ୍ୱର, ୩ ଗ୍ରାମ, ୨୧ ମୂର୍ଚ୍ଛନା ଓ ୪୯ ତାନ । ବେଣୁର ସ୍ୱର ସହିତ ଏହାର ୭ ସ୍ୱରର ତୁଳନା ହୋଇଛି । ସାମଗାନ ୪ ପ୍ରକାର; ଯଥା- (୧) ବେୟ ଗାନ ବା ଗ୍ରାମେ ଗେୟ ଗାନ , (୨) ଅରଣ୍ୟ ଗାନ, (୩) ଊହଗାନ (୪) ଊହ୍ୟଗାନ । ସାମଗାନ ପ୍ରସ୍ତାବ, ଉଦ୍‌ଗୀଥ, ପ୍ରତିହାର, ଉପଦ୍ରବ, ନିଧନ, ଏହିଭଳି ଭାବରେ ବିଭାଗୀକରଣ କରାଯାଇଛି ।

ବେଦବ୍ୟାସ ନିଜ ଶିଷ୍ୟ ଜୈମିନି କୁ ସାମବେଦ ଶିକ୍ଷା ଦେଉଥିଲେ । ଜୈମିନିଙ୍କ ପୁତ୍ର ନାତି ପରମ୍ପରା କ୍ରମେ ସାମବେଦ ପ୍ରସାର ଲାଭ କରିଛି । ଜୈମିନି ଗୃହ୍ୟ ସୂତ୍ରରୁ ଜଣାପଡେ ସାମବେଦର ୧୩ଟି ଶାଖା ରହିଛି । ମାତ୍ର ବର୍ତ୍ତମାନ ସାମବେଦରେ କୌଥୁମ, ରାଣାୟନୀୟ ଓ ଜୈମିନୀୟ ଏହି ତିନୋଟି ଶାଖା ମିଳୁଛି । କୌଥୁମ ଶାଖା ସାମବେଦର ତିନି ଶାଖା ଭିତରୁ ସବୁଠାରୁ ପ୍ରସିଦ୍ଧ ଓ ଉପାଦେୟ । ରାଣାୟଣୀୟ ଶାଖା ମନ୍ତ୍ରଗଣନା ଅନୁସାରେ ରାଣାୟଣୀୟ ସଂହିତାଠାରୁ ଭିନ୍ନ ନୁହେଁ । କେବଳ ଉଭୟ ଭିତରେ ଉଚ୍ଚାରଣର ପାର୍ଥକ୍ୟ ପରିଲକ୍ଷିତ ହୁଏ । ଜୈମିନୀୟ ଶାଖାର ସମସ୍ତ ଅଂଶ, ସଂହିତା, ବ୍ରାହ୍ମଣ, ଶ୍ରୌତ, ସୂତ୍ର ଓ ଗୃହ୍ୟ ସୂତ୍ର ବର୍ତ୍ତମାନ ଦେଖିବାକୁ ମିଳୁଅଛି । ଜୈମିନୀୟ ସଂହିତାରେ ସାମଗାନ ଗୁଡିକ ଅଧିକ ମହତ୍ତ୍ୱପୂର୍ଣ୍ଣ । ଜୈମିନୀୟ ସଂହିତାରେ ଆଉ ଗୋଟିଏ ଶାଖା ହେଉଛି 'ତଲବକାର' ।

'ସାମଗାନ' ମୁଖ୍ୟତଃ ଭକ୍ତିମୂଳକ । ଭକ୍ତି ରସ ପ୍ରାଣର ଭାଷା ଛଡା ଆଉ କିଛି ନୁହେଁ ଭଗବାନଙ୍କ ସାନିଧ୍ୟ ପାଇବା ପାଇଁ । ଜୀବନର ଅନ୍ତିମ ଲକ୍ଷ୍ୟ ମୋକ୍ଷ ପାଇବା ପାଇଁ ଭଗବାନଙ୍କୁ ବିଭିନ୍ନ ନାମରେ ଡାକି ସ୍ତୁତି କରାଯାଇଛି । ପ୍ରତ୍ୟେକଟି ସାମ ମନ୍ତ୍ରରେ ଏହି ଆବାହନର ଆତ୍ମୀୟତା ଭରି ରହିଛି । ସାମବେଦରେ ପ୍ରଥମ ମନ୍ତ୍ର ର ତର୍ଜମାର ଅର୍ଥ ପ୍ରଣିଧାନ ଯୋଗ୍ୟ । ଏହି ମନ୍ତ୍ରରେ କୁହାଯାଇଛି 'ହେ ପରମେଶ୍ୱର ! ହୃଦୟ ଖୋଲି ତୁମକୁ ମୁଁ ଡାକୁଛି । କାମନା ବାସନା ଛେଦନ କରିବା ପାଇଁ ତୁମେ ଆସି ମୋ ହୃଦୟରେ ବିରାଜମାନ କର । ସଦାବେଳେ ତୁମର ସାନ୍ନିଧ୍ୟ ଲାଗି ଏ ହୃଦୟ ମୋର ବ୍ୟାକୁଳ (୧୦୦) । ମଣିଷ ନିଜକୁ ରକ୍ଷା କରିବା ପାଇଁ ବହୁ ଉପାୟ ପାଞ୍ଚେ ଏବଂ ବହୁ ଉଦ୍ୟମ କରେ । ଶେଷକୁ ଯେତେବେଳେ ତାହାର ସକଳ ଉଦ୍ୟମ ବ୍ୟର୍ଥ ହୁଏ ସେତେବେଳେ ସେ ଉପରକୁ ଦୁଇ ହାତ ଟେକି ଭଗବାନଙ୍କୁ ଡାକେ । ଏହି ଭାବଟିକୁ ସାମ ବେଦର ୨୩୪ ତମ ମନ୍ତ୍ରରେ ବ୍ୟକ୍ତ କରାଯାଇଛି ।

ଏହା ହେଲା 'ହେ ପ୍ରଭୁ ! ଆମ ଲାଗି ମୁକ୍ତିର ଧନ ଆଣିଦେବା ପାଇଁ ଆମେ ଭକ୍ତମାନେ ତୁମକୁ ଡାକୁଛୁ । ଅନ୍ୟମାନେ ମଧ୍ୟ ବିପଦରେ ପଡିଲେ ଦୁଷ୍ଟ ଭୟରୁ ରକ୍ଷା ପାଇବା ପାଇଁ ତୁମକୁ ଡାକିଥାନ୍ତି । ଲୋକେ ନିଜର ସକଳ ଉଦ୍ୟମର ସୀମାକୁ ଅତିକ୍ରମ କରି ସାରିବା ପରେ ଆଉ ଯେତେବେଳେ ପାରନ୍ତି ନାହିଁ ତୁମକୁ ହିଁ ଡାକିଥାନ୍ତି' ।(୧୦୧) ଋଗ୍‌ବେଦର ଋଷିଙ୍କ ନିକଟରେ ଭଗବାନ ହେଉଛନ୍ତି ଏକ ବିରାଟ ପୁରୁଷ, ଅନନ୍ତ ପାଦ, ଅନନ୍ତ ଚକ୍ଷୁ ( ପୁରୁଷ ସୁକ୍ତ ଅନୁସାରେ ) ତାଙ୍କର ବିରାଟତ୍ୱ ଓ ମହିମାରେ ଋଷିମାନେ ମ୍ରିୟମାଣ ହୋଇ ଉଠିଛନ୍ତି । କିନ୍ତୁ ସାମବେଦର ଋଷିମାନଙ୍କ ନିକଟରେ ସେ ହୋଇ ଉଠିଛନ୍ତି ଅତି ପ୍ରିୟତମ, ଅତି ଆପଣାର । ପ୍ରିୟତ୍ୱବୋଧ ପାଖରେ ବଡ ସାନର ଭାବନା ନାହିଁ । କାରଣ ଜଣେ ଅତି ଅପରର , ଅତି ନିକଟର, ଅତି ଆପଣାର । ଭକ୍ତ ଋଷି ସର୍ବଦା ତାଙ୍କର ସାନ୍ନିଧ୍ୟ ପାଇ ପାରୁଛନ୍ତି । ସବୁବେଳେ ତାଙ୍କର ଆଶୀର୍ବାଦ ପାଇ ପାରୁଛନ୍ତି । ସବୁବେଳେ ଭଗବାନଙ୍କ କୋଳ ଭକ୍ତ ଲାଗି ଉନ୍ମୁକ୍ତ ରହିଛି । ଫଳରେ ସାମବେଦର ଭକ୍ତ ଋଷି ଆକୁଳ ଚିତ୍ତରେ ଗାଇ ଉଠିଛି 'ହେ ପରମେଶ୍ୱର ! ବାପ ପୁଅ ପାଇଁ ସୁ ପ୍ରାପ୍ତ ହେଲାବେଳେ ତୁମେ ଆମ ପାଇଁ ସୁପ୍ରାପ୍ତ ହୁଅ । ଆମର ମଙ୍ଗଳ ବିଧାନ ଲାଗି ତୁମେ ଧାଇଁଆସ '।(୧୦୨) ସ୍ଥୁଳତ କହିବାକୁ ଗଲେ ପରବର୍ତ୍ତୀ କାଳରେ ଭାରତୀୟ ଆଧ୍ୟାତ୍ମିକ କ୍ଷେତ୍ରରେ ଭକ୍ତିବାଦର ଯେଉଁ ସୌଧ ଗଢି ଉଠିଥିଲା, ତାହାର ଭିତ୍ତିଭୂମି ଏହି ସାମବେଦ ।

**(ଘ) ଅଥର୍ବ ବେଦ** - ଭାରତୀୟ ପ୍ରାଚୀନ ପରମ୍ପରା ଅନୁସାରେ ବେଦକୁ 'ତ୍ରୟୀ' ବେଦ ବୋଲି କୁହାଯାଇଥାଏ । ଏହା ହେଲା ଋକ୍ , ଯଜୁ, ସାମ । ତ୍ରୟୀ ବେଦ ମଧ୍ୟରେ ଅଥର୍ବ ବେଦର ନାମ ନାହିଁ । ବେଦଗୁଡିକ ସୃଷ୍ଟି ସଂପର୍କରେ ଯେଉଁ ପ୍ରସିଦ୍ଧି ଋଗ୍‌ବେଦୀୟ ପୁରୁଷ ସୁକ୍ତରେ ଅଛି ତହିଁରେ ମଧ୍ୟ ଅଥର୍ବ ବେଦର ନାମ ନାହିଁ । ଅନ୍ୟ ପକ୍ଷରେ କେବଳ ଋକ୍, ସାମ ଓ ଯଜୁର୍ବେଦର ନାମ ରହିଛି । ବିରାଟ ପୁରୁଷଙ୍କ ଦ୍ୱାରା କୃତ ପୁରୁଷମେଧ ଯଜ୍ଞରେ ଏ ଗୁଡିକର ସୃଷ୍ଟି ହେଲା ବୋଲି କୁହାଯାଇଛି । ଏହି ସୁକ୍ତର ନବମ ମନ୍ତ୍ରରେ କୁହାଯାଇଛି ନିଜକୁ ସର୍ବସ୍ୱ ରୂପେ ଆହୁତି ଦେଇଥିବା ସେହି ଯଜ୍ଞରୁ ଋକ୍ ଓ ସାମ ମନ୍ତ୍ରମାନଙ୍କ ସୃଷ୍ଟି ହେଲା । ସେଥିରୁ ଛନ୍ଦଗୁଡିକର ସୃଷ୍ଟି ହେଲା । ସେଥିରୁ ଯଜୁର୍ବେଦର ସୃଷ୍ଟି ହେଲା । ଏହି 'ଛନ୍ଦାଂସି' ଅର୍ଥାତ୍ ଛନ୍ଦ ସମୂହର ପ୍ରୟୋଗକୁ ଲକ୍ଷ୍ୟ କରି କେହି କେହି ପଣ୍ଡିତମାନେ କୁହନ୍ତି ଯେ ଏଥିରେ ଅଥର୍ବ ବେଦ ଅନ୍ତର୍ଗତ ।(୧୦୩) ଅନ୍ୟ ବେଦଗୁଡିକ ଅପେକ୍ଷା ଅଥର୍ବ ବେଦ ଯେ ଅପେକ୍ଷାକୃତ ଅର୍ବାଚୀନ ଏକଥା ଉଲ୍ଲେଖ କରିବାକୁ ଯାଇ ଘୋଷ ଯେଉଁ ମତପ୍ରଦାନ କରିଛନ୍ତି, ତାହା ଗ୍ରହଣ ଯୋଗ୍ୟ । (୧୦୪) ଅଥର୍ବ ବେଦରେ ଇନ୍ଦ୍ରଜାଲ ଓ ଗୁଣିଗାରେଡି ବିଦ୍ୟା ଆଦି ସଂପର୍କରେ ପୁଷ୍କଳ ବର୍ଣ୍ଣନାମାନ ବିଦ୍ୟମାନ । ତଥାପି ପରମ୍ପରାକ୍ରମେ ଗଡ଼ି ଆସୁଥିବା ବୈଦିକ ଆର୍ଯ୍ୟମାନଙ୍କର ଉଚ୍ଚାଙ୍ଗ ଚିନ୍ତାଧାରାରୁ ସମ୍ପୂର୍ଣ୍ଣ ବିରହିତମାନ । ବରଂ ଅନେକ ସ୍ଥଳରେ ଋଗ୍‌ବେଦଠାରୁ ମହତ୍ତର ଚିନ୍ତାଧାରାର ଆଲୋକ ପରିଦୃଶ୍ୟମାନ ।

"ଅଥର୍ବ ଋଷିଙ୍କ ଦ୍ୱାରା ପରିଦୃଷ୍ଟ ହୋଇଥିବା ବେଦକୁ ଅଥର୍ବ ବେଦ କୁହାଯାଏ । ଗୋପଥ ବ୍ରାହ୍ମଣ ଅନୁସାରେ ବ୍ରହ୍ମାଙ୍କ ଠାରୁ ଭୃଗୁ ଉତ୍ପନ୍ନ ହୋଇଛନ୍ତି । ଭୃଗୁଙ୍କଠାରୁ ଅଥର୍ବ ଜନ୍ମ ହୋଇଛନ୍ତି । ଅଥର୍ବଙ୍କର ଅନ୍ୟନାମ ହେଉଛନ୍ତି ଅଙ୍ଗିରା । ତେଣୁ ଅଥର୍ବ ବେଦର ଅନ୍ୟନାମ ହେଉଛି ଅଥର୍ବାଙ୍ଗିରସ "।

(୧୦୫) ଋଗ୍‌ବେଦର ମନ୍ତ୍ର ଉଚ୍ଚାରଣ ତଥା ସାଧନଦ୍ୱାରା ପାରଲୌକିକ ଫଳ ପ୍ରାପ୍ତି ହୋଇଥାଏ । ଅଥର୍ବ ବେଦରେ ମାନବ ଜୀବନକୁ ସୁଖମୟ ତଥା ଦୁଃଖକଷ୍ଟ ବିରହିତ କରିବା ନିମିତ୍ତ ଅନେକ ସୂକ୍ତ ସଂକଳିତ ହୋଇଛି । ଯଜ୍ଞାନୁଷ୍ଠାନ ନିମିତ୍ତ ଆବଶ୍ୟକ ହେଉଥିବା ଗ୍ୱରିଜଣ ଋତ୍ୱିକ ମଧ୍ୟରୁ ବ୍ରହ୍ମାଙ୍କ ସହିତ ଅଥର୍ବ ବେଦ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ । ଋତ୍ୱିକ ବ୍ରହ୍ମା ଯଦିଓ ତିନୋଟି ବେଦକୁ ଉତ୍ତମ ରୂପେ ଜାଣିଥାନ୍ତି ତଥାପି ତାଙ୍କ ନିମିତ୍ତ ସଂକଳିତ ହୋଇଥିବା ବେଦର ନାମ ହେଉଛି ଅଥର୍ବ । ନିରୁକ୍ତ ଓ ଗୋପଥ ବ୍ରାହ୍ମଣ ଗ୍ରନ୍ଥରେ (୧୦୬) 'ଥର୍ବ' ଧାତୁ କୁଟିଳ ତଥା ହିଂସା ସୂଚକ ଅର୍ଥରେ ବ୍ୟବହୃତ ହୋଇଛି । ତେଣୁ ଅଥର୍ବ ଶବ୍ଦର ଅର୍ଥ ହେଲା - ମନକୁ "ଅହିଂସ ବୃତ୍ତିରେ ତଥା ଅକୁଟୀଳତାରେ ସ୍ଥିର ରଖିବା" । ଅଥର୍ବ ବେଦର ବୈଶିଷ୍ଟ୍ୟ ଯେ କେବଳ ଐହିକ ଫଳପ୍ରାପ୍ତିରେ ପର୍ଯ୍ୟବେସିତ ତାହା ନୁହେଁ, ବରଂ ଅଥର୍ବ ବେଦ ଆମୁଷ୍ମିକ ବୋଲି ଲୌକିକ ତଥା ପାରଲୌକିକ ଫଳପ୍ରାପ୍ତି ସହିତ ସଂପୃକ୍ତ । ଅଥର୍ବ ବେଦ ସମେତ ଅନ୍ୟାନ୍ୟ ବୈଦିକ ଗ୍ରନ୍ଥମାନଙ୍କରେ ଅଥର୍ବ ବେଦ ନିମ୍ନଲିଖିତ ବିଭିନ୍ନ ନାମରେ ପରିଚିତ । (କ) ଅଥର୍ବନ୍ (ଖ) ଅଥର୍ବାଙ୍ଗିରସ (ଏକ ବଚନରେ) (ଗ) ଅଥର୍ବାଙ୍ଗୀରସଃ ( ବହୁବଚନରେ) (ଘ) ଅଥର୍ବଣ (ଙ) ଅଥର୍ବାଙ୍ଗିରସ (ଚ) ଅଥର୍ବାଣ (ଛ) ଅଥର୍ବ - ବେଦ ।(୧୦୭) ଅଥର୍ବବେଦରେ ଗୋଟିଏ ମନ୍ତ୍ରରେ ଅଥର୍ବନ ଓ ଅଙ୍ଗୀରସକୃତ ସୃଷ୍ଟିକୁ ଅନ୍ୟାନ୍ୟ ତିନି ବେଦ ସହିତ ବେଦ ପର୍ଯ୍ୟାୟରେ ନିଆଯାଇଛି ଏବଂ ମହାକାଳକୁ ପ୍ରାର୍ଥନା ପ୍ରସଙ୍ଗରେ କୁହାଯାଇଛି ଯେ ଏହା ହେଉଛି ତାହାର ସୃଷ୍ଟି ।(୧୦୮) ପରବର୍ତ୍ତୀକାଳରେ ସୃଷ୍ଟ ହୋଇଥିବା ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ମଧ୍ୟ ଏହାକୁ ବେଦର ସ୍ଥାନ ଦିଆଯାଇଛି । ଶତପଥ ବ୍ରାହ୍ମଣରେ ସ୍ପଷ୍ଟ ଭାବରେ କୁହାଯାଇଛି ଅଥର୍ବନ ଋଷିଙ୍କ ଦ୍ୱାରା ସୃଷ୍ଟ ମନ୍ତ୍ରରାଶି ବେଦ ; ଅଙ୍ଗୀରସ ଋଷିଙ୍କ ଦ୍ୱାରା ସୃଷ୍ଟ ମନ୍ତ୍ରରାଶି ବେଦ (୧୦୯) । ତୈତ୍ତିରୀୟ ସଂହିତାରେ ଅଥର୍ବବେଦ ନାମ ଦୁଇ ଥର ଉଲ୍ଲିଖିତ । ତହିଁରେ ଋକ୍ , ଯଜୁ, ସାମ ଓ ଅଥର୍ବକୁ ଇତିହାସ ପ୍ରସିଦ୍ଧ ପୁରୁଣା ବେଦ ବୋଲି କୁହାଯାଇଛି । କେବଳ ସଂହିତାମାନଙ୍କରେ ନୁହେଁ ଅନ୍ୟାନ୍ୟ ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ ଗ୍ରନ୍ଥମାନଙ୍କରେ ଅଥର୍ବ ବେଦକୁ ବେଦର ଆସନ ଦିଆଯାଇଛି । ଏ ଦୃଷ୍ଟିରୁ ବିଗ୍ୱର କଲେ ଅଥର୍ବ ବେଦର ସୃଷ୍ଟି ତିନି ବେଦର ବହୁ ପରେ ହୋଇଥିଲେ ମଧ୍ୟ ଭାରତୀୟ ପରମ୍ପରାରେ ଏହା ବେଦର ମାନ୍ୟତା ଲାଭ କରିଛି ।

ଏହାକୁ ଅଥର୍ବନ ଓ ଅଙ୍ଗୀରସ ଦୁଇ ଋଷିଙ୍କର ସୃଷ୍ଟି ବୋଲି କୁହାଯାଏ । ସେଥିପାଇଁ କେତେକ ସ୍ଥାନରେ 'ଅଥର୍ବାଙ୍ଗୀରସଃ' ବୋଲି କୁହାଯାଇଛି । ଗୋପଥ ବ୍ରାହ୍ମଣରେ ଅଥର୍ବ ବେଦର ସୃଷ୍ଟି ସଂପର୍କରେ ଏକ କାହାଣୀ ଅଛି । (୧୧୦) "ଏହି କାହାଣୀ ଅନୁସାରେ ପୁରାକାଳରେ ବ୍ରହ୍ମା ସୃଷ୍ଟିର ଉତ୍ପତ୍ତି ଲାଗି ଖୁବ୍ କଠିନ ତପସ୍ୟା କରିଥିଲେ । ଏହି ତପସ୍ୟାର ପ୍ରଭାବରେ ତାଙ୍କ ଦେହରୁ ଦୁଇଟି ଜ୍ୟୋତିର୍ମୟୀ ଧାରା ବାହାରୁଥିଲା । ତନ୍ମଧ୍ୟରୁ ଗୋଟିଏ ଧାରାରୁ ଅଥର୍ବନ୍ ଋଷିଙ୍କର ଜନ୍ମ ହେଲା ଏବଂ ଅପରଧାରାରୁ ଅଙ୍ଗୀରା ଋଷିଙ୍କର ଜନ୍ମ ହେଲା । ଏହି ଦୁଇ ଋଷି ଯାହାର ମନ୍ତ୍ର ଦ୍ରଷ୍ଟା ହେଲେ ତାହାକୁ କୁହାଗଲା ଅଥର୍ବ ବେଦ" । ମନ୍ତ୍ର, ତନ୍ତ୍ର, ମାରଣ, ତାରଣ, ସମ୍ମୋହନ, ଉଚ୍ଚାଟନ, ବଶୀକରଣ, ଆୟୁର୍ବେଦ ସଂପର୍କୀୟ ଯେଉଁ ମନ୍ତ୍ରଗୁଡିକ ଅଛି ସେ ଗୁଡିକର ଦ୍ରଷ୍ଟା ହେଲେ ଅଥର୍ବନ ଋଷି । ସେ ଗୁଡିକ ହେଲା- ଯାଗ ଯଜ୍ଞ, ବ୍ରହ୍ମ ବିଦ୍ୟା, ଶାନ୍ତି ବର୍ଦ୍ଧନ, ପୁଷ୍ଟିବର୍ଦ୍ଧନ ଆଦି ମନ୍ତ୍ର । ଅଙ୍ଗୀରସ ଋଷିଙ୍କ ମନ୍ତ୍ର ଗୁଡିକ ଆଭିଗ୍ୱରିକ । ତାହା ବ୍ୟକ୍ତିଗତ ସୁଖ ଦୁଃଖ ଲାଗି ଅଭିପ୍ରେତ । ମାରଣ, ତାରଣ ଆଦି ମନ୍ତ୍ର ଗୁଡିକ ଜଣକୁ ସୁଖ ଦେଉଥିଲା

ବେଳେ ଏହାର ପ୍ରୟୋଗ ଯାହା ଉପରେ କରାଯାଏ, ତାହାକୁ ଦୁଃଖ ଦିଏ । ଏହା ଦ୍ୱାରା ରୋଗ ଭଲ କଲା ଭଳି ଭଲ ଉଦ୍ଦେଶ୍ୟ ଯେତିକି ସାଧିତ ହୁଏ, ସମ୍ମୋହନ, ବଶୀକରଣ, ମାରଣ ଦ୍ୱାରା ଖରାପ ଉଦ୍ଦେଶ୍ୟ ମଧ୍ୟ ସେତିକି ସାଧିତ ହୁଏ । ଅଥର୍ବ ବେଦରେ ଏହି ଦିଗଟି ହଉଛି କଳା ଦିଗ । ବୈଦିକ ସାହିତ୍ୟରେ ଅଙ୍ଗୀରସ ଋଷିଙ୍କ ଚେହେରା ନିପଟ କଳା ବୋଲି କୁହାଯାଇଛି । ସେଥିପାଇଁ ବେଦରେ ଏଭଳି କଳ୍ପନା କରାଯାଇଛି । ଏହି ଦୁଇ ଧାରାର ସମିଶ୍ରଣରେ ସୃଷ୍ଟି ହୋଇଥିବା ଅଥର୍ବ ବେଦରେ ବର୍ଣ୍ଣିତ ବିଷୟବସ୍ତୁ ପ୍ରତି ଲକ୍ଷ୍ୟ କରି ବଳଦେବ ଉପାଧ୍ୟାୟ ଯାହା କହିଛନ୍ତି, ତାହା ଯଥାର୍ଥରେ ପ୍ରଣିଧାନ ଯୋଗ୍ୟ । (୧୧୧) ଅଥର୍ବବେଦ ଶାନ୍ତି ବର୍ଦ୍ଧନ ଓ ପୁଷ୍ଟିବର୍ଦ୍ଧନ ଲାଗି ଉଦ୍ଦିଷ୍ଟ ବୋଲି ଭାଗବତରେ ମଧ୍ୟ ସ୍ପଷ୍ଟ ଭାବରେ କୁହାଯାଇଛି ।(୧୧୨)

**ଅଥର୍ବ ବେଦର ଶାଖା –**

ଅଥର୍ବ ବେଦର ୯ଟି ଶାଖା ଥିବାର ଜଣାପଡେ । ସେଗୁଡିକ ହେଲା - (୧) ପିପ୍ପଲାଦ (୨) ସ୍ତୌଦ (ବା ତୌଦ), (୩) ମୌଦ, (୪) ଶୌନକୀୟ, (୫) ଜାଜଳ, (୬) ଜଳଦ (୭) ବ୍ରହ୍ମବଦ (୮) ଦେବଦର୍ଶ, (୯) ଚାରଣ ବେଦ୍ୟ । (୧୧୩) ଚରଣବ୍ୟୂହ ତଥା ମହାଭାଷ୍ୟରେ ଅନ୍ତର୍ଗତ ପସ୍ପାଶାହ୍ନିକର "ନବଧାଽଥର୍ବଣୋ ବେଦଃ" ଉଲ୍ଲେଖରୁ ଏହା ସ୍ପଷ୍ଟ ଅନୁମିତ ହୁଏ ଯେ ଅଥର୍ବବେଦର ଶାଖା ୯ ପ୍ରକାର ଅଟେ । ଭାଗବତ ଅନୁସାରେ ବେଦବ୍ୟାସ ସୁମନ୍ତଙ୍କୁ ଅଥର୍ବ ବେଦ ପଢାଇଥିଲେ । (୧୧୪) ବିଷ୍ଣୁ ପୁରାଣରୁ ଜଣାପଡେ ସୁମନ୍ତ ଋଷି ନିଜ ଶିଷ୍ୟ କବନ୍ଧଙ୍କୁ ଅଥର୍ବ ବେଦ ପଢାଇଥିଲେ । (୧୧୫) କବନ୍ଧ ନିଜ ଶିଷ୍ୟ ଦେବଦର୍ଶ ଏବଂ ପଥ୍ୟଙ୍କୁ ଅଥର୍ବ ବେଦ ପଢାଇଥିଲେ । ଶୌଲ୍କାୟନିକ, ବ୍ରହ୍ମବଳି, ମୌଦ୍‌ଗଲ ଓ ପିପ୍ପଲାଦ ଦେବଦର୍ଶଙ୍କ ଠାରୁ ଅଥର୍ବ ବେଦ ପାଠ କରିଥିଲେ । ଶୌନକ, ବଭ୍ରୁ ଏବଂ ସୈନ୍ଧବାୟନଙ୍କୁ ଅଥର୍ବ ବେଦ ଶିକ୍ଷା ଦେଇଥିଲେ । ଉପରୋକ୍ତ ମୁନିମାନଙ୍କ ଦ୍ୱାରା ଅଥର୍ବ ବେଦ ଲୋକ ସମାଜରେ ପ୍ରସାର ଲାଭ କରିଥିଲା ।

**ଅଥର୍ବ ବେଦର ବିଷୟ ବିବଚନ –**

ଅଥର୍ବ ବେଦରେ କୋଡିଏଟି କାଣ୍ଡ ରହିଅଛି । ଏ ସଂପର୍କରେ ଗୋଟିଏ ପରମ୍ପରାଗତ କାହାଣୀ ଅଛି । ଭୃଗୁ ଋଷି ( ଅଥର୍ବନ୍ ବଂଶଜ ) ଥିଲେ କୋଡିଏଟି ପୁଅଙ୍କର ବାପା । ତେଣୁ ପ୍ରତ୍ୟେକ ପୁଅଙ୍କୁ ଅନୁସରଣ କରି ଅଥର୍ବ ବେଦରେ କୋଡିଏଟି କାଣ୍ଡ ରାଖାଯାଇଛି । ଏହି କୋଡିଏଟି କାଣ୍ଡ ପୁଣି ୪୮ ପ୍ରପାଠକରେ ବିଭକ୍ତ । କେତେକଙ୍କ ମତରେ ଏହା ୩୪ ଟି ପ୍ରପାଠକରେ ବିଭକ୍ତ । ଏହି ସବୁ ପ୍ରପାଠକ ଗୁଡିକରେ ସର୍ବ ମୋଟ ୭୩୦/୭୩୧ ସୂକ୍ତ ଓ ୬୦୦୦ ମନ୍ତ୍ର ରହିଅଛି ।

କେତେକଙ୍କ ମତରେ ଅଥର୍ବ ବେଦର ୧୯ ଏବଂ ୨୦ କାଣ୍ଡ ପ୍ରାରମ୍ଭିକ କାଳରେ ଅଥର୍ବ ବେଦ ସହିତ ନଥିଲା । ଏହା ପରବର୍ତ୍ତୀ କାଳର ରଚନା ବୋଲି ସେମାନେ ମତ ଦେଇଅଛନ୍ତି । ଅଥର୍ବ ବେଦର ଏକ ପଞ୍ଚମାଂଶ ମନ୍ତ୍ର ଋଗ୍‌ବେଦରୁ ଗୃହୀତ ହୋଇଅଛି । ଅଥର୍ବ ବେଦର ପୁରୋହିତ ବର୍ଗଙ୍କୁ ଦେବତା ରୂପେ ଗ୍ରହଣ କରାଯାଇଛି । ଅଭିଗ୍ରର ମନ୍ତ୍ର ପାଇଁ ଅଥର୍ବ ବେଦ ସେ କାଳରେ ବିଶେଷ ଲୋକପ୍ରିୟତା ହାସଲ କରିଥିଲା । ଅଥର୍ବ ବେଦର ପ୍ରାଚୀନ ବିଧାନ ଗୁଡିକ କ୍ରମେ ଲୋପ ପାଇଯାଇଛି ।

ବର୍ତ୍ତମାନ ଅଥର୍ବବେଦର କେବଳ 'ପୈପ୍‌ପଳାଦ ଓ ଶୌନକ', ଶାଖା ଦୁଇଟି ମିଳୁ ଅଛି,

ମାତ୍ର ଅନ୍ୟ ସାତଟି ଶାଖା ଅବଲୁପ୍ତ । ସାରାଭାରତରେ 'ପୈପଲାଦ' ଶାଖାର ବ୍ରାହ୍ମଣ ଖୁବ୍ କମ୍ ଅଛନ୍ତି । ଓଡିଶାର ମୟୁରଭଂଜ ଜିଲ୍ଲାରେ ଏହି ଗୋଷ୍ଠୀର ଅଳ୍ପ କେତେକ ବ୍ରାହ୍ମଣ ରହିଅଛନ୍ତି । ବେଦତ୍ରୀୟ ଅପେକ୍ଷା ଅଥର୍ବ ବେଦର ପୃଥକ ମହତ୍ତ୍ୱ ରହିଅଛି । ଅନ୍ୟ ବେଦ ଗୁଡିକରେ ଯାଗ ଯଜ୍ଞ ଓ ପାର ଲୌକିକ ବିଷୟବସ୍ତୁ ଉପରେ ପ୍ରାଧାନ୍ୟ ଦିଆଯାଇଛି ମାତ୍ର ଅଥର୍ବ ବେଦରେ ଲୌକିକ ଜୀବନର ସୁଖ ଶାନ୍ତି ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଏଥିରେ ଆଶ୍ରମ ଧର୍ମ ଓ ଗୃହାସ୍ଥାଶ୍ରମ ଲାଗି ବିଶେଷ ବ୍ୟବସ୍ଥା ରହିଅଛି । ଅଥର୍ବ ବେଦରେ ଋଗ୍ ବେଦ ପରି ଅଗ୍ନି, ଇନ୍ଦ୍ର, ଆଦି ଦେବତାଙ୍କ ବର୍ଣ୍ଣନା ମିଳେ । ମାତ୍ର ସେମାନଙ୍କର ଚରିତ୍ର ସଂପର୍କରେ ବିଶେଷ ଉତ୍କୃଷ୍ଟତା ପ୍ରତିପାଦନ ହୋଇନାହିଁ । ଦେବତାମାନେ ଯେ ପ୍ରାକୃତିକ ଶକ୍ତିର ପ୍ରତୀକ ଏକଥା ଅଥର୍ବ ବେଦରେ କାଁ, ଭାଁ ଦେଖାଯାଉ ଥିଲେହେଁ ଏହା ଶିଥିଳ ହୋଇ ପଡିଛି । ଅଥର୍ବର ମନ୍ତ୍ର ଗୁଡିକ ରାକ୍ଷସର ବିନାଶ ନିମିତ୍ତ ଉଦ୍ଦିଷ୍ଟ । ଦେବତାମାନେ ରାକ୍ଷସ ନିଧନ ନିମିତ୍ତ ଆହୂତ ଓ ପ୍ରସ୍ତୁତ ହେଉଥିଲେ । ଶେଷରେ ଦେବତାମାନଙ୍କର କେବଳ ରାକ୍ଷସ ବିନାଶ ଓ ଶତ୍ରୁ ଦମନ ପ୍ରଧାନ କାର୍ଯ୍ୟ ହୋଇ ଉଠିଥିଲା ।

**ଆୟୁର୍ବେଦ –**

ଆୟୁର୍ବେଦ ଅଥର୍ବ ବେଦର ଏକ ପ୍ରଧାନ ଅଙ୍ଗ । ଏହା ଚିକିତ୍ସା ସଂବନ୍ଧ ମନ୍ତ୍ର । ଅଥର୍ବରେ ଆୟୁର୍ବେଦ ଶାସ୍ତ୍ରର ସିଦ୍ଧାନ୍ତ ତଥା ବ୍ୟବହାରର ସ୍ପଷ୍ଟ ଉଲ୍ଲେଖ ମିଳେ । ସେଥିରୁ ଆୟୁର୍ବେଦ ଶାସ୍ତ୍ରର ପ୍ରାଚୀନତାର ପ୍ରମାଣ ମିଳେ । ଆୟୁର୍ବେଦର ବ୍ୟବହାର ଇନ୍ଦ୍ରଜାଲର ବିଧିବିଧାନ ଉପରେ କେତେକ ସ୍ଥାନରେ ଆଧାରିତ । ଐନ୍ଦ୍ରଜାଲିକଙ୍କୁ ସେତେବେଳେ ଭେଷଜ ( କବିରାଜ ) ବୋଲି କୁହାଯାଉଥିଲା । ପୈଶାଚିକ ଶକ୍ତି ରୋଗର ଉତ୍ପାଦକ ଭାବରେ ଗୃହୀତ ହେଉଥିଲେ । ତେଣୁ ଏହାର ନିରାକରଣ ନିମିତ୍ତ ଐନ୍ଦ୍ରଜାଲିକର ସାହାଯ୍ୟ ନିଆ ଯାଉଥିଲା । ରାକ୍ଷସମାନେ ରୋଗର କାରଣ ଥିଲେ ବୋଲି ସେ କାଳର ଜନପ୍ରିୟ ବିଶ୍ୱାସ ଥିଲା । ଅଥର୍ବରେ ଚିକିତ୍ସାତ୍ମକ ଔଷଧିର ଆବାହକ ସ୍ୱରୂପ ମନ୍ତ୍ର ମିଳେ । ଅତୁଟ ବିଶ୍ୱାସ ଯୋଗୁଁ ରୋଗୀ ରୋଗ ମୁକ୍ତ ହେଉଥିଲା । 'ଜଳପରକ' ନାମକ ଏକ ମନ୍ତ୍ର ଅଥର୍ବ ବେଦରେ ଦେଖାଯାଏ । ଏଥିରୁ ଜଣାପଡେ ସେ କାଳର କେବଳ ଜଳ ଦ୍ୱାରା ଏକ ପ୍ରକାର ଚିକିତ୍ସା କରାଯାଉଥିଲା । 'ଜଳପରକ' ଭଳି 'ଅଗ୍ନି ପରକ' ହେଉଛି ଅନ୍ୟ ଏକ ମନ୍ତ୍ର । ଏଥିରେ ଅନେକ ରୋଗର ଲକ୍ଷଣ ଓ ଚିହ୍ନ ସ୍ପଷ୍ଟ ରୂପେ ବର୍ଣ୍ଣିତ ହୋଇଛି । ରୋଗ, ରୋଗର ପ୍ରତିକାର ଓ ଔଷଧ ବିଷୟରେ ଅଥର୍ବ ବେଦର ଅନେକ ଉପଯୋଗୀ ବୈଜ୍ଞାନିକ ବିଶ୍ଳେଷଣ ଦେଖାଦିଏ ।(୧୧୬) ତକମ୍ ରୋଗର (ଜ୍ୱର) ତଥା ସତତ - ଶାରଦ - ଗ୍ରୈଷ୍ମ -ଶୀତ - ବାର୍ଷିକ -ତୃତୀୟକ, ଆଦି ଜ୍ୱରମାନଙ୍କର ପ୍ରଭେଦର ଉଲ୍ଲେଖ ମିଳେ (୧୧୭) ହୃଦୟ ଓ ଅକ୍ଷିକୁ ପୀଡା ପ୍ରଦାନ କରୁଥିବା ରୋଗ (୧୧୮) ଅପଚିତ ଗଣ୍ଡମାଳା (୧୧୯) ଯକ୍ଷ୍ମା, ବିଦ୍ରଥ, ବାତିକାର ଆଦି ଅନେକ ରୋଗର ବର୍ଣ୍ଣନା ଦେଖିବାକୁ ମିଳେ । (୧୨୦)

ଅଥର୍ବବେଦରେ ରୋଗ ସଂପର୍କରେ ଯେତିକି ବର୍ଣ୍ଣନା ମିଳେ ତାହାର ପ୍ରତିକାର ସଂପର୍କରେ ମଧ୍ୟ ସେହିପରି ବର୍ଣ୍ଣନା ମିଳିଥାଏ । ଆଧୁନିକ ଅସ୍ତ୍ର ଚିକିତ୍ସା ଭଳି ସେକାଳରେ ବିସ୍ମୟକାରୀ ଶଲ୍ୟ ଚିକିତ୍ସା ପ୍ରଣାଳୀ କି ଭଳି ଥିଲା ତାହା ଅଥର୍ବ ବେଦରେ ବର୍ଣ୍ଣିତ ହୋଇଛି । ମୂତ୍ରାଘାତ ରୋଗରେ ସେ ଯୁଗର 'ଶରଶଳାକା' ଦ୍ୱାରା ମୂତ୍ର ନିଃସାରଣ କରାଯାଉଥିଲା । (୧୨୧) ଜଳ ଧାବନ ଦ୍ୱାରା ବ୍ରଣର ଉପଶ୍ୱର କରାଯାଉଥିଲା । (୧୨୨) ସୁଖ ପ୍ରସବ ନିମିତ୍ତ ଯୋନି ଭେଦନ କରାଯାଉଥିଲା । (୧୨୩)

ନାନା ପ୍ରକାର କୃମି ବିଭିନ୍ନ ରୋଗର ଉତ୍ପାଦକ ଥିଲେ ବୋଲି ଅଥର୍ବ ବେଦରେ ବର୍ଣ୍ଣିତ ହୋଇଅଛି । ଏହି କୃମି ମାନଙ୍କର ନିବାରଣ ଓ ବିନାଶର ଉପାୟ ମଧ୍ୟ ଅଥର୍ବରେ ଦର୍ଶାଯାଇଅଛି । (୧୨୪) ସୂର୍ଯ୍ୟ କିରଣରେ କୃମି ବିନାଶ କରାଯାଉଥିବାର କଥା କୁହାଯାଇଛି । ଅଥର୍ବ ବେଦରେ "ବିଷସ୍ୟ ବିଷମୌଷଧମ"(୧୨୫) ଉଲ୍ଲିଖିତ ହୋଇଅଛି । ଅଥର୍ବ ବେଦରେ କେତେକ ସ୍ଥାନରେ ବ୍ୟାଧି ଗୋଟିଏ ରୋଗୀକୁ ଛାଡି ଅନ୍ୟ ରୋଗୀ ନିକଟକୁ ଏବଂ ଗୋଟିଏ ଦେଶ ଛାଡି ଅନ୍ୟ ଦେଶକୁ ଗମନା ଗମନ କରୁଥିବାର ଅନୁମାନ କରାଯାଇଛି ।

**ଅଭିଗ୍ରର ମନ୍ତ୍ର –**

ଋଗ୍‌ବେଦରେ ଅପରିମିତ ଶକ୍ତିଶାଳୀ ଦେବତାମାନଙ୍କର ବର୍ଣ୍ଣନା ଦେଖିବାକୁ ମିଳୁଥିଲା ବେଳେ, ଅଥର୍ବ ବେଦରେ ଭୟାନକ ପିଶାଚମାନଙ୍କର ଉଲ୍ଲେଖ ରହିଅଛି । ଏହି ପୈଶାଚକ ଶକ୍ତି ମାନବ ସମାଜର ଅନିଷ୍ଟ ସାଧନ କରୁଥିଲା । ଏହିମାନଙ୍କର ପ୍ରଭାବରେ ମାନବ ସମାଜ ରୋଗ ଗ୍ରସ୍ତ ହେଉଥିଲା । ଦୁଃଖର ପ୍ରଭାବ ସମାଜରେ ପ୍ରବାହିତ ହେଉଥିଲା । ସେ କାଳରେ ଭୂତ ପ୍ରେତାଦିଙ୍କ ଠାରେ ବିଶ୍ୱାସ ଥିଲା । ମାୟାବୀ ମନ୍ତ୍ର ଓ ଅଭିଶାପ ପ୍ରୟୋଗ ଦ୍ୱାରା ଭୂତମାନଙ୍କୁ ପ୍ରସନ୍ନ କିମ୍ବା ଅପସାରଣ କରାଯାଉଥିଲା । କୃମି ଓ କୀଟମାନଙ୍କୁ ଅଥର୍ବ ବେଦରେ ପିଶାଚ ଭାବରେ ବର୍ଣ୍ଣନା କରାଯାଇଛି । ପ୍ରାରମ୍ଭିକ ରୂପରେ ପିଶାଚ, ଭୂତ ଆଦି ପ୍ରକୃତି, ନଦୀ ଓ ଅରଣ୍ୟର ଦେବତା ରୂପେ ଗୃହୀତ ହେଉଥିଲେ । ସେମାନେ ସୁନ୍ଦର ବୃକ୍ଷ ଓ ନଦୀରେ ବାସ କରୁଥିଲେ । ଯେତେବେଳେ ମନୁଷ୍ୟକୁ ଆକର୍ଷଣ କରିବାକୁ ପଡୁଥିଲା ସେତେବେଳେ ସେମାନେ ନିଜ ସ୍ଥାନ ଛାଡୁଥିଲେ । ଭୂତ, ପିଶାଚଙ୍କୁ ଅପସାରଣ କରିବା ନିମିତ୍ତ ଐନ୍ଦ୍ରିଜାଲିକ 'ଅଜଶୃଙ୍ଗି' ଧୂପ ବ୍ୟବହାର କରୁଥିଲେ । ସେଥିରୁ ଏକ ପ୍ରକାର ସୁଗନ୍ଧି ବାହାରୁଥିଲା । ଅଥର୍ବ ବେଦର 'ମନ୍ତ୍ରୋଗ୍ରରଣ' ସହିତ 'ଅଜଶୃଙ୍ଗି'ର ବ୍ୟବହାର କରାଯାଉଥିଲା ।

ଅଥର୍ବ ବେଦରେ ଗନ୍ଧର୍ବ ଓ ଅପ୍ସରାମାନଙ୍କର ନୃତ୍ୟ ଓ ସଂଗୀତ ଗାନର ବର୍ଣ୍ଣନା ଦେଖିବାକୁ ମିଳେ । ଅଥର୍ବର ଇନ୍ଦ୍ରଜାଲ ସମ୍ବନ୍ଧୀ ମନ୍ତ୍ରରେ ଗନ୍ଧର୍ବ କେତେବେଳେ କେଶଯୁକ୍ତ ନବ ଯୁବକର ରୂପ ଗ୍ରହଣ କରୁଥିବାବେଳେ ଅନ୍ୟ କେତେବେଳେ କୁକୁର ଓ ମର୍କଟର ରୂପ ଧାରଣ କରିଥାନ୍ତି । ସେକାଳରେ ସୁବାସିତ ଲତା ଦ୍ୱାରା ଭୂତପ୍ରେତମାନଙ୍କୁ ଦୂର କରାଯାଉଥିଲା ।

ଅଭିଗ୍ରର ମନ୍ତ୍ରର ପ୍ରୟୋଗ ସମ୍ବନ୍ଧରେ ଅନେକ ବିଧାନ ରହିଅଛି । ଗୋଟିଏ ବିଧାନ ଅଥର୍ବ ବେଦର କୌଶିକ ସୂତ୍ରରେ ( ୩/ ୨୫ / ୧-୫) ଉଲ୍ଲିଖିତ । 'ଗୋଟିଏ ଝିଅକୁ ପ୍ରେମ କରୁଥିବା ଲୋକ କିପରି ଭାବରେ ତାକୁ ପାଇ ପାରିବ, କିପରି ଭାବରେ ତାର ହୃଦୟକୁ କିଣି ପାରିବ ତାହା ଏଥିରେ ବର୍ଣ୍ଣିତ । ପ୍ରେମିକକୁ ଝିଅଟିର ମୂର୍ତ୍ତି ମାଟିରେ ଗଢାଇବାକୁ ହେବ । ତା ପରେ ତା'ର ଛାତିକୁ କଣ୍ଟକ ଖଚିତ ଗୋଟିଏ ଶର ମନ୍ତ୍ର ବୋଲି ନିକ୍ଷେପ କରିବାକୁ ହେବ । ଏହା କଲେ ଝିଅଟିର ହୃଦୟକୁ ସେ ଜିଣି ପାରିବ '। ଏହିପରି ଅନେକ "ଅଭିଗ୍ରର ବିଧାନ" ରହିଅଛି । ଏଗୁଡିକ ସାଧାରଣ ଜନତାର ବିଶ୍ୱାସକୁ ଅନୁସରଣ କରୁଥିଲା ।(୧୨୬) ଅଥର୍ବ ବେଦରେ ଅନେକ ଲୌକିକ ବିଷୟବସ୍ତୁର ଅବତାରଣା କରାଯାଇଛି । ସେଗୁଡିକ ହେଲା-

(କ)	ଜ୍ୱର ଭଲ ହେବା ପାଇଁ ମନ୍ତ୍ର - (୧୨୬କ)
(ଖ)	କାଶ ଭଲ ହେବା ପାଇଁ ମନ୍ତ୍ର - (୧୨୬ଖ)
(ଗ)	ଝାଡା ପରିସ୍ରା ବନ୍ଦ ହୋଇଗଲେ ତାହାର ଆରୋଗ୍ୟ ମନ୍ତ୍ର । (୧୨୬ଗ)
(ଘ)	ପେଟମରା ରୋଗ ପାଇଁ ମନ୍ତ୍ର- (୧୨୬ଘ)
(ଙ)	ହାତ ଭାଙ୍ଗି ଯାଇଥିଲେ ତାହାକୁ ଆରୋଗ୍ୟ କରିବା ମନ୍ତ୍ର ( ୧୨୬ଙ)
(ଚ)	ମୂତ୍ର ଚିକିତ୍ସାରେ ଘା ଭଲ କରିବା ମନ୍ତ୍ର- ( ୧୨୬ଚ)
(ଛ)	ବ୍ରାହ୍ମଣମାନଙ୍କ ଅତ୍ୟାଚାରୀମାନଙ୍କୁ ଦମନ କରିବା ମନ୍ତ୍ର (୧୨୬ଛ)
(ଜ)	ସାର୍ବଭୌମ କ୍ଷମତା ପାଇବା ପାଇଁ ମନ୍ତ୍ର ( ୧୨୬ଜ)
(ଝ)	ସାପ ବିଷ ଝାଡିବା ମନ୍ତ୍ର (୧୨୬ଝ) ।

ଏହି ମନ୍ତ୍ର ଗୁଡିକ ସାଧାରଣ ଜନତାକୁ ପ୍ରଭାବିତ କରୁଥିଲା । ଏ ସମସ୍ତ ମୁଖ୍ୟତଃ 'ଅଭିଚାର' ମନ୍ତ୍ର ଥିଲା ।

**ଇନ୍ଦ୍ରଜାଲ –**

ମଣିଷ ଇନ୍ଦ୍ରଜାଲ ( କୁହୁକ) ବିଦ୍ୟା ଦେଖିବାକୁ ଭଲ ପାଏ । ଇନ୍ଦ୍ରଜାଲ ମଣିଷର ଆଦିମ ବିଶ୍ୱାସ । ଇନ୍ଦ୍ରଜାଲ ବିଦ୍ୟା ସବୁ ଦେଶରେ ଲୋକପ୍ରିୟତା ହାସଲ କରିଥିଲା । ଅଥର୍ବ ବେଦରେ ଇନ୍ଦ୍ରଜାଲ ସହିତ ଅନେକ ମନ୍ତ୍ର ଦେଖାଯାଏ । ଇନ୍ଦ୍ରଜାଲ ସହିତ ସଂପୃକ୍ତ ମନ୍ତ୍ର ଗୁଡିକ ଚିତ୍ରୋପମା ଓ ଉତ୍କୃଷ୍ଟ ସୁଖପାଠ୍ୟ ଭାଷାରେ ରଚିତ ହୋଇଛି । ଅଥର୍ବ ବେଦରେ ରକ୍ତର ପ୍ରବାହକୁ ବନ୍ଦ କରିବାକୁ ଯାଇ ଐନ୍ଦ୍ରଜାଲିକ କହୁଛି "ଧମନୀ ଗୁଡିକ ରକ୍ତ ପରି ଲାଲବସ୍ତ୍ର ବିଭୂଷିତ ସୁନ୍ଦରୀ କାମିନୀ ସ୍ୱରୂପ ପ୍ରବାହିତ ହେଉଅଛନ୍ତି" । (୧୨୭) ଅଥର୍ବ ବେଦର ଐନ୍ଦ୍ରଜାଲିକ ମନ୍ତ୍ର ପୃଥିବୀର ଅନ୍ୟାନ୍ୟ ଦେଶର ଐନ୍ଦ୍ରଜାଲିକ ମନ୍ତ୍ର ଭଳି ସହଜ ସାଧ୍ୟ ନୁହେଁ । ଏଥିରେ ଭାବପ୍ରବଣତା ଓ ସାହିତ୍ୟିକ ଚାତୁରୀର ପରିଚୟ ମିଳେ ।

ଅଥର୍ବ ବେଦର କାଣ୍ଡ ଗୁଡିକରେ ସଂକଳିତ ସୂକ୍ତ ଗୁଡିକର ସଂପୂର୍ଣ୍ଣ ଆଲୋଚନା ସମ୍ଭବ ନୁହେଁ । ମାତ୍ର ତନ୍ମଧ୍ୟରୁ କେତେକର ଆଲୋଚନା ଏ ସ୍ଥାନରେ କରାଯାଉଛି । ଯେଉଁଥିରୁ ଲୌକିକ ଜୀବନର କଥା କିଭଳି ଅଥର୍ବ ବେଦରେ ପ୍ରାଧାନ୍ୟ ଦିଆ ଯାଇଛି ତାହା ସହଜରେ ଅନୁମାନ କରିହେବ ।

**ଆୟୁଷ୍ୟ ସୂକ୍ତ –**

ଅଥର୍ବ ବେଦରେ ଦୀର୍ଘ ଆୟୁଷ ନିମିତ୍ତ କେତେକ ମନ୍ତ୍ରରେ ବର୍ଣ୍ଣନା କରାଯାଇଛି । ପାରିବାରିକ ଉତ୍ସବରେ ଏହି ମନ୍ତ୍ର ଗୁଡିକ ପ୍ରୟୋଗ କରାଯାଉଥିଲା । ଯୁବକର ପ୍ରଥମ କ୍ଷୌର କର୍ମ ଓ ମୁଣ୍ଡନ ଉତ୍ସବରେ ଏହି ମନ୍ତ୍ର ପାଠ କରାଯାଉଥିଲା । 'ଏକ ଶତ ଶରଦ ଓ ଏକଶତ ହେମନ୍ତ' ପର୍ଯ୍ୟନ୍ତ ଜୀବିତ ରହିବା ପାଇଁ ସେହି ସୂକ୍ତ ଗୁଡିକରେ ପ୍ରାର୍ଥନା କରାଯାଇଛି । ପ୍ରତ୍ୟେକ ରୋଗରୁ ଓ ମୃତ୍ୟୁଠାରୁ ରକ୍ଷା ପାଇବା ପାଇଁ ସେଗୁଡିକରେ ପ୍ରାର୍ଥନା କରାଯାଇଛି । ଦୀର୍ଘାୟୁ ନିମିତ୍ତ ହାତରେ 'ରକ୍ଷାସୂତ୍ର' ବନ୍ଧନର ବ୍ୟବସ୍ଥା ମଧ୍ୟ ଥିଲା ।

### ପୌଷ୍ଟିକ ସୂକ୍ତ –

ପୌଷ୍ଟିକ ସୂକ୍ତର ସ୍ୱରୂପ ହେଉଛି ଆଶୀର୍ବଚନ । ଏହି ସୂକ୍ତମାନଙ୍କରେ ବ୍ୟବସାୟରେ ଉନ୍ନତି, ବୀଜ ବପନ, ଗୃହ ନିର୍ମାଣ, ପୁଷ୍ଟି ସାଧନ ନିମିତ୍ତ ଆର୍ଶୀବାଦ ପ୍ରାର୍ଥନା କରାଯାଇଥାଏ । ପଶୁମାନଙ୍କର ଉନ୍ନତି, ଅରଣ୍ୟର ସ୍ତେର, ଖଙ୍କଙ୍କ ଠାରୁ ଗୋପାଳକର ରକ୍ଷା ଓ ଅଗ୍ନି ଦାଉରୁ ରକ୍ଷା ପାଇବା ନିମିତ୍ତ ଅନେକ ପ୍ରାର୍ଥନା ଏହି ସୂକ୍ତମାନଙ୍କରେ ଦେଖାଯାଏ । ଏଗୁଡିକ ଗୋଟିଏ ଗୋଟିଏ ସୁନ୍ଦର କବିତା । ଅଥର୍ବ ବେଦର ବର୍ଷା ଗୀତ ଅତ୍ୟନ୍ତ ଚମତ୍କାର । ସରସତାରେ ପରିପୂର୍ଣ୍ଣ । ଦ୍ୟୁତକ୍ରୀଡ଼ାରେ ସର୍ବସ୍ୱ ହରାଇ ଫେରିଥିବା ବ୍ୟକ୍ତିର ଗୀତ ମଧ୍ୟ ଏଥିରେ ଦେଖାଯାଏ । ଅନ୍ୟ କେତେକ ମନ୍ତ୍ର ମିଳେ ଯାହାକୁ 'ରକ୍ଷା ପରକ' ମନ୍ତ୍ର କୁହାଯାଏ । ସେହି ମନ୍ତ୍ରରେ କ୍ଲେଶରୁ ମୁକ୍ତି ନିମିତ୍ତ ଦେବତାଙ୍କୁ ପ୍ରାର୍ଥନା କରାଯାଇଥାଏ ।

### ପ୍ରାୟଶ୍ଚିତ ଓ ଉପଗ୍ରହ ମନ୍ତ୍ର –

ଅପରାଧ ଓ ପାପରୁ ମୁକ୍ତ ହେବା ଲାଗି 'ପାପଘ୍ନ' ମନ୍ତ୍ର ଅଥର୍ବ ବେଦରେ ସଂକଳିତ ହୋଇଛି । ପ୍ରାୟଶ୍ଚିତ ଶବ୍ଦଟି ପାପର ନବାରଣ ଅର୍ଥରେ କେବଳ ପ୍ରଯୁକ୍ତ ନୁହେଁ । ବରଂ ଗ୍ରରିତ୍ରିକ ପତନକୁ ସୁଧାରିବା ଅର୍ଥରେ, ଧର୍ମ ହାନି, ଆଚରଣ ଉଲଂଘନ ଓ ଅନ୍ୟାନ୍ୟ ବିଧିହୀନ ଆଚରଣ ଠିକ୍ ମାର୍ଗରେ ନିୟନ୍ତ୍ରଣ ଅର୍ଥରେ ପ୍ରୟୋଗ କରାଯାଇଥାଏ । ଅପରାଧ ଅଥର୍ବ ବେଦରେ ଦୁଇ ପ୍ରକାର ଭାବରେ ବିଗ୍ରହ କରାଯାଇଛି । ଗୋଟିଏ ହେଉଛି ଜ୍ଞାତ ଅପରାଧ, ଅନ୍ୟଟି ହେଉଛି ଅଜ୍ଞାତ । ଯାହା ପୂର୍ବ ଜନ୍ମରେ ଘଟିଛି ତାହା ଅଜ୍ଞାତ ଓ ଯାହା ଏହି ଜନ୍ମରେ ଜ୍ଞାତସାରରେ ଘଟୁ ଅଛି ତାହା ଜ୍ଞାତ ଅପରାଧ । ସେଗୁଡିକର ଦୃଷ୍ଟାନ୍ତ ହେଉଛି ଋଣ ଗ୍ରହଣ କରି ପରିଶୋଧ ନକରିବା, ବଡ଼ଭାଇ ଅବିବାହିତ ଥିବା ଅବସ୍ଥାରେ ସାନ ଭାଇ ବିବାହ କରିବା, ଧର୍ମଶାସ୍ତ୍ର ବିରୋଧି ଆଚରଣ ସବୁକୁ ଅପରାଧ କୁହାଯାଉଥିଲା । ସେହିସବୁ ଅପରାଧ ନିମିତ୍ତ ପ୍ରାୟଶ୍ଚିତ ବିଧାନ କରାଯାଉଥିଲା । ପ୍ରାୟଶ୍ଚିତ ସହିତ କେତେକ ଉତ୍ସବ , ମନ୍ତ୍ର ଓ ଗୀତ ମିଳେ ଅଥର୍ବ ବେଦରେ । ତାହା ଦ୍ୱାରା ମଣିଷ ମୁକ୍ତି ପାଉଥିଲା ଶାରିରୀକ ଦୁର୍ବଳତା, ଦୁଃସ୍ୱପ୍ନ, ମାନସିକ ତ୍ରୁଟି ଓ ଅପ ଶକୁନରୁ । ଅଥର୍ବ ବେଦରେ ଅପରାଧ, ପାପ ଓ ଦୁର୍ଭାଗ୍ୟ ଏହି ସବୁ ଶବ୍ଦ ପ୍ରାୟ ସମାନ ଅର୍ଥରେ ବ୍ୟବହୃତ ହୋଇଛି । ସେ କାଳରେ ଭୂତ, ପ୍ରେତ ଓ ପିଶାଚ ଇତ୍ୟାଦିଙ୍କୁ ରୋଗର ଉତ୍ପାଦକ ଭାବରେ ଗ୍ରହଣ କରାଯାଉଥିଲା । ରକ୍ଷା କରଣ୍ଡର ( ତେଉଁରିଆ ) ପିନ୍ଧିଲେ ଭୂତ ପ୍ରେତାଦି ତଥା ଆକସ୍ମିକ ବିପତ୍ତିରୁ ରକ୍ଷା ମିଳେ ବୋଲି ଅଥର୍ବ ବେଦରେ ବର୍ଣ୍ଣନା କରାଯାଇଛି । (୧୨୮)

### ସ୍ତ୍ରୀ କର୍ମାଣି –

ଅଥର୍ବ ବେଦରେ କେତେକ ବିବାହ ଓ ପ୍ରେମ ପରକ ସୂକ୍ତ ରହିଅଛି । ସେଥିମଧ୍ୟରୁ କୌଶିକ ସୂକ୍ତରେ ସ୍ତ୍ରୀ କର୍ମାଣି ମନ୍ତ୍ର ପରିଲିକ୍ଷିତ ହୁଏ । ଏହି ମନ୍ତ୍ର ପବିତ୍ର ମନ୍ତ୍ର ଶ୍ରେଣୀର । ଏହି ମନ୍ତ୍ର ଦ୍ୱାରା କାହାର ଅମଙ୍ଗଳ ସାଧିତ ହୁଏ ନାହିଁ । ଏହି ମନ୍ତ୍ରରେ ସନ୍ତାନର ଉତ୍ପତ୍ତି ଓ ନବଜାତ ଶିଶୁର ରକ୍ଷା ନିମିତ୍ତ ପ୍ରାର୍ଥନା କରାଯାଇଥାଏ । ଅଥର୍ବ ବେଦର ୧୪ କାଣ୍ଡରେ ଏହି ମନ୍ତ୍ର ଗୁଡ଼ିକ ଦେଖା ଯାଇଥାଏ । ଏହି ମନ୍ତ୍ର ଦ୍ୱାରା ପତ୍ନୀ ପତିର ଶ୍ରଦ୍ଧା ଲାଭ କରିପାରୁଥିଲେ । ପ୍ରିୟତମାର ଅପହରଣରେ ମଧ୍ୟ କେତେକ ମନ୍ତ୍ର ପ୍ରଯୁକ୍ତ ହୋଇଛି । ଏଗୁଡିକ ହେଲା - "ମା ଶୋଇପଡୁ, ପିତା ଶୋଇପଡୁ, ଘରର କୁକୁର

ଶୋଇପଡୁ, ଘରର ଜ୍ୟେଷ୍ଠ ପୁରୁଷ ଶୋଇପଡୁ, ଅନ୍ୟାନ୍ୟ ଜାତି କୁଟୁମ୍ବମାନେ ଶୋଇ ପଡନ୍ତୁ ଏବଂ ପାର୍ଶ୍ୱବର୍ତ୍ତୀ ଗୃହର ଅନ୍ୟାନ୍ୟ ବ୍ୟକ୍ତିମାନେ ଶୋଇପଡନ୍ତୁ'' ।(୧୨୯) ଏଥିରୁ ଅନୁମିତ ହୁଏ ଅଥର୍ବ ବେଦରେ ସନ୍ନିବେଶିତ ମନ୍ତ୍ରଗୁଡିକ ମଧ୍ୟ ମନୁଷ୍ୟଙ୍କୁ ଗାଢ ନିଦ୍ରାରେ ଅଭିଭୂତ କରାଇ ପାରୁଥିଲା । ଉକ୍ତ ମନ୍ତ୍ର ଦ୍ୱାରା କୌଣସି ପ୍ରେମିକ ପ୍ରେମିକା ଅନିଚ୍ଛା ପ୍ରକାଶ କରୁଥିଲେ ତାଙ୍କୁ ପ୍ରେମ କରିବାକୁ ବାଧ୍ୟ କରୁଥିଲା । ଏହା ମଧ୍ୟ ପ୍ରେମିକା ଦ୍ୱାରା ସମ୍ଭବ ହେଉଥିଲା । ଏହି ଅଭିଗ୍ୱର ମନ୍ତ୍ର ର ପ୍ରୟୋଗ ଅଥର୍ବ ବେଦର 'କୌଶିକ' ସୂକ୍ତରେ ରହିଅଛି । ଅନ୍ୟ ଏକ ପ୍ରକାର ମନ୍ତ୍ରରେ ସପତ୍ନୀଙ୍କୁ ବଶ କରାଯାଉଥିଲା । ଗୋଟିଏ ସପତ୍ନୀଙ୍କୁ ମଧ୍ୟ ବନ୍ଧ୍ୟାରେ ପରିଣତ କରାଯାଇପାରୁଥିଲା । ଅନ୍ୟ ପୁରୁଷଙ୍କୁ ନଂପୁସକରେ ପରିଣତ ମଧ୍ୟ କରାଯିବାର ମନ୍ତ୍ର ଅଥର୍ବ ବେଦରେ ରହିଅଛି । ଏହି ପରି ମନ୍ତ୍ର ଗୁଡିକ ଉଚ୍ଚାଟନ, ବଶୀ କରଣ, ମାରଣ ଆଦି ଫଳ ପ୍ରାପ୍ତି ନିମିତ୍ତ ପ୍ରଯୁକ୍ତ ହେଉଥିବାରୁ ଏଗୁଡିକୁ 'ଅଭିଗ୍ୱର' ମନ୍ତ୍ର କୁହାଯାଏ । (୧୩୦) ପତିଙ୍କୁ ନିଜର ବଶ କରିବା ପାଇଁ ପତ୍ନୀ ନିର୍ଦ୍ଦିଷ୍ଟ ମନ୍ତ୍ର ପାଠ କରୁଥିଲା । ଯାହା ଅଥର୍ବ ବେଦରେ ନିମ୍ନୋକ୍ତ ମତେ ରହିଅଛି - 'ହେ ମରୁତ ! ମୋର ପତିଙ୍କୁ ଉନ୍ମତ୍ତ କରିଦିଅ । ହେ ଅନ୍ତରୀକ୍ଷ ! ହେ ଅଗ୍ନି ! ମୋର ପତିଙ୍କୁ ପାଗଳ କରିଦିଅ, ଯେପରି କି ସେ କେବଳ ମୋତେ ହିଁ ଚିନ୍ତା କରିବେ । ଯଦିସେ ମୋ ଠାରୁ ତିନି ବା ପାଞ୍ଚ ଯୋଜନ ଦୂରରେ ଅଛନ୍ତି ସେ ଫେରି ଆସନ୍ତୁ' ।(୧୩୧)

**ରାଜ କର୍ମାଣି –**

ପୁରୋହିତ ପ୍ରଥାର ପ୍ରଚଳନ ତତ୍‌କାଳୀନ ସମାଜରେ କିଭଳି ଥିଲା ତାହା ଅଥର୍ବ ବେଦରେ ବର୍ଣ୍ଣିତ ହୋଇଛି । ପ୍ରଥମେ ରାଜା ନିଜର ଦୈନନ୍ଦିନ ଧାର୍ମିକ କର୍ମ ସଂପାଦନ ନିମିତ୍ତ ପୁରୋହିତ ନିଯୁକ୍ତ କରୁଥିଲେ । ମାତ୍ର ପରବର୍ତ୍ତୀ ଅବସ୍ଥାରେ ଏହା ଏକ ପ୍ରଥାରେ ପରିଣତ ହୋଇଗଲା । ରାଜାର ଉନ୍ନତି, ଆକସ୍ମିକ ବିପତ୍ତିରୁ ରକ୍ଷା ନିମିତ୍ତ ପୁରୋହିତ ଇନ୍ଦ୍ରଜାଲ ସହିତ ସଂପୃକ୍ତ ମନ୍ତ୍ରର ମଧ୍ୟ ପ୍ରୟୋଗ କରିବାକୁ ବାଧ୍ୟ ହେଲା । ଅଥର୍ବ ବେଦରେ ରାଜ୍ୟାଭିଷେକ ସଂକେତ ପରିଲିକ୍ଷିତ ହୁଏ । (୧୩୨) ''ଅଭିଷେକ କାଳରେ ରାଜା ବ୍ୟାଘ୍ରଚର୍ମ ଉପରେ ଆସୀନ ହେଉଥିଲେ । ରାଜାଙ୍କ ଉପରେ ଜଳ ଢଳା ହେଉଥିଲା । ରାଜା କବଚ ଧାରଣ କରିବା ସମୟରେ ତଥା ରଥରେ ଆରୋହଣ କରୁଥିବା ସମୟରେ ତାଙ୍କର ସ୍ତୁତିପରକ ମନ୍ତ୍ର ମିଳେ । ରାଜାର ଶକ୍ତିବର୍ଦ୍ଧନ ନିମିତ୍ତ ବିଧାନ ଅଥର୍ବ ବେଦରେ ମିଳେ ।(୧୩୩) ଶତ୍ରୁକୁ ପରାସ୍ତ କରିବା ପ୍ରାର୍ଥନା ଅଥର୍ବ ବେଦରେ ସନ୍ନିବେଶିତ ହୋଇଛି । ସଂଗ୍ରାମ ଉପଯୋଗୀ ଉପକରଣର ବର୍ଣ୍ଣନା ମଧ୍ୟ ଏଥିରେ ମିଳେ । ରଥ, ଦୁନ୍ଦୁଭି, ଶିଙ୍ଗା ଆଦିର ଉଲ୍ଲେଖ ରହିଅଛି । ଅଥର୍ବ ବେଦରେ ତତ୍‌କାଳୀନ ସମାଜରେ ଗଣତାନ୍ତ୍ରିକ ପରମ୍ପରା ରକ୍ଷା ହେଉଥିବା କଥା ବର୍ଣ୍ଣିତ ହୋଇଛି । ଅଥର୍ବ ବେଦରେ ରାଜା ପ୍ରଜା ଦ୍ୱାରା ନିର୍ବାଚିତ ହେବାର କଥା ରହିଅଛି । ସେହିଭଳି କୌଣସି ରାଜା ବିତାଡିତ ହୋଇଥିଲେ ପୁନଃ ସମ୍ମାନ ପୂର୍ବକ ପ୍ରତିଷ୍ଠା ଲାଭ କରିଥିବା ଉଲ୍ଲେଖ ହୋଇଅଛି । ସଂଗ୍ରାମ ନିମିତ୍ତ ଦୁନ୍ଦୁଭିର ଧ୍ୱନି ବୀର ଯୋଦ୍ଧାମାନଙ୍କର ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରୁଥିଲା । ଦୁନ୍ଦୁଭି ସୂକ୍ତରେ ଏହାର ବର୍ଣ୍ଣନା ଅତ୍ୟନ୍ତ ଭାବ ସୌଷ୍ଠବରେ ବୀରରସୋଦ୍ଦୀପକ ହୋଇଛି ।(୧୩୪) ଅଥର୍ବ ବେଦରେ ଋଗ୍‌ବେଦ ଭଳି ଅନ୍ତ୍ୟେଷ୍ଟିକ୍ରିୟା ଓ ପିତୃ ପୂଜାର ବର୍ଣ୍ଣନା ଦେଖିବାକୁ ମିଳେ । ଅଥର୍ବ ବେଦରେ ଯଜୁର୍ବେଦ ଭଳି ଗଦ୍ୟ ଭାଗ ମଧ୍ୟ ଦେଖିବାକୁ ମିଳେ ।

ବେଦ ତ୍ରୟୀ ଅପେକ୍ଷା ଅଥର୍ବ ବେଦର ଭିନ୍ନ ମହତ୍ତ୍ୱ ରହିଅଛି । ଅନ୍ୟ ତିନୋଟି ବେଦରେ

ଯାଗ ଯଜ୍ଞ ଏବଂ ପାରଲୌକିକ ବିଷୟବସ୍ତୁ ସଂପର୍କରେ କୁହାଯାଇଥିବାବେଳେ ଅଥର୍ବ ବେଦରେ ଲୌକିକ ଜୀବନର ସୁଖ ଶାନ୍ତି ସଂପର୍କରେ ଅଧିକ ଗୁରୁତ୍ୱ ଦିଆଯାଇଛି । ଏଥିରେ ଗୃହସ୍ଥାଶ୍ରମ ସଂପର୍କରେ ଅଧିକ କଥା କୁହାଯାଇଛି । ଏହି ଅଥର୍ବ ବେଦରେ 'ପୃଥିବୀ ସୂକ୍ତ' ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସୂକ୍ତ । ଏଥିରେ ମାତୃଭୂମି ପ୍ରତି ବୈଦିକ ଋଷି ସ୍ନେହ ପ୍ରବଣ ହୋଇଉଠିଛି । ସେ କହିଛନ୍ତି 'ଜନ୍ମଭୂମି ହେଉଛି ତାଙ୍କର ମା', ସେ ହେଉଛନ୍ତି ତାଙ୍କର ପୁଅ' ।(୧୩୫) ଅନ୍ୟ ଏକ ସ୍ଥାନରେ ମଧ୍ୟ ମାର୍ମିକ ସ୍ୱରରେ କୁହାଯାଇଛି "ମୁଁ ହେଉଛି ସେହି ମାଟି ମା'ର ପୁଅ, ମା ପୁଅକୁ କ୍ଷୀର ଦେଲା ଭଳି ସେ ମୋତେ କ୍ଷୀର ଦେଉ"। (୧୩୬) ଭାରତୀୟମାନେ ମାତୃଭୂମିକୁ ଖାଲି ସ୍ନେହ କରନ୍ତି ନାହିଁ । ସେମାନେ ଏହାକୁ ମଧ୍ୟ ଦେବୀ ଭାବରେ ପୂଜା କରନ୍ତି । ଏହା ବୈଦିକ ପରମ୍ପରାକୁ ଅନୁସରଣ କରିଅଛି । (୧୩୭) ଏହା ବ୍ୟତୀତ ଯେଉଁଠାରେ ଯାଗ ଯଜ୍ଞ କଥା କୁହାଯାଇଛି ତାହା ସବୁ ବୈଦିକ ଜନ ଜୀବନ ସହିତ ସମ୍ବନ୍ଧିତ । ଅଥର୍ବ ବେଦରେ ସାଧାରଣ ଜନ ଜୀବନର ଯେଉଁ ପରିଚର୍ଯ୍ୟା ହୋଇଛି ତାହାକୁ ଲକ୍ଷ୍ୟ କରି 'ଜୟନ୍ତଭଟ୍ଟ' ତାଙ୍କ 'ନ୍ୟାୟ ମଞ୍ଜରୀ' ପୁସ୍ତକରେ ଅଥର୍ବ ବେଦକୁ ପ୍ରଥମ ବେଦ ଭାବରେ ଗ୍ରହଣ କରିଅଛନ୍ତି । (୧୩୮)

**ବୈଜ୍ଞାନିକ ଓ ଗାଣିତିକ ମନ୍ତ୍ର –**

ଅଥର୍ବ ବେଦରେ ବହୁ ବୈଜ୍ଞାନିକ ଓ ଗାଣିତିକ ତଥ୍ୟ ଗର୍ଭିତ ମନ୍ତ୍ର ରହିଅଛି । ଯଜ୍ଞ ବେଦିଟି ନିର୍ମାଣ କରିବାକୁ ଜଟିଳ ଗାଣିତିକ ଓ ଜ୍ୟାମିତିକ ମନ୍ତ୍ରର ଆବଶ୍ୟକତା ପଡିଥିଲା । 'ଭୂଇଙ୍କର' ଏହାକୁ ତର୍ଜମା କରି କହିଅଛନ୍ତି ଅଥର୍ବ ବେଦର ଏହି ମନ୍ତ୍ରଗୁଡିକୁ ଜାଣିବାକୁ ହେଲେ ଜିଜ୍ଞାସୁଙ୍କୁ ଉଭୟ ବେଦଜ୍ଞ ଓ ଗାଣିତିକ ହେବାକୁ ପଡିବ । (୧୩୯) ପୁରୀ ଗୋବର୍ଦ୍ଧନପୀଠର ପୂର୍ବତନ ଶଙ୍କରାଚାର୍ଯ୍ୟ ସ୍ୱର୍ଗତଃ ଭାରତୀ କୃଷ୍ଣତୀର୍ଥ ତାଙ୍କ ଲିଖିତ Vedic Mathematics ପୁସ୍ତକରେ ଅଥର୍ବ ବେଦର ୧୬ଟି ମାତ୍ର ମନ୍ତ୍ରକୁ ବ୍ୟାଖ୍ୟା କରି ଜଟିଳ ସୂତ୍ରର ସରଳ ସମାଧାନ କରି ପାରିଛନ୍ତି । ଆହୁରି ଅନେକ ବୈଜ୍ଞାନିକ ତଥ୍ୟ ଏବେବି ଅମୀମାଂସିତ । ଏକଥା ଅସ୍ୱୀକାର କରି ହେବ ନାହିଁ ଯେ ଗ୍ରହରୁ ଗ୍ରହାନ୍ତର ଯାତ୍ରାର ଏବଂ ଅମରତ୍ୱ ଆଦିର ସୂତ୍ର ଏଥିରେ ନଥିବ ବୋଲି ? (୧୪୦)

**ଦାର୍ଶନିକ ମନ୍ତ୍ର –**

ଅଥର୍ବ ବେଦ ପୂର୍ବରୁ ଋଗ୍‌ବେଦରେ ଦାର୍ଶନିକ ଚିନ୍ତାଧାରାର ବିକାଶ ପରିଲକ୍ଷିତ ହୁଏ । ଅଥର୍ବର ଦାର୍ଶନିକ ଚିନ୍ତାଧାରା ଋଗ୍‌ବେଦର ଦାର୍ଶନିକ ଚିନ୍ତାଧାରାର କେତେକ ସୂକ୍ତ ଉପରେ ଆଧାରିତ । ଅଥର୍ବରେ ବିଶ୍ୱର ଉତ୍ପତ୍ତି ବିଷୟକ ସୂକ୍ତ ସଂକଳିତ ହୋଇଛି । ପରମତତ୍ତ୍ୱ ନାନା ପ୍ରକାର ନାମ ଦ୍ୱାରା ଅଭିହିତ ହୋଇଛି । ତାହା କାଳ ନାମରେ ଜଗତ୍ , ପୃଥ୍ୱୀ, ଦିବ୍‌ର, ଉତ୍ପାଦକ ଓ ନିୟାମକ । ସମସ୍ତ ପ୍ରପଞ୍ଚର ଅଧିଷ୍ଠାନ ହେଉଛି କାଳ । ମନ, ପ୍ରାଣ, ନାମ କେବଳ ଯେ କାଳର ଅନ୍ତର୍ଗତ ତାହା ନୁହେଁ ବରଂ କାଳ ସବୁର ଈଶ୍ୱର ଓ ପ୍ରଜାପତିଙ୍କ ପିତା । କାଳର ସଂକଳ୍ପଦ୍ୱାରା ଜଗତ ଉତ୍ପନ୍ନ ହୋଇଛି । ଅଥର୍ବ ବେଦରେ କାଳ ପରମ ତତ୍ତ୍ୱ ରୂପରେ ସ୍ୱୀକୃତ ହୋଇଛି । (୧୪୧) ମହାକାଳ ସଂପର୍କରେ ଅଥର୍ବ ବେଦରେ ( ୯/୫୩, ୯/୫୪) ଯେଉଁ ମନ୍ତ୍ର ଗୁଡିକ ରଚିତ ହୋଇଛି ତାହା ଦାର୍ଶନିକ ଦୃଷ୍ଟିକୋଣରୁ ଋଗ୍‌ବେଦୀୟ ପୁରୁଷ ସୂକ୍ତ ଓ ନାସଦୀୟ ସୂକ୍ତରୁ କୌଣସି ହିସାବରେ କମ୍ ନୁହେଁ । ଏଠାରେ କାଳକୁ ସୃଷ୍ଟିର ପ୍ରଥମ ତତ୍ତ୍ୱ ବୋଲି ଗ୍ରହଣ କରାଯାଇଛି ।

"ଅଥର୍ବ ବେଦର ତ୍ରୟୋଦଶ କାଣ୍ଡର ଅନେକ ସୂକ୍ତରେ 'ରୋହିତ' ଅର୍ଥାତ୍ ରକ୍ତବର୍ଣ୍ଣ ବିଶିଷ୍ଟ ସୂର୍ଯ୍ୟଙ୍କର ପ୍ରଶଂସା କରାଯାଇଛି । 'ରୋହିତ' ହେଉଛନ୍ତି ସୂର୍ଯ୍ୟସ୍ଥ ବୀର୍ଯ୍ୟର ପ୍ରତୀକ ସ୍ୱରୂପ । ସେ ଜଗତର ସୃଷ୍ଟି ସହିତ ସଂପର୍କ ରଖନ୍ତି । ସୂର୍ଯ୍ୟଙ୍କର ଅଶ୍ୱଗୁଡିକ ରୋହିତଙ୍କୁ ରଥରେ ବସାଇ ନେଇ ଯାଆନ୍ତି । ସେ ହେଉଛନ୍ତି ବିଶ୍ୱର ନିର୍ମାତା ଓ ଯଜ୍ଞର ଜନୟିତା । ରୋହିତଙ୍କର ଅଧିଷ୍ଠାନ ଉପରେ ବିଶ୍ୱ ଅବସ୍ଥାପିତ ହୋଇଛି । ଏପରି ବର୍ଣ୍ଣନାରୁ ଜଣାପଡେ ରୋହିତ ବ୍ରହ୍ମଙ୍କର ପ୍ରତୀକ ସ୍ୱରୂପ । (୧୪୨)

ଅଥର୍ବ ବେଦରେ 'ସ୍କମ୍ଭ' ଶବ୍ଦ ମିଳେ । ଏହା ଜଗତର ସମସ୍ତ ପଦାର୍ଥର ଆଧାର ସ୍ୱରୂପ । ତାହା ବ୍ରହ୍ମର ଅନ୍ୟ ନାମ । ସ୍କମ୍ଭ କେବଳ ବିଶ୍ୱର କାରଣ ନୁହେଁ । ତାହା ବ୍ରହ୍ମର କାରଣ ସ୍ୱରୂପ ଗୃହୀତ । ତେଣୁ ତାକୁ ଜ୍ୟେଷ୍ଠ ବ୍ରହ୍ମ କୁହାଯାଏ । ଭୂମି, ଅନ୍ତରୀକ୍ଷ ଓ ଆକାଶ ଏଥିରେ ସମାହିତ ହୋଇଛି । ସ୍କମ୍ଭ ଉପରେ ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ ତଥା ବାୟୁ ଅବଲମ୍ବିତ ହୋଇ ରହେ ।

ବେଦରେ 'ଉଚ୍ଛିଷ୍ଟ' ଶବ୍ଦ ଦେଖିବାକୁ ମିଳିଥାଏ । ବ୍ରହ୍ମକୁ ଉଚ୍ଛିଷ୍ଟ ନାମରେ ଅଭିହିତ କରାଯାଇଛି । ଉଚ୍ଛିଷ୍ଟର ଅର୍ଥ ବାକି ରହିଥିବା ପଦାର୍ଥ ବା ଶେଷ ପଦାର୍ଥ । ଏହି ପରିଦୃଷ୍ଟ ମାନ ସଂସାରକୁ ନିଷେଧ କରିଦେଲା ପରେ ଯାହା ରହେ ତା ହେଉଛି 'ଉଚ୍ଛିଷ୍ଟ' ଅର୍ଥାତ୍ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ନୁହେଁ । ବେଦ, ପୁରାଣ, ଚକ୍ଷୁ, ପ୍ରାଣ, ମନ ଇତ୍ୟାଦି 'ଉଚ୍ଛିଷ୍ଟ'ରୁ ଉତ୍ପନ୍ନ ହୋଇଅଛନ୍ତି ।(୧୪୩) ଅଥର୍ବ ବେଦର ୧୦ମ କାଣ୍ଡର ଦ୍ୱିତୀୟ ସୂକ୍ତରେ ଏବଂ ୧୧ଶକାଣ୍ଡର ୮ମ ସୂକ୍ତରେ ମନୁଷ୍ୟ ଠାରେ ବ୍ରହ୍ମର ପ୍ରତ୍ୟକ୍ଷ ନିରୂପଣ କରାଯାଇଅଛି ।

ଅଥର୍ବ ବେଦର ଦେବ ମଣ୍ଡଳରେ ଇନ୍ଦ୍ର, ଅଗ୍ନି, ସତ୍ୟ, ବରୁଣ ପ୍ରଭୃତିଙ୍କ ସହିତ ଅନେକ ନୂତନ ଦେବତା ଯୋଗ ହୋଇଛନ୍ତି । ଆର୍ଯ୍ୟେତର ଗୋଷ୍ଠୀଙ୍କ ସହିତ ଭାଗବତ ଆଦାନ ପ୍ରଦାନ ଫଳରେ ଅନେକ ଦେବ ଆର୍ଯ୍ୟମାନଙ୍କ ଦେବ ମଣ୍ଡଳକୁ ପ୍ରବେଶ କରିଥିଲେ । ଏହା ସହିତ ସୃଷ୍ଟିର ଉତ୍ପତ୍ତି ଏବଂ ଆଧ୍ୟାତ୍ମବାଦ ସଂପର୍କରେ ଅନେକ ଚିନ୍ତାଧାରା ଏବଂ ତତ୍‌ଜନିତ ଅନେକ ସୂକ୍ତ ଏଥିରେ ଦୃଷ୍ଟି ଗୋଚର ହୁଏ । ଋଗ୍‌ବେଦରେ ନ ଥିବା ଅନେକ ଚିନ୍ତାଧାରାର ସୂକ୍ତ ଅଥର୍ବ ବେଦର ଦୃଷ୍ଟି ଗୋଚର ହୁଏ । କପାଳି ଶାସ୍ତ୍ରୀ ଏ ସଂପର୍କରେ କହିଛନ୍ତି ଋଗ୍ ବେଦରେ ନ ଥିବା ଅନେକ ଉଚ୍ଚ ଅଧ୍ୟାତ୍ମିକ ଚନ୍ତାଧାରାର ସୂକ୍ତ ଅଥର୍ବ ବେଦରେ ରହିଅଛି ।(୧୪୪)

"ଲୋକମାନ୍ୟ ତିଳକ ଅଥର୍ବ ବେଦର କେତେକ ମନ୍ତ୍ର ସହିତ ବାହାରର ଧାର୍ମିକ ଧାରଣାର କେତେକ ମେଳ ଥିବାର ଅନୁମାନ କରିଅଛନ୍ତି । ଅଥର୍ବ ବେଦରେ ବ୍ୟବହୃତ 'ତୈମାତ' "ଉରୁଗୁଳ" ଆଦି କେତେକ ଶବ୍ଦର ବ୍ୟାଖ୍ୟାରୁ ଅନୁମିତ ହୁଏ ଯେ "କାଲ୍‌ଡିଆରି" ଧାର୍ମିକ ପରମ୍ପରା ସହିତ ଏହାର ସାମଞ୍ଜସ୍ୟ ଅଛି । ଏହି ଶବ୍ଦ ଦୁଇଟି ଅଥର୍ବ ବେଦର ପଞ୍ଚମ କାଣ୍ଡସ୍ଥ ୧୩ଶ ସୂକ୍ତରେ ଉଲ୍ଲିଖିତ । କାଲଡୀୟ ଧାରଣା ଅନୁଯାୟୀ ପାତାଳରେ ତିମାୟତ ନାମକ ଏକ ବଡ଼ସର୍ପିଣୀ ରହୁଥିଲା । ମର୍ଦୁକ୍ ନାମକ ଦେବତା ତାକୁ ନିଜ ଅସ୍ତ୍ର ଦ୍ୱାରା ମାରିଥିଲେ" । ତିଳକଙ୍କ ଅନୁମାନ ଅଥର୍ବ ବେଦର ତିମାୟତ କାଲଡୀୟ 'ତୈମାତ୍' ର ପ୍ରତିରୂପ । କାଲଡୀୟ 'ଉରୁଗଳ' ଶବ୍ଦର ଅର୍ଥ ହେଲା ବିରାଟ ନଗର ବା ପାତାଳ ପୁର । ଏଇଥିରୁ ଉଦ୍ଭୁତ ହୋଇଛି ଅଥର୍ବ ବେଦର ଉରୁଗୁଳା ଶବ୍ଦ । କାଲଡୀୟ ବିଶ୍ୱାସ ଅନୁଯାୟୀ 'ତିୟାମତ୍' ସର୍ପିଣୀର ସ୍ୱାମୀର ନାମ ଥିଲା 'ଅପ୍‌ସୁ' । ତାକୁ ମଧ୍ୟ 'ମର୍ଦୁକ' ମାରି ଦେଇଥିଲେ ।

ତେଣୁ ମର୍ଦୁକଙ୍କ ନାମ ହୋଇଥିଲା 'ଅପ୍‌ସୁଜିତ୍'। ଅଥର୍ବ ବେଦରେ ଇନ୍ଦ୍ରଙ୍କ ନାମ ରଖା ଯାଇଛି 'ଅପ୍‌ସୁଜିତ'। 'ତିମାୟତ'ର ସାତଟା ମୁଣ୍ଡ ଥିଲା । ଇନ୍ଦ୍ରଙ୍କୁ ମଧ୍ୟ ସାତ ମୁଣ୍ଡିଆ କୁ ମାରିବା ବାଲା ବୋଲି କୁହାଯାଇଛି ( ସପ୍ତହନ୍ ) । ଇନ୍ଦ୍ର ସର୍ପରୂପୀ ବୃତାସୁରକୁ ମାରିଥିଲେ । 'ତିମାୟତ' ମଧ୍ୟ ହେଉଛି ଗୋଟିଏ ସର୍ପ । (୧୪୫)

କାଲଡୀୟ ହେଉଛି ଇରାକ୍‌ର ପ୍ରାଚୀନ ନାମ । କାଲଡୀୟ ଭାଷାରେ ଭୂତ ପ୍ରେତଙ୍କୁ 'କିମ୍ନ ଦିମ୍ନ'ବୋଲି କୁହାଯାଏ । ଋଗ୍‌ବେଦରେ ବର୍ଣ୍ଣନା କରାଯାଇଛି 'ଦ୍ୱିଷୋଧତ୍ତମନ ବାୟଂ କିମୀ ଦିନେ' ।(୧୪୬) ମାତ୍ର ତିଳକଙ୍କ ଏହି ଅନୁସନ୍ଧାନକୁ ଅନେକ ଗ୍ରହଣ କରିପାରନ୍ତି ନାହିଁ । ସେମାନେ ପ୍ରଶ୍ନ କରନ୍ତି କାଲ୍‌ଡୀୟ ସଭ୍ୟତା ବୈଦିକ ସଭ୍ୟତା ଠାରୁ ପ୍ରାଚୀନ ନୁହେଁ । ତେଣୁ କାଲଡୀୟ ଶବ୍ଦ ଗୁଡିକ ଏବଂ ତତ୍‌ଜନିତ ଚିନ୍ତାଧାରା ହୁଏତ ବେଦରୁ ଗୃହୀତ ହୋଇପାରିଥିବ । ମାତ୍ର ଅଥର୍ବ ବେଦର କାଳ ସଂପର୍କରେ ରାଧା କୁମୁଦ ମୁଖାର୍ଜୀ କହିଅଛନ୍ତି ତାହା ଖ୍ରୀ.ପୂ. ୨୫୦୦ର ପରବର୍ତ୍ତୀ ହୋଇ ନପାରେ ।(୧୪୭) ମାତ୍ର ବର୍ତ୍ତମାନର ଇରାକ୍ ଖ୍ରୀ.ପୂ. ୩୦୦୦ ବର୍ଷ ତଳେ 'କାଲଡିଆ' ନାମରେ ନାମିତ ହୋଇଥିଲା । କେତେଗୁଡ଼ିଏ ଶବ୍ଦ 'କାଲଡିଆ' ଋଗ୍‌ବେଦରୁ ଗ୍ରହଣ କରି ପାରିଥାଏ । ମାତ୍ର ଅନ୍ୟ କେତେକ ଶବ୍ଦ ଯାହା ଅଥର୍ବ ବେଦରେ ଦେଖାଯାଇଛି ତାହା ହୁଏତ ବହୁ ସହସ୍ର ବର୍ଷ ତଳୁ ଉଭୟ ଦେଶ ମଧ୍ୟରେ ଥିବା ସାଂସ୍କୃତିକ ଭାବ ବିନିମୟ ଯୋଗୁ ଆଦାନ ପ୍ରଦାନ ହୋଇ ପାରିଥିବ । (୧୪୮)

ବୈଦିକ ସାହିତ୍ୟରେ ମୁଖ୍ୟ ଉଦ୍ଦେଶ୍ୟ ଥିଲା ମାନବ ଜୀବନକୁ ଏକ ମହତ୍ତର ସୋପାନକୁ ନେଇଯିବା । ମାନବର ଚେତନା ସ୍ତରକୁ ଏକ ଅତି ଉଜ୍ଜ୍ୱଳ ଆଧ୍ୟାତ୍ମିକ ଆଲୋକରେ ଆଲୋକିତ କରାଇବା । ବୈଦିକ କବିଙ୍କର ବିଶ୍ୱାସ ଥିଲା ଯେ ସେ ଯେଉଁ କାବ୍ୟର ଧାରା ପ୍ରବାହିତ କରିଅଛନ୍ତି ତାହା ତାଙ୍କ ଉର୍ଦ୍ଧ୍ୱ ଚେତନାରେ ଉପଲବ୍ଧ ହୋଇଛି ଏବଂ ତାହା ଜଗତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ଶ୍ରୀ ଅରବିନ୍ଦ ଯଥାର୍ଥରେ କହିଅଛନ୍ତି "ବୈଦିକ ମନ୍ତ୍ର ଗୁଡିକ ଉଚ୍ଚତର ଏକ ରହସ୍ୟମୟ ପରିବେଶରୁ ଋଷିମାନେ ଉପଲବ୍ଧ କରିଅଛନ୍ତି"। (୧୪୯) ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ରହସ୍ୟମୟ ଉଚ୍ଚତର ସୋପାନର କଥା ତତ୍‌କାଳୀନ ବୈଦିକ ଋଷି କହିଥିଲେ ମଧ୍ୟ ଧୂଳି ମାଟିର ସଂସାରକୁ ଭୁଲିଯାଇ ନାହାନ୍ତି । ଫଳରେ ବୈଦିକ ସାହିତ୍ୟରେ ଆଧ୍ୟାତ୍ମବାଦ, ରହସ୍ୟବାଦ ସହିତ ଲୌକିକବାଦର ସୁନ୍ଦର ସମନ୍ୱୟ ଘଟିଅଛି ।



# ତୃତୀୟ ପରିଚ୍ଛେଦ

# ବୈଦିକ ସଂହିତୋତ୍ତର ସାହିତ୍ୟ

## ୧ - ବ୍ରାହ୍ମଣ

'ବ୍ରାହ୍ମଣ' ବୈଦିକ ସାହିତ୍ୟର ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଋଷି ଆପସ୍ତମ୍ବଙ୍କ ଭାଷାରେ "ମନ୍ତ୍ର ବ୍ରାହ୍ମଣୟୋର୍ବେଦ ନାମ ଧେୟମ୍" ଏହାର ଅର୍ଥ ହେଉଛି ମନ୍ତ୍ର ଓ ବ୍ରାହ୍ମଣ ବେଦର ଦୁଇଟି ବିଭାଗ । ଗ୍ରନ୍ଥ ଅର୍ଥରେ ବ୍ରାହ୍ମଣ ଶବ୍ଦ ତୈତ୍ତିରୀୟ ସଂହିତାରେ ବ୍ୟବହୃତ ହୋଇଛି ।(୧) ବ୍ରହ୍ମନ୍‌ର ବ୍ୟାଖ୍ୟା ଗ୍ରନ୍ଥ ହେଉଛି ବ୍ରାହ୍ମଣ । ବ୍ରାହ୍ମଣ ର ଅନେକ ଅର୍ଥ ଅଛି । ସେଥିରୁ ଗୋଟିଏ ଅର୍ଥ ମନ୍ତ୍ର (୨) । ଯଜ୍ଞ ବ୍ରାହ୍ମଣର ଦ୍ୱିତୀୟ ଅର୍ଥ । ଯଜ୍ଞ ପ୍ରଜାପତି ସ୍ୱରୂପ । ପ୍ରଜାପତିଙ୍କର ଅନ୍ୟ ନାମ ବ୍ରହ୍ମ ; ତେଣୁ ଯଜ୍ଞ ବ୍ରହ୍ମସ୍ୱରୂପ (୩) ବୈଦିକ କର୍ମକାଣ୍ଡର ବ୍ୟାଖ୍ୟା ଓ ବିବରଣୀ ବ୍ରାହ୍ମଣ ଗ୍ରନ୍ଥରେ ସଂଯୋଜିତ ହୋଇଛି । ଏଥିରେ ଯଜ୍ଞର ଆଧ୍ୟାତ୍ମିକ, ବୈଜ୍ଞାନିକ ତଥା ଆଧିଭୌତିକ ବିଶ୍ଳେଷଣ ଘଟିଅଛି ।

ବ୍ରାହ୍ମଣ ଗ୍ରନ୍ଥ ଏକ ଗଦ୍ୟପୂର୍ଣ୍ଣ ରଚନା । ଯେଉଁଥିରେ ଯଜ୍ଞ ସମୂହର ଉପଯୋଗୀ ମନ୍ତ୍ର ଗୁଡିକର ସଂଯୋଜନା କରାଯିବା ସଂପର୍କରେ ସୂଚନା ପ୍ରଦାନ କରାଯାଇଛି । (୪) ବ୍ରାହ୍ମଣ ଗ୍ରନ୍ଥରେ ବିଶ୍ୱର ଉତ୍ପତ୍ତି ସହିତ କେତେକ 'ଦନ୍ତକଥା' ର ବର୍ଣ୍ଣନା ରହିଛି । ଏହି ଦନ୍ତକଥାରେ ମହାକାବ୍ୟର ବୀଜ ନିହିତ ଥିବାର ଜଣାପଡେ । ବିଭିନ୍ନ ଉପାଖ୍ୟାନ, ବୈଦିକ ଶବ୍ଦର ବ୍ୟୁତ୍ପତ୍ତି, ପ୍ରାଚୀନ ରାଜା ଓ ଋଷିମାନଙ୍କର କାହାଣୀ ବ୍ରାହ୍ମଣ ଗ୍ରନ୍ଥରେ ଦେଖିବାକୁ ମିଳେ । ବିଭିନ୍ନ ବେଦକୁ ଅବଲମ୍ବନ କରି ବିଭିନ୍ନ ବ୍ରାହ୍ମଣର ସୃଷ୍ଟି ହୋଇଛି । ଅନେକ ବ୍ରାହ୍ମଣ ଗ୍ରନ୍ଥ ଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ତାହା ବର୍ତ୍ତମାନ ଅବଲୁପ୍ତ । ଗବେଷକମାନେ ମତ ଦଅନ୍ତି ବିଭିନ୍ନ ବେଦକୁ ଆଶ୍ରୟ କରି ରଚିତ ହୋଇଥିବା ବ୍ରାହ୍ମଣ ମାନଙ୍କ ମଧ୍ୟରୁ ଆଜି ମାତ୍ର ତେରଟି ବ୍ରାହ୍ମଣ ଦେଖିବାକୁ ମିଳେ । ସେଗଡ଼ିକ ହେଲା -(କ) ଋଗ୍‌ବେଦ - (୧) ଐତରେୟ ବ୍ରାହ୍ମଣ, (୨) ଶାଂଖାୟନ ବ୍ରାହ୍ମଣ (ଖ) ଶୁକ୍ଳ ଯଜୁର୍ବେଦ -(୩) ଶତପଥ ବ୍ରାହ୍ମଣ (ଗ) କୃଷ୍ଣ ଯଜୁର୍ବେଦ - (୪) ତୈତ୍ତିରୀୟ ବ୍ରାହ୍ମଣ, (ଘ) ସାମବେଦ - (୫) ତାଣ୍ଡ୍ୟ ବ୍ରାହ୍ମଣ, (୬) ଷଡ୍‌ବିଂଶ ବ୍ରାହ୍ମଣ (୭) ବୈବତ ବ୍ରାହ୍ମଣ (୮) ଆର୍ଷେୟ ବ୍ରାହ୍ମଣ (୯) ସାମବିଧାନ ବ୍ରାହ୍ମଣ (୧୦) ଉପନିଷଦ୍ ବ୍ରାହ୍ମଣ (୧୧) ସଂହିତୋପନିଷଦ୍ ବ୍ରାହ୍ମଣ (୧୨) ବଂଶ ବ୍ରାହ୍ମଣ (ଙ) ଅଥର୍ବ ବେଦ -(୧୩) ଗୋପଥ ବ୍ରାହ୍ମଣ ।

"ବ୍ରାହ୍ମଣ ଗ୍ରନ୍ଥକୁ ବିଷୟବସ୍ତୁ ଦୃଷ୍ଟିରୁ ବିଗ୍ଭର କରି ଗ୍ଭରି ଭାଗରେ ବିଭକ୍ତ କରାଯାଇଛି । ସେଗୁଡିକ ହେଲା, ବିଧି, ଅର୍ଥବାଦ, ଉପନିଷଦ୍ ଓ ଆଖ୍ୟାନ ଭାଗ । ବଳଦେବ ଉପାଧ୍ୟାୟଙ୍କ କହିବା ଅନୁସାରେ "ବିଧି କା ଅର୍ଥ ହେ ଯଜ୍ଞ ତଥା ଉସକେ ଅଙ୍ଗୋପାଙ୍ଗେ କେ ଅନୁଷ୍ଠାନ ବା ଉପଦେଶ"। (୫) ବ୍ରାହ୍ମଣ ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ ଶାବର ଭାଷ୍ୟରେ ସଂଯୋଜିତ ଶ୍ଳୋକରୁ ଜଣାପଡ଼େ । ତାହା ହେଲା-

ହେତୁର୍ନିର୍ବଚନଂ ନିନ୍ଦା ପ୍ରଶଂସା ଶୋୟେ ବିଧିଃ ।<br>
ପରକ୍ରିୟା ପୁରୋକଳ୍ପୋ ବ୍ୟବଧାରଣା କଳ୍ପନା<br>
ଉପମାନଂ ଦ ଶୈତ ତୁ ବିଧୟୋ ବ୍ରାହ୍ମଣସ୍ୟ ତୁ । (୬)

(କ) ବିଧି –

ଯଜ୍ଞ ସଂପାଦନ ନିମିତ୍ତ ପ୍ରଯୁକ୍ତ ଉପଦେଶକୁ ବିଧି କୁହାଯାଏ । ବିଧି ଭାଗରେ ମୁଖ୍ୟତଃ କର୍ମ କାଣ୍ଡର ବର୍ଣ୍ଣନା ରହିଥାଏ । ଯଜ୍ଞ ପୀଠରେ ବସିବା, ଉଠିବା, ଆହୂତି ପ୍ରଦାନ କରିବା ବିଷୟରେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ରହିଅଛି । ସେଗୁଡିକ ମଧ୍ୟରୁ ଗୋଟିଏ ଦିଓଟି ଉଦାହରଣରୁ ଏହା ସ୍ପଷ୍ଟ ହେବ । ସାମବେଦର ତାଣ୍ଡ୍ୟ ବ୍ରାହ୍ମଣର ଗୋଟିଏ ଉଦାହରଣ ନିଆଯାଉ । ପଞ୍ଚ ଋତ୍ୱିଜମାନଙ୍କ ମଧ୍ୟରୁ ଅଧ୍ୱର୍ଯ୍ୟୁ, ପ୍ରସ୍ତୋତା, ଉଦ୍‌ଗାତା, ପ୍ରତିହର୍ତ୍ତା ଓ ବ୍ରହ୍ମା କିପରି ଜଣକ ପଛରେ ଜଣେ ଚାଲିବେ ତାହାର ବର୍ଣ୍ଣନା ଏଥିରେ ରହିଅଛି (୭) । ସେହିପରି ଅନ୍ୟ ଏକ ଉଦାହରଣ ଶତପଥ ବ୍ରାହ୍ମଣ ରୁ ନିଆଯାଉ । "ପୌର୍ଣ୍ଣମାସ ଇଷ୍ଟିରେ ଦୀକ୍ଷିତ ହେବାକୁ ଯାଉଥିବା ବ୍ୟକ୍ତି ଆହବନୀୟ ତଥା ଗାର୍ହପତ୍ୟ ଅଗ୍ନି ମଧ୍ୟରେ ପୂର୍ବକୁ ମୁଖ କରି ଠିଆ ହୋଇ ଜଳକୁ ସ୍ପର୍ଶ କରିବ । ଜଳ ହେଉଛି ମେଧ ; ଅର୍ଥାତ୍ ଯଜ୍ଞ ନିମିତ୍ତ ଉପଯୋଗ ପଦାର୍ଥ, ମଥ୍ୟାବାଦୀ ବ୍ୟକ୍ତି ଯଜ୍ଞାନୁଷ୍ଠାନ କରିବାକୁ ଅନୁପଯୁକ୍ତ । ତେଣୁ ଜଳ ସ୍ପର୍ଶ ଦ୍ୱାରା ସେ ପାପକୁ ଦୂର କରି ମେଧ୍ୟ ହୋଇପାରେ । ଯଜ୍ଞାନୁଷ୍ଠାନ କରିବାକୁ ଉପଯୁକ୍ତ ହୋଇଥାଏ । (୮) ଜଳକୁ ସ୍ପର୍ଶ କରି ସେ ପବିତ୍ର ହୋଇ "ଦଶ ପୌର୍ଣ୍ଣମାସୀ ଇଷ୍ଟି"ରେ ଦୀକ୍ଷିତ ହୁଏ (୯) ।

(ଖ) ଅର୍ଥବାଦ –

କେଉଁ ଯଜ୍ଞକଲେ କେଉଁ ଫଳ ମିଳିବ 'ଅର୍ଥବାଦ' ବ୍ରାହ୍ମଣରେ ବର୍ଣ୍ଣନା କରାଯାଇଥାଏ । ଏଥିରେ ବିଧିକୁ ଶ୍ରଦ୍ଧା ଓ ନିଷ୍ଠାର ସହିତ ଅନୁକରଣ କରିବାକୁ ଉପଦେଶ ଦିଆ ହେବା ସଂଗେ ସଂଗେ ନିଷେଧକୁ ନିନ୍ଦା କରାଯାଇଛି । ତେଣୁ ଅର୍ଥବାଦକୁ ପ୍ରରୋଚନାତ୍ମକ ଓ ନିଷେଧାତ୍ମକ ଏହି ଭଳି ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଜ୍ଞ କର୍ମରେ କେତେକ ପଦାର୍ଥକୁ ବାରଣ କରାଯାଇଛି । ଯଜ୍ଞରେ 'ବିରିର' ବ୍ୟବହାରକୁ ନିଷିଦ୍ଧ କରାଯାଇଛି । ତୈତ୍ତିରୀୟ ବ୍ରାହ୍ମଣରେ ଏହାର ନିନ୍ଦା କରାଯାଇଛି ।(୧୦) ଠିକ୍ ସେହିଭଳି ତାଣ୍ଡ୍ୟବ୍ରାହ୍ମଣରେ ଯଜ୍ଞର ବିଶେଷ ପ୍ରଶଂସା କରା ଯାଇଛି ।(୧୧) ଯଜ୍ଞାନୁଷ୍ଠାନ, ଦେବତା ଓ ହୋମ କରଣ ଇତ୍ୟାଦିର ପ୍ରଶଂସା ଅର୍ଥବାଦରେ ଦେଖିବାକୁ ମିଳିଥାଏ । ଯଜ୍ଞ କର୍ମ କରିବା ପାଇଁ ଅର୍ଥବାଦ ପ୍ରଲୋଭିତ କରିଥାଏ । ପୂର୍ଣ୍ଣାହୂତି ଯଜ୍ଞ ସଂପାଦନ କଲେ ଯଜ୍ଞକର୍ତ୍ତାର ସକଳ କାମନା ପୂର୍ଣ୍ଣ ହୁଏ ବୋଲି ଏହି ଭାଗରେ ବର୍ଣ୍ଣିତ ହୋଇଛି ।

(ଗ) ଉପନିଷଦ୍ –

"ଉପନିଷଦ୍ ଭାଗରେ ବ୍ରହ୍ମତତ୍ତ୍ୱ ବିଷୟର ଆଲୋଚନା କରାଯାଇଛି ; ଅତି ସୂକ୍ଷ୍ମଜ୍ଞାନର ଜିଜ୍ଞାସା ଅନୁସନ୍ଧାନ ଓ ନିର୍ଣ୍ଣୟ କରାଯାଇଛି । ଏଥିରେ ମାନବ ଜୀବନର ଚରମ ଲକ୍ଷ୍ୟ ମୁକ୍ତି ଲାଗି ପଥ ଆବିଷ୍କାର କରିବା ପାଇଁ ଉଦ୍ୟମ କରାଯାଇଛି "। (୧୨)

(ଘ) ଆଖ୍ୟାନ –

ଏଥିରେ ମୁନି ଋଷି ଓ ଆଗ୍ରର୍ଯ୍ୟମାନଙ୍କର ବଂଶ ପରମ୍ପରା ଓ ରାଜବଂଶାବଳୀ ବିଷୟରେ କୁହାଯାଇଛି । ତାହା ସହିତ ବିଧି ବାକ୍ୟର ଯଥାର୍ଥତାକୁ ପ୍ରତିପାଦିତ କରିବା ପାଇଁ ଅନେକ ଆଖ୍ୟାନ

ସନ୍ନିବେଶିତ ହୋଇଛି । ଏଗୁଡିକୁ ସ୍କନ୍ଧକାୟ ଆଖ୍ୟାନ ବୋଲି କୁହାଯାଏ । ସେଗୁଡିକ ମଧ୍ୟରୁ ରାଜା ହରିଶ୍ଚନ୍ଦ୍ର ଉପାଖ୍ୟାନ (୧୩) ସୋମହରଣ କଥା (୧୪) ଅସୁର ଓ ଦେବତା ମାନଙ୍କର ସଂଗ୍ରାମ କଥା ମୁଖ୍ୟତଃ ପ୍ରଧାନ । ଏହି ସ୍କନ୍ଧକାୟ ଆଖ୍ୟାନ ଗୁଡିକରେ ଗୂଢତତ୍ତ୍ୱ ମଧ୍ୟ ପ୍ରତିପାଦିତ ହୋଇଛି । ଏହି ବ୍ରାହ୍ମଣମାନଙ୍କ ମଧ୍ୟରୁ ଅନେକରେ ସୃଷ୍ଟି ବିଷୟକ ତଥ୍ୟ ଉପସ୍ଥାପିତ ହୋଇଅଛି । ତାଣ୍ଡ୍ୟ ବ୍ରାହ୍ମଣରେ ପ୍ରଜାପତିଙ୍କ ଅଙ୍ଗ ବର୍ଣ୍ଣନା ଓ କେତେକ ଦେବତାଙ୍କ ଉତ୍ପତ୍ତି ବିଷୟକ ବର୍ଣ୍ଣନା ଦେଖିବାକୁ ମିଳେ । ବ୍ରାହ୍ମଣ ଗ୍ରନ୍ଥର ପରିଶୀଳନରୁ ଜଣାପଡେ ଯାଗ ଯଜ୍ଞ ସଂପର୍କରେ ସେ ଯୁଗରେ ପଣ୍ଡିତମାନଙ୍କ ମଧ୍ୟରେ ଶାସ୍ତ୍ରାର୍ଥ ହେଉଥିଲା । ତେଣୁ ଏହ ଯୁଗରେ ମୀମାଂସା ଶାସ୍ତ୍ର ପଲ୍ଲବିତ ହୋଇଛି । (୧୫ ଓ ୧୫ କ)

ବ୍ରାହ୍ମଣ ଗ୍ରନ୍ଥ ଗୁଡିକ ଅନୁଶୀଳନ କଲେ ଜଣାପଡେ ତିନୋଟି ବିଷୟ ପ୍ରତି ଏଥିରେ ଗୁରୁତ୍ୱ ଆରୋପ କରାଯାଇଛି । ସେଗୁଡିକ ହେଲା ବିନିଯୋଗ , ହେତୁ ଏବଂ ନିରୁକ୍ତି ।

**ବିନିଯୋଗ –**

କେଉଁ କେଉଁ ଅର୍ଥ ସିଦ୍ଧି ନିମିତ୍ତ କେଉଁ କେଉଁ ମନ୍ତ୍ର ଗୁଡିକ ବିନିଯୋଗ କଲେ ଏହାର ଯୁକ୍ତିଯୁକ୍ତତା ସାବ୍ୟସ୍ତ ହେବ ତାହା ଏହି ବ୍ରାହ୍ମଣ ଗ୍ରନ୍ଥ ଗୁଡିକରେ ଦର୍ଶାଇ ଦିଆହୋଇଛି । ଏହାର ଗୋଟିଏ ଦୃଷ୍ଟାନ୍ତ ହେଉଛି 'ଆ ନୋ ମିତ୍ରା ବରୁଣା'। ଏହି ମନ୍ତ୍ର ଗାୟନ କଲେ ଦୀର୍ଘ ଦିନ ଧରି ଭୋଗୁଥିବା ରୋଗର ଉପଶମ ହୁଏ । ଏଠାରେ ବିନିଯୋଗର ଯୁକ୍ତିଯୁକ୍ତତା ପ୍ରତିପାଦିତ ହୋଇଛି । 'ମିତ୍ରାବରୁଣ' ପ୍ରାଣ ଓ ଅପାନ ସହିତ ସଂବନ୍ଧିତ । ଦିବସର ଦେବତା ହେଉଛନ୍ତି ମିତ୍ର ଯେ କି ପ୍ରାଣର ପ୍ରତୀକ । ରାତ୍ରିର ଦେବତା ବରୁଣ, ସେ ଅପାନର ପ୍ରତୀକ । ତେଣୁ ଦୀର୍ଘ ଦନ ଧରି ରୋଗଭୋଗ କରୁଥିବା ବ୍ୟକ୍ତି ଠାରେ ଏ ଦୁହେଁ ଅବସ୍ଥାନ କଲେ ତାହାରି ରୋଗର ଉପଶମ ହୁଏ ଏବଂ ସେ ପ୍ରାଣ ଅପାନ ଧାରଣ କରି ଜୀବିତ ରୁହେ । (୧୬)

**ହେତୁ –**

ବ୍ରାହ୍ମଣ ଗ୍ରନ୍ଥରେ ଯଜ୍ଞର ବିଧିବିଧାନ ଲାଗି ସମୁଚିତ କାରଣ ନିର୍ଦ୍ଦେଶ କରାଯାଇଛି । ଦ୍ରୋଣ କଳସରେ ସୋମରସ ପୂର୍ଣ୍ଣ କରି ଅଗ୍ନିଷ୍ଟୋମ ଯଜ୍ଞରେ ରଖିବାର ବିଧି ଅଛି । ସେହି ଦ୍ରୋଣ କଳସ ରଥ ତଳେ ରଖାଯାଏ । ଏପରି ବିଧିର ହେତୁ ତାଣ୍ଡ୍ୟ ବ୍ରାହ୍ମଣ ଗ୍ରନ୍ଥରେ ଉପଲବ୍ଧ ହୁଏ । ଏହାର କାରଣ ହେଉଛି ପ୍ରଜାପତି ପ୍ରାଣୀ ସୃଷ୍ଟି କରିବା ନିମିତ୍ତ କାମନା କଲେ ଏହି ଚିନ୍ତା ସମୟରେ ତାଙ୍କ ମସ୍ତିଷ୍କରୁ ଆଦିତ୍ୟଙ୍କର ସୃଷ୍ଟି ହେଲା । ଆଦିତ୍ୟ ପ୍ରଜାପତିଙ୍କର ଶିରଚ୍ଛେଦ କଲେ । ସେଥିରୁ ଦ୍ରୋଣକଳସର ସୃଷ୍ଟି ହେଲା । ସେହି ଦ୍ରୋଣ କଳସରେ ଥିବା ସୋମରସକୁ ପାନ କରି ଦେବତାମାନେ ଦୀର୍ଘ ଆୟୁ ଲାଭକଲେ । (୧୭) ତାଣ୍ଡ୍ୟ ବ୍ରାହ୍ମଣରେ ଅନ୍ୟ ଏକ ଦୃଷ୍ଟାନ୍ତ ଉଦୁମ୍ବର ବୃକ୍ଷ ଉନ୍ନର ସଂକ୍ରାନ୍ତରେ କୁହାଯାଇଛି ।

**ନିରୁକ୍ତି –**

"ବ୍ରାହ୍ମଣ ଗ୍ରନ୍ଥରେ କେତେକ ସ୍ଥାନରେ କଠିନ ଓ ଦୁର୍ବୋଧ୍ୟ ଶବ୍ଦର ବ୍ୟୁତ୍ପତ୍ତି କରାଯାଇଛି । ଭାଷାତାତ୍ତ୍ୱିକ ଦୃଷ୍ଟିରୁ ଏଗୁଡିକ ଅଧିକ ପ୍ରାମାଣିକ ଓ ମହତ୍ତ୍ୱ ପୂର୍ଣ୍ଣ । ମନେ ହୁଏ ଯାସ୍କଙ୍କର 'ନିରୁକ୍ତି'ରେ ଯେଉଁ ଶବ୍ଦର ବ୍ୟାଖ୍ୟା କରାଯାଇଛି ସେଗୁଡିକର ମୂଳ ହେଉଛି ବ୍ରାହ୍ମଣ ଗ୍ରନ୍ଥ । ବ୍ରାହ୍ମଣର ବ୍ୟୁତ୍ପତ୍ତି ସଂହିତା ଭାଗର ନିରୁକ୍ତି ଉପରେ ଆଧାରିତ" । (୧୮)

ବ୍ରାହ୍ମଣ ଗ୍ରନ୍ଥ ଗୁଡିକ ହେଉଛି ଗଦ୍ୟ ସାହିତ୍ୟ । ଏହା ଆଦିମ ଗଦ୍ୟ ଶୈଳୀକୁ ଅନୁସରଣ କରିଅଛି । ସଂସ୍କୃତ ଗଦ୍ୟ ସାହିତ୍ୟର ମୂଳ ଉତ୍ସ ଭାବରେ ବ୍ରାହ୍ମଣକୁ ଗ୍ରହଣ କରାଯାଏ । କେବଳ ସଂସ୍କୃତ ସାହିତ୍ୟ କାହିଁକି ଭାରତୀୟ ଗଦ୍ୟ ସାହିତ୍ୟର ଇତିହାସରେ ଏଗୁଡିକର ଯଥେଷ୍ଟ ଗୁରୁତ୍ୱ ରହିଅଛି । ଏଥିରେ ବର୍ଣ୍ଣିତ ଆଖ୍ୟାନ ଗୁଡିକ ବହୁଭାବରେ ଭାରତୀୟ ଗଳ୍ପ ସାହିତ୍ୟକୁ ନୟନ୍ତିତ କରିଅଛି । କେବଳ ଯାଗ ଯଜ୍ଞ ନୁହେଁ, ତତ୍‌କାଳୀନ ସାମଗ୍ରିକ ସାମାଜିକ ଚିତ୍ରର ପ୍ରତିଛବି ବ୍ରାହ୍ମଣ ଗୁଡିକରେ ପ୍ରତିଫଳିତ ହୋଇଛି । ଷଷ୍ଠ ଶତାବ୍ଦୀର ବୌଦ୍ଧ ଜାତକ ଗଳ୍ପ ଗୁଡିକର ସୃଷ୍ଟି ପଛରେ ବ୍ରାହ୍ମଣ ଆଖ୍ୟାନ ଗୁଡ଼ିକର ପ୍ରଭାବ ଅତି ସ୍ପଷ୍ଟ । ମ୍ୟାକ୍ସମୂଲାର ବ୍ରାହ୍ମଣଗ୍ରନ୍ଥଗୁଡିକ ସଂପର୍କରେ ଯେଉଁ ମତାମତ ଦେଇଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । (୧୯)

ଉପରୋକ୍ତ ଆଲୋଚନାକୁ ଦୃଷ୍ଟିରେ ରଖି ବ୍ରାହ୍ମଣ ଗ୍ରନ୍ଥ ଗୁଡିକର ଯେଉଁ ଗୁରୁତ୍ୱ ରହିଛି ତାହା ପ୍ରଦତ୍ତ ହେଲା ।-

"(କ) ଐତିହାସିକ ଦୃଷ୍ଟି କୋଣରୁ ଏଗୁଡିକ ବିଶାଳ ଗ୍ରନ୍ଥ

(ଖ) ତତ୍‌କାଳୀନ ଭାରତର ସାମାଜିକ, ଧାର୍ମିକ ଓ ନୈତିକ ବିକାଶର ଧାରା ସଂପର୍କରେ ତଥ୍ୟ ମିଳିଥାଏ ।

(ଗ) ପ୍ରାଚୀନ ଗଦ୍ୟ ରଚନାର ତଥ୍ୟ, ଶୈଳୀ, ବ୍ୟାକରଣ ଓ ଶବ୍ଦତତ୍ତ୍ୱ ଇତ୍ୟାଦି ବିଷୟରେ ଦିଗ୍‌ଦର୍ଶନ ଦେଇଥାଏ ।

(ଘ) ପରବର୍ତ୍ତୀ ଭାରତୀୟ ଗଦ୍ୟ ସାହିତ୍ୟ ଉପରେ ପ୍ରଭାବ ପକାଇଛି ।

(ଙ) ଏଗୁଡିକର ଆଖ୍ୟାନ ଭାଗ ଭାରତୀୟ ଗଳ୍ପ ସାହିତ୍ୟ ବିଶେଷ କରି ବୌଦ୍ଧ ଜାତକ ଗଳ୍ପକୁ ପ୍ରଭାବିତ କରିଅଛି ।

(ଚ) ଯାଗ ଯଜ୍ଞର ଜଟିଳତା ସଂପର୍କରେ ସୂଚନା ଦେଇଥାଏ ।

(ଛ) ଭାରତୀୟ ଦାର୍ଶନିକ ଚିନ୍ତାଧାରାର କ୍ରମବିକାଶ ବିଷୟରେ ଜ୍ଞାନ ଆହରଣ କରିବା ନିମନ୍ତେ ଅଧିକ ଗୁରୁତ୍ୱ ପୂର୍ଣ୍ଣ ।

(ଜ) ବ୍ରାହ୍ମଣ କାଳରେ ଏକ ସୁ ସଂଗଠିତ ଓ ଶକ୍ତିଶାଳୀ ପୁରୋହିତ ଗୋଷ୍ଠୀ ସୃଷ୍ଟି ହୋଇଥିବାର ସୂଚନା ମିଳେ ।

(ଝ)ବ୍ରାହ୍ମଣ ସମୟରେ ଆର୍ଯ୍ୟମାନେ ଅପେକ୍ଷାକୃତ ଶାନ୍ତିପୂର୍ଣ୍ଣ ଜୀବନ ଯାପନ କରୁଥିଲେ । ଆର୍ଯ୍ୟେତର ଜାତି ସହିତ ସଂଗ୍ରାମ ନଥିବାର ଅନୁମାନ କରାଯାଏ । ସେମାନେ ଏକ ସହବସ୍ଥାନ ନୀତି ଅବଲମ୍ବନ କରୁଥିଲେ । ଆର୍ଯ୍ୟୋତ୍ତର ସଭ୍ୟତା ଉପରେ ଆର୍ଯ୍ୟ ସଭ୍ୟତା ଅଧିକ ପ୍ରଭାବ ପକାଇଥିବାର ସୂଚନା ମିଳେ । ଫଳରେ ଉଭୟ ସଂସ୍କୃତି ଥିଲେ ପରସ୍ପରର ପୋଷକ ଓ ପରିପୂରକ" । (୨୦)

**ବ୍ରାହ୍ମଣ ଗ୍ରନ୍ଥର କାଳ ନିରୂପଣ –**

ଭୌଗଳିକ ବିବରଣୀରୁ ଜଣାପଡେ ବ୍ରାହ୍ମଣ ଗ୍ରନ୍ଥ ସରସ୍ୱତୀ ନଦୀ ଓ କୁରୁପାଞ୍ଚାଳର ପ୍ରାନ୍ତୀୟ ଦେଶରେ ଉନ୍ମେଷ ତଥା ବିକାଶ ଲାଭ କରିଥିଲା । ଯମୁନା ନଦୀ ପ୍ରବାହିତ ହେଉଥିବା ପ୍ରଦେଶକୁ 'କାରପଚୟ' ଓ ତାର ସଙ୍ଗମର ମଧ୍ୟ ସୂଚନା ମିଳେ । କୁରୁକ୍ଷେତ୍ରକୁ ପ୍ରଜାପତିଙ୍କ ବେଦୀ ରୂପେ ସ୍ୱୀକାର କରାଯାଇଛି । (୨୧) ଏଥିରୁ ମନେହୁଏ କୁରୁକ୍ଷେତ୍ରରେ ବ୍ରାହ୍ମଣ ଗ୍ରନ୍ଥ ସଂକଳିତ ହୋଇଛି,

ଯେଉଁଠାରେ କି ସକଳ ପ୍ରକାର ଯାଗଯଜ୍ଞ ଅନୁଷ୍ଠିତ ହେଉଥିଲା । ମନୁସ୍ମୃତିରେ ଦୃଶଦ୍‌ବତୀ ଓ ସରସ୍ୱତୀ ନଦୀର ମଧ୍ୟବର୍ତ୍ତୀ ସ୍ଥାନକୁ ବ୍ରହ୍ମାବର୍ତ୍ତ କୁହାଯାଇଛି । ଏହା ଥିଲା ଯଜ୍ଞ ଓ ସଂସ୍କୃତିର ପ୍ରାଣ କେନ୍ଦ୍ର । ଶତପଥ ବ୍ରାହ୍ମଣ ହେଉଛି ବ୍ରାହ୍ମଣ ମଧ୍ୟରେ ପ୍ରାଚୀନତମ । ଶତପଥରେ ଗୋଟିଏ ଜ୍ୟୋତିଷ ଘଟଣାର ବର୍ଣ୍ଣନା ଅଛି । ଶଙ୍କରବାଳକୃଷ୍ଣ ଦିକ୍ଷୀତ ଙ୍କ ଗଣନା ଅନୁସାରେ ଏହାର ସମୟ ହେଉଛି ବିକ୍ରମ ପୂର୍ବ ୩୦୦୦ ବର୍ଷ ତଳର । ବେଦାଙ୍ଗ ଜ୍ୟୋତିଷ ଏହାର ସମୟ ଖ୍ରୀ.ପୂ ୧୪୦୦ ବୋଲି କହିଅଛି । ମାକ୍ସମୁଲାର ଖ୍ରୀ.ପୂ. ୧୧୮୧ ପୂର୍ବବର୍ତ୍ତୀ ସ୍ୱୀକାର କରି ନାହାଁନ୍ତି । ଦୀକ୍ଷିତଙ୍କ ମତାନୁସାରେ ଖ୍ରୀ.ପୂ. ୩୦୦୦ ବୋଲି ଏହାକୁ ଧରା ଯାଇପାରେ । ତେଣୁ ବ୍ରାହ୍ମଣ ଗ୍ରନ୍ଥର ସଂକଳନ ସମୟ ଖ୍ରୀ.ପୂ ୨୦୦୦ ହୋଇପାରେ । (୨୨) ବିଭିନ୍ନ ବେଦ ଅନ୍ତର୍ଗତ ବ୍ରାହ୍ମଣ ଗୁଡିକ ସଂପର୍କରେ ପୃଥକ୍ ପୃଥକ୍ ଭାବରେ ଆଲୋଚନାର ଆବଶ୍ୟକତା ରହିଅଛି ।

## ଋଗ୍‌ବେଦୀୟ ବ୍ରାହ୍ମଣ –

ଦୁଇଟି ଋଗ୍‌ବେଦୀୟ ବ୍ରାହ୍ମଣ ବର୍ତ୍ତମାନ ଉପଲବ୍ଧ ହୁଏ । ଗୋଟିଏ ହେଲା ଐତରେୟ ବ୍ରାହ୍ମଣ ଅପରଟି ଶାଙ୍ଖାୟନ ବା କୌଷୀତକି ବ୍ରାହ୍ମଣ ।

### (କ) ଐତରେୟ ବ୍ରାହ୍ମଣ –

ଐତରେୟ ବ୍ରାହ୍ମଣର ସଂକଳକ ହେଉଛନ୍ତି ମହିଦାସ ଐତେରେୟ । ସଂକଳକଙ୍କ ନାମାନୁସାରେ ଉକ୍ତ ବ୍ରାହ୍ମଣ ନାମିତ ହୋଇଛି । ଐତରେୟ ବ୍ରାହ୍ମଣରେ ୪୦ ଅଧ୍ୟାୟ ରହିଅଛି । ଏହା ଆଠ ଗୋଟି ପଞ୍ଚକରେ ବିଭକ୍ତ । ଏହାର ଶେଷ ୧୦ ଅଧ୍ୟାୟ ପରବର୍ତ୍ତୀ ରଚନା ବୋଲି ଗବେଷକମାନେ ମତ ପ୍ରଦାନ କରିଥାନ୍ତି । ଏହା ଆରମ୍ଭରୁ ୧୬ଶ ଅଧ୍ୟାୟ ପର୍ଯ୍ୟନ୍ତ ଏକ ଦିନ ବ୍ୟାପି 'ଅଗ୍ନିଷ୍ଟୋମ' ନାମକ ସୋମ ଯଜ୍ଞର ପ୍ରକାର ତଥା ସ୍ୱରୂପ ଓ ପର ଦୁଇ ଅଧ୍ୟାୟରେ ୩୬୦ ଦିନରେ ପୂର୍ଣ୍ଣତା ଲାଭ କରୁଥିବା 'ଗବାମୟନ' ଏବଂ ତାପର ୬ ଅଧ୍ୟାୟରେ ଦ୍ୱାଦଶାହ ଯଜ୍ଞ ବିଧାନ ବର୍ଣ୍ଣିତ ହୋଇଅଛି । ପରବର୍ତ୍ତୀ ଅଧ୍ୟାୟରେ ଅଗ୍ନିହୋତ୍ରାଦି ଯଜ୍ଞର ବର୍ଣ୍ଣନା ହୋଇଅଛି । ପରବର୍ତ୍ତୀ ୮ ଅଧ୍ୟାୟରେ ରାଜ୍ୟାଭିଷେକ ମହୋତ୍ସବ ତଥା ରାଜପୁରୋହିତଙ୍କର ଧାର୍ମିକ ତଥା ରାଜନୈତିକ ଅଧିକାର ସଂପର୍କରେ ବର୍ଣ୍ଣନା ରହିଛି । ଶେଷ ଦଶ ଅଧ୍ୟାୟରେ ଇତିହାସ ଓ ଉପାଖ୍ୟାନ ସନ୍ନିବେଶିତ ହୋଇଛି । ଏହି ବ୍ରାହ୍ମଣର କେତେଗୋଟି ପଂକ୍ତିର ଶେଷରେ ଚରୈବେତି, ଚରୈବେତି ( ଆଗେଇଚାଲ, ଆଗେଇଚାଲ ) ବୋଲି ବର୍ଣ୍ଣିତ ହୋଇଛି । ଏହି ପଂକ୍ତିଟି ଖୁବ୍ ମହିମାମୟ ଯାହା ଯୁଗ ଯୁଗ ଧରି ଭାରତୀୟଙ୍କୁ ଉଦ୍‌ବୋଧନ ଦେଉଅଛି । ବ୍ରାହ୍ମଣ ଗ୍ରନ୍ଥ ମଧ୍ୟରେ ଏହା ଏକ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏହି ବ୍ରାହ୍ମଣର ଦେବତା ସଂଖ୍ୟା ହେଉଛି ୩୩ ଏବଂ ଇନ୍ଦ୍ର ହେଉଛନ୍ତି ସର୍ବଶ୍ରେଷ୍ଠ ଦେବତା । (୨୩) ଯଦିଓ ଇନ୍ଦ୍ର ସର୍ବଶ୍ରେଷ୍ଠ ଦେବତା ଭାବରେ ବିଦିତ ଥିଲେ ତଥାପି ବିଷ୍ଣୁ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ରାଜା ହରିଶ୍ଚନ୍ଦ୍ର ବା ଶୁନଃଶେପ ଉପାଖ୍ୟାନ ଐତରେୟ ବ୍ରାହ୍ମଣର ଏକ ସ୍ମରଣୀୟ ଉପାଖ୍ୟାନ । 'ଶୁନଃଶେପ' ଋଗ୍‌ବେଦର ଋଷି ଏବଂ କେତେକ ମନ୍ତ୍ରର ସ୍ରଷ୍ଟା ମଧ୍ୟ । ଇକ୍ଷ୍ୱାକୁ ବଂଶୀୟ ରାଜା ହରିଷ୍ଚନ୍ଦ୍ରଙ୍କର କୌଣସି ସନ୍ତାନ ନଥିଲେ । ସେ ବରୁଣଙ୍କୁ ଆରାଧନା କଲେ । ବରୁଣ ସନ୍ତୁଷ୍ଟ ହୋଇ ବରଦାନ କଲେ । ଯଦି ଓ ତାଙ୍କର ଗୋଟିଏ ପୁତ୍ର ହେବ ତଥାପି ସେ ପୁତ୍ରକୁ ବଳିଦାନ ଦେବାକୁ ହେବ । ରାଜା ହରିଷ୍ଚନ୍ଦ୍ର ଗୋଟିଏ ପୁତ୍ର ଲାଭକଲେ ।

ଯାହାର ନାମ ଥିଲା ରୋହିତ । ରାଜାଙ୍କ ପ୍ରତିଜ୍ଞାର ପରୀକ୍ଷା ନେବାକୁ ବରୁଣ ଆସିଲେ । ରୋହିତ ଏକଥା ଜାଣି ବନରେ ଆତ୍ମଗୋପନ କରିବାରୁ ବରୁଣ କ୍ରୋଧାନ୍ୱିତ ହେଲେ । ଫଳରେ ରାଜା ରୋଗଗ୍ରସ୍ତ ହେଲେ । ଏକଥା ଜାଣି ରୋହିତ ବାପାଙ୍କୁ ଦେଖିବା ପାଇଁ ଚାଲି ଆସିଲେ । ଆସିବା ବାଟରେ ଅଜୀଗର୍ତ୍ତଙ୍କର କନିଷ୍ଠ ପୁତ୍ରକୁ କିଣି ଆଣିଲେ ବରୁଣଙ୍କୁ ବଳିଦାନ ଦେବାକୁ । ଯଜ୍ଞ ଆରମ୍ଭ ହେଲା । ଶୁନଃଶେପ ଖୁଣ୍ଟରେ ବନ୍ଧା ହେଲେ । ମାତ୍ର ନିଜର ମୁକ୍ତିପାଇଁ ଶୁନଃଶେପ ବରୁଣଙ୍କୁ ପ୍ରାର୍ଥନା କଲେ । ବରୁଣ ପ୍ରୀତ ହେଲେ । ଶୁନଃଶେପ ବନ୍ଧନରୁ ମୁକ୍ତ ହେଲେ । ହରିଶ୍ଚନ୍ଦ୍ର ରୋଗରୁ ମୁକ୍ତି ଲାଭ କଲେ । ଏଭଳି ଦୃଶ୍ୟ ଦେଖି ଅଜୀବର୍ତ୍ତ ପୁତ୍ରଙ୍କୁ ଫେରାଇ ନେବାକୁ ଚାହିଁଲେ । ମାତ୍ର ଶୁନଃଶେପ ରାଜିହେଲେ ନାହିଁ ପିତାଙ୍କ ସହିତ ଯିବାକୁ । ଶେଷରେ ଶୁନଃଶେପଙ୍କୁ ବିଶ୍ୱାମିତ୍ର ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ । ବିଶ୍ୱାମିତ୍ରଙ୍କ ପୁଅମାନେ ଏହାକୁ ଗ୍ରହଣ କରିପାରିଲେ ନାହିଁ । ବିଶ୍ୱାମିତ୍ର ରାଗି ଯାଇ ପୁଅମାନଙ୍କୁ ଆର୍ଯ୍ୟତ୍ୱର ମର୍ଯ୍ୟଦାରୁ ଖସାଇ ଦେଲେ । ଐତରେୟ ବ୍ରାହ୍ମଣରେ କେତେକ ସାମାଜିକ ଚିତ୍ର ସୂଚନା ମିଳୁଅଛି -

"(କ) ବ୍ରାହ୍ମଣ ବ୍ରାହ୍ମଣେତର ଜାତିର ଝିଅକୁ ବିଭା ହୋଇ ସ୍ୱାମୀ ଭାବରେ ଚଳି ପାରୁଥିଲା । (ଖ) ସମାଜରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା ଏବଂ ଗୃହ ସ୍ୱାମୀ ଦାସୀ ଗର୍ଭରୁ ନିଜ ଔରସରୁ ସନ୍ତାନ ଜନ୍ମ କରାଇପାରୁଥିଲା । (ଗ) ଦାସୀ ପୁତ୍ରର ପିତାଙ୍କ ସଂପତ୍ତିରେ ଅଧିକାର ନଥିଲା । (ଘ) ବ୍ରାହ୍ମଣେତର ଜାତିର ଲୋକେ ସାଧନା ବଳରେ ଋଷିତ୍ୱର ମର୍ଯ୍ୟଦା ଲାଭ କରି ପୂଜିତ ହେଉଥିଲେ । ଜ୍ଞାନ ନିକଟରେ ବର୍ଣ୍ଣଗତ ବିଭେଦତା କିଛି କାମ କରୁନଥିଲା । (ଙ) ପିତା ସନ୍ତାନ ମାନଙ୍କର ଦାୟିତ୍ୱ ଗ୍ରହଣ କରୁଥିଲେ । ମାତ୍ର ଯେ ଏକଥା କରି ପାରୁନଥିଲେ ସେ ପିତୃତ୍ୱର ଗୌରବରୁ ବଞ୍ଚିତ ହେଉଥିଲେ । (ଚ) ଅନାଥ ଶିଶୁଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରାଯାଉଥିଲା । (ଛ) ଯଜ୍ଞ ପୀଠରେ ବେଳେ ବେଳେ ନରବଳି ଦିଆଯାଉଥିଲା । (ଜ) ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳ ଛାଡି ଭାରତର ପୂର୍ବ ଓ ଦକ୍ଷିଣ ଅଞ୍ଚଳକୁ ଆସିଥିଲେ ଏବଂ ମଧ୍ୟଦେଶ ସେମାନଙ୍କ ସଭ୍ୟତା ଓ ସଂସ୍କୃତିର କେନ୍ଦ୍ରବିନ୍ଦୁ ଥିଲା । (ଝ) ଏହି ପୂର୍ବ ଓ ଦକ୍ଷିଣ ଦିଗକୁ ଯିବା ସମୟରେ ସେମାନଙ୍କର କେତେକ ଆର୍ଯ୍ୟେତର ଜାତି ସହିତ ପରିଚିତି ଘଟିଥିଲା ।(୨୪)

ଐତରେୟ ବ୍ରାହ୍ମଣରେ ସୋମ ହରଣ ଉପାଖ୍ୟାନ ରହିଅଛି । ଗାୟତ୍ରୀ 'ଶ୍ୟେନ୍ୟ' ପକ୍ଷୀ ରୂପରେ ପାଦରେ ଧରି ସୋମକୁ ଦେବତାଙ୍କ ନିକଟକୁ ନେଇଗଲେ । ସେହି ଉପାଖ୍ୟାନରେ ସୋମ ପାନ ଲାଗି ଦେବତାଙ୍କ ମଧ୍ୟରେ କଳହ ସୃଷ୍ଟି ହୋଇଥିଲା । ପବନ ଓ ଇନ୍ଦ୍ର ଦେବତାଙ୍କ ଦୌଡ଼ ପ୍ରତିଯୋଗୀତାରେ ବିଜୟୀ ହେବାରୁ ସୋମ ପାନ କରିବାର ଅଧିକାର ପାଇଥିଲେ । ମାତ୍ର ମିତ୍ରାବରୁଣ ଶେଷରେ ଆସି ପହଞ୍ଚିଥିଲେ । ଐତରେୟର ଶେଷ ୩ ଅଧ୍ୟାୟରେ ଐତିହାସିକ ବିବରଣ ମିଳେ । ସେଥିରୁ ଜଣାପଡେ ଦକ୍ଷିଣରେ 'ଭୋଜରାଜ୍ୟ', ପଶ୍ଚିମରେ 'ନୀଚ୍ୟ ଓ ଅପାଚ୍ୟ' ଲୋକଙ୍କର ରାଜ୍ୟ, ଉତ୍ତରରେ ଉତ୍ତର କୁରୁ ଏବଂ ମଧ୍ୟ ଦେଶରେ କୁରୁ ପାଞ୍ଚାଳ ଲୋକଙ୍କ ରାଜ୍ୟ ଥିଲା । ଏହି ବ୍ରାହ୍ମଣରେ ପରୀକ୍ଷିତ, ଜନ୍ମେଜୟ, ମନୁପୁତ୍ର ଶର୍ଯ୍ୟାତ, ପିଜବନପୁତ୍ର ସୁଦାମ, ଦୁଷ୍ମନ୍ତ ପୁତ୍ର ଭରତ ଆଦି ନାମ ସହିତ କାଶୀ, ମତ୍ସ୍ୟ, କୁରୁକ୍ଷେତ୍ର, ଖାଣ୍ଡବ ଆଦି ସ୍ଥାନର ଉଲ୍ଲେଖ ମିଳେ । ଏହି ବ୍ରାହ୍ମଣରେ ସନ୍ତାନ ଜନ୍ମ

ଦ୍ୱାରା ଦେବଋଣ ଓ ପିତୃଋଣ ପରିଶୋଧ କରିବା ନିମିତ୍ତ ପୁରୁଷ ଅନେକ ସ୍ତ୍ରୀ ବିବାହ କରୁଥିଲା । (୨୫) ନ୍ୟାୟପୂର୍ଣ୍ଣ ବିବାହ ହେଉଛି ପ୍ରେମ ବିବାହ ବୋଲି କୁହାଯାଇଛି । (୨୬) । ଏହି ବ୍ରାହ୍ମଣରେ କନ୍ୟାର ଜନ୍ମକୁ ଦୁଃଖ ଦାୟକ ବୋଲି କୁହାଯାଇଛି । (୨୭) ସାୟାଣଙ୍କ ଭାଷ୍ୟ ସହିତ ଐତରେୟ ବ୍ରାହ୍ମଣର ଅନେକ ସୁନ୍ଦର ସଂସ୍କରଣ ରହିଅଛି ।

### ସାଂଖ୍ୟାୟନ ବା କୌଷୀତିକି ବ୍ରାହ୍ମଣ

ସାଂଖ୍ୟାୟନ ବା କୌଷୀତିକି ବ୍ରାହ୍ମଣ ଋଗ୍‌ବେଦୀୟ ବ୍ରାହ୍ମଣର ଦ୍ୱିତୀୟ ଗ୍ରନ୍ଥ । କୌଷୀତକି ଋଷିଙ୍କର ପୁତ୍ର ଉକ୍ତ ବ୍ରାହ୍ମଣର ପ୍ରଧାନ ଉପଦେଷ୍ଟା । ଏହା ତିରିଶ ଅଧ୍ୟାୟରେ ବିଭକ୍ତ । ପ୍ରତି ଅଧ୍ୟାୟରେ ୫ରୁ ଆରମ୍ଭ କରି ୧୭ ପର୍ଯ୍ୟନ୍ତ ବିଭିନ୍ନ ସଂଖ୍ୟକ ଖଣ୍ଡ ରହିଅଛି । ସର୍ବମୋଟ ଏଥିରେ ୨୨୬ ଖଣ୍ଡ ବିଦ୍ୟମାନ । ଏହି ଖଣ୍ଡମାନଙ୍କରେ ଲମ୍ବା ଲମ୍ବା ଗଦ୍ୟ ରହିଅଛି । ଏହାର ପ୍ରଥମ ୬ ଅଧ୍ୟାୟରେ ଯଜ୍ଞର ବର୍ଣ୍ଣନା ଅଛି । ଯଜ୍ଞର ପ୍ରାଧାନ୍ୟ ଓ ଶାସ୍ତ୍ରୀୟ ବ୍ୟାଖ୍ୟାର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଅଛି । ଆର୍ଯ୍ୟଙ୍କ ପୈଙ୍ଗ ନାମକୁ ଆଉ ଜଣେ ଆର୍ଯ୍ୟଙ୍କ ସହିତ ବିରୋଧ ବିଷୟ ଭାବେ ଏଥିରେ ବର୍ଣ୍ଣିତ । ଏହି ବିରୋଧିତାର ଫଳଶ୍ରୁତି ସ୍ୱରୂପ କୌଷୀତକିଙ୍କ ଶ୍ରେଷ୍ଠତା ପ୍ରତିପାଦିତ ହୋଇଛି । (୨୮) ସାଂଖ୍ୟାୟନ ବ୍ରାହ୍ମଣରେ ରୁଦ୍ର ଦେବତାଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇଛି । (୨୯) ଷଷ୍ଠ ଅଧ୍ୟାୟରେ ରୁଦ୍ରଙ୍କର ବିଭିନ୍ନ ନାମ ଯଥା - ପଶୁପତି, ଉଗ୍ର, ମହାଦେବ, ଈଶାନ, ଭବ, ଶିବ, ରୁଦ୍ର ,ଅଶନି ଆଦି ଉଲ୍ଲିଖିତ ହୋଇଛି । ସେହି ସବୁ ନାମର ଉତ୍ପତ୍ତି ସଂପର୍କରେ ବିଚିତ୍ର ପ୍ରକାର କଳ୍ପନା କରାଯାଇଛି । ସପ୍ତମ ଅଧ୍ୟାୟରେ ଅଗ୍ନିକୁ ନିମ୍ନକୋଟୀ ଓ ବିଷ୍ଣୁଙ୍କୁ ଉଚ୍ଚକୋଟୀର ଦେବତା ଭାବରେ ଗ୍ରହଣ କରାଯାଇଛି ।(୩୦) ଏହି ବ୍ରାହ୍ମଣରେ ପଶୁବଳି ତଥା ହତ୍ୟା ପ୍ରତି ବିତୃଷ୍ଣା ପ୍ରଦର୍ଶିତ ହୋଇଅଛି ।(୩୧) ଏଥିରେ କୁହାଯାଇଛି ଯେଉଁ ପଶୁମାନଙ୍କୁ ଯଜ୍ଞରେ ବଳି ଦିଆଯାଏ ସେମାନେ ଅନ୍ୟ ଲୋକରେ ବଳିଦାନ କରୁଥିବା ମଣିଷକୁ ଭକ୍ଷଣ କରନ୍ତି ।

ଦୁଇଟି ଯାକ ବ୍ରାହ୍ମଣରେ ସୌସାଦୃଶ୍ୟ ସହିତ ଅନେକ ବୈସାଦୃଶ୍ୟ ରହିଅଛି । ଐତରେୟରେ ସରଳ ଓ କ୍ଷୁଦ୍ର ବାକ୍ୟ ବ୍ୟବହାର ହୋଇଥିଲାବେଳେ କୌଷୀତକିରେ ଦୀର୍ଘ ଓ ଜଟିଳ ବାକ୍ୟ ରହିଅଛି । ଭୌଗଳିକ, ଐତିହାସିକ ଓ ସାମାଜିକ ଦୃଷ୍ଟି କୋଣରୁ ବିଗ୍ଚର କଲେ ଉଭୟ ଗ୍ରନ୍ଥ ଅନୁରୂପ ଓ ଗୁରୁତ୍ୱ ପୂର୍ଣ୍ଣ । ଶାଙ୍ଖାୟନ ବ୍ରାହ୍ମଣରେ ଦେବ ମଣ୍ଡଳ ସଂସ୍କୃତ ଭାଷା ଓ ଛନ୍ଦର ଶୁଦ୍ଧତା ରକ୍ଷା ଯୋଗୁ ଇନ୍ଦ୍ର ବୃତ୍ରାସୁରକୁ ବଧ କରିଥିଲେ ।(୩୨) ତେଣୁ ଆର୍ଯ୍ୟମାନେ ଏହି ଶୁଦ୍ଧତାର ରକ୍ଷଣ ଲାଗି ଉତ୍ତର ଦେଶୀୟ ଭାଷା ଉପରେ ଯଥେଷ୍ଟ ନିର୍ଭର ଶୀଳ ଥିଲେ ଏବଂ ଫଳରେ ଉତ୍ତର ଅଞ୍ଚଳରେ ବହୁ ଶିକ୍ଷାନୁଷ୍ଠାନ ଗଢି ଉଠିଥିଲା । ସେଠାରେ ଶିକ୍ଷା ଲାଭ କରି ଛାତ୍ରମାନେ ଅନ୍ୟତ୍ର ସେମାନଙ୍କ ଜ୍ଞାନ ବିତରଣ କରୁଥିଲେ ।(୩୩)

### ଯଜୁର୍ବେଦୀୟ ବ୍ରାହ୍ମଣ

ଦୁଇଟି ଯଜୁର୍ବେଦୀୟ ବ୍ରାହ୍ମଣ ଗ୍ରନ୍ଥ ହେଲା ଶତପଥ ବ୍ରାହ୍ମଣ ଓ ତୈତ୍ତିରୀୟ ବ୍ରାହ୍ମଣ । ଶତପଥ ବ୍ରାହ୍ମଣ ଶୁକ୍ଳ ଯଜୁର୍ବେଦାନ୍ତର୍ଗତ ହୋଇଥିଲା ବେଳେ ତୈତ୍ତିରୀୟ ବ୍ରାହ୍ମଣ କୃଷ୍ଣ ଯଜୁର୍ବେଦାନ୍ତର୍ଗତ ଅଟେ । ଏହାର ପୃଥକ ପୃଥକ ଆଲୋଚନା କରାଗଲା ।

**ଶତପଥ ବ୍ରାହ୍ମଣ –**

ବାଳଗଙ୍ଗାଧର ତିଳକଙ୍କ ମତାନୁସାରେ ଶତପଥ ବ୍ରାହ୍ମଣ ଖ୍ରୀ.ପୂ. ୨୫୦୦ର ରଚନା । (୩୪) ଜ୍ୟୋତିର୍ବିଦ୍ ଶଙ୍କର ବାଳକୃଷ୍ଣ ଦୀକ୍ଷିତ ଏହାକୁ ଆହୁରି ୫୦୦ ବର୍ଷ ପଛକୁ ନେଇଅଛନ୍ତି । ସେ ଶତପଥ ବ୍ରାହ୍ମଣରେ ଥିବା ୨/୧/୨/୩ ପଂକ୍ତି ଉପରେ ଏହି ସିଦ୍ଧାନ୍ତ କରି ଅଛନ୍ତି । (୩୫) ଶତପଥ ବ୍ରାହ୍ମଣର ସୃଷ୍ଟି କାଳ ସମ୍ପର୍କରେ ବହୁ ମତ ଥିଲେ ମଧ୍ୟ ଏହା ସ୍ୱୀକାର କରିବାକୁ ହେବ ଏହା ଅତି ପୁରାତନ । ଋଗ୍‌ବେଦ ସଂହିତା ଭଳି ଶତପଥ ବ୍ରାହ୍ମଣ ଏକ ମର୍ଯ୍ୟାଦାବନ୍ତ ଗ୍ରନ୍ଥ । ଏ ସ୍ଥାନରେ ବଳଦେବ ଉପାଧ୍ୟାୟଙ୍କ ମତ ପ୍ରଣିଧାନ ଯୋଗ୍ୟ । (୩୬) ଶୁକ୍ଳ ଯଜୁର୍ବେଦର ଦୁଇଶାଖା ମାଧ୍ୟନ୍ଦିନ ଓ କାଣ୍ୱ ଏ ଉଭୟରେ ଉପଲବ୍ଧ । ଅବଶ୍ୟ ଶାଖା ଭେଦରେ ଆକାରର ସଂଖ୍ୟାରେ ପାର୍ଥକ୍ୟ ରହିଅଛି । ଏହି ଗ୍ରନ୍ଥରେ ଅଗ୍ନିହୋତ୍ର , ବାଜପେୟ, ଅଶ୍ୱମେଧ ଆଦି ଯଜ୍ଞ ସଂପର୍କରେ ବର୍ଣ୍ଣନା କରାଯାଇଛି । ଏହା ବ୍ୟତୀତ ପଶୁବଧ ,ପଞ୍ଚ ମହାଯଜ୍ଞ, ଦଶ ପୂର୍ଣ୍ଣିମାସ, ଦେବ ଯଜ୍ଞ, ମନୁଷ୍ୟ ଯଜ୍ଞ, ଭୂତ ଯଜ୍ଞ, ଅଗ୍ନି ଚୟନ ଆଦି ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥରେ ବିଭିନ୍ନ ପ୍ରକାର ହୋମ , ବ୍ରତୋପନୟନ, ସ୍ୱାଧ୍ୟାୟ ବିଷୟରେ ବର୍ଣ୍ଣନା ରହିଅଛି । ରାଜାଙ୍କ ଅଭିଷେକ ଓ ସୋମ ଯାଗ ଇତ୍ୟାଦି ସଂପର୍କରେ ଏଥିରେ ଉଲ୍ଲେଖ କରାଯାଇଛି । ଏଥିରେ ଇତିହାସ ସଂପର୍କିତ ନୂତନ ଦୃଷ୍ଟିକୋଣ ପ୍ରତିପାଦିତ ହୋଇଛି । ଏହି ଗ୍ରନ୍ଥକୁ ସାହିତ୍ୟର ଆସନ ଦିଆଯାଇଛି । (୩୭) ଏଥିରେ କାଶୀ ରାଜ, ଧୃତରାଷ୍ଟ୍ର, ଦୁଷ୍ମନ୍ତ, ଭରତ, ଜନ୍ମେଜୟ ପ୍ରଭୃତି କେତେକ ରାଜାଙ୍କର ନାମୋଲ୍ଲେଖ ହୋଇଛି । ଶତପଥରେ ଆର୍ଯ୍ୟାବର୍ତ୍ତ, କୁରୁ, ପାଞ୍ଚାଳ, ସୃଞ୍ଜର ଆଦିର ଉଲ୍ଲେଖ ମିଳେ ।

ଅପସରାମାନଙ୍କର ନୃତ୍ୟ, ଗୀତ ଓ ସୌନ୍ଦର୍ଯ୍ୟର ଉଲ୍ଲେଖ ମଧ୍ୟ ଶତପଥରେ ମିଳେ । (୩୮) ଏଥିରେ ୩୩ ଦେବତା ସ୍ୱୀକୃତ ହୋଇଅଛନ୍ତି । ଏମାନଙ୍କ ମଧ୍ୟରେ ୮ ବସୁ, ୧୧ ରୁଦ୍ର, ୧୨ ଆଦିତ୍ୟ, ଆକାଶ ଓ ପୃଥିବୀ ଅଛନ୍ତି । ଏଥିରେ ରେତ ବା ବୀର୍ଯ୍ୟକୁ ସୋମ୍ କୁହାଯାଇଛି । (୩୯) ରେତ ପ୍ରାଣ ଓ ଶରୀରକୁ ପ୍ରସନ୍ନ ରଖେ ଓ ମସ୍ତିଷ୍କକୁ ଶକ୍ତିଶାଳୀ କରେ । ଏହି ରେତର ସଂରକ୍ଷଣ ବିଷୟ ଏଥିରେ ବର୍ଣ୍ଣିତ ହୋଇଛି । ଶତପଥରେ କୁହାଯାଇଛି ପୁରୁଷ ହେଉଛି ଅର୍ଦ୍ଧଭାଗ ମାତ୍ର, ଯେ ପର୍ଯ୍ୟନ୍ତ ସେ ପତ୍ନୀ ଗ୍ରହଣ ନ କରିଛି, ସନ୍ତାନ ଉତ୍ପନ୍ନ ନ କରିଛି ତାର ପୂର୍ଣ୍ଣତା ଆସେ ନାହିଁ । "ଅଯଜ୍ଞୀୟୋ ବୈଷଯୋଃପତ୍ନୀକ", ଅର୍ଥାତ୍ ପତ୍ନୀ ବିହୀନ ପୁରୁଷ ଯଜ୍ଞକର୍ମର ଅଧିକାରୀ ନୁହେଁ । (୪୦)

ଶତପଥରେ କୁହାଯାଇଛି "ଅନ୍ନ ବୈ ସୋମଃ" ଅର୍ଥାତ୍ ଅନ୍ନହିଁ ସୋମ ଅଟେ ।(୪୧) ପ୍ରାଣ ଧାରଣ ନିମିତ୍ତ ଅନ୍ନର ଆବଶ୍ୟକତା ରହିଅଛି । ପ୍ରାଣ ବିନା ଶରୀର ବଞ୍ଚି ପାରେ ନାହିଁ । ତେଣୁ ଏହାକୁ ପ୍ରଜାପତି ବୋଲି କୁହାଯାଇଛି । (୪୨) ଶତପଥରେ ପ୍ରାଚୀନ ଜନପ୍ରିୟ ଆଖ୍ୟାନ ମିଳେ । ମନୁଙ୍କର ଜଳ ପ୍ଳାବନରୁ ମତ୍ସ୍ୟ ଦ୍ୱାରା ଉଦ୍ଧାର କଥା କୁହାଯାଇଛି । ପୁରାଣର ମତ୍ସ୍ୟାବତାରର ବୀଜ ଏଥିରେ ନିହିତ ଥିବାର କଥା ଗବେଷକମାନେ ମତ ଦିଅନ୍ତି । ଶତପଥ ବ୍ରାହ୍ମଣରୁ ତତ୍‌କାଳୀନ ସାମଜିକ ବ୍ୟବସ୍ଥା ସଂପର୍କରେ ସୂଚନା ମିଳେ । ବର୍ଣ୍ଣାଶ୍ରମ ବ୍ୟବସ୍ଥା, ସମାଜ ଓ ପରିବାରରେ ନାରୀର ସ୍ଥାନ, ଖାଦ୍ୟ ପେୟ, ନୃତ୍ୟଗୀତ, ରାଜ୍ୟ ଶାସନ, ଅର୍ଥନୈତିକ ସ୍ଥିତି ସଂପର୍କରେ ଏଥିରେ ଆଲୋଚନା କରାଯାଇଅଛି । ଲୌକିକ ବିଷୟକୁ ଛାଡି ପାରଲୌକିକ ଓ ଆଧ୍ୟାତ୍ମିକ ବିଷୟ ବସ୍ତୁର ଅବତାରଣା

ଏଥିରେ କରାଯାଇଛି । ଦାର୍ଶନିକ ଚିନ୍ତାଧାରାର ବର୍ଣ୍ଣନା ଏଥିରେ ରହିଅଛି । ଶତପଥରୁ ଐତିହାସିକ ତଥ୍ୟ ମଧ୍ୟ ମିଳିଥାଏ । ଆର୍ଯ୍ୟମାନଙ୍କର ସପ୍ତସିନ୍ଧୁ ଅଞ୍ଚଳ ଛାଡି ପୂର୍ବ ଦିଗକୁ ଗତି କରିବାର ଚିତ୍ର ଏଥିରେ ରହିଅଛି । ସଦାନୀରା (ଗଣ୍ଡକ) ନଦୀର ପୂର୍ବ ପଟେ ଅଗ୍ନିଦେବ ଙ୍କୁ ସ୍ଥାପନ କରିବା ଘଟଣା ଏଥିରେ ବର୍ଣ୍ଣିତ ହୋଇଛି । (୪୩) 'ମାଧବ ବିଦେଘ' ନାମକ ଜଣେ ରାଜାଥିଲେ । ତାଙ୍କ ପୁରୋହିତଙ୍କ ନାମ ଥିଲା ଗୌତମ ରାହୁଗଣ । ଏହି ରାଜା ପ୍ରଥମେ ସରସ୍ୱତୀ ନଦୀ ତୀରରେ ଥିଲେ । ସେଠାରୁ ସେ ଅଗ୍ନିକୁ ସାଥିରେ ଧରି ପୂର୍ବ ଅଭିମୁଖରେ ଗ୍ଲିଲେ ଏବଂ ହିମାଳୟରୁ ବାହାରି ଥିବା ସଦାନୀରା (ଗଣ୍ଡକ) ନଦୀ ତୀରରେ ଅଟକି ଗଲେ । ସେଠାରେ ରାଜା ଓ ତାଙ୍କ ପୁରୋହିତ ଅଗ୍ନିକୁ ସଦାନୀରାର ପୂର୍ବ ଦିଗରେ ରହିବାକୁ ଆଦେଶ ଦେଲେ । ଏହାର ତାତ୍ପର୍ଯ୍ୟ ହେଲା ଏହି ଯେ ସେ ଦୁହେଁ ଏଠାରେ ପ୍ରଥମ ଥର ପାଇଁ ଅଗ୍ନିପୂଜାର ପ୍ରବର୍ତ୍ତନ କରାଇଥିଲେ ।(୪୪) ଏହା ପୂର୍ବରୁ ଏହି ଅଞ୍ଚଳ ଆର୍ଯ୍ୟମାନଙ୍କର ବସତିର ଅନୁକୂଳ ନଥିଲା । ଏହିଠାରୁ ତାହା ବସତି ଉପଯୋଗୀ ହେଲା । ସପ୍ତସିନ୍ଧୁ ଅଞ୍ଚଳରୁ ଆର୍ଯ୍ୟ ସଂସ୍କୃତି କ୍ରମେ ପୂର୍ବଦିଗକୁ ଗତି କରିଥିବାର ପ୍ରମାଣ ଏଥିରୁ ମିଳେ ।

ଶତପଥ ବ୍ରାହ୍ମଣର ସ୍ରଷ୍ଟା ଋଷି ଯାଜ୍ଞବଲକ୍ ବୋଲି ଗବେଷକମାନେ ମତ ପ୍ରଦାନ କରିଥାନ୍ତି । ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଶତପଥୀ ଅଗ୍ନି ବିଦ୍ୟାର ସ୍ରଷ୍ଟା ଯାଜ୍ଞବଲକ୍ ନୁହଁନ୍ତି ବୋଲି କହିଅଛନ୍ତି । ତାଙ୍କ ମତରେ ଅଗ୍ନି ବିଦ୍ୟାର ସ୍ରଷ୍ଟା ହେଉଛନ୍ତି ସାଣ୍ଡିଲ୍ୟ ଋଷି । ଏଥିରୁ ମନେ କରାଯାଏ ଶତପଥ ବ୍ରାହ୍ମଣ ବିଭିନ୍ନ ଋଷିଙ୍କ ଦ୍ୱାରା ବିଭିନ୍ନ ସମୟରେ ରଚିତ ।

ଅବଶ୍ୟ ଶାଖା ଭେଦରେ ବ୍ରାହ୍ମଣ ଗ୍ରନ୍ଥର ଆକାରରେ ପାର୍ଥକ୍ୟ ରହିଅଛି । ଉଭୟ ମାଧ୍ୟନ୍ଦିନ ଓ କାଣ୍ୱ ଶାଖାରେ ଏହା ଉପଲବ୍ଧ ହେଉଥିବାରୁ ଏହାର ପାର୍ଥକ୍ୟ ଦେଖାଯାଏ । ମାଧ୍ୟନ୍ଦିନ ଶତପଥରେ କାଣ୍ଡ ସଂଖ୍ୟା ୧୪ ଓ ଅଧ୍ୟାୟ ସଂଖ୍ୟା ୧୦୦ ଥିଲାବେଳେ କାଣ୍ୱଶତପଥରେ କାଣ୍ଡ ସଂଖ୍ୟା ୧୭ ଓ ଅଧ୍ୟାୟ ସଂଖ୍ୟା ୧୦୪ । (୪୫)

**ତୈତ୍ତିରୀୟ ବ୍ରାହ୍ମଣ –**

କୃଷ୍ଣ ଯଜୁର୍ବେଦ ଶାଖାର ଏକମାତ୍ର ଉପଲବ୍ଧ ବ୍ରାହ୍ମଣ ଗ୍ରନ୍ଥ ହେଉଛି ତୈତ୍ତିରୀୟ ବ୍ରାହ୍ମଣ । ଏହା ଏକ ପ୍ରାଚୀନ ବ୍ରାହ୍ମଣ । କେତେକ ଅନୁମାନ କରନ୍ତି ଏହି ଶାଖାର କଠକ, ଅଧ୍ୱର୍ଯ୍ୟ, ମୈତ୍ରାୟଣୀ, ସତ୍ୟାୟନୀ ବ୍ରାହ୍ମଣ ନାମରେ କେତେକ ଗ୍ରନ୍ଥ ରହିଅଛି । ମାତ୍ର ତାହା ଅନୁପଲବ୍ଧ । ଏଥିରେ ତିନୋଟି ଭାଗ ବା କାଣ୍ଡ ଅଛି । ଏଥିରେ ୨୫ ପ୍ରପାଠକ ଓ ୩୦୮ ଅନୁବାକ୍ ଅଛି । ଏଥିରେ ବିଭିନ୍ନ ଯଜ୍ଞର ବର୍ଣ୍ଣନା ରହିଅଛି । ବିଶେଷ କରି ଅଶ୍ୱମେଧ ଯଜ୍ଞ ବିଷୟ ଏଥିରେ ବର୍ଣ୍ଣିତ । କର୍ମ ଦୁଇ ଭାଗରେ ବିଭକ୍ତ ବୋଲି ବୈଦିକ ସାହିତ୍ୟରେ ଉଲ୍ଲିଖିତ । ଗୋଟିଏ ହେଉଛି ପୁରୁଷାର୍ଥ କର୍ମ ଓ ଅନ୍ୟଟି ହେଉଛି ଯଜ୍ଞାର୍ଥ କର୍ମ । ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ଫଳ ପାଇଁ ଯେଉଁ କର୍ମ କରାଯାଏ ତାହା ପୁରୁଷାର୍ଥ କର୍ମ । ଏହା ମଣିଷ ନିଜ ସ୍ୱାର୍ଥ ପାଇଁ କରିଥାଏ । ନିଜ ସ୍ୱାର୍ଥକୁ ବଳି ଦେଇ ଅନ୍ୟର ମଙ୍ଗଳ ପାଇଁ ଯେଉଁ କର୍ମ କରାଯାଏ ତାହା ହେଉଛି ଯଜ୍ଞାର୍ଥ କର୍ମ । ଯାହାର ଯଜ୍ଞାର୍ଥ କର୍ମ ଯେତେ ଅଧିକ ସେ ସେତେ ପୁଣ୍ୟବାନ । ସେ ସେତେ ଭଗବାନଙ୍କର ନିକଟତର ।

'ଯଜ୍ଞୋ ବୈ ବିଷ୍ଣୁ' ଅର୍ଥାତ୍ ଯଜ୍ଞ ଅଟେ ଭଗବାନ । ଶତପଥ ବ୍ରାହ୍ମଣର ଏହି ଉକ୍ତି ତୈତ୍ତିରୀୟ ବ୍ରାହ୍ମଣରେ ଅନୁରଣିତ ହୋଇଛି । ତୈତ୍ତିରୀୟ ବ୍ରାହ୍ମଣ ସମୟର ଯଜ୍ଞର ବିଧି ବିଧାନ ଜଟିଳ ହେବା ସଂଗେ ସଂଗେ ଅଧିକ ଆଡ଼ମ୍ବରପୂର୍ଣ୍ଣ ହୋଇଥିଲା । ଏହାସତ୍ତ୍ୱେ ଯଜ୍ଞର  ଆତ୍ମିକ ଚିନ୍ତାଧାରା ଅକ୍ଷୁର୍ଣ୍ଣ ଥିଲା । ଏ ସଂପର୍କରେ ଶ୍ରୀଯୁକ୍ତ ବସୁଙ୍କ ମତାମତ ଅଧିକ ପ୍ରଣିଧ୍ୟାନ ଯୋଗ୍ୟ । (୪୬) ତୈତ୍ତିରୀୟ ବ୍ରାହ୍ମଣରେ 'ନକ୍ଷତ୍ରେଷ୍ଟି ଯଜ୍ଞ'ର ବିସ୍ତୃତ ବର୍ଣ୍ଣନା ମିଳେ । 'ନାଚିକେତ' ଅଗ୍ନିର ବେଦି ତଥା ଉପାସନା ବିଷୟ ଓ ଅଗ୍ନି ବିଦ୍ୟାଦ୍ୱାରା ମୋକ୍ଷ ପ୍ରାପ୍ତି ବର୍ଣ୍ଣନା ମିଳେ । ଋଗ୍‌ବେଦ ସଂହିତାରେ ଅଗ୍ନିଙ୍କର ପ୍ରାଧାନ୍ୟ ଥିଲା । ବିଷ୍ଣୁ ବୈଦିକ ଦେବଗଣଙ୍କ ମଧ୍ୟରେ ଅପ୍ରଧାନ ଥିଲେ । ମାତ୍ର ତୈତ୍ତିରୀୟ ବ୍ରାହ୍ମଣରେ ବିଷ୍ଣୁ ଜଣେ ପ୍ରଧାନ ଦେବତା ହୋଇ ଉଠିଲେ । ଋଗ୍‌ବୈଦିକ ରୁଦ୍ର ତୈତ୍ତିରୀୟ ବ୍ରାହ୍ମଣରେ ଶିବ ହୋଇଗଲେ ଏବଂ ତାଙ୍କର ପ୍ରାଧାନ୍ୟ ମଧ୍ୟ ବଢ଼ିଗଲା । ଦେବଗଣଙ୍କ ସ୍ଥିତିର କ୍ରମରେ କେତେକ ପରିବର୍ତ୍ତନ ତୈତ୍ତିରୀୟ ବ୍ରାହ୍ମଣରେ ଦେଖା ଗଲା । ବିଭିନ୍ନ ପ୍ରକାର ଯଜ୍ଞରେ ଗାଈର ଦକ୍ଷିଣା କଥା କୁହାଯାଇଛି । 'ପୁରୁଷ ମେଧ' ଯଜ୍ଞ ପାଇଁ ନିର୍ଦ୍ଦିଷ୍ଟ ପଶୁମାନଙ୍କ କଥା କୁହାଯାଇଛି । ଏହି ବ୍ରାହ୍ମଣରେ ଚାରି ବର୍ଣ୍ଣ ଓ ଚାରି ଆଶ୍ରମର କଥା କୁହାଯାଇଛି । ବ୍ରାହ୍ମଣ ଗ୍ରନ୍ଥର ଆବଶ୍ୟକୀୟ ଲକ୍ଷଣ, ହେତୁ, ନିର୍ବାଚନ, ନିନ୍ଦା, ପ୍ରଶଂସା ଇତ୍ୟାଦିର ବର୍ଣ୍ଣନା ଏଥିରେ ଅଛି । ଏହି ବ୍ରାହ୍ମଣରେ କୁହାଯାଇଛି ପ୍ରଜାପତି ସୋମ ଓ ତିନି ବେଦକୁ ପ୍ରକଟ କଲେ  । ସୋମ ସେହି ତିନି ବେଦକୁ ହାତ ମୁଠାରେ ଲୁଚାଇ ରଖିଥିଲେ । ପ୍ରଜାପତିଙ୍କର ଦୁଇଟି କନ୍ୟା ଥିଲେ । ସେମାନେ ହେଲେ - ଶ୍ରଦ୍ଧା ଓ ସୀତା-ସାବିତ୍ରୀ । ସୋମ ଶ୍ରଦ୍ଧାଙ୍କୁ ବିବାହ କରିବାକୁ ଇଚ୍ଛା କରୁଥିଲେ । ସୀତା - ସାବିତ୍ରୀ ସୋମଙ୍କୁ ବିଭା କରିବାକୁ ଇଚ୍ଛା କରିଥିଲେ । ପ୍ରଜାପତି ଜାଣିଥିଲେ ସୋମ ସୀତା- ସାବିତ୍ରୀଙ୍କୁ ବିଭା କରିବେ ନାହିଁ । ପ୍ରଜାପତି ସ୍ଥାଗର ନାମକ ଏକ ପ୍ରକାର ଔଷଧକୁ ଘଷି ସୀତା-ସାବିତ୍ରୀଙ୍କ ମଥାରେ ଲଗାଇ ଦେଲେ । ଏହା ଏକ ବଶୀକରଣ ଔଷଧ । କ୍ରମେ ସୋମ ସୀତା- ସାବିତ୍ରୀଙ୍କ ବଶୀଭୂତ ହେଲେ ଏବଂ ତାଙ୍କୁ ବିବାହ କଲେ । ବିବାହ ସମୟରେ ସେ ତିନି ବେଦକୁ ପ୍ରଦାନ କଲେ । (୪୭) ଏହି ଆଖ୍ୟାନରେ ସୋମଙ୍କର ମହିମା କୀର୍ତ୍ତିତ ହୋଇଛି ।

ତୈତ୍ତିରୀୟ ବ୍ରାହ୍ମଣ କାଳରେ ପୁରୋହିତ ଗୋଷ୍ଠୀର ଅଧିକ ପ୍ରଭାବ ଥିଲା । ସେମାନେ ରାଜା ଓ ପ୍ରଜା ଉଭୟଙ୍କ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରୁଥିଲେ । ଏଥିରେ ଉଲ୍ଲେଖ ଅଛି ଶୁଦ୍ର ଦ୍ୱାରା ଦୁହାଁ ଯାଉଥିବା କ୍ଷୀର ଯଜ୍ଞ ଉପଯୋଗୀ ନୁହେଁ । ଶୁଦ୍ର ଦୁଧକୁ ଛୁଇଁ ଦେଲେ ତାହା ଅପବିତ୍ର ହୋଇଯାଏ । (୪୮) ଶୁଦ୍ରର ସାମାଜିକ ସ୍ଥିତି କେତେ ଦୟନୀୟ ଥିଲା ତାହା ଏଥିରୁ ଅନୁମେୟ । ତୈତ୍ତିରୀୟ ବ୍ରାହ୍ମଣ କାଳରେ ସ୍ତ୍ରୀମାନଙ୍କର ସ୍ଥାନ ଉଚ୍ଚରେ ଥିଲା । ନାରୀର ଅଙ୍ଗ ଭୂଷଣର ବର୍ଣ୍ଣନା ମଧ୍ୟ ଏହି ବ୍ରାହ୍ମଣରେ ମିଳେ ।

**ସାମବେଦୀୟ ବ୍ରାହ୍ମଣ –**

ବର୍ତ୍ତମାନ ସର୍ବମୋଟ ଆଠଗୋଟି ସାମବେଦୀୟ ବ୍ରାହ୍ମଣ ଉପଲବ୍ଧ ହେଉଅଛି । ସାୟଣାଚାର୍ଯ୍ୟ ସେଗୁଡିକୁ ଆଠ ଭାଗରେ ବିଭକ୍ତ କରିଅଛନ୍ତି । ସେଗୁଡିକ ହେଲା—(କ) ତାଣ୍ଡ୍ୟ ବ୍ରାହ୍ମଣ ବା ପ୍ରୌଢ଼ ବ୍ରାହ୍ମଣ, ବା ପଞ୍ଚବିଂଶ ବ୍ରାହ୍ମଣ (ଖ) ଷଡ୍‌ବିଂଶ ବ୍ରାହ୍ମଣ (ଗ) ସାମ ବିଧାନ ବ୍ରାହ୍ମଣ ବା ସାମ ବିଧି ବ୍ରାହ୍ମଣ (ଘ) ଆର୍ଷେୟ ବ୍ରାହ୍ମଣ । (ଙ) ଦେବତାଧ୍ୟାୟ ବ୍ରାହ୍ମଣ ବା ଦୈବତ ବ୍ରାହ୍ମଣ(ଚ) ଉପନିଷଦ୍ ବ୍ରାହ୍ମଣ (ଛ) ବଂଶ ବ୍ରାହ୍ମଣ (ଜ) ଜୈମିନୀୟ ବ୍ରାହ୍ମଣ

## ତାଣ୍ଡ୍ୟ ବ୍ରାହ୍ମଣ –

ସାମବେଦ ଶାଖାର ଆଠଗୋଟି ବ୍ରାହ୍ମଣ ମଧ୍ୟରୁ ତାଣ୍ଡ୍ୟ ବ୍ରାହ୍ମଣ ହେଉଛି ଆକାରରେ ସବୁଠାରୁ ବଡ଼ । ତଣ୍ଡି ନାମଙ୍କ ଜଣେ ଋଷି ଏହାର ସ୍ରଷ୍ଟା ହୋଇଥିବାରୁ ଏହାକୁ ତାଣ୍ଡ୍ୟ ବ୍ରାହ୍ମଣ କୁହାଯାଏ । ଏହା ସବୁ ଠାରୁ ପ୍ରାଧାନ୍ୟରେ ବଡ଼ ହୋଇଥିବାରୁ ଏହାର ଅନ୍ୟନାମ ହେଉଛି ପ୍ରୌଢ଼ ବ୍ରାହ୍ମଣ । ଏହାର ନାମ ମହାବ୍ରାହ୍ମଣ ବୋଲି ଅନେକ କହିଥାନ୍ତି । ଏଥିରେ ସର୍ବମୋଟ ପଚିଶିଟି ଅଧ୍ୟାୟ ଥିବାରୁ ଏହା ପଞ୍ଚବିଂଶ ବ୍ରାହ୍ମଣ ଭାବରେ ଖ୍ୟାତ । ଏଥିରେ ଅନେକ ମହତ୍ତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟ ଓ ପୁଷ୍କଳ ସମାଜ ଶାସ୍ତ୍ର ବିଷୟ ତଥ୍ୟ ସ୍ଥାନିତ ହୋଇଛି । ତାଣ୍ଡ୍ୟ ବ୍ରାହ୍ମଣ ୪୦ ଅଧ୍ୟାୟ ରେ ବିଭକ୍ତ । ଯଜ୍ଞ କର୍ମରେ ଉଦ୍‌ଗାତାର କର୍ତ୍ତବ୍ୟ ଏଥିରେ ବର୍ଣ୍ଣିତ ହୋଇଛି । ସୋମଯାଗ ସମ୍ବନ୍ଧୀ କ୍ରିୟାକଳାପର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଏଥିରେ ମିଳେ । ଗବାମୟନ, ଜ୍ୟୋତିଷ୍ଟୋମ ତଥା ଅତିରାତ୍ର ଯଜ୍ଞର ବର୍ଣ୍ଣନା ଏଥିରୁ ମିଳିଥାଏ । ପ୍ରାତଃ ସବନ, ମାଧ୍ୟନ୍ଦିନ ସାୟଂ ସବନ ତଥା ରାତ୍ରି କାଳୀନ ପୂଜା ବିଧାନ ଏଥିରେ ବର୍ଣ୍ଣିତ ହୋଇଅଛି । ଏଥିରେ 'ଏକାହ ଯଜ୍ଞର' ସ୍ୱରୂପ ବର୍ଣ୍ଣିତ ହୋଇଛି । ଏଥିରେ ମେଧାତିଥି ଓ ବତ୍ସ ଏହି ଦୁଇଜଣ ଋଷିଙ୍କୁ ନେଇ ଗୋଟିଏ ସୁନ୍ଦର କାହାଣୀ ଅଛି । ତାହା ହେଲା ମେଧାତିଥି ଓ ବତ୍ସ ଦୁଇଜଣ ଯାକ କାଣ୍ୱ ବଂଶଜ ଥିଲେ । ମେଧାତିଥିଙ୍କ ମା' ବ୍ରାହ୍ମଣୀ ଓ ବତ୍ସଙ୍କ ମା' ଶୂଦ୍ରାଣୀ ଥିଲେ । ବ୍ରାହ୍ମଣ ଔରସରୁ ଉଭୟେ ଜାତ ହୋଇଥିଲେ ମଧ୍ୟ ମେଧାତିଥି ବ୍ରାହ୍ମଣୀ ପୁତ୍ର ଓ ବତ୍ସ ଶୂଦ୍ରାଣୀ ପୁତ୍ର ଥିବାରୁ ମେଧାତିଥି ବତ୍ସଙ୍କୁ ଘୃଣା ଚକ୍ଷୁରେ ଦେଖୁ ଥିଲେ । ଦିନେ ତାଙ୍କର ବ୍ରହ୍ମତ୍ୱ ପରୀକ୍ଷା କରିବାକୁ ଯାଇ ସେ ବତ୍ସଙ୍କୁ ଅଗ୍ନିରେ ହବି ସ୍ୱରୂପ ଅର୍ପଣ କଲେ । ତାହା ସତ୍ତ୍ୱେ ବତ୍ସଙ୍କର କେଶ ମଧ୍ୟ ଅଗ୍ନିରେ ପୋଡିଗଲା ନାହିଁ । (୪୯) ଏଥିରେ ମେଧାତିଥି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଶେଷରେ ବତ୍ସଙ୍କ ବ୍ରହ୍ମତ୍ୱ ମର୍ଯ୍ୟାଦାକୁ ସ୍ୱୀକାର କଲେ । ଏଥିରୁ ତତ୍‌କାଳୀନ ସମାଜରେ ଶୂଦ୍ରମାନଙ୍କର ଅବସ୍ଥା ଦୟନୀୟ ଥିବାର ଜଣାଯାଏ ।

ତାଣ୍ଡ୍ୟ ବ୍ରାହ୍ମଣରେ ନିମ୍ନୋକ୍ତ କେତୋଟି କଥା ଦେଖିବାକୁ ମିଳେ ।

(କ) ତତ୍‌କାଳୀନ ସମାଜରେ ବ୍ରାହ୍ମଣମାନଙ୍କର ସ୍ଥିତି ଉଚ୍ଚରେ ଥିଲା ଏବଂ ତାଙ୍କ ସ୍ଥାନକୁ ଅନ୍ୟ କୌଣସି ଜାତିର ବ୍ୟକ୍ତି ଯିବାକୁ ଇଚ୍ଛା କଲେ ସେମାନେ ଦୃଢ଼ ବିରୋଧ କରୁଥିଲେ । (ଖ) ତତ୍‌କାଳୀନ ସମାଜରେ ବ୍ରାହ୍ମଣ ଅବଧ୍ୟ ଥିଲା । ତେଣୁ ସେମାନେ ନିଜ ସ୍ଥିତିକୁ ସୁଦୃଢ଼ ରଖିବାକୁ ଚାହୁଁଥିଲେ ଏବଂ ଆବଶ୍ୟକ ସ୍ଥଳେ ଅନ୍ୟ ଜାତିର ଲୋକକୁ ହଟାଇବା ପାଇଁ, ମାରିଦେବାକୁ ମଧ୍ୟ ପଶ୍ଚାତ୍‌ପଦ୍ ହେଉ ନଥିଲେ । (ଗ) ଶୂଦ୍ରମାନଙ୍କର ସାମାଜିକ ସ୍ଥିତି ଦୁର୍ବଳ ଥିଲା ।(ଘ) ବ୍ରାହ୍ମଣ ପିତା ଶୂଦ୍ରାଣୀ ମାତା ଥିଲେ ସନ୍ତାନ ପିତୃ ଅଧିକାରରୁ ବଞ୍ଚିତ ହେଉଥିଲା ଏବଂ ସେ ବ୍ରାହ୍ମଣ ବୋଲି ପରିଗଣିତ ହେଉ ନଥିଲା ।(ଙ) ଶୂଦ୍ର ସ୍ୱୀୟ ଉଦ୍ୟମରେ ବ୍ରାହ୍ମଣତ୍ୱ ଓ ଋଷିତ୍ୱ ଲାଭ କରୁଥିଲେ । (ଚ) ଏ ସମୟରେ ଜାତି ଭେଦ ପ୍ରଥା ଦୃଢ଼ ନଥିଲା । କାରଣ ପ୍ରଧାନ୍ୟ ଲାଗି ଜାତି ଜାତି ମଧ୍ୟରେ ସଂଘର୍ଷ ସଂଗଠିତ ହେଉଥିଲା ।

ଭୌଗଳିକ ସ୍ଥାନ ଯୋଗାଇବା ପାଇଁ ତାଣ୍ଡ୍ୟ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ତାଣ୍ଡ୍ୟ ଏ ସବୁ ଦୃଷ୍ଟିରୁ ତୈତ୍ତିରୀୟ କୁ ଗ୍ରହଣ କରିଅଛି । କୁରୁକ୍ଷେତ୍ର ଏବଂ ଏହାର ଆଖପାଖ ଅଞ୍ଚଳର ଚିତ୍ର ଏଥିରେ ବର୍ଣ୍ଣିତ ଏବଂ କୁରୁକ୍ଷେତ୍ରକୁ ପୃଥିବୀର ସ୍ୱର୍ଗ ବୋଲି ମଧ୍ୟ କୁହାଯାଇଛି ।(୫୦) ଏହି ସମୟରେ କୁରୁ ରାଜ୍ୟ ଅତି ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । କୁରୁକ୍ଷେତ୍ର ଅଞ୍ଚଳରେ ନୈମିଷ୍ୟାରଣ୍ୟକୁ ଯଜ୍ଞ

ଭୂମି ବୋଲି କୁହାଯାଉଥିଲା । ତାଣ୍ଡ୍ୟ ବ୍ରାହ୍ମଣ କୁରୁକ୍ଷେତ୍ର ଅଞ୍ଚଳରେ ସୃଷ୍ଟି ହୋଇଥିବାର ଅନୁମାନ କରାଯାଏ ।(୫୧) ପ୍ରାଚୀନ କାହାଣୀ ମଧ୍ୟରେ କୋଶଳ ରାଜ 'ପରମାପ' ଓ ବିଦେହ ରାଜ 'ନିମିପାପ୍ୟ' ଙ୍କ ସଂପର୍କରେ ବର୍ଣ୍ଣନା ଦେଖିବାକୁ ମିଳେ । ସନ୍ତାନ ପାଇଁ ଅପସରାଙ୍କୁ ଆରାଧନାର ଚିତ୍ର ଦେଖିବାକୁ ମିଳେ ।

**ଷଡ଼ବିଂଶ ବ୍ରାହ୍ମଣ –**

ଷଡ଼ବିଂଶ ବ୍ରାହ୍ମଣ ୬ ଅଧ୍ୟାୟରେ ବିଭକ୍ତ । ସାୟଣାଗ୍ରାର୍ଯ୍ୟ କୁହନ୍ତି ଏହା ପଞ୍ଚବିଂଶ ବ୍ରାହ୍ମଣର ପରିପୂର୍ଣ୍ଣ ସ୍ୱରୂପ । ପ୍ରପାଠକ କ୍ରମରେ ଏହା ପାଞ୍ଚ ଭାଗରେ ବିଭକ୍ତ । ଏହାର ପ୍ରଥମ ପାଞ୍ଚ ଅଧ୍ୟାୟରେ ବିଭିନ୍ନ ଯଜ୍ଞର ବର୍ଣ୍ଣନା କରାଯାଇଛି । ଏହାର ପଞ୍ଚମ ବିଭାଗଟିକୁ କୁହାଯାଏ ଅଦ୍ଭୁତ ବ୍ରାହ୍ମଣ । ଏଥିରେ ଭୂମିକମ୍ପ, ଅକାଳରେ ଫୁଲ ଫୁଟିବା, ଫଳ ଫଳିବା ଆଦି ଅଦ୍ଭୁତ ବିଷୟମାନ ବର୍ଣ୍ଣିତ ହୋଇଅଛି । ଏଥିରେ ବ୍ରାହ୍ମଣ ମାନଙ୍କର ସଂଧ୍ୟା - ତର୍ପଣ ଓ ଅନ୍ୟାନ୍ୟ ନିତ୍ୟନୈମିତିକ କର୍ମ - ବିଧି ସଂପର୍କରେ ଆଲୋଚନା କରାଯାଇଛି । ଏଥିରେ ଉପାସନା ସଂପର୍କରେ କୁହାଯାଇଛି ବ୍ରାହ୍ମଣ ଦିନ ଓ ରାତ୍ରିର ସନ୍ଧି ସମୟରେ ସଂଧ୍ୟାର ଉପାସନା କରନ୍ତି । (୫୨) ଷଡ଼ବିଂଶ ବ୍ରାହ୍ମଣରେ ଅନେକ ପ୍ରାୟଶ୍ଚିତର ବିଧାନ ସଂପର୍କରେ ଉଲ୍ଲେଖ କରାଯାଇଛି । ଏଥିରେ ଋତ୍ୱିକମାନଙ୍କ ବେଶର ବର୍ଣ୍ଣନା ରହିଅଛି । ସେମାନେ ଲାଲ ଧଡ଼ି ବିଶିଷ୍ଟ ଲୁଗା ଓ ଟୋପି ପିନ୍ଧୁଥିଲେ । ଅବଶ୍ୟ ଏହା ଆକାରରେ କ୍ଷୁଦ୍ର ଗ୍ରନ୍ଥ ।

**ସାମ ବିଧାନ ବ୍ରାହ୍ମଣ –**

ଅନ୍ୟାନ୍ୟ ବ୍ରାହ୍ମଣ ମାନଙ୍କ ଠାରୁ ସାମ ବିଧାନ ବ୍ରାହ୍ମଣ ଭିନ୍ନ । ଏହି ବ୍ରାହ୍ମଣର ରଚନା ଶୈଳୀ ଭିନ୍ନ । ସୂକ୍ତ ପରି ଏହା ସଂକ୍ଷିପ୍ତ । ଏହା ବିଭିନ୍ନ ପ୍ରକାର ଇନ୍ଦ୍ରଜାଲ ତଥା ଗାରୁଡି ବିଦ୍ୟାରେ ପରିପୂର୍ଣ୍ଣ । ଏହା ମନ୍ତ୍ର ତନ୍ତ୍ରରେ ଗୁରୁତ୍ୱ ଦେଇଅଛି । ଏହାକୁ ଅଭିଗ୍ରରିକ କହିଲେ ଭୁଲ ହେବନାହିଁ । ଶତ୍ରୁକୁ ଗାଁ ରୁ ତଡି ଦେବା, ନାନା ପ୍ରକାର ଉପଦ୍ରବକୁ ଶାନ୍ତ କରିବା ଓ ଅନ୍ୟ ଠାରୁ ଧନ ମାରି ଆଣିବା ଇତ୍ୟାଦି ଅଭିଗ୍ରରିକ ପ୍ରକ୍ରିୟା ଏଥିରେ ଅଧିକ ଉପଲବ୍ଧ ହୁଏ । (୫୩) ସୁନା ପାଇବାକୁ ହେଲେ ମଣିଭଦ୍ର ନାମକ ଯକ୍ଷଙ୍କୁ ମାଂସ ବଳି ଦେଇ ସାମ ମନ୍ତ୍ର ଗାନ କରି ତାଙ୍କୁ ପୂଜା କରିବାକୁ ହୋଇଥାଏ । (୫୪) ହାତୀ ଓ ଘୋଡା ମାନଙ୍କୁ ମାରିବାକୁ ହେଲେ ତାଙ୍କର ମୂର୍ତ୍ତି ଗଢ଼ି ତାଙ୍କ ନିକଟରେ ମନ୍ତ୍ରପଢି ଛୁରୀରେ ବା ଖଣ୍ଡାରେ ତାଙ୍କ ବେକକୁ କାଟିବାକୁ ହୋଇଥାଏ । ମନ୍ତ୍ରର ପ୍ରଭାବ ଫଳରେ ସେମାନେ ମରି ଯାଇଥାନ୍ତି । ସାମ ବିଧାନ ବ୍ରାହ୍ମଣକୁ ଭିତ୍ତି ଭାବରେ ଗ୍ରହଣ କରି କାପାଳିକମାନଙ୍କର ଅଭିଗ୍ରରିକ ସର୍ବସ୍ୱ ଧର୍ମ ଗଢି ଉଠିଥିଲା । ଆର୍ଯ୍ୟେତର ଚିନ୍ତାଧାରାର ପ୍ରଭାବରେ ଏଭଳି ଅଭିଗ୍ରରିକ ବିଧି ବିଧାନମାନ ଆର୍ଯ୍ୟ ସଂସ୍କୃତି ମଧ୍ୟରେ ପ୍ରବେଶ କରିଥିବା ଭଳି ମନେ ହୁଏ । (୫୫) ଗନ୍ଧର୍ବ, ଦେବତା, ଭୂତ, ପ୍ରେତାଦିଙ୍କର ପ୍ରତ୍ୟକ୍ଷ କରଣ ନିମିତ୍ତ ସାମବିଧାନର ପ୍ରୟୋଗ ନିର୍ଦ୍ଦେଶିତ ହୋଇଅଛି ।

ଅଭିଗ୍ରରିକ ବିଧାନକୁ ଛାଡି ଦେଲେ ଏଥିରେ ସାଧାରଣ ଲୌକିକ ବିଷୟରେ ମଧ୍ୟ ବର୍ଣ୍ଣନା ରହିଅଛି । ନୂତନ ଗୃହ ପ୍ରବେଶ, ଆୟୁ ବୃଦ୍ଧି, ବିଭିନ୍ନ ପ୍ରକାର ଅନୁଷ୍ଠାନ ଇତ୍ୟାଦି ନିମିତ୍ତ ଭିନ୍ନ ଭିନ୍ନ ଉପଦେଶମାନ ମଧ୍ୟ ଦିଆଯାଇଛି । କେଉଁ କେଉଁ ପାପ କର୍ମ କଲେ କେଉଁ କେଉଁ ପ୍ରାୟଶ୍ଚିତ କରିବାକୁ

ହୁଏ ତାହାର ସୂଚନା ମଧ୍ୟ ଏଥିରୁ ମିଳେ । ଏହାକୁ କେନ୍ଦ୍ର କରି ପରବର୍ତ୍ତୀ କାଳରେ ବ୍ରହ୍ମ ସୂତ୍ର ଗ୍ରନ୍ଥର ବୃହତରୂପ ପ୍ରକାଶ ପାଇଛି । ଏଥିରେ ଶୁଦ୍ରମାନଙ୍କୁ ବହୁତ ନିନ୍ଦା କରାଯାଇଛି । ଶୁଦ୍ରଙ୍କ ସହିତ ବିବାହ ବାରଣ କରାଯାଇଛି । ଏମାନଙ୍କୁ ବହୁ ସାମାଜିକ ସୁବିଧା ସୁଯୋଗରୁ ବଂଚିତ କରାଯାଇଛି । ଏହି କଥାଗୁଡିକର ଆଲୋଚନା କରି ବଳଦେବ ଉପାଧ୍ୟାୟ ତାଙ୍କ ପୁସ୍ତକରେ କହିଅଛନ୍ତି ଶୁଦ୍ରମାନଙ୍କର ସାମାଜିକ ସ୍ଥିତି ସେତେବେଳେ ଦୁର୍ବଳ ଥିଲା । ଶୁଦ୍ରମାନେ ବିଦ୍ୟାଧ୍ୟୟନ ଓ ଯଜ୍ଞାନୁଷ୍ଠାନ କର୍ମରୁ ବଞ୍ଚିତ ଥିଲେ । ଶୁଦ୍ରମାନଙ୍କର ଅଶ୍ଳୀଳ ଶବ୍ଦ ଉଚ୍ଚାରଣ, ବ୍ରହ୍ମହତ୍ୟା, ଗୋହତ୍ୟା, ମଦ୍ୟପାନ, ବଡ ଭାଇର ବିବାହ ପୂର୍ବରୁ ସାନ ଭାଇର ବିବାହ, ଶୁଦ୍ର ସହିତ ବ୍ୟଭିଚାର ଆଦି ପ୍ରଧାନ ପ୍ରଧାନ ଅପରାଧ ଏହି ସାମବିଧାନ ବ୍ରାହ୍ମଣରେ ବର୍ଣ୍ଣିତ ହୋଇଅଛି । (୫୬) ସାମାଜିକ ଶୃଙ୍ଖଳା ଆଣିବା ନାମରେ ସମାଜର ପୁରୋହିତବର୍ଗ କଠୋର ଓ ପକ୍ଷପାତୀୟ ନିୟମମାନ ବାନ୍ଧିଥିଲେ । ଏହି ଶୃଙ୍ଖଳା ନାମରେ ବ୍ୟକ୍ତି ସ୍ୱାଧୀନତା କିଛି ରହିଲା ନାହିଁ । ସମାଜର ଏକ ପ୍ରକାର ଯାନ୍ତ୍ରିକତ୍ୱ ସୃଷ୍ଟିହେଲା ।

**ଆର୍ଷେୟ ବ୍ରାହ୍ମଣ –**

ତିନି ଗୋଟି ପ୍ରପାଠକ ଓ ୮୨ ଟି ଖଣ୍ଡରେ ବିଭକ୍ତ ହୋଇଛି ଆର୍ଷେୟ ବ୍ରାହ୍ମଣ । ସାମ ଗାୟନର ବୈଜ୍ଞାନିକ ଅନୁଶୀଳନ ନିମିତ୍ତ ଏହା ଏକ ସହାୟକ ଗ୍ରନ୍ଥ । ସାମବେଦୀୟ ଶିକ୍ଷା ଗ୍ରନ୍ଥର ଅଧ୍ୟୟନ ବିନା ସାମ ଗାୟନ ସମ୍ଭବ ନୁହେଁ । ଆର୍ଷେୟ ବ୍ରାହ୍ମଣ ଏଥି ନିମିତ୍ତ ଏକ ଉପାଦେୟ ଗ୍ରନ୍ଥ । ଏହି ଗ୍ରନ୍ଥରେ ସାମବେଦର ଯେଉଁମାନେ ମନ୍ତ୍ରଦ୍ରଷ୍ଟା ଋଷି ସେମାନଙ୍କର ତାଲିକା ରହିଅଛି ।

**ଦେବତାଧ୍ୟାୟ ବ୍ରାହ୍ମଣ –**

ଏହି ବ୍ରାହ୍ମଣର ଅନ୍ୟ ନାମ ହେଉଛି ଦୈବତ ବ୍ରାହ୍ମଣ । ସାମବେଦୀୟ ବ୍ରାହ୍ମଣ ମଧ୍ୟରେ ଏହା ଏକ କ୍ଷୁଦ୍ର ଗ୍ରନ୍ଥ । ଏହା ତିନି ଖଣ୍ଡରେ ବିଭକ୍ତ । ଏଥିରେ ଅଗ୍ନି, ଇନ୍ଦ୍ର, ପ୍ରଜାପତି, ସୋମ ଆଦି ସାମ ଦେବତା ମାନଙ୍କର ନାମ କ୍ରମାନ୍ୱୟରେ ବର୍ଣ୍ଣିତ ହୋଇଛି । ଛନ୍ଦ ବିଷୟରେ ଏଥିରେ ସୁବିସ୍ତୃତ ଆଲୋଚନା ହୋଇଛି । ଏଥିରେ ଛନ୍ଦର ଦେବତା ଓ ବର୍ଣ୍ଣର ବିଶେଷ ବର୍ଣ୍ଣନା ଦେଖାଯାଏ । ଛନ୍ଦର ନାମ କରଣ ବୈଜ୍ଞାନିକ ପଦ୍ଧତିରେ ଅନୁଶୀଳିତ । ଗୈ ଧାତୁରୁ ନିଷ୍ପନ୍ନ ହୋଇଥିବାରୁ (ସ୍ତୁତି) ଗାୟତ୍ରୀ ଛନ୍ଦ ଗାୟତ୍ରୀ ନାମ ଧାରଣ କରିଅଛି । ବେଦର ଗାୟକ ବ୍ରାହ୍ମଣଙ୍କ ଠାରୁ ତାହା ଉତ୍ପନ୍ନ ହୋଇଛି ଏବଂ ଦେବତାଙ୍କ ସ୍ତୁତି ଗାନରେ ଗାୟତ୍ରୀ ପ୍ରଯୁକ୍ତ ହୋଇଛି । (୫୭) ଏଣୁ ମନେ ହୁଏ ଛନ୍ଦ ଗୁଡିକର ନାମ କରଣ ପ୍ରାମାଣିକ ଅଟେ ।

**ଉପନିଷଦ୍ ବ୍ରାହ୍ମଣ –**

୧୦ ପ୍ରପାଠକରେ ବିଭକ୍ତ ହୋଇଛି ଉପନିଷଦ୍ ବ୍ରାହ୍ମଣ । ଏହା ଦୁଇଟି ଗ୍ରନ୍ଥର ସମାହାର । ପ୍ରଥମଟି ହେଉଛି ମନ୍ତ୍ର ବ୍ରାହ୍ମଣ, ଦ୍ୱିତୀୟଟି ହେଉଛି ଛାନ୍ଦୋଗ୍ୟ ଉପନିଷଦ୍ । ମନ୍ତ୍ର ବ୍ରାହ୍ମଣ ଦୁଇ ପ୍ରପାଠକରେ ବିଭକ୍ତ । ପ୍ରତ୍ୟେକ ପ୍ରପାଠକ ପୁଣି ଆଠ ଆଠ ଖଣ୍ଡରେ ବିଭକ୍ତ । ଏଥିରେ ଘର ସଂସାର କରିବାକୁ ହେଲେ ଯାହା ଯାହା କରଣୀୟ ସେ ସଂପର୍କରେ ବିଶଦ୍ ବର୍ଣ୍ଣନା ଏଥିରେ ହୋଇଛି । ପ୍ରସିଦ୍ଧ ବ୍ରହ୍ମସୂତ୍ର ଭାଷ୍ୟରେ ଶଙ୍କରାଚାର୍ଯ୍ୟ ମନ୍ତ୍ର ବ୍ରାହ୍ମଣ ଓ ଛାନ୍ଦୋଗ୍ୟ ଉପନିଷଦ୍ ବିଷୟରେ ଉଲ୍ଲେଖ କରିଛନ୍ତି । ତାଣ୍ଡ୍ୟ

ଶାଖା ସହିତ ଏହାର ବିଶେଷ ସାମ୍ୟ ରହିଅଛି ।

**ସଂହିତୋପନିଷଦ୍ ବ୍ରାହ୍ମଣ –**

ସଂହିତୋପନିଷଦ୍ ବ୍ରାହ୍ମଣ ୫ ଖଣ୍ଡରେ ବିଭକ୍ତ ଓ ଆକାରରେ ଖୁବ୍ କ୍ଷୁଦ୍ର । ଏଥିରେ ସମଯୋନି ମନ୍ତ୍ର ଓ ପଦର ପାରସ୍ପରିକ ସଂପର୍କ ଆଲୋଚିତ ହୋଇଛି । ସାମଗାୟନର ଫଳ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଅଛି (୫୮)

**ବଂଶ ବ୍ରାହ୍ମଣ –**

ବଂଶ ଏକ କ୍ଷୁଦ୍ରକାୟ ବ୍ରାହ୍ମଣ । ଏହା ୩ ଖଣ୍ଡରେ ବିଭକ୍ତ । ନାମରୁ ଏହାର ସ୍ୱରୂପ ଜଣାପଡେ । ସାମବେଦର ଆଚାର୍ଯ୍ୟମାନଙ୍କ ବଂଶ ପରମ୍ପରା ଏଥିରେ ଉଲ୍ଲିଖିତ । ପ୍ରାଚୀନ ଋଷିମାନଙ୍କର ନାମ ଏଥିରୁ ଜଣାଯାଏ ।

**ଜୈମିନୀୟ ବ୍ରାହ୍ମଣ –**

ଜୈମିନୀ ଶାଖାର ଏ ବ୍ରାହ୍ମଣ ଅଂଶତଃ ଉପଲବ୍ଧ ହୁଏ । ଶତପଥ ବ୍ରାହ୍ମଣ ପରି ଏଥିରେ ଯଜ୍ଞ ବିଷୟରେ ବର୍ଣ୍ଣନା କରାଯାଇଛି ।

**ଅଥର୍ବ ବେଦୀୟ ବ୍ରାହ୍ମଣ –**

ଅଥର୍ବବେଦର ସର୍ବମୋଟ ନଅଟି ଶାଖାଥିଲେ ମଧ୍ୟ ଗୋପଥ ବ୍ରାହ୍ମଣ ହିଁ ଆମକୁ ଏକମାତ୍ର ଉପଲବ୍ଧ । (୫୯) ବିଦ୍ୱାନମାନେ ଏହାକୁ ବେଦାନ୍ତ ସାହିତ୍ୟ ଶ୍ରେଣୀୟ ବୋଲି କହିଥାନ୍ତି ।

**ଗୋପଥ ବାହ୍ମଣ –**

ଅଥର୍ବ ବେଦର ଏକମାତ୍ର ବ୍ରାହ୍ମଣ ହେଉଛି ଗୋପଥ ବ୍ରାହ୍ମଣ । ଏହା ଦୁଇଟି କାଣ୍ଡରେ ବିଭକ୍ତ । ଏହାର ପ୍ରଥମ କାଣ୍ଡରେ ୫ ଅଧ୍ୟାୟ ଓ ଦ୍ୱିତୀୟ କାଣ୍ଡରେ ୬ ଅଧ୍ୟାୟ । ଗୋପଥର ରଚୟିତା ହେଉଛନ୍ତି ଗୋପଥ ଋଷି । ଏ ଗୋପଥକୁ ପୂର୍ବ ଗୋପଥ ଓ ଉତ୍ତର ଗୋପଥରେ ବିଭକ୍ତ କାରାଯାଇଛି । ପୂର୍ବ ଗୋପଥର ପ୍ରଥମ ଅଧ୍ୟାୟରେ ଗାୟତ୍ରୀର ମହିମା, ଦ୍ୱିତୀୟ ଅଧ୍ୟାୟରେ ବ୍ରହ୍ମଚାରୀର ଆଚାର, ବ୍ୟବହାର, ନିୟମ, ତୃତୀୟ ଅଧ୍ୟାୟରେ ଯଜ୍ଞ କର୍ମରେ ଚାରି ଜଣ ଋତ୍ୱିକଙ୍କ କର୍ତ୍ତବ୍ୟ, ୪ର୍ଥ ଅଧ୍ୟାୟରେ ଋତ୍ୱିକଙ୍କର ଦୀକ୍ଷା, ୫ମ ଅଧ୍ୟାୟରେ ସଂବତ୍ସର ସତ୍ର (ଯଜ୍ଞ) ର ସଂପର୍କରେ ବର୍ଣ୍ଣନା ଦେଖିବାକୁ ମିଳେ । ଆହୁରି ମଧ୍ୟ ଏହି ଅଧ୍ୟାୟରେ ପୁରୁଷ ମେଧ, ଅଶ୍ୱମେଧ, ଅଗ୍ନିଷ୍ଟୋମ, ଆଦି ବିଷୟ ବର୍ଣ୍ଣିତ ହୋଇଛି । ଉତ୍ତର ଗୋପଥରେ ନାନା ପ୍ରକାର ଯଜ୍ଞ ଓ ଯଜ୍ଞସଂବନ୍ଧୀ ଉପାଖ୍ୟାନ ଉପଲବ୍ଧ ହୁଏ ।

ଗୋପଥ ବ୍ରାହ୍ମଣ ବ୍ରାହ୍ମଣ ସାହିତ୍ୟରେ ଏକ ଅର୍ବାଚୀନ ରଚନା । ଏଥିରେ ଅଥର୍ବ ବେଦର ବିଶେଷ ମହିମା ଗାନ କରାଯାଇଛି । ଅଥର୍ବ ବେଦକୁ ବ୍ରହ୍ମବେଦ ବୋଲି କୁହାଯାଏ । ଏଥିରେ ଅଥର୍ବ ବେଦରୁ ତିନିବେଦ ଓ 'ଓଁ' କାର ଉତ୍ପତ୍ତି ଲାଭ କରିଛି ବୋଲି କୁହାଯାଇଛି । ଏଥିରେ ଏକ ନୂତନ କଥା ଲକ୍ଷ୍ୟ କରାଯାଏ । ପ୍ରତ୍ୟେକ ବେଦ ମନ୍ତ୍ର ପୂର୍ବରୁ 'ଓଁ' ଏହି ଏକାକ୍ଷର ଶବ୍ଦ ପ୍ରୟୋଗ ହୋଇଛି ।

ଓଁ କୁ ଆତ୍ମା ବୋଲି 'ମାଣ୍ଡୁକୋପନିଷଦ୍' ରେ କୁହାଯାଇଛି ।(୬୦) ଏହାର ବହୁଳ ବ୍ୟବହାର ଗୋପଥ ବ୍ରାହ୍ମଣ ବ୍ୟତୀତ ଅନ୍ୟ କେଉଁଠାରେ ହୋଇନାହିଁ । ନୀଳକଣ୍ଠ ଦାସ କହିଛନ୍ତି 'ଓଁ' ହେଉଛି ଓଡିଶାର ( କଳିଙ୍ଗ ) ବୈଦିକ ସଂସ୍କୃତିକୁ ଅବଦାନ । କଳିଙ୍ଗ ବ୍ରାତ୍ୟ ସଂସ୍କୃତିର ବୈଦିକ ସଂସ୍କୃତି ଉପରେ ପଡ଼ିଥିବା ପ୍ରଭାବର ଫଳଶ୍ରୁତି । ଏବେ ମଧ୍ୟ ଓଡିଆ ଲୋକ ଆତ୍ମାକୁ ବା ନିଜକୁ 'ଓଁ' ବୋଲି କୁହନ୍ତି । ଜି କାହାକୁ ନାମ ଧରି ଡାକିଲେ ସେ ଓ କରିଥାଏ । 'ଓଁ' ହେଉଛି ଓଡିଆର 'ଓ' ର ଅନୁନାସିକ ଉଚ୍ଚାରଣ ।(୬୧) ଏହି 'ଓଁ' ଗୋପଥ ବ୍ରାହ୍ମଣରେ ବହୁଳ ପ୍ରବେଶ କରିବାର ସମ୍ଭାବନା ସଂପର୍କରେ ସୁରେନ୍ଦ୍ର ନାଥ ଶତପଥୀ ଆଲୋଚନା କରି କହିଅଛନ୍ତି । "ପ୍ରାଚୀନ ଅଙ୍ଗ ଅଞ୍ଚଳର ଅନ୍ତର୍ଭୁକ୍ତ ମୟୂରଭଂଜ ଜିଲ୍ଲାର ବିହାର ପଟକୁ ଲାଗି ଏବେ 'ବୈପଳଦ୍ ଶାଖା'ର ବ୍ରାହ୍ମଣ ଗୋଷ୍ଠୀ ଅଛନ୍ତି । ଶୁଣାଯାଏ ଯେ ଏହି ଶ୍ରେଣୀର ବ୍ରାହ୍ମଣ ବର୍ତ୍ତମାନ ଭାରତର ଅନ୍ୟ କେଉଁଠି ନାହାଁନ୍ତି । ଅଥର୍ବବେଦର 'ବୈପଲାଦ ଶାଖା'ର ବ୍ରାହ୍ମଣମାନଙ୍କର ଏଭଳି ବର୍ତ୍ତମାନତା, ଓଡିଆ ଭାଷାରେ ଆତ୍ମାକୁ ବା ନିଜକୁ 'ଓ' ବୋଲି ଡାକିବା ଏବଂ ଗୋପଥ ବ୍ରାହ୍ମଣରେ 'ଓଁ' ଶବ୍ଦର ବହୁଳ ପ୍ରୟୋଗକୁ ଏକାଠି ବିଗ୍ରହ କଲେ ଅନୁମିତି ହୁଏ ଯେ ଏହି ଗ୍ରନ୍ଥଟି ବୋଧହୁଏ 'ଗୋପଥ ଋଷି'ଙ୍କ ଦ୍ୱାରା କଳିଙ୍ଗ - ଅଙ୍ଗ - ମଗଧ- ଅଞ୍ଚଳରେ କେଉଁଠି ରଚିତ ହୋଇଥିଲା" । (୬୨) ମୟୂରଭଂଜର ଗୋରୁ - ମହିଶାଣି ପର୍ବତର 'ଗୋପଥ ଋଷି' ଙ୍କ ଆଶ୍ରମ ସହିତ ଏହାର କେତେଦୂର ସଂପର୍କ ଅଛି ତାହା ଗବେଷଣାର ବିଷୟବସ୍ତୁ । କୁରୁ, ପାଞ୍ଚାଳ, ଅଙ୍ଗ - ମଗଧ, କାଶୀ - କୋଶଳ, ସାଲ୍ୱ - ମତ୍ସ୍ୟ ତଥା ବଂଶ - ଉଶୀନର କଥା ଗୋପଥ ବ୍ରାହ୍ମଣରେ ବର୍ଣ୍ଣନା କରାଯାଇଛି । ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳ ତ୍ୟାଗ କରି ପୂର୍ବାଭିମୁଖରେ ଗତି କଲାବେଳେ ଅନେକ ବର୍ଷ ପରେ ଅଙ୍ଗ- ମଗଧ ସହିତ ପରିଚିତ ହୋଇଥିଲେ । ହେଲେ ପ୍ରଥମେ ଏହି ଅଞ୍ଚଳ ଆର୍ଯ୍ୟମାନଙ୍କର ବାସୋପଯୋଗୀ ଅଞ୍ଚଳ ନୁହେଁ ବୋଲି ସେମାନେ ଘୃଣା ଚକ୍ଷୁରେ ଦେଖୁଥିଲେ । ଏହା 'ବ୍ରାତ୍ୟ' ମାନଙ୍କର ଏକ ଘୃଣିତ ଦେଶ ବୋଲି ସେମାନେ କହୁଥିଲେ । ମାତ୍ର 'ଗୋପଥ ବ୍ରାହ୍ମଣ'ରୁ ଜଣାପଡେ ଏହି ବ୍ରାହ୍ମଣର ସୃଷ୍ଟି ବେଳକୁ ଆର୍ଯ୍ୟମାନେ ଅଙ୍ଗ - ମଗଧରେ ବାସ କରି ସାରିଲେଣି । ଐତିହାସିକମାନେ କୁହନ୍ତି ଖ୍ରୀ.ପୂ. ୭ମ ଅଷ୍ଟମ ଶତାବ୍ଦୀରେ ଏହି ଗ୍ରନ୍ଥ ରଚନା ହୋଇଛି । ନିର୍ଦ୍ଦିଷ୍ଟ ଭାବରେ ଗବେଷକମାନେ କିଛି ମତାମତ ଦେଇ ପାରିନଥିଲେ ମଧ୍ୟ ଏହା ଯେ ବୁଦ୍ଧଙ୍କର (ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀ) ପୂର୍ବବର୍ତ୍ତୀ ସ୍ୱୀକାର କରି ଅଛନ୍ତି । (୬୩) ଏହି ଗ୍ରନ୍ଥରେ ବ୍ରାହ୍ମଣମାନଙ୍କ ନିମିତ୍ତ ଶୁଦ୍ଧପୂତ ଜୀବନ ଧାରଣ ପାଇଁ ପରାମର୍ଶ ଦିଆଯାଇଛି । ଏଥିରେ କୁହାଯାଇଛି ବ୍ରାହ୍ମଣମାନେ ନାଚିବେ ନାହିଁ, ଗୀତ ଗାଇବେ ନାହିଁ କି ଖରାପ କଥା ତୁଣ୍ଡରେ ଧରିବେ ନାହିଁ । (୬୪)

ବେଦଧାୟୀ ତିନି ବେଦ ପଢିବା ପୂର୍ବରୁ ପ୍ରଥମେ ଅଥର୍ବ ବେଦକୁ ପଢିବା ପାଇଁ କୁହାଯାଇଛି । ସନ୍ତାନ ଉତ୍ପତ୍ତି ଦ୍ୱାରା ପିତୃଋଣ , ଦେବଋଣ ସୁଝିବା ପାଇଁ ପୁରୁଷ ବହୁ ସ୍ତ୍ରୀ ବିବାହ କରିପାରେ ବୋଲି ଏଥିରେ ଉଲ୍ଲେଖ କରାଯାଇଛି । ଭାଷା ଶାସ୍ତ୍ର ଦୃଷ୍ଟିରୁ ଏହା ଏକ ଉପାଦେୟ ଗ୍ରନ୍ଥ । ଅନେକ ଗୁଡିଏ ଶବ୍ଦର ଶବ୍ଦ ତାତ୍ତ୍ୱିକ ବିଗ୍ରହ କରାଯାଇ ଅର୍ଥ ନିର୍ଣ୍ଣୟ କରାଯାଇଛି । ଦେବତାମାନେ ପରୋକ୍ଷ ପ୍ରିୟ ବୋଲି ଯାସ୍କ କହିଅଛନ୍ତି । ଏହାର ଅର୍ଥ ହେଉଛି ତାହାଙ୍କୁ ପ୍ରତ୍ୟକ୍ଷ ଭାବରେ ନ ଡାକି ପରୋକ୍ଷରେ ଡାକିଲେ ସେମାନେ ଖୁସି ହୁଅନ୍ତି । (୬୫) ବ୍ରାହ୍ମଣ ଗ୍ରନ୍ଥରେ ବିଭିନ୍ନ ଦେବତାଙ୍କ ନିମିତ୍ତ ପରୋକ୍ଷାର୍ଥର ନିର୍ଣ୍ଣୟ ସଂଶିତ ହୋଇଛି ।

**ବ୍ରାହ୍ମଣ ଗ୍ରନ୍ଥ ଗୁଡିକର ଉପଯୋଗିତା –**

**(କ)** ଲୌକିକ ଓ ଆଧ୍ୟାତ୍ମିକ ଜୀବନ ଭିତରେ ସମନ୍ୱୟ ଆଣି ଏକ ସାର୍ଥକ ଜୀବନ ଯାପନ କରିବାର କଥା ଏହି ବ୍ରାହ୍ମଣ ଗ୍ରନ୍ଥରେ ଦର୍ଶାଯାଇଛି । (ଖ) କର୍ମଫଳ ଓ ଜନ୍ମାନ୍ତରବାଦର କଥା କୁହାଯାଇ ସତ୍ କର୍ମ ଲାଗି ପ୍ରୋତ୍ସାହନ ଦିଆଯାଇଛି । (ଗ) ଯଜ୍ଞ ସଂପର୍କରେ ସମ୍ୟକ ଜ୍ଞାନ ଆହରଣ କରିବା ନିମିତ୍ତ ନିର୍ଦ୍ଦେଶ ଦିଆଯାଇଛି । (ଘ) ବ୍ରାହ୍ମଣ ଗ୍ରନ୍ଥ ଗୁଡିକ ଏକ ସମୟରେ ଭାରତୀୟ ସଂସ୍କୃତିର ପ୍ରତୀକ ହେବା ସଂଗେ ସଂଗେ ଜ୍ଞାନ ବିଜ୍ଞାନ ଓ କଳା କୌଶଳରେ ପରିପୂର୍ଣ୍ଣ ହୋଇଅଛି ।
(ଙ) ଅଗ୍ନି ଦେବତାଙ୍କ ମାନ୍ୟତା ହ୍ରାସ ଓ ବିଷ୍ଣୁଙ୍କର ମାନ୍ୟତା ତଥା ଅଧିକାର ବୃଦ୍ଧିର ସଂକେତ ମିଳୁଅଛି ।

ଏହା ବ୍ୟତୀତ ବ୍ରାହ୍ମଣ ଗ୍ରନ୍ଥ ଗୁଡିକରେ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟର ଅବତାରଣା କରାଯାଇଛି ।

## ୨ - ଆରଣ୍ୟକ

ଆରଣ୍ୟ ଶବ୍ଦରୁ ବୃଞ୍. ପ୍ରତ୍ୟୟ ହୋଇ ଆରଣ୍ୟକ ଶବ୍ଦର ଉଦ୍ଭବ ହୋଇଛି । ଅରଣ୍ୟରେ ଯାହାର ସୃଷ୍ଟି ତାହା ହେଉଛି ଆରଣ୍ୟକ । (୬୬) ବନରେ ପଠନ ଯୋଗ୍ୟ ହେତୁ ସେହି ଗ୍ରନ୍ଥର ନାମ ରାଖାଯାଇଛି ଆରଣ୍ୟକ । ସାୟାଣାଚାର୍ଯ୍ୟଙ୍କ ଭାଷାରେ - ବନରେ ବାସ କରୁଥିବା ବାନପ୍ରସ୍ଥୀମାନେ ଯେଉଁ ଯାଗ ଯଜ୍ଞ ସମ୍ପାଦନା କରୁଥିଲେ ସେହି ଯାଗ ଯଜ୍ଞକୁ ନିର୍ଦ୍ଦେଶ କରୁଥିବା ଗ୍ରନ୍ଥ ହେଉଛି ଆରଣ୍ୟକ । (୬୭) ଜନଶୂନ୍ୟ ବନର-ଶାନ୍ତ ବାତାବରଣ ଭିତରେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟରେ ପ୍ରତିଷ୍ଠିତ ହୋଇ ମୁନି ଋଷିମାନେ ଯେଉଁ ପୂତ ଓ ଶାନ୍ତିପୂର୍ଣ୍ଣ ବିଦ୍ୟାକୁ ଅଧ୍ୟୟନ କରୁଥିଲେ ତାହାକୁ ଆରଣ୍ୟକ କୁହାଯାଏ ।(୬୮) ଆରଣ୍ୟକକୁ ଯଜ୍ଞ ରହସ୍ୟ ଗ୍ରନ୍ଥ ମଧ୍ୟ କୁହାଯାଏ । ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ଚାରି ଆଶ୍ରମ ଦେଇ ଆର୍ଯ୍ୟମାନେ ଗତି କରୁଥିଲେ । ବାନପ୍ରସ୍ଥ ହେଉଛି ତୃତୀୟ ଆଶ୍ରମ । ତୃତୀୟ ଆଶ୍ରମରେ ଗୃହସ୍ଥକୁ ଘର ଦ୍ୱାର ଛାଡି ଅରଣ୍ୟରେ ତ୍ୟାଗପୂତ ଜୀବନ ଯାପନ କରିବାକୁ ହେଉଥିଲା । ମୁଖ୍ୟତଃ ସେମାନଙ୍କୁ ଜ୍ଞାନମାର୍ଗର ଆଶ୍ରୟ ନେବାକୁ ପଡୁଥିଲା । ଏହି ବାନପ୍ରସ୍ଥୀ ଜୀବନରେ ସେମାନେ ସାମାନ୍ୟ କିଛି ଯଜ୍ଞ, ହୋମ କରୁଥିଲେ । ସେହି ସବୁ କର୍ମକାଣ୍ଡ ବିଷୟ ସହିତ ଆରଣ୍ୟକ ଗ୍ରନ୍ଥମାନଙ୍କରେ ବ୍ରହ୍ମର ସ୍ୱରୂପର ଅବତାରଣା କରାଯାଇଛି । ଏକ ଉଚ୍ଚ ଚିନ୍ତାରେ ବାସ କରିବା କେବଳ ଅରଣ୍ୟର ଏହି ଶାନ୍ତ ପରିବେଶରେ ସମ୍ଭବ ହେଉଥିଲା । ଏହି ଭଳି ଏକ ଅନୁକୂଳ ପରିବେଶରେ ଛାତ୍ରମାନେ ମୁନି ଋଷିମାନଙ୍କ ଠାରୁ ଆରଣ୍ୟକ ଗ୍ରନ୍ଥ ଅଧ୍ୟୟନର ସୁଯୋଗ ପାଉଥିଲେ । ଡଃ. ରାଧାକୃଷ୍ଣନ୍ କହିଅଛନ୍ତି 'ଅରଣ୍ୟବାସୀ ବାନପ୍ରସ୍ଥୀମାନଙ୍କ ପାଇଁ ଆରଣ୍ୟକ ଗ୍ରନ୍ଥଗୁଡିକ ଥିଲା ଉଦ୍ଦିଷ୍ଟ' । ଏଥିରେ କର୍ମକାଣ୍ଡ ସଂପର୍କରେ ସାମାନ୍ୟ କିଛି ସୀମିତ ବର୍ଣ୍ଣନା ଥିବାରୁ ସୂତ୍ରକାର ବୋଧାୟନ ଏହାକୁ ବ୍ରାହ୍ମଣ ସହିତ ସମାନ କରିଅଛନ୍ତି । (୬୯) ବୋଧାୟନଙ୍କ ସହିତ ରାଧାକୃଷ୍ଣ ମଧ୍ୟ ସହମତ ହୋଇ ଅଛନ୍ତି । (୭୦) ଆରଣ୍ୟକରେ କେବଳ ଯଜ୍ଞର ନିୟମ ଓ କର୍ମକାଣ୍ଡର ବିଧି ବିଧାନ ବର୍ଣ୍ଣିତ ହୋଇ ନାହିଁ ବରଂ ସେଥିରେ ଯଜ୍ଞର ଆଧ୍ୟାତ୍ମିକ ଦିଗ ଉନ୍ମୋଚିତ ହୋଇଛି । ଆରଣ୍ୟକ ଗ୍ରନ୍ଥରେ ରହସ୍ୟ ବିଦ୍ୟା ବା ବ୍ରହ୍ମ

ବିଦ୍ୟାର ଚିନ୍ତନ କରାଯାଇଥିବାରୁ ଏହାର ଅନ୍ୟନାମ ରହସ୍ୟ ବୋଲି କୁହାଯାଇଛି । (୭୧) ମହାଭାରତ ଆଦି ପର୍ବରେ ଏହାର ଖୁବ୍ ପ୍ରଶଂସା କରାଯାଇଛି । (୭୨) ଯଜ୍ଞର ଆଧିଦୈବିକ ରୂପର ବର୍ଣ୍ଣନା ତଥା ପ୍ରାଣ ବିଦ୍ୟାର ଆଲୋଚନା ମଧ୍ୟ ଆରଣ୍ୟକରେ ମିଳିଥାଏ । ଔଷଧ ଗଛରୁ ଯେମିତି ଅମୃତ ବାହାର କରାଯାଇଥାଏ ବେଦରୁ ସେମିତି ଅମୃତ ଆକାରରେ ଆରଣ୍ୟକ ବହାରିଛି ବୋଲି ସେଠାରେ କୁହାଯାଇଛି । (୭୩) ଆରଣ୍ୟକରେ ମୁଖ୍ୟତଃ କର୍ମ ଓ ଜ୍ଞାନ ଏ ଉଭୟ ମାର୍ଗର ସମନ୍ୱୟ ଘଟିଛି । ପ୍ରାଚୀନତମ ଉପନିଷଦ୍ ଆଶିଂକ ରୂପରେ ଆରଣ୍ୟକରେ ବିଦ୍ୟମାନ ଥିଲା ପରି ଜଣାପଡେ । ଉପନିଷଦ୍ ଯେଭଳି ଗୋଟିଏ ମୂଳ ସତ୍ତାକୁ ସ୍ୱୀକାର କରେ ଆରଣ୍ୟକ ମଧ୍ୟ ସେହିପରି ସଂସାର ପ୍ରପଞ୍ଚକୁ ମୂଳ ସତ୍ତା ରୂପେ ସ୍ୱୀକାର କରେ । ଆରଣ୍ୟକ ଯଜ୍ଞ ରହସ୍ୟକୁ ଉଦ୍‌ଘାଟନ କରିଛି । ଯଜ୍ଞକୁ ବିଶ୍ୱର ନିୟନ୍ତା ଭାବେ ଗ୍ରହଣ କରିଛି । ସାରା ଜଗତକୁ ସେ ଯଜ୍ଞମୟ ଭାବିଛି । ଦେବତାକୁ  ଲକ୍ଷ୍ୟ କରି ଅଗ୍ନିରେ କୌଣସି ଦ୍ରବ୍ୟ ପ୍ରଦାନ କଲେ ଯେ ତାହା ପ୍ରକୃତ ଯଜ୍ଞ ହୋଇଥାଏ . ଏକଥା ଆରଣ୍ୟକ ଗ୍ରହଣ କରିପାରି ନାହିଁ । ଆରଣ୍ୟକ  ସକାମ କର୍ମ ତଥା କର୍ମ ଫଳରେ ବିଶ୍ୱାସ ରଖିନାହିଁ । କର୍ମ ମାର୍ଗ ଆତ୍ୟନ୍ତିକ ସୁଖ ପ୍ରାପ୍ତି ନିମିତ୍ତ ସହାୟକ ନୁହେଁ । ଆରଣ୍ୟକ ଅନୁସାରେ ଜ୍ଞାନ ମାର୍ଗ ଆତ୍ୟନ୍ତିକ ସୁଖ ଲାଗି ଏକାନ୍ତ ପ୍ରୟୋଜନ । ମନେ ହୁଏ ଉପନିଷଦ୍‌ରେ ଉଲ୍ଲିଖିତ ଜ୍ଞାନ - କର୍ମ ସମନ୍ୱୟ ବାଦର ମୂଳ ଭିତ୍ତି ଆରଣ୍ୟକରେ ରହିଅଛି ।

ପ୍ରାଣ ବିଦ୍ୟା ଆରଣ୍ୟକର ଆଲୋଚ୍ୟ ବିଷୟ । ପ୍ରାଣ ବିଦ୍ୟାର ଆଲୋଚନାରେ ବଳିଷ୍ଠ ପ୍ରମାଣ ନିମିତ୍ତ ଆରଣ୍ୟକ ଋଗ୍ ବେଦର ମନ୍ତ୍ରକୁ ଉଦ୍ଧାର କରିଅଛି । ସୁନ୍ଦର ଆଖ୍ୟାୟିକା ଦ୍ୱାରା ପ୍ରାଣର ଶ୍ରେଷ୍ଠତା ପ୍ରତି ପାଦିତ ହୋଇଛି ସମସ୍ତ ଇନ୍ଦ୍ରିୟ ଭିତରେ  । ଆରଣ୍ୟକ କହିଛି "ପ୍ରାଣ ସର୍ବତ୍ର ପରିବ୍ୟାପ୍ତ" । ଏହି ପ୍ରାଣ ସାରା ବିଶ୍ୱର ଧାରକ ଓ ରକ୍ଷକ ମଧ୍ୟ । ପ୍ରାଣ ଆୟୁକାରକ । ଅନ୍ତରୀକ୍ଷ ଓ ବାୟୁ ପ୍ରାଣରୁ ଉତ୍ପନ୍ନ । ଅନ୍ତରୀକ୍ଷର ସହାୟତାରେ ପ୍ରାଣୀ ଦୂର ଶବ୍ଦକୁ ଶୁଣି ପାରୁଛି । ବାୟୁ ସୁଗନ୍ଧି ବହନ କରି ପ୍ରାଣକୁ ତୃପ୍ତ କରେ ଏବଂ ନିଜର ପିତା ପ୍ରାଣର ସେବାକରେ । ପ୍ରାଣ ଅହୋଃରାତ୍ର ରୂପୀ । ତାହା କାଳାତ୍ମକ । ଦିବସ ହେଉଛି ପ୍ରାଣ ରୂପ ଓ ରାତ୍ରୀ ହେଉଛି 'ଅପାନ' ରୂପ । ପ୍ରାଣ ହେଉଛି ଦେବତାତ୍ମକ । ବାକ୍ୟରେ ଅଗ୍ନି ଦେବତା ବାସ କରନ୍ତି । ଚକ୍ଷୁ ହେଉଛି ସୂର୍ଯ୍ୟ. ମନ ଚନ୍ଦ୍ରମା ଏବଂ ଶ୍ରୋତ ଦିଗ । ପ୍ରାଣରେ ଏହି ସବୁ ଦେବତାଙ୍କୁ ଚିନ୍ତା କରିବା ଉଚିତ୍ । (୭୪) ଋଷିମାନେ ପ୍ରାଣକୁ ଏହି ଭଳି ଭାବେ ଉପଲବ୍ଧି କରିଥିଲେ  । ତେଣୁ ସେମାନେ ପ୍ରାଣକୁ ଦେବତା ଭାବେ ଉପାସନା କରୁଥିଲେ । ପ୍ରାଣକୁ ମଧ୍ୟ ଋଷି ରୂପରେ କଳ୍ପନା କରାଯାଇଛି । ଏହି ଦୃଷ୍ଟିରୁ ବିଗ୍ଚର କରି ଗବେଷକମାନେ ଆରଣ୍ୟକ ଓ ଉପନିଷଦ୍ ମଧ୍ୟରେ ଅଭେଦତ୍ୱ ପରିକଳ୍ପନା କରିଅଛନ୍ତି । ଏହି ଗ୍ରନ୍ଥର ବିପୁଳତା ବିଷୟ ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ । ବର୍ତ୍ତମାନ ସବୁ ଆରଣ୍ୟକ ଉପଲବ୍ଧ ହୁଏ ନାହିଁ । ପରମ୍ପରାକୁ ଆଶ୍ରୟ କରି ବିଗ୍ଚର କଲେ ଜଣାଯାଏ ଆରଣ୍ୟକ ଗ୍ରନ୍ଥ ଗୁଡିକର ମୋଟ ସଂଖ୍ୟା ଥିଲା ୧୧୩୦ । ମାତ୍ର ବର୍ତ୍ତମାନ ଆଠ ଗୋଟି ଆରଣ୍ୟକ ଗ୍ରନ୍ଥ ଉପଲବ୍ଧ ।(୭୫) ସେଗୁଡିକ ହେଲା— (କ) ଐତରେୟ ଆରଣ୍ୟକ . (ଖ) ଶାଖ୍ୟାୟନ ଆରଣ୍ୟକ (ଗ) ତୈତ୍ତିରୀୟ ଆରଣ୍ୟକ . (ଘ) ବୃହଦାରାଣ୍ୟକ (ଙ) ମାଧ୍ୟନ୍ଦିନ ବୃହଦାରଣ୍ୟକ (ଚ) କାଣ୍ୱ ଆରଣ୍ୟକ(ଛ) ଜୈମିନୀୟୋପନିଷଦ୍ ଆରଣ୍ୟକ (ଜ) ଛାନ୍ଦୋଗ୍ୟାରଣ୍ୟକ ।

ଯେଉଁ କେତୋଟି ଆରଣ୍ୟକ ଉପଲବ୍ଧ, ତାହାର ସ୍ୱତନ୍ତ୍ର ଆଲୋଚନା ସହିତ ସମସ୍ତ ଆରଣ୍ୟକର ସାମଗ୍ରିକ ରୂପ ପ୍ରଦାନ କରାଗଲେ ଆରଣ୍ୟକର ଗୁରୁତ୍ୱ ସହଜରେ ଉପଲବ୍ଧ ହେବ ।

**(କ) ଐତରେୟ ଆରଣ୍ୟକ –**

ଐତରେୟ ଆରଣ୍ୟକ ଋଗ୍‌ବେଦ ସହିତ ସଂପୃକ୍ତ । ଏହା ଐତରେୟ ବ୍ରାହ୍ମଣର ପରିଶିଷ୍ଟ ଏବଂ ଏହା ପାଞ୍ଚ ଭାଗରେ ବିଭକ୍ତ । ପ୍ରଥମ ଭାଗ ପାଞ୍ଚ ଅଧ୍ୟାୟ, ଦ୍ୱିତୀୟ ଭାଗ ସାତ ଅଧ୍ୟାୟ, ତୃତୀୟ ଭାଗ ଦୁଇ ଅଧ୍ୟାୟ, ଚତୁର୍ଥ ଭାଗ ଏକ ଅଧ୍ୟାୟ ଏବଂ ପଞ୍ଚମ ଭାଗ ତିନି ଅଧ୍ୟାୟରେ ବିଭକ୍ତ । ପ୍ରଥମ ଭାଗରେ ମହାବ୍ରତର ବର୍ଣ୍ଣନା ଅଛି । ଦ୍ୱିତୀୟ ଭାଗରେ ୪ର୍ଥରୁ ଷଷ୍ଠ ଅଧ୍ୟାୟ ହେଉଛି 'ଏତରେୟୋପନିଷଦ୍' । ଏହାର ଶେଷ ଅଧ୍ୟାୟରେ 'ଉକ୍‌ଥ' ଆଦିର ବର୍ଣ୍ଣନା ହୋଇଅଛି । ତୃତୀୟ ଭାଗରେ 'ନିର୍ଭୁଜ୍ ସଂହିତା ଓ ପ୍ରତୃଣ' ସଂହିତାର ପାର୍ଥକ୍ୟ ବର୍ଣ୍ଣିତ ହୋଇଅଛି । (୭୬) ଏଥିରେ ସ୍ୱର ବର୍ଣ୍ଣ, ସ୍ପର୍ଶବର୍ଣ୍ଣ ଓ ଉଷ୍ମବର୍ଣ୍ଣର ପ୍ରଭେଦ ପ୍ରଦର୍ଶିତ ହୋଇଅଛି । ଚତୁର୍ଥ ଭାଗ 'ମହାନାମ୍ନୀ' ଋଗ୍ୱର ସଂଗ୍ରହ ମାତ୍ର । ଐତରେୟ ଶେଷ ଭାଗରେ ନିଷ୍କୈବଲ୍ୟ ଶାସ୍ତ୍ରର ବର୍ଣ୍ଣନା ମିଳେ । ଏହି ଆରଣ୍ୟକର ପ୍ରଥମ ତିନିଭାଗ ଐତରେୟ ବର୍ଣ୍ଣନା କରି ଅଛନ୍ତି । ଚତୁର୍ଥର ରଚୟିତା ହେଉଅଛନ୍ତି ଆଶ୍ୱଲାୟନ । ପଞ୍ଚମ ଭାଗକୁ ରଚନା କରିଛନ୍ତି ଶୌନକ । ଐତରେୟ ଆରଣ୍ୟକର ସମୟ ଏ.ବି.କିଥ୍ ଖ୍ରୀ.ପୂ. ଷଷ୍ଠ ଶତକ ବୋଲି କହିଥିବା ବେଳେ ପଣ୍ଡିତ ବଳଦେବ ଉପାଧ୍ୟାୟ ଏହାକୁ ଐତରେୟ ବ୍ରାହ୍ମଣର ସମକାଳୀନ ବୋଲି କହିଅଛନ୍ତି । ଐତରେୟ ଆରଣ୍ୟକରେ ବ୍ରହ୍ମବିଦ୍ୟା ବା ପ୍ରାଣ ବିଦ୍ୟା ସଂପର୍କରେ ବିଶେଷ ବର୍ଣ୍ଣନା କରାଯାଇଛି । ସବୁ ଇନ୍ଦ୍ରିୟ ମଧ୍ୟରେ ପ୍ରାଣ କିଭଳି ଶ୍ରେଷ୍ଠ ତାହା ଆରଣ୍ୟକର ଗୋଟିଏ ଆଖ୍ୟାୟିକା ମାଧ୍ୟମରେ ବୁଝାଇ ଦିଆଯାଇଛି । "ପ୍ରାଣ ନଥିଲେ ଇନ୍ଦ୍ରିୟ ଇନ୍ଦ୍ରିୟ ନୁହେଁ; ପ୍ରାଣୀ ପ୍ରାଣୀ ନୁହେଁ" । (୭୭) ଅନ୍ୟତ୍ର କୁହାଯାଇଛି "ପ୍ରାଣର ବିରାଟ ଶକ୍ତି ବଳରେ ଆକାଶ ନିଜ ସ୍ଥାନରେ ସ୍ଥିର ହୋଇ ରହିପାରିଛି" ।(୭୮) ଏହାରେ ଗୁରୁତ୍ୱ ହେଉଛି ସର୍ବତ୍ର ପ୍ରାଣର ସ୍ଫୁରଣ ବିଦ୍ୟମାନ । ଏହି ପ୍ରାଣକୁ 'କିଏ ଆତ୍ମା ବୋଲି କୁହନ୍ତି" । କିଏ ବ୍ରହ୍ମ ବୋଲି କୁହନ୍ତି । ଯେ ସର୍ବତ୍ର ବ୍ୟାପ୍ତ ଓ ସର୍ବତ୍ର ସ୍ୟୂତ । ଏହି ପ୍ରାଣ ବିଦ୍ୟାକୁ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ଉପନିଷଦ୍‌ରେ ବିସ୍ତୃତ କରାଯାଇଛି । ବାନପ୍ରସ୍ଥୀମାନଙ୍କ ନିମିତ୍ତ ଆବଶ୍ୟକ ହେଉଥିବା ନିତ୍ୟ ନୈମିତ୍ତିକ କେତେକ କର୍ମ ବିଧିମାନ ଏଥିରେ ସ୍ଥାନିତ ହୋଇଛି ।

**(ଖ) ଶାଙ୍ଖ୍ୟାୟନ ଆରଣ୍ୟକ –**

ଶାଙ୍ଖ୍ୟାୟନ ହେଉଛି ଋଗ୍‌ବେଦର ଅନ୍ୟ ଏକ ଆରଣ୍ୟକ । ଏହା ୧୫ ଅଧ୍ୟାୟରେ ବିଭକ୍ତ । ଏହାର ଅନ୍ୟନାମ କୌଷୀତିକି । ୧୫ ଅଧ୍ୟାୟ ମଧ୍ୟରୁ ୩ୟରୁ ୬ଷ୍ଠ ପର୍ଯ୍ୟନ୍ତ କୌଷୀତିକ ଉପନିଷଦ୍‌ର ବିଷୟବସ୍ତୁକୁ ଗ୍ରହଣ କରିଅଛି । ୬ଷ୍ଠ ଅଧ୍ୟାୟରେ ମତ୍ସ୍ୟ, କାଶୀ ଉଶୀନର, କୁରୁ - ପାଞ୍ଚାଳ ଓ ବିଦେହର ନାମୋଲ୍ଲେଖ କରାଯାଇଛି । ଏହାର ତ୍ରୟୋଦଶ ଅଧ୍ୟାୟରେ ବୃହଦାରଣ୍ୟକ ଉପନିଷଦ୍‌ରୁ ବିଷୟବସ୍ତୁ ଗ୍ରହଣ କରାଯାଇଛି । ଗୁଣାଖ୍ୟ ଶଙ୍ଖ୍ୟାୟନ ଏବଂ ତାଙ୍କର ଶିଷ୍ୟମାନେ ଏହି ଆରଣ୍ୟକର ପ୍ରସ୍ତୁତକ । ଶାଙ୍ଖ୍ୟାୟନ ଆରଣ୍ୟକରେ କେତେକ ବୈଜ୍ଞାନିକ ପରୀକ୍ଷା ବିଷୟରେ ବର୍ଣ୍ଣିତ ହୋଇଅଛି । ଏହି ଆରଣ୍ୟକରେ ଗୋଟିଏ ବେଲ ଫଳରୁ ବିଭିନ୍ନ ପରୀକ୍ଷା ଫଳରେ କିପରି ମଣି ବାହାର କରାଯାଇପାରିବ ତାହା ବର୍ଣ୍ଣିତ ହୋଇଛି । (୭୯)

**(ଗ) ମାଧ୍ୟାନ୍ଦିନ ବୃହଦାରଣ୍ୟକ ଓ କାଣ୍ୱବୃହଦାରଣ୍ୟକ –**

ଏହା ଶୁକ୍ଳ ଯଜୁର୍ବେଦ ସହ ସଂପର୍କିତ । ଏଥିରେ ଆରଣ୍ୟକ ଓ ଉପନିଷଦ୍ ମିଶ୍ରିତ ରୂପ ଗ୍ରହଣ କରିଅଛି । ଏଥିରେ ଯଜ୍ଞ ରହସ୍ୟର ସୂଚନା ପ୍ରଦାନ କରାଯାଇଛି ମାତ୍ର ଆତ୍ମଜ୍ଞାନ ତତ୍ତ୍ୱର ସମ୍ୟକ ଆଲୋଚନା କରାଯାଇଛି । ଏହି ଦୁଇଟି ଆରଣ୍ୟକରୁ ଯାଜ୍ଞବଲ୍କ୍ୟ ଓ ଜନକଙ୍କ ସଂପର୍କରେ କାହାଣୀ ରହିଅଛି । ଏଥିରେ ବ୍ରହ୍ମବାଦିନୀ ଗାର୍ଗୀ ଓ ମୈତ୍ରେୟୀ ନାମକ ସ୍ତ୍ରୀଙ୍କର ବିବରଣୀ ମଧ୍ୟ ମିଳେ । ଏଥିରେ ସନ୍ନ୍ୟାସର ବର୍ଣ୍ଣନା ରହିଅଛି ।(୮୦) ବୃହଦାରଣ୍ୟକରେ ସୁଦ୍ୟୁମ୍ନ, ଇନ୍ଦ୍ରଦ୍ୟୁମ୍ନ, ଭୁରିଦ୍ୟୁମ୍ନ, ଶର୍ଯାତି, ଯଯାତି ଆଦି ରାଜାଙ୍କର ନାମ ଉଲ୍ଲିଖିତ ।

**(ଘ) ତୈତ୍ତିରୀୟ ଆରଣ୍ୟକ –**

ତୈତ୍ତିରୀୟ ବ୍ରାହ୍ମଣର ଶେଷ ଭାଗକୁ ତୈତ୍ତିରୀୟ ଆରଣ୍ୟକ କୁହାଯାଏ । ଏଥିରେ ୧୦ ଟି ଭାଗ ବା ପ୍ରପାଠକ ରହିଅଛି । ପ୍ରତ୍ୟେକ ଭାଗ କେତେକ ଅନୁବାକ୍‌ରେ ବିଭକ୍ତ । ସର୍ବମୋଟ ଏଥିରେ ୧୭୦ ଟି ଅନୁବାକ୍ ରହିଅଛି । ଏହାର ୭ମ ପ୍ରପାଠକରୁ ୯ମ ପ୍ରପାଠକ ପର୍ଯ୍ୟନ୍ତ ଅଂଶକୁ ତୈତ୍ତିରୀୟୋପନିଷଦ୍ କୁହାଯାଏ । ଏହାର ୧୦ମ ପ୍ରପାଠକ 'ମହାନାରାୟଣୀୟୋପନିଷଦ୍' ନାମରେ ପରିଚିତ । ତୈତ୍ତିରୀୟ ଆରଣ୍ୟକରେ ଋଗ୍‌ବେଦର ଅନେକ ମନ୍ତ୍ର ଉଦ୍ଧୃତ ହୋଇଅଛି । "କେତୁ ନାମକ ଅଗ୍ନିର ଉପାସନା ଏହାର ପ୍ରଥମ ପ୍ରପାଠକରେ ବର୍ଣ୍ଣିତ ହୋଇଅଛି । ଦ୍ୱିତୀୟରେ ପଞ୍ଚମ ମହାଯଜ୍ଞର ବର୍ଣ୍ଣନା କରାଯାଇଅଛି । ତୃତୀୟରେ 'ଚତୁର୍ହୋତ୍ର ଚିତ୍ତି'ର ଉପଯୋଗୀ ମନ୍ତ୍ର ଓ ଚତୁର୍ଥରେ 'ପ୍ରବର୍ଗ୍ୟ'ର ଉପଯୋଗୀ ମନ୍ତ୍ର ସଂକଳିତ ହୋଇଅଛି । ପଞ୍ଚମରେ ଯଜ୍ଞୀୟ ସଂକେତ ଓ ଷଷ୍ଠରେ ପିତୃମେଧ ଯଜ୍ଞ ସମ୍ବନ୍ଧୀ ମନ୍ତ୍ର ଉଲ୍ଲିଖିତ ହୋଇଛି" । (୮୧) ତୈତ୍ତିରୀୟ ଆରଣ୍ୟକରେ ଖାଣ୍ଡବ, କୁରୁକ୍ଷେତ୍ର, ମତ୍ସ୍ୟ, ଉଶୀନର, କାଶୀ, ବିଦେହ ଆଦି ରାଜ୍ୟମାନଙ୍କର ନାମ ଉଲ୍ଲିଖିତ । ଏଥିରୁ ଧାରଣା ହୁଏ ବ୍ରାହ୍ମଣ ଯୁଗରେ ସେହି ଅଞ୍ଚଳରେ ଆର୍ଯ୍ୟମାନେ ବାସ କରୁଥିଲେ । ଐତିହାସିକ କ୍ରମରେ ଐତିହାସିକ ତଥ୍ୟ ଓ ଭୌଗଳିକ ତଥ୍ୟ ଏଥିରେ ସଜ୍ଜିତ ହୋଇଥିବାର ମନେ ହୁଏ ନାହିଁ । ପ୍ରାଚୀନ ଗ୍ରୀକ୍ ଇତିହାସ ଯେଭଳି ସଜାହୋଇ ଲେଖା ହୋଇଛି ପ୍ରାଚୀନ ଭାରତ ଇତିହାସ ସେଭଳି ହୋଇନାହିଁ । ଇତିହାସର ଗବେଷକମାନେ ମନେ କରନ୍ତି ଭାରତରେ ପ୍ରଥମେ ସଜ୍ଜିତ ଐତିହାସିକ ଗ୍ରନ୍ଥ ଦ୍ୱାଦଶ ଶତାବ୍ଦୀରେ କହ୍ଲଣ କାଶ୍ମୀର ରାଜବଂଶର ଇତିହାସ ରାଜତରଙ୍ଗିଣୀ ରଚନା କରିଥିଲେ । ଆରଣ୍ୟକ ଗ୍ରନ୍ଥ କାହିଁକି ଅନ୍ୟାନ୍ୟ ସମସ୍ତ ବୈଦିକ ଗ୍ରନ୍ଥରେ ସମୟ ଅନୁସାରେ ବ୍ୟକ୍ତି ମାନଙ୍କର ସଜ୍ଜୀକରଣ ହେଉନଥିଲା । ବରଂ ଭାରତୀୟ ସଂସ୍କୃତିକୁ ବ୍ୟକ୍ତିର ଅବଦାନ ଭିତ୍ତିରେ ତାହାର ନାମକୁ ସଜାଇ ରଖାଯାଉଥିଲା । ଏହା ଫଳରେ ଜଣେ ବ୍ୟକ୍ତିଙ୍କ ପାଖରେ ଶତ ଶତ ବର୍ଷ ପରେ ଆବିର୍ଭୂତ ହୋଇଥିବା ଆଉ ଜଣେ ବ୍ୟକ୍ତିଙ୍କର ନାମ ରହି ଯାଉଥିଲା ।

ଆରଣ୍ୟକ ଗୁଡିକରେ ଲୌକିକ ସଂସ୍କୃତର ଭାଷା ପାଇ ଥାଉ । ବୈଦିକ ସଂହିତା ଓ ବ୍ରାହ୍ମଣ ଠାରୁ ଏହାର ଭାଷା ଥିଲା ସରଳ । ଲୋକେ ଯେଉଁ ଭାଷା ବ୍ୟବହାର କରୁଥିଲେ ସେହି ଭାଷାରେ ଏହା ସୃଷ୍ଟି ହୋଇଥିଲା । ସେଥିପାଇଁ ଏହା ଲୋକପ୍ରିୟ ହୋଇଥିଲା ।(୮୨)

# ୩ - ଉପନିଷଦ୍

ଉପନିଷଦ୍ ଶବ୍ଦ 'ଉପ' ଓ 'ନି' ଉପସର୍ଗ ସହିତ ସଦ୍ ଧାତୁରୁ 'କ୍ୱିପ୍' ପ୍ରତ୍ୟୟ ଯୋଗେ ନିଷ୍ପନ୍ନ ହୋଇଛି । ଏହାର ଅର୍ଥ ହେଉଛି ୧) ବିଶରଣ ଅର୍ଥାତ୍ ନାଶ ହେବା, ୨) ଗତି ଅର୍ଥାତ୍ କୌଣସି ପଦାର୍ଥ ଲାଭ କରିବା, ୩) ଅବସାଦନ ଅର୍ଥାତ୍ ଶିଥିଳ ହେବା । ଉପନିଷଦ୍‌ର ମୂଳ ଅର୍ଥ ହେଉଛି ଗୁରୁ ସମୀପରେ ଶିଷ୍ୟର ଅବସ୍ଥାନ ଅର୍ଥାତ୍ ଜ୍ଞାନ ପ୍ରାପ୍ତି । ତେଣୁ ଉପନିଷଦ୍‌କୁ ଗୁପ୍ତ ଉପବେଶନ କୁହାଯାଏ । ଉପନିଷଦ୍‌କୁ ମଧ୍ୟ 'ରହସ୍ୟମ୍' କୁହାଯାଇଛି । ଯାହାର ଅର୍ଥ ହେଉଛି ପ୍ରଚ୍ଛନ୍ନ । (୮୩)

ଉପନିଷଦ୍ କହିଲେ ଆମେ ବୁଝୁ ଗଭୀର ଜଟିଳ ତତ୍ତ୍ୱରେ ଭରପୂର ଥିବା କୌଣସି ଗ୍ରନ୍ଥ । ଏହାର ତତ୍ତ୍ୱ ଯେଉଁଭଳି ଗଭୀର ଅର୍ଥ ମଧ୍ୟ ସେହିପରି ତାତ୍ପର୍ଯ୍ୟ ପୂର୍ଣ୍ଣ । ଉପନିଷଦ୍ ହେଉଛି ବେଦର ଅନ୍ତିମ ଭାଗ । ଏହା କେବଳ ବେଦର ଅନ୍ତ ବା ପରବର୍ତ୍ତୀ କାଳରେ ଲେଖା ଯାଇ ନାହିଁ । ଏଥିରେ ବେଦର ସମଗ୍ର ନିର୍ଯାସ ମଧ୍ୟ ବିଦ୍ୟମାନ । ଯେଉଁ ଭାବରେ ଅର୍ଥ କଲେ ମଧ୍ୟ ଉପନିଷଦ୍‌ରେ ବ୍ରହ୍ମ ଜ୍ଞାନର ଚର୍ଚ୍ଚା କରାଯାଇଛି । ଆଧ୍ୟାତ୍ମିକ ଜୀବନ ଯାପନ ଲାଗି ନିର୍ଦ୍ଦେଶ ମାନ ଦିଆଯାଇଛି । ଏହା ହେଉଛି ଚରମ ଜ୍ଞାନର ଭଣ୍ଡାର । ଉପନିଷଦ୍‌ର ମୁଖ୍ୟ ଉଦ୍ଦେଶ୍ୟ ଅନ୍ତର୍ଦୃଷ୍ଟି ମାଧ୍ୟମରେ ସତ୍ୟର ଅନୁସନ୍ଧାନ କରିବା । ତେଣୁ କୁହାଯାଇଛି ଉପନିଷଦ୍ ହେଉଛି 'ଅନ୍ୱେଷାର ଏକ ପ୍ରବୃତ୍ତି '। ସତ୍ୟ ପ୍ରାପ୍ତି ପାଇଁ ଅନୁସିନ୍ଧିତ୍ସା । ବୈଜ୍ଞାନିକ ଭିତ୍ତିରେ ଏକ ଉଦ୍ଭାବନ । (୮୪) ମାନବର ଚରମ ଲକ୍ଷ୍ୟ ମୁକ୍ତି ବା ମୋକ୍ଷ ପାଇବାର ବାଟ ଏଥିରେ ବତାଇ ଦିଆଯାଇଛି । ବେଦ ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ ସାୟଣାଚାର୍ଯ୍ୟ କହିଛନ୍ତି ଅନିଷ୍ଟକୁ ଛାଡି ଇଷ୍ଟ ପାଇବା ପାଇଁ ଅଲୌକିକ ପନ୍ଥାଟି ଯେଉଁ ଗ୍ରନ୍ଥ ବତାଇ ଦିଏ ତାହା ହେଲା ବେଦ । ପ୍ରଥମତଃ ଇଷ୍ଟ ପାଇବାକୁ ହେବ । ଦ୍ୱିତୀୟତଃ ଅନିଷ୍ଟକୁ ଛାଡିବାକୁ ହେବ ; ଅଶିବକୁ ଛାଡିବାକୁ ହେବ । କୁ ପ୍ରବୃତ୍ତିକୁ ଦୂର କରିବାକୁ ହେବ । କାରଣ ଖରାପ ଜାଣି ନଥିଲେ ମଣିଷ ତା ଠାରୁ ଦୂରେଇ ଯାଇ ପାରିବ ନାହିଁ । ତୃତୀୟରେ ଭଲ ପାଖରେ ପହଞ୍ଚିବାକୁ ହେଲେ ଗୋଟିଏ ପନ୍ଥା ଧରିବାକୁ ହେବ । ଚତୁର୍ଥରେ ଏହି ପନ୍ଥାଟି ହେଉଛି ଅଲୌକିକ । ବେଦ ଏହି ଚ୍ତ୍ରରୋଟି କଥା ମଣିଷକୁ ଶିଖାଇଥାଏ ମୁକ୍ତି ପଥରେ ପହଞ୍ଚିବା ପାଇଁ । ଉପନିଷଦ୍ ହେଉଛି ବେଦାନ୍ତ ବା ବେଦର ନିର୍ଯ୍ୟାସ । ଏଣୁ ଏହା ମଧ୍ୟ ଏହି ଚ୍ତ୍ରରୋଟି କଥା ଶିଖାଇଥାଏ । (୮୫) ଉପନିଷଦୀୟ ଜ୍ଞାନ ଭାରତୀୟ ପରମ ଜ୍ଞାନର ପ୍ରତିନିଧିତ୍ୱ କରିଥାଏ । ଏହା ବ୍ରହ୍ମ ଜ୍ଞାନ ବିଷୟରେ ଜନ ମାନସକୁ ସଚେତନ କରାଇବା ଲାଗି ଉଦ୍ଦିଷ୍ଟ । ଏହା ପାଶ୍ଚାତ୍ୟ ଜ୍ଞାନ ଭଳି ବୈଜ୍ଞାନିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନହୋଇ ସହଜାତ ଜ୍ଞାନ ଉପରେ ନିର୍ଭର ଶୀଳ ଥାଏ । ଏହି ଜ୍ଞାନ ଘନତ୍ୱ ଉପରେ ଗୁରୁତ୍ୱ ଆରୋପ କରିଥାଏ ; ପାଶ୍ଚାତ୍ୟ ଜ୍ଞାନ ଭଳି ବିଶାଳତା ଉପରେ ନୁହେଁ '। ଜର୍ମାନ ଦାର୍ଶନିକ ଡଏସନ୍ (୮୬) ଜର୍ମାନ ପଣ୍ଡିତ ସୋପନହାୱାର (୮୭) ଉର୍କ୍ଷୁହାର୍ଟ (୮୮) ପ୍ରମୁଖ ଉପରୋକ୍ତ ଅନୁଶୀଳନ ପ୍ରତି ଅଧିକ ସମର୍ଥନ ଜଣାଇଛନ୍ତି । ସେହି ଦୃଷ୍ଟିରୁ ଉପନିଷଦ୍ ବୈଦିକ ସାହିତ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଆସିଛି । ତେଣୁ ବେଦାନ୍ତ ଦର୍ଶନ ବିଷୟରେ ଜ୍ଞାନାର୍ଜନ କରିବାକୁ ହେଲେ ଉପନିଷଦ୍‌ର ଅଧ୍ୟୟନ ତଥା ଅନୁଧ୍ୟାନ ଏକାନ୍ତ ଆବଶ୍ୟକ । ଉପନିଷଦ୍‌ରେ ଅଙ୍କୁରିତ ହୋଇଥିବା ଦାର୍ଶନିକ ତତ୍ତ୍ୱ ପରବର୍ତ୍ତୀ କାଳର ବିଭିନ୍ନ ଦାର୍ଶନିକ ସଂପ୍ରଦାୟରେ ପୁଷ୍ପିତ ହୋଇଛି ।

"କେବଳ ଯେ ଭାରତୀୟ ଦର୍ଶନର ମୂଳ ସ୍ରୋତ ଉପନିଷଦ୍‌ରେ ବିଦ୍ୟମାନ ତାହା ନୁହେଁ ଜୈନ ଓ ବୌଦ୍ଧ ଦର୍ଶନର ମୂଳ ବୀଜ ମଧ୍ୟ ଏଥିରେ ନିହିତ ଅଛି । ଉପନିଷଦ୍‌ର ଦାର୍ଶନିକ ତତ୍ତ୍ୱ ପ୍ରତି ପ୍ରଥମେ ରାଜନ୍ୟବର୍ଗ ଅନୁପ୍ରାଣୀତ ହୋଇଛନ୍ତି ଏବଂ ବେଦାନ୍ତ ଦର୍ଶନକୁ ପ୍ରଚ୍ର ପ୍ରସାର ନିମିତ୍ତ ପୁରୋହିତ ବର୍ଗକୁ ପୃଷ୍ଠପୋଷକତା କରିଅଛନ୍ତି । ସଂସାରରେ ଦୁଇଟି ମାର୍ଗ ଅଛି । ଗୋଟିଏ ପ୍ରେୟ ଓ ଅନ୍ୟଟି ଶ୍ରେୟ । ଭୌତିକ ଉନ୍ନତି ଏବଂ ଐଶ୍ୱର୍ଯ୍ୟ ନିମିତ୍ତ ଗୋଟିଏ ପଥ ଅଛି । ମୋକ୍ଷପ୍ରାପ୍ତି ନିମିତ୍ତ ଅନ୍ୟ ଏକ ପଥ ଅଛି । ଶ୍ରେୟ ଓ ପ୍ରେୟର ସାଧନକୃତ ବିଦ୍ୟା ମଧ୍ୟ ଦୁଇପ୍ରକାର । ପରାବିଦ୍ୟା ଦ୍ୱାରା ଶ୍ରେୟ ସାଧିତ ହୁଏ ଏବଂ ଅପରାବିଦ୍ୟା ଦ୍ୱାରା ପ୍ରେୟ ସାଧିତ ହୁଏ । ବୈଦିକ ସଂହିତା ଗ୍ରନ୍ଥଗୁଡ଼ିକ ହେଉଛି ଅପରା ବିଦ୍ୟା । ଯାହାଦ୍ୱାରା ଅକ୍ଷର ତତ୍ତ୍ୱର ଜ୍ଞାନ ଜନ୍ମେ ତାହା ହେଉଛି ପରାବିଦ୍ୟା । ଉପନିଷଦ୍ ଦ୍ୱାରା ଅକ୍ଷରତତ୍ତ୍ୱର ଜ୍ଞାନ ଜନ୍ମିଥାଏ । ଜୀବନକୁ ଅପୂର୍ବ ପ୍ରେରଣା ମିଳିଥାଏ । ଉପନିଷଦ୍‌ର ମନ୍ତ୍ର ଗତିଶୀଳ ଓ ଜାଗରୂକ । ତାହା ପ୍ରତ୍ୟେକ ମଣିଷକୁ ସତର୍କ ବାଣୀ ଶୁଣାଇ କହୁଛି । "ଉତ୍ତିଷ୍ଠିତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ" । ଉଠିପଡ, ଜାଗ୍ରତ ହୁଅ, ବିଜ୍ଞ ବ୍ୟକ୍ତିମାନଙ୍କ ଠାରୁ ଶିକ୍ଷା କର । ଏପରି ଜ୍ଞାନ ଲାଭ କର ଯାହା ଦ୍ୱାରା ମୁକ୍ତି ଲାଭ କରିପାରିବ । ସଂହିତା ଋଷିମାନେ ଥିଲେ ବାହ୍ୟ ଦର୍ଶୀ, ବ୍ରାହ୍ମଣ କର୍ମ କାଣ୍ଡରେ ଅଧିକ ବିଶ୍ୱାସୀ, ମାତ୍ର ଉପନିଷଦ୍‌ର ଋଷିମାନେ ଅନ୍ତର୍ମୁଖୀ, ସେମାନେ ବିଶ୍ୱର ଅନୈକ୍ୟ ମଧ୍ୟରେ ଐକ୍ୟ ସ୍ଥାପନ କରିଅଛନ୍ତି । ତେଣୁ ଅଧିକ ଭାବରେ ଏହା ଜୀବନ ସଂବନ୍ଧୀ"।(୮୯)

**ଉପନିଷଦ୍‌ର କାଳ ବିଗ୍ରହ –**

ଉପନିଷଦ୍‌ର କାଳ ସଂପର୍କରେ ନାନା ମୁନିଙ୍କର ନାନା ମତ । ତେବେ ଏ ଗୁଡିକ ଯେ ବେଦ, ବ୍ରାହ୍ମଣ ଓ ଆରଣ୍ୟକର ପରବର୍ତ୍ତୀ ଏଥିରେ ସନ୍ଦେହ ନାହିଁ । ଡକ୍ଟର ରାଧାକୃଷ୍ଣନ୍‌ଙ୍କ ମତରେ ଐତରେୟ, କୌଷତକୀ, ଛାନ୍ଦୋଗ୍ୟ, କେନ, ତୈତ୍ତିରୀୟ ବୃହଦାରଣ୍ୟକ, କଠ ଓ ଈଶ ଉପନିଷଦ୍ ଗୁଡିକ ବୁଦ୍ଧଙ୍କର ପୂର୍ବବର୍ତ୍ତୀ । ସେ ଏଗୁଡିକୁ ଖ୍ରୀ.ପୂ. ୮ ଶତାବ୍ଦୀରୁ ୭ମ ଶତାବ୍ଦୀ ମଧ୍ୟରେ ସ୍ଥାନିତ କରିଅଛନ୍ତି । (୯୦) ସ୍ୱାମୀ ପ୍ରଭାବାନନ୍ଦ କିଂତୁ ଏଗୁଡିକର ସୃଷ୍ଟିକୁ ଆହୁରି ପଛକୁ ନେଇଯାଇ ଅଛନ୍ତି ।(୯୧) ଲୋକମାନ୍ୟ ତିଳକଙ୍କ ମତରେ ମୈତ୍ରୁପନିଷଦ୍ ଯେଉଁ ଥିରେ କି ତୈତ୍ତିରୀୟୋପନିଷଦ୍, ଈଶୋପନିଷଦ୍, ବୃହଦାରଣ୍ୟକ ତଥା ଛାନ୍ଦୋଗ୍ୟ ଉପନିଷଦ୍‌ର ଉଦ୍ଧରଣ ମିଳେ ତାହା ଖ୍ରୀ.ପୂ ୧୬୦୦ ପୂର୍ବରୁ ରଚିତ ହୋଇଥିଲା । କେତେକ ପାଶ୍ଚାତ୍ୟ ଗବେଷକ ଏ ମତକୁ ଗ୍ରହଣ ନ କରି ତାହା ଖ୍ରୀ.ପୂ ୬୦୦ କିଂବା ୪୦୦ ଭିତର ରଚନା ବୋଲି କହିଅଛନ୍ତି ।

**ଉପନିଷଦ୍‌ର ପ୍ରତିପାଦ୍ୟ ସିଦ୍ଧାନ୍ତ –**

ଉପନିଷଦ୍‌ର ମୁଖ୍ୟ ପ୍ରତିପାଦ୍ୟ ବିଷୟ ହେଉଛି ଆତ୍ମା ଓ ବ୍ରହ୍ମ ସିଦ୍ଧାନ୍ତ । ସେଥିରେ ପ୍ରାଣ ସିଦ୍ଧାନ୍ତ, ଆବାଗମନ ସିଦ୍ଧାନ୍ତ, କର୍ମ ସିଦ୍ଧାନ୍ତ ଓ ନୈତିକ ସିଦ୍ଧାନ୍ତ ମଧ୍ୟ ବିବୃତ ହୋଇଛି ।

**(କ) ଆତ୍ମା ସିଦ୍ଧାନ୍ତ –**

ଆତ୍ମା ହେଉଛି ପୂର୍ଣ୍ଣ । ଅଖଣ୍ଡ ତଥା ଅମର । ଆତ୍ମାହିଁ ବ୍ରହ୍ମ । ଆତ୍ମାରେ ସକଳ ବ୍ରହ୍ମାଣ୍ଡ ପ୍ରତିଷ୍ଠିତ । ଏହା ଉପରେ 'ତତ୍ତ୍ୱମସି' ସିଦ୍ଧାନ୍ତ ମିଳେ ।

**(ଖ) ବ୍ରହ୍ମ ସିଦ୍ଧାନ୍ତ –**

ଉପନିଷଦ୍‌ର ପ୍ରତ୍ୟେକ ସିଦ୍ଧାନ୍ତ ବ୍ରହ୍ମ ଓ ଆତ୍ମା ଉପରେ କେନ୍ଦ୍ରିତ । ବ୍ରହ୍ମଙ୍କୁ ସଗୁଣ ଓ ନିର୍ଗୁଣ କୁହାଯାଇଛି । ବ୍ରହ୍ମର ଦୁଇଟି ରୂପ କଳ୍ପିତ ହୋଇଛି – ମୂର୍ତ୍ତ ଓ ଅମୂର୍ତ୍ତ । ବ୍ରହ୍ମଙ୍କୁ ପରମାତ୍ମା କୁହାଯାଇଛି । ପରମାତ୍ମା ଅବିଦ୍ୟାର ହେତୁ ବନ୍ଧନରେ ଜୀବ ସହିତ ଏକୀବନ୍ଧନରେ ପଡିଛି । ପୂର୍ବ ଜନ୍ମର କର୍ମ ଅନୁସାରେ ଫଳ ଭୋଗ କରୁଅଛି ।

**(ଗ) ଆବାଗମନ ସିଦ୍ଧାନ୍ତ –**

ପ୍ରାଣକୁ ଆତ୍ମା କୁହାଯାଇଛି । ତା'ର ଆବଗମନ ବର୍ଣ୍ଣିତ ହୋଇଛି । ଆତ୍ମା ଗୋଟିଏ ଶରୀର ପରିତ୍ୟାଗ କରି ଆଉଏକ ନୂତନ ଶରୀରରେ ପ୍ରବେଶ କରେ ।

**(ଘ) କର୍ମ ସିଦ୍ଧାନ୍ତ –**

ମନୁଷ୍ୟର ମୃତ୍ୟୁ ପରେ ତାର ଭୌତିକ ଶରୀରର ସମସ୍ତ ଅଂଶ କ୍ଷିତ୍, ଅପ, ତେଜଃ, ମରୁତ୍, ବ୍ୟୋମ ଏହି ପଞ୍ଚତତ୍ତ୍ୱରେ ମିଶିଯାଏ । କେବଳ ତାର କର୍ମ ରହିଯାଏ । ତେଣୁ ମନୁଷ୍ୟ ନିଜର ପୁଣ୍ୟ କର୍ମଦ୍ୱାରା ଶୋଭନ ଯୋନି ଓ ପାପ କର୍ମ ଦ୍ୱାରା କୁତ୍ସିତ ଯୋନିରେ ଜନ୍ମ ଗ୍ରହଣ କରେ । ଉକ୍ତ ଆଲୋଚନାରେ ମାନବର ଚ୍ରରିତ୍ରିକ ବିକାଶ ପ୍ରତି ବିଶେଷ ମହତ୍ୱ ଦିଆଯାଇଛି ।

**(ଙ) ନୈତିକ ସିଦ୍ଧାନ୍ତ –**

ନୈତିକ ସିଦ୍ଧାନ୍ତର ମାତ୍ରା ଉପନିଷଦ୍‌ରେ ଖୁବ୍ ଅଳ୍ପ ଦେଖା ଦିଏ । ବୃହଦାରଣ୍ୟକ ଉପନିଷଦ୍‌ରେ ପ୍ରଜାପତି ଦେବତାମାନଙ୍କୁ ଓ ରାକ୍ଷସଙ୍କୁ ତିନୋଟି ଶବ୍ଦ ଉପଦେଶ ଦେଇଅଛନ୍ତି । ସେ ତିନି ଶବ୍ଦ ହେଉଛି ଦ-ଦ-ଦ । ଏହାର ଅର୍ଥ ହେଉଛି 'ଦାମ୍ୟତ' ଅର୍ଥାତ୍ ଆତ୍ମ ସଂଯମ, 'ଦତ୍ତ' ଅର୍ଥାତ୍ ଦାନ ଦେବା ଓ 'ଦୟଧ୍ୱମ୍' ଅର୍ଥାତ୍ ଦୟା ପଦର୍ଶନ କରିବା । ଉକ୍ତ ନୈତିକ ସିଦ୍ଧାନ୍ତ ମନୁଷ୍ୟଙ୍କୁ ମହତ୍ତର କର୍ମ କରିବାକୁ ପ୍ରେରଣା ଦିଏ ।

ଯୁଗେ ଯୁଗେ ଭାରତୀୟ ଦାର୍ଶନିକ ଚିନ୍ତା ରାଜ୍ୟରେ ଦୁଇଟି ଧାରା ମୁଣ୍ଡ ଟେକିଛି ଓ ଏଥିପାଇଁ ଅନେକ ସଂଘର୍ଷର ସୂତ୍ରପାତ ହୋଇଅଛି । ବୈଦିକ ଯୁଗରୁ ଏହା ଗତି ଆସିଛି । ଗୋଟିଏ ଜ୍ଞାନକୁ ନେଇ ଗୋଟିଏ କର୍ମକୁ ନେଇ । କର୍ମମାର୍ଗୀମାନେ ବୈଦିକ ସଂହିତା ଓ ବ୍ରାହ୍ମଣର ନିର୍ଦ୍ଦିଷ୍ଟ କର୍ମକାଣ୍ଡକୁ ଭିତ୍ତି କରି ଓ ଜ୍ଞାନମାର୍ଗୀମାନେ ଉପନିଷଦ୍‌ର ନିର୍ଦ୍ଦିଷ୍ଟ ପନ୍ଥାକୁ ଅନୁସରଣ କରି ସେମାନଙ୍କ ମତକୁ ପ୍ରତିପାଦନ କରିଅଛନ୍ତି । ଗୋଟିଏ ଗୋଷ୍ଠୀ ଗୃହ ସଂସାର ନଛାଡି କର୍ମକୁ ଆବୋରି ଧରି ଓ ଅନ୍ୟ ଗୋଷ୍ଠୀ ଗୃହ ସଂସାର ଛାଡି ସନ୍ନ୍ୟାସର ତ୍ୟାଗପୂତ ଜୀବନ ନେଇ ଜ୍ଞାନର ଆରାଧନା କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି । ଏହି ଦ୍ୱନ୍ଦ୍ୱର ସମାଧାନ ହେଲା ଜୈମିନି ଓ ବ୍ୟାସଙ୍କ ଆବିର୍ଭାବରେ । ସେ ଉଭୟ ଏହାକୁ ଦୁଇଟି ମାର୍ଗ ବୋଲି ଗ୍ରହଣ କଲେ । କର୍ମ ମାର୍ଗ ଉପରେ ଭିତ୍ତି କରି ଜୈମିନୀ ଯେଉଁ ଦାର୍ଶନିକ ଚିନ୍ତାଧାରାଟିକୁ ପ୍ରତିଷ୍ଠିତ କରାଇଲେ ତାହା ହେଲା ମୀମାଂସା । ଅନ୍ୟପକ୍ଷରେ ଜ୍ଞାନ ମାର୍ଗ ଉପରେ ଭିତ୍ତି କରି ବ୍ୟାସ ଯେଉଁ ଚିନ୍ତାଧାରାଟିକୁ ପ୍ରତିଷ୍ଠିତ କରାଇଲେ ତାହା ହେଲା ବେଦାନ୍ତ । ତେଣୁ ଉପନିଷଦ୍‌ରେ ବେଦାନ୍ତ

ଦର୍ଶନର ହିଁ କେବଳ ବାଖ୍ୟା କରାଯାଇଛି । ବ୍ୟାସ କେବଳ ବେଦାନ୍ତ ଦର୍ଶନ ସୃଷ୍ଟି କରି ନାହାଁନ୍ତି । ଏହାକୁ ମଧ୍ୟ ସୂତ୍ରାନ୍ୱିତ କରିଦେଲେ । ତାଙ୍କ ଦ୍ୱାରା ସୃଷ୍ଟ ଏହି ସୂତ୍ରର ନାମ ହେଉଛି 'ବ୍ରହ୍ମ ସୂତ୍ର' । ଭାରତୀୟ ଜ୍ଞାନ ପରମ୍ପରାରେ ତିନୋଟି ଗ୍ରନ୍ଥର ବିଶେଷ ଆଦର ରହିଅଛି । ସେଗୁଡିକୁ କୁହାଯାଏ "ପ୍ରସ୍ଥାନ ତ୍ରୟୀ" । ଏହି ତିନୋଟି ହେଲା "ଉପନିଷଦ୍, ଗୀତା ଓ ବ୍ରହ୍ମସୂତ୍ର"। ଉପନିଷଦ୍‌ର ଗୁରୁତ୍ୱ ଏଥିରୁ ସହଜରେ ଅନୁମେୟ । ବ୍ୟାସଙ୍କର ଅନୁଶିଷ୍ୟ (ବୈଶମ୍ପାୟନଙ୍କ ଶିଷ୍ୟ) ଯାଜ୍ଞବଲ୍‌କ୍ୟ ଏହି ଦୁଇ ମାର୍ଗ (ଜ୍ଞାନ ଓ କର୍ମ ) ମଧ୍ୟରେ ମଧୁର ସମନ୍ୱୟ ଆଣିଛନ୍ତି । ତାଙ୍କ ଦ୍ୱାରା ସୃଷ୍ଟ 'ଈଶୋପନିଷଦ୍' ଗ୍ରନ୍ଥରେ ତାଙ୍କ ମତ ହେଲା "ଜ୍ଞାନ ଓ କର୍ମ ମଧ୍ୟରେ ସମନ୍ୱୟ ଅଣାଇବାକୁ ହେବ । ଭୋଗ ଓ ତ୍ୟାଗ ମଧ୍ୟରେ ସମନ୍ୱୟ ଅଣାଇବାକୁ ହେବ ; ବସ୍ତୁବାଦ ଓ ଆଧ୍ୟାତ୍ମବାଦ ମଧ୍ୟରେ ସମନ୍ୱୟ ଅଣାଇବାକୁ ହେବ । ତା ହେଲେ ଯାଇ ମଣିଷ ସଫଳ ଜୀବନଯାପନ କରି ପାରିବ ; ତାହେଲେ ଯାଇ ସେ ଜୀବନୀରୁ ସତ୍ୟକୁ ଉପଲବ୍ଧି କରି ପାରିବ ; ତା ହେଲେ ଯାଇ ସେ ଜୀବନରେ ଆନନ୍ଦ ପାଇ ପାରିବ" । (୯୨) ଏହି ସମନ୍ୱୟ ବାଦ ଯୁଗେ ଯୁଗେ ଆମ ସାଂସ୍କୃତିକ ଓ ଧାର୍ମିକ କ୍ଷେତ୍ରକୁ ପ୍ରଭାବିତ କରି ଆସିଛି । ଏହା ଉପନିଷଦର ଭାରତୀୟ ସଂସ୍କୃତିକୁ ଏକ ବଳିଷ୍ଠ ଅବଦାନ ।

ଉପନିଷଦ୍‌ର ହିନ୍ଦୁ ଦର୍ଶନ ଚରମସୀମାରେ ଉପନୀତ ହୋଇଛି ବୋଲି ରାଧାକୁମୁଦ ମୁଖାର୍ଜୀ ସ୍ପଷ୍ଟ ଭାବରେ ସ୍ୱୀକାର କରିଅଛନ୍ତି । (୯୩) ଉପନିଷଦ୍‌ର ସୃଷ୍ଟି ବେଳକୁ ପୃଥିବୀର ଅଧିକାଂଶ ଦେଶରେ ମନୁଷ୍ୟ ସଭ୍ୟତାର ସୃଷ୍ଟି ହୋଇନଥିଲା । ୟୁରୋପ ଭଳି ଆଜିର ସଭ୍ୟ ଦେଶ ସେତେବେଳେ ପ୍ରସ୍ତର ଯୁଗକୁ ଖୁବ୍ ନିକଟରେ ଅତିକ୍ରମ କରିଥିଲା । ସଂହିତା ଯୁଗ ଅତିକ୍ରମ କରି ଭାରତୀୟ ସଭ୍ୟତା ଉର୍ଦ୍ଧ୍ୱତମ ସ୍ତରକୁ ଯାଇ ପ୍ରକୃତ ସତ୍ୟ ଉଦ୍‌ଘାଟନ କରିବାର ପ୍ରୟାସୀ ହୋଇଥିଲା । ଏହି ଉର୍ଦ୍ଧ୍ୱତମ ସତ୍ୟ କହିଲେ ସେମାନେ ବ୍ରହ୍ମ ଜ୍ଞାନ ବୁଝୁଥିଲେ । ସେ ବ୍ରହ୍ମ ହେଉଛନ୍ତି ସତ୍ୟ, ଶିବ , ସୁନ୍ଦର । ସେ ସର୍ବତ୍ର ବିଦ୍ୟମାନ । ସୁଦୂରରେ ଥିଲେ ବି ସେ ପାଖରେ ଅଛନ୍ତି । ଏହି ଉପନିଷଦ୍ ରେ ବ୍ରହ୍ମ ଜିଜ୍ଞାସା ବା ଆତ୍ମ ଜିଜ୍ଞାସା ଉପରେ ଗୁରୁତ୍ୱ ଦିଆଯାଇଛି । ନିଜକୁ ଚିହ୍ନିବା ପାଇଁ ପରାମର୍ଶ ଦିଆଯାଇଛି । ବ୍ରହ୍ମସୂତ୍ରର ପ୍ରଥମ ସୂତ୍ରଟି ଏହି ବ୍ରହ୍ମ ଜିଜ୍ଞାସାରୁ ହିଁ ଆରମ୍ଭ ହୋଇଛି । ସେଠାରେ କୁହାଯାଇଛି ଏହା ପରେ ଆମ୍ଭେ ବ୍ରହ୍ମ ବିଷୟରେ ଜିଜ୍ଞାସା କରିବା । (୯୪) ନେହେରୁ ଏଥି ପ୍ରତି ଲକ୍ଷ୍ୟ କରି ଯାହା କହିଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । (୯୫)

"ଏହି ଚରମ ଜ୍ଞାନର ଚରମତମ ଅବସ୍ଥା ହେଲା ନିଜକୁ ସମସ୍ତଙ୍କ ଠାରେ ଏବଂ ପରମାତ୍ମାଙ୍କ ଠାରେ ଦେଖିବା, ସେତେବେଳେ ମଣିଷ ମନରେ ଉଦୟ ହେବ "ସୋଽହମ୍" ଚେତନା ବା ମୁଁ ହେଉଛି ସେ ; ଏହି ଚେତନା । ଏ ପ୍ରକାର ଚେତନା କିଛି ଶାସ୍ତ୍ରରେ ପଢିବାର କଥା ନୁହେଁ, କିଂବା ମୁହଁରେ କହିବାର କଥା ନୁହେଁ । ଅନ୍ୟପକ୍ଷରେ ଏହାକୁ ଅନୁଭବ କରିବାର କଥା । ଏ ପ୍ରକାର ଅନୁଭୂତି ଆସିଲେ ଯାଇ ମଣିଷ ହେବ ବ୍ରହ୍ମଜ୍ଞାନୀ ; ଅନ୍ୟଥା ନୁହେଁ । ଅତଏବ, ବ୍ରହ୍ମଜ୍ଞାନ କେବଳ ଚେତନାରୁ ସଂଭୂତ ନୁହେଁ । ଏହା ହୃଦୟରେ ଅନୁଭୂତ । ଉପନିଷଦ୍ ଆମକୁ ଏହି ଶିକ୍ଷା ଦେଇଥାଏ" । (୯୬)

ଆତ୍ମା ପ୍ରବଚନ ବା ଉପଦେଶ ବାଣୀ ଦ୍ୱାରା ଉପଲବ୍ଧ ନୁହଁନ୍ତି । (୯୭) "ଅହଂ ବ୍ରହ୍ମାସ୍ମି" ବୋଲି ବୃହଦାରଣ୍ୟରେ ଯାହା କୁହାଯାଇଛି ତାହାର ତାତ୍ପର୍ଯ୍ୟ ଏଠାରେ

ଦେଖିବାକୁ ମିଳେ । (୯୮) ସନାତନ ଧର୍ମର ଲକ୍ଷ୍ୟ ମଧ୍ୟ ଏହା । ଏହା କେବଳ ସତ୍ୟର ବଳୟକୁ ସ୍ପର୍ଶ କରିବ ନାହିଁ । ଏହା ସତ୍ୟ ମଧ୍ୟରେ ବି ପ୍ରବେଶ କରିବ । ସତ୍ୟ ମଧ୍ୟରେ ମଣିଷକୁ ଜୀଇଁବାକୁ ପ୍ରୋତ୍ସାହନ ଦେବ । ତେଣୁ ଆମର ଧର୍ମକୁ ଜୀବନ୍ତ ଅନୁଭୂତି ବୋଲି କୁହାଯାଏ । ଏହାର ଶିକ୍ଷା ଉପନିଷଦ୍‌ରୁହିଁ ମିଳିଥାଏ । ଧର୍ମର ଚିନ୍ତା ଭାରତ ବର୍ଷରେ ଯାହା, ତାହା ପୃଥିବୀର ଅନ୍ୟ ଯେ କୌଣସି ଦେଶର ଧର୍ମର ଚିନ୍ତା ଧାରାଠାରୁ ଭିନ୍ନ । ରାଧାକୃଷ୍ଣନ୍ ଧର୍ମର ଏହି ଅନୁଭୂତିନିଷ୍ଠତା ଉପରେ ଗୁରୁତ୍ୱ ଆରୋପ କରିଅଛନ୍ତି । (୯୯)

"ଏହା ସତ୍ୟ ଯେ ଉପନିଷଦ୍‌ରେ ସତ୍ୟର ଦର୍ଶନ ବା ଅନୁଭବ ଉପରେ ଗୁରୁତ୍ୱଆରୋପ କରାଯାଇଛି । ବ୍ରହ୍ମଜ୍ଞାନୀ ସାକ୍ଷାତ୍ ବ୍ରହ୍ମ ହୋଇ ଯାଇପାରନ୍ତି ବୋଲି ଉପନିଷଦ୍‌ରେ କୁହାଯାଇଛି । ଭାରତୀୟ ଆଧ୍ୟାତ୍ମିକ ପରିଭାଷାରେ ତାହାକୁ କୁହାଯାଏ ମୋକ୍ଷ ବା ମୁକ୍ତି । ଏ ପ୍ରକାର ମାନସିକ ସ୍ଥିତିରୁ ଖସି ଆସି ହେବ ନାହିଁ । ବୌଦ୍ଧମାନେ ଏହାକୁ କହନ୍ତି 'ନିର୍ବାଣ' । ଉପନିଷଦ୍‌ରେ ଉଲ୍ଲିଖିତ ମୋକ୍ଷ ବା ମୁକ୍ତି ; ତାହା ସାଧାରଣ ଅର୍ଥରେ ସ୍ୱର୍ଗ ପ୍ରାପ୍ତି ନୁହେଁ । କାରଣ ସ୍ୱର୍ଗ ହେଉଛି ବ୍ୟକ୍ତି ଜଗତର ଏକ ଅଂଶ । ଜୀବାତ୍ମା ଏଠାକୁ ଗଲେ ପୁଣି ଫେରି ଆସିଥାଏ ପୃଥିବୀକୁ । ଏଠାକୁ ଫେରି ସେ ପୁଣି ତାର କର୍ମ ଫଳ ଭୋଗ କରେ । ଅନ୍ୟ ପକ୍ଷରେ ମୁକ୍ତିର ଅର୍ଥ ହେଲା ପରମାର୍ଥଙ୍କ ସହ ମିଳନ । ଫଳରେ ସେ ଆଉ ଧରାପୃଷ୍ଠକୁ ଫେରି ଆସେ ନାହିଁ । ଯେଉଁଠାକୁ ଗଲେ ଆଉ ଫେରି ଆସିବାକୁ ହୁଏ ନାହିଁ ; ମୁକ୍ତିର ଏହି ସ୍ଥିତି ସଂପର୍କରେ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇ ଅଛନ୍ତି । (୧୦୦) ରାଧାକୃଷ୍ଣନ ଉପନିଷଦ୍‌ରେ ଏହିପରି ଭାବରେ ଅନନ୍ତ ଜୀବନ ଓ ମୁକ୍ତି ବିଷୟ ପ୍ରତିପାଦିତ ହୋଇଛି ବୋଲି କହିଅଛନ୍ତି "। (୧୦୧)

"ଛାନ୍ଦୋଗ୍ୟ ଉପନିଷଦ୍‌ରେ ବ୍ରହ୍ମଙ୍କୁ କୁହାଯାଇଛି 'ତଜ୍ଜଲାନ୍' (୧୦୨) ଅର୍ଥାତ୍ ସେ ଜଗତକୁ ଜନ୍ମ ଦିଅନ୍ତି (ଜ) ; ନିଜ ଭିତରେ ସେ ଲୀନ କରିଦିଅନ୍ତି, (ଲା) ଏବଂ ଜଗତକୁ ସେ ଜୀବନ ଦିଅନ୍ତି । (ଆନ୍ ) । ଜଗତ ବ୍ରହ୍ମଙ୍କ ଠାରୁ ସୃଷ୍ଟ ଓ ସେହିଠାରେ ଲୀନ ହୁଏ । ଜଗତକୁ ସୃଷ୍ଟି କରି ସାରିଲା ପରେ ବ୍ରହ୍ମଙ୍କର ପୂର୍ଣ୍ଣତାରୁ କିଛି ଉଣା ପଡିନାହିଁ । ଉପନିଷଦର ବିଭିନ୍ନ ଆଖ୍ୟାୟିକାରେ ଏହି ସତ୍ୟକୁ ପ୍ରତିପାଦିତ କରାଯାଇଛି । ଉପନିଷଦ୍‌ରେ କୁହାଯାଇଛି ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ଅବଶେଷ କେବଳ ପୂର୍ଣ୍ଣହିଁ ରହିବ । ଅନନ୍ତରୁ ଅନନ୍ତ ଗଲେ ଫଳ ଶୂନ ହେବ ନାହିଁ "। (୧୦୩) ଏହା ଗାଣିତିକ ସତ୍ୟ ବୋଲି ଆଧୁନିକ ଗଣିତଜ୍ଞ ମାନଙ୍କର ମତ । ଏହି ଦୃଷ୍ଟିରୁ ବିଗ୍ଭର କଲେ ଏ ଉକ୍ତିଟିରେ ଆଧ୍ୟାତ୍ମିକ ଓ ଦାର୍ଶନିକ ତାତ୍ପର୍ଯ୍ୟ ସହିତ ବୈଜ୍ଞାନିକ ଯୁକ୍ତିନିଷ୍ଠତା ରହିଛି ।

ଉପନିଷଦ୍‌ରେ ସତ୍ୟ ଓ ମାୟା ସଂପର୍କରେ କୁହାଯାଇଛି । ଯାହା ଚିରନ୍ତନ ତାହା ହିଁ ସତ୍ୟ । ବ୍ୟକ୍ତ ଜଗତ ଚିରନ୍ତନ ହୋଇ ନଥିବାରୁ ତାହା ଅସତ୍ୟ । ବ୍ରହ୍ମଙ୍କୁହିଁ କେବଳ 'ସତ୍ୟସ୍ୟ ସତ୍ୟମ୍ ବା ସତ୍ୟର ସତ୍ୟ' ବୋଲି ଉପନିଷଦ୍‌ରେ କୁହାଯାଇଛି । (୧୦୪) ଏଥିରୁ ଜଗତ ବୋଲି କିଛି ନାହିଁ ଏବଂ ଏହା ମିଥ୍ୟା ବୋଲି ଭାବିବା ଠିକ୍ ନୁହେଁ । କାରଣ ଅକ୍ଷୟ ବ୍ରହ୍ମ ଯେତେବେଳେ ପରିବର୍ତ୍ତନୀୟ ବ୍ୟକ୍ତ ଜଗତରେ ପ୍ରକଟିତ ହେଉଛନ୍ତି ଜଗତକୁ ମିଥ୍ୟା ବୋଲି କହି ଉଡାଇ ଦେବାରେ ଯଥାର୍ଥତା ନାହିଁ । ବରଂ ଏହାକୁ ମାୟା ବୋଲି ଯାହା କୁହାଯାଇଛି ତାହା ବଡୁ ଭାବରେ ପ୍ରଣିଧାନ ଯୋଗ୍ୟ । ରାଧାକୃଷ୍ଣନ୍ ଏହି ମାୟାକୁ ଅନିର୍ବଚନୀୟ ରହସ୍ୟ ବୋଲି କହିଅଛନ୍ତି । (୧୦୫) "ଏ ଜଗତ କାହିଁକି ଓ କେମିତି ରହିଛି

ତାହା ଆମେ କହିବା ସମ୍ଭବ ନୁହେଁ । ଏହା ହେଉଛି ଈଶ୍ୱରଙ୍କ ସେହି ଶକ୍ତି ଯାହା ଦ୍ୱାରା ସେ ବ୍ୟକ୍ତ ଜଗତକୁ ଗଢିଛନ୍ତି । ସୁତରାଂ ସଂସାରକୁ ମିଛ ମରୀଚିକା କହି ଉଡାଇ ଦେବା କଥା ଉପନିଷଦ କହି ନାହିଁ '' । ରାଧାକୃଷ୍ଣନ୍ ଭକ୍ତ କଥାକୁ ମଧ୍ୟ ସ୍ପଷ୍ଟ କରିଅଛନ୍ତି ।(୧୦୬)

ଜଗତ ଯଦି ମିଥ୍ୟା ହୁଏ ତାହେଲେ ଆମେ ସମସ୍ତେ ମିଥ୍ୟା ହୋଇଯିବା । ଉପନିଷଦର ଋଷିମାନେ ମିଥ୍ୟା ହୋଇଯିବେ । ସତ୍ୟ ନିକଟରେ ପହଞ୍ଚିବା ପାଇଁ ସେମାନଙ୍କ ବାଣୀ ମଧ୍ୟ ମିଥ୍ୟା ହୋଇଯିବ । ''ଅସତ୍‌ରୁ ମୋତେ ସତ୍ୟକୁ ନିଅ''ର କିଛି ଅର୍ଥ ରହିବ ନାହିଁ ।(୧୦୭) ତେଣୁ ଜଗତକୁ ମିଥ୍ୟା ବୋଲି କହି ଏଡାଇ ଦେବାର କଳ୍ପନା ଉପନିଷଦରେ କରାଯାଇନାହିଁ ।

ଉପନିଷଦ୍‌ରେ ସଦାଗ୍ରହ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇଛି । ସଦାଗ୍ରହୀ ହେବା ମାତ୍ରେ ଶୁଭ କଳ୍ପନା ଆସିବ । ଶୁଭ କଳ୍ପନା ହିଁ ଶୁଭକର୍ମର ପଥପ୍ରଦର୍ଶନ । ଶୁଭକର୍ମର ଶୁଭ ଫଳ ମିଳେ । ଠିକ୍ ଭାବରେ କର୍ମ କରିବା ପାଇଁ ସଦାଗ୍ରହର ଆବଶ୍ୟକତା ରହିଅଛି । ଜୀବନକୁ ଯଜ୍ଞ ସହିତ ତୁଳନା କରାଯାଇଛି । ତପସ୍ୟା, ଦାନ, ସାଧୁତା, ଅହିଂସା ଓ ସତ୍ୟବାଦୀତାକୁ ଦକ୍ଷିଣା ସ୍ୱରୂପ କଳ୍ପନା କରାଯାଇଛି । (୧୦୮) ବ୍ରହ୍ମଚାରୀଙ୍କ ଲାଗି ଯେଉଁ କର୍ତ୍ତବ୍ୟସୂଚୀ ଉପନିଷଦ୍‌ରେ ରଖା ଯାଇଛି ସେଥିରେ ସତ୍ୟ, ପରୋପକାର, ଅହିଂସା ଆଦି ଶ୍ରେଷ୍ଠ ସ୍ଥାନ ଗ୍ରହଣ କରିଅଛି ।(୧୦୯) ସତ୍ୟନିଷ୍ଠ ଭାବରେ ଜୀବନ ଯାପନ ପାଇଁ 'ସତ୍ୟକାମ' ଉପାଖ୍ୟାନରେ ଉପଦେଶ ଦିଆଯାଇଛି । (୧୧୦)

**ଉପନିଷଦ୍‌ର ସଂଖ୍ୟା ଓ ଐତିହାସିକ କ୍ରମ –**

ପରମ୍ପରା ଅନୁସାରେ ଉପନିଷଦ୍‌ର ସଂଖ୍ୟା ୧୧୮୦ ବୋଲି କୁହାଯାଉଥିଲେ ମଧ୍ୟ ମୁକ୍ତିକୋପନିଷଦ୍ ଅନୁସାରେ ଉପନିଷଦ୍‌ର ସଂଖ୍ୟା ହେଉଛି ୧୦୮ । ସେଗୁଡିକ ହେଲେ – ଋଗ୍‌ବେଦୀୟ ଉପନିଷଦ-୧୦, ଶୁକ୍ଳ ଯଜୁର୍ବେଦୀୟ ଉପନିଷଦ୍ ୧୯, କୃଷ୍ଣ ଯଜୁର୍ବେଦୀୟ ଉପନିଷଦ୍ ୩୨, ସାମବେଦୀୟ ୧୬ ଓ ଅଥର୍ବବେଦୀୟ ଉପନିଷଦ୍ ହେଉଛି ୩୧ । ଶଙ୍କରାଚାର୍ଯ୍ୟ ୧୦ଟି ପ୍ରଧାନ ଓ ମହତ୍ତ୍ୱପୂର୍ଣ୍ଣ ଉପନିଷଦ୍ ଉପରେ ଭାଷ୍ୟ ରଚନା କରିଅଛନ୍ତି । ସେହି ଉପନିଷଦ୍ ଗୁଡିକର ନାମ ଓ କ୍ରମ ହେଲା - ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଐତରେୟ, ଛାନ୍ଦୋଗ୍ୟ ଓ ବୃହଦାରଣ୍ୟକ ।(୧୧୧) ଜର୍ମାନ ବିଦ୍ୱାନ ଡଃ. ଡାୟସନ୍ ଉପନିଷଦ୍‌କୁ ଚାରି ଭାଗରେ ବିଭକ୍ତ କରି ଅଛନ୍ତି । ସେଗୁଡିକ ହେଲା **(କ) ପ୍ରାଚୀନ ଗଦ୍ୟମୟ ଉପନିଷଦ୍** (ଶ୍ୱେତାଶ୍ୱେତର, ମହାନାରାୟଣ , କଠ, ଈଶୋପନିଷଦ୍ ) **(ଖ) ପ୍ରାଚୀନ ଗଦ୍ୟମୟ ଉପନିଷଦ୍** (ଐତେରୟ, ତୈତ୍ତିରୀୟ, କେନ, କୌଷୀତିକି, ଛାନ୍ଦୋଗ୍ୟ, ବୃହଦାରଣ୍ୟକ ।) **(ଗ) ପରବର୍ତ୍ତୀ କାଳର ଗଦ୍ୟମୟ ଉପନିଷଦ୍** (ପ୍ରଶ୍ନ, ମୈତ୍ରୀ, ମୈତ୍ରାୟଣୀ, ମାଣ୍ଡୁକ୍ୟ) । **(ଘ) ଅଥର୍ବବେଦୀୟ ଉପନିଷଦ୍ ।**

ଡଃ. ବେଲଭାଲକର୍ ଏବଂ ରାଣାଡେ ନୂତନ ଭଂଗୀରେ ଉପନିଷଦ୍ ବିଭାଜନ କରିଅଛନ୍ତି । ଚିନ୍ତାମଣି ବିନାୟକ ବୈଦ୍ୟ ପ୍ରାଚୀନତା ଓ ଅର୍ବାଚୀନତା ଭେଦରେ ବିଭକ୍ତ କରିଅଛନ୍ତି । କେତେକ ଉପନିଷଦ୍ ବିଷ୍ଣୁ ଓ ଶିବଙ୍କୁ ପରମ ଦେବତା ଭାବରେ ଗ୍ରହଣ କରି ଅଛନ୍ତି । ଆଉ କେତେକ ଉପନିଷଦ୍‌ରେ ପ୍ରକୃତି,ପୁରୁଷ, ସତ୍ତ୍ୱ,ସ ରଜଃ, ତମଃର, ବର୍ଣ୍ଣନା ହୋଇଅଛି । କେତେକ ଉପନିଷଦରେ ବୈଦିକ ଦେବତାଙ୍କୁ

ପରଦେବତା ଭାବରେ ଗ୍ରହଣ ନକରି ବ୍ରହ୍ମଙ୍କୁ ଜଗତର ନିୟନ୍ତା ଓ ମୂଳ କାରଣ ବୋଲି ଗ୍ରହଣ କରିଅଛନ୍ତି । ବ୍ରହ୍ମକୁ ଜଗତର କାରଣ ବୋଲି ଯେଉଁ ଉପନିଷଦ୍ ଗୁଡିକ ଗ୍ରହଣ କରିଅଛି ତାହାକୁ ପ୍ରାଚୀନ ବୋଲି କୁହାଯାଇଛି । ସେଗୁଡ଼ିକ ହେଲା ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ଈଶ, କେନ, ଐତରେୟ, ତୈତ୍ତିରୀୟ, ପ୍ରଶ୍ନ, ମୁଣ୍ଡକ ଓ ମାଣ୍ଡୁକ୍ୟ ଇତ୍ୟାଦି । "କଠୋପନିଷଦ୍‌ରେ ବିଷ୍ଣୁ ପରଦେବତା ଭାବରେ ଗୃହୀତ ହୋଇଛନ୍ତି । କୃଷ୍ଣ ଯଜୁର୍ବେଦୀୟ ଉପନିଷଦ୍‌ରେ ମହାଦେବ ପରମ ପଦରେ ପ୍ରତିଷ୍ଠିତ ହୋଇଛନ୍ତି । ମୈତ୍ରାୟଣୀରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ମହିମା କୀର୍ତ୍ତିତ ହୋଇଛି । ତେଣୁ ତାକୁ ପରବର୍ତ୍ତୀ କାଳର ଉପନିଷଦ୍ ରୂପେ ଗଣନା କରାଯାଇଛି । କଠୋପନିଷଦ୍‌ରେ ସାଂଖ୍ୟ ଦର୍ଶନର ମହତ୍, ଅବ୍ୟକ୍ତ, ପୁରୁଷ ଆଦିର ଉଲ୍ଲେଖ ମିଳେ । ତେଣୁ ତାକୁ ପରବର୍ତ୍ତୀ କାଳର ରଚନା ବୋଲି କୁହାଯାଇଛି"। (୧୧୨)

**ଉପନିଷଦ୍‌ର ବିଷୟ ବିବେଚନ –**

ଏହି ଅଧ୍ୟାୟରେ କେତେକ ପ୍ରଧାନ ଉପନିଷଦ୍‌ର ବିଷୟ ବିବେଚନ କରାଯାଇଛି । ଯେଉଁ ଉପନିଷଦ୍ ଗୁଡିକ ସଂପର୍କରେ ବିଶିଷ୍ଟ ଭାଷ୍ୟକାରମାନେ ବିଶ୍ଳେଷଣ ସହ ସେମାନଙ୍କ ମତଦାନ କରିଅଛନ୍ତି ।

**(କ) ଈଶ ଉପନିଷଦ୍ –**

"ଈଶ"ଉପନିଷଦ୍ ହେଉଛି ଯଜୁର୍ବେଦ ମାଧ୍ୟନ୍ଦିନ ଶାଖାର ୪୦ ଅଧ୍ୟାୟ । ଏହି ଉପନିଷଦର ଆରମ୍ଭ ହୋଇଛି – "ଈଶା ବାସ୍ୟ ମିଦଂ ସର୍ବମ୍" ପଂକ୍ତିରେ । ଏହାର ନାମ କରଣ ପ୍ରଥମ ପାଠରୁ ହୋଇଅଛି । ଏହା ଏକ ସମନ୍ୱୟ ବାଦୀ ଉପନିଷଦ୍ । ଏଥିରେ ତ୍ୟାଗ ଓ ଭୋଗ ମଧ୍ୟରେ, ଜ୍ଞାନ ଓ କର୍ମ ମଧ୍ୟରେ, ବିଦ୍ୟା ଓ ଅବିଦ୍ୟା ମଧ୍ୟରେ , ବସ୍ତୁବାଦ ଓ ଆଧ୍ୟାତ୍ମବାଦ ମଧ୍ୟରେ, ଏକେଶ୍ୱର ବ୍ରହ୍ମ ବାଦ ଓ ବହୁଦେବତା ବାଦ ମଧ୍ୟରେ ସମନ୍ୱୟ ଅଣାଯାଇ କିଭଳି ଜୀବନକୁ ସାର୍ଥକ କରାଯାଇ ପାରିବ ସେ ବିଷୟରେ ପରାମର୍ଶ ଦିଆଯାଇଛି । ସମସ୍ତ ଉପନିଷଦ୍ ମଧ୍ୟରେ ଏହାକୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି । ଏହି ଉପନିଷଦ୍ ସଂପର୍କରେ ମହାତ୍ମା ଗାନ୍ଧୀ ମତ ଦେଇ କହିଅଛନ୍ତି – "ଏହାର ପ୍ରଥମ ମନ୍ତ୍ରରେ ହିଁ ସମସ୍ତ ଭାରତୀୟ ସଂସ୍କୃତିର ସାରବତ୍ତା ରହିଅଛି । ଏଥିରେ କୁହାଯାଇଛି ଏ ସଂସାରରେ ଯାହା କିଛି ଚଳନଶୀଳ , ସବୁଥିରେ ଭଗବାନଙ୍କ ସତ୍ତା ବିଦ୍ୟମାନ । ତ୍ୟାଗର ଭାବ ନେଇ ତୁମେ ତାହାକୁ ଉପଭୋଗ କରିଯାଅ ; କାହାରି ଧନ ପ୍ରତି ଲୋଭ କରନାହିଁ । (୧୧୩) ଅବିଦ୍ୟା ଓ ବିଦ୍ୟା ମଧ୍ୟରେ ସମନ୍ୱୟ ଆଣି ଉଭୟର ଆରାଧନା ମାଧ୍ୟମରେ ଅବିଦ୍ୟା ସାହାଯ୍ୟରେ ମୃତ୍ୟୁକୁ ତରି ଯାଇ ବିଦ୍ୟା ସାହାଯ୍ୟରେ ଅମୃତତ୍ତ୍ୱ ପାଇବାକୁ ହେବ । ଏହା ଆପାତ ବିରୋଧୀ ଭଳି ପ୍ରତ୍ୟୟମାନ ହେଉଥିଲେ ମଧ୍ୟ ଏହା ପରସ୍ପର ପରିପୂରକ । ଏଥିରେ ଜ୍ଞାନର ପରକ - ବ୍ରହ୍ମ ନିରୂପଣ କରାଯାଇଛି । ଜ୍ଞାନ ଦୃଷ୍ଟିରୁ କର୍ମ ଉପାସନାର ମହତ୍ତ୍ୱ ଏଥିରେ ବିବୃତ ହୋଇଛି । ଏହି ଉପନିଷଦ୍ କର୍ମ ସନ୍ନ୍ୟାସ ପନ୍ଥାକୁ ଅନୁମୋଦନ ନକରି ନିଷ୍କାମ କର୍ମ ସମ୍ପାଦନରେ ବିଶ୍ୱାସ ରଖିଅଛି । ଗୀତାରେ ଏହି କର୍ମ ପନ୍ଥା ବଳିଷ୍ଠ ପ୍ରମାଣ ଦ୍ୱାରା ପ୍ରତିପାଦିତ ହୋଇଛି । ଏହା ପରବର୍ତ୍ତୀ କାଳରେ ଜ୍ଞାନ କର୍ମ ସମୁଚ୍ଚୟ ବାଦ ନାମରେ ପରିଚିତ ହୋଇଅଛି ।"

"ବ୍ରହ୍ମ ବା ଆତ୍ମା ଏକ ହେଲେ ମଧ୍ୟ ଏହାଙ୍କର ଦୁଇଟି ସ୍ୱଭାବ ବିଦ୍ୟମାନ । ଗୋଟିଏ ଅଖଣ୍ଡତା , ଅନ୍ୟଟି ହେଲା ଏହାଙ୍କର ଶକ୍ତି ବଳରେ ପରିବର୍ତ୍ତନଶୀତଳା ଯାହା ମାୟା ନାମରେ ଖ୍ୟାତ । ପରିବର୍ତ୍ତନଶୀଳତା ନିତି ଦିନ ଗ୍ଲୁ ଥିଲେ ମଧ୍ୟ ବ୍ରହ୍ମ ସ୍ଥିର ଓ ନିଷ୍କଳ । ସେ ନିଜେ ଏକ, କିଂତୁ ବହୁଭାବରେ ପ୍ରତିଭାତ । ଏହି ଏକତ୍ୱ, କ୍ଷରତ୍ୱ ଓ ଅକ୍ଷରତ୍ୱକୁ ଜାଣିବା ହେଲା ପ୍ରକୃତ ବିଦ୍ୟା । ବହୁତ୍ୱରେ ଯଦି ଏକତ୍ୱର ସନ୍ଧାନ ନ ମିଳିଲା ତେବେ ତାହା ଅବିଦ୍ୟା"। (୧୧୪) ରାଧାକୃଷ୍ଣନ୍ ଅନୁଶୀଳନ ଏଠାରେ ପ୍ରଣିଧାନ ଯୋଗ୍ୟ । ଏହି ଐକ୍ୟ ଓ ଅନେକ ମଧ୍ୟରେ ଯେ ପ୍ରଭେଦ ନ ରଖିଲା ସେ ହେଉଛି ପ୍ରକୃତ ଜ୍ଞାନୀ । ଏହି ପରମ ଜ୍ଞାନର ଅମୃତ ପାନ କରି ସେ ଅମର ହୋଇଯିବ । ସାରା ବିଶ୍ୱ ଯେଉଁ ଐକ୍ୟମନ୍ତ୍ରରେ ଗୁନ୍ଥା ଯାଇଛି ତାହାରି ଉପରେ ହିଁ ଶସିଂତ ମନ୍ତ୍ରରେ ଗୁରୁତ୍ୱ ଆରୋପ କରାଯାଇଛି । ରାଧାକୃଷ୍ଣନ୍ଙ୍କର ଅଧିକାଂଶ ଲେଖାରେ ଏହି ଐକ୍ୟବୋଧ ପ୍ରକଟିତ । (୧୧୫)

ଏହି ଉପନିଷଦର ଦେବତା ହେଉଛନ୍ତି ପୂଷନ୍ ବା ସୂର୍ଯ୍ୟ ବା ପୋଷଣ କର୍ତ୍ତା ଭଗବାନ । ତାଙ୍କରି ଦୟାରୁ ଯାଜ୍ଞବଳକ୍ୟ ମୁନିଙ୍କ ଠାରେ ଦିବ୍ୟ ଜ୍ଞାନର ଉଦୟ ହୋଇଥିଲା ଏବଂ ସେ ଏହି ଉପନିଷଦ୍‌ର ମନ୍ତ୍ର ଗୁଡିକ ରଚନା କରିଥିଲେ ।

**କଠ ଉପନିଷଦ –**

'କଠ' ଉପନିଷଦ ହେଉଛି କୃଷ୍ଣ ଯଜୁର୍ବେଦୀୟ 'କଠ ଶାଖା'ର ଉପନିଷଦ୍ । ଏହା ଦୁଇଟି ଅଧ୍ୟାୟରେ ଓ ଛଅଟି ବଲ୍ଲୀରେ ବିଭକ୍ତ । ନଚିକେତା ଉପାଖ୍ୟାନଟି ଏହି ଉପନିଷଦ୍‌ର ଅନ୍ତର୍ଗତ । ଏଥିରେ ନଚିକେତାଙ୍କର ଯମ ରାଜାଙ୍କ ଠାରୁ ଆତ୍ମଜ୍ଞାନ ପ୍ରାପ୍ତି ବିଷୟ ବର୍ଣ୍ଣିତ ହୋଇଅଛି । ଏହି ଉପନିଷଦରେ ଅଦ୍ୱୈତବାଦର ଗମ୍ଭୀର ତତ୍ତ୍ୱ ବର୍ଣ୍ଣିତ । ନଚିକେତା ଯେଉଁ ବିଦ୍ୟାରେ ଅମୃତତ୍ତ୍ୱ ମିଳିବ ତାହା ଜାଣିବା ପାଇଁ ଆଗ୍ରହୀ ହୋଇ ଯମରାଜାଙ୍କ ନିକଟକୁ ଯାଇଥିଲେ । ଏହି ବ୍ରହ୍ମବିଦ୍ୟାର ତାତ୍ପର୍ଯ୍ୟ କଣ ତାହା ଯମ ନଚିକେତାଙ୍କୁ ବୁଝାଇଲେ । ବ୍ରହ୍ମଜ୍ଞାନ ବିଷୟକ ଚର୍ଚ୍ଚା ହୋଇଛି ଏହି ଉପନିଷଦ୍‌ରେ । ଆତ୍ମା ବା ପରଂବ୍ରହ୍ମ କିପରି ଭାବରେ ସାଧକଙ୍କୁ ଲବ୍ଧ ହେବେ ଏ ବିଷୟରେ ଏଥିରେ କୁହାଯାଇଛି । "ଆତ୍ମା ବେଦ ପାଠରେ ମିଳି ପାରିବେ ନାହିଁ ; ବୁଦ୍ଧି ଦ୍ୱାରା ମିଳି ପାରିବେ ନାହିଁ କିମ୍ବା ଗୁଡିଏ ଉପଦେଶ ବାଣୀ ଶୁଣିବା ଦ୍ୱାରା ମିଳି ପାରିବେ ନାହିଁ । ସାଧକ ଯେଉଁ ଆତ୍ମାକୁ ବରଣ କରନ୍ତି, ତାଙ୍କୁ ସେ ପାଇ ପାରନ୍ତି । ତାଙ୍କ ପାଇଁକି ସେହି ଆତ୍ମା ନିଜକୁ ଅଭିବ୍ୟକ୍ତ କରି ଦେଇଥାନ୍ତି । ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ କେବଳ ନିଷ୍ଠାର ସହିତ ଶ୍ରଦ୍ଧା କଲେ ଯେ ଅନୁଭୂତି ମାଧ୍ୟମରେ ମିଳି ପାରିବ , ଏହି କଥାଟି ଏଠାରେ ବ୍ୟକ୍ତ"। (୧୧୬) ଶରୀରରେ ଆତ୍ମା କିଭଳି ରଥୀ ଭାବରେ ଅବସ୍ଥିତ ସେକଥା ଯମ ନଚିକେତାଙ୍କୁ ବୁଝାଇବାକୁ ଯାଇ କହିଅଛନ୍ତି – "ତୁମେ ଆତ୍ମାକୁ ରଥୀ ବୋଲି ଜାଣ, ଶରୀରକୁ ରଥ ବୋଲି ଜାଣ । ବୁଦ୍ଧିକୁ ସାରଥି ବୋଲି ଜାଣ , ଏବଂ ମନକୁ ଲଗାମ ବୋଲି ଜାଣ । ନିଜ ଶରୀର ଭିତରେ ଆତ୍ମା ବିଦ୍ୟମାନ । (୧୧୭) ସେହି ଆତ୍ମାକୁ ବାଦ ବିବାଦ ଦ୍ୱାରା ଲାଭ କରିହୁଏ ନାହିଁ । ତର୍କ ଦ୍ୱାରା ଆତ୍ମଜ୍ଞାନ ଲାଭ କରିହୁଏ ନାହିଁ । ଆତ୍ମା ଯାହାକୁ ବରଣ କରେ ସେ କେବଳ ଆତ୍ମାକୁ ଦର୍ଶନ କରିପାରେ ।(୧୧୮) ତେଣୁ ସେହି ଆତ୍ମଦର୍ଶନ ଲାଗି ଯୋଗ ସାଧନ ହେଉଛି ଏକମାତ୍ର ପ୍ରକୃଷ୍ଟ ପନ୍ଥା । ଶାଶ୍ୱତ ସୁଖ ପ୍ରାପ୍ତି ନିମିତ୍ତ ଇନ୍ଦ୍ରିୟ ଗ୍ଳିତ ଚିତ୍ତର ସଂଯମନ ଆବଶ୍ୟକ । ଅବିନଶ୍ୱର ଅମୃତ ତତ୍ତ୍ୱର ସାକ୍ଷାତ ଅନୁଭବଦ୍ୱାରା

ହୃଦୟ ଗ୍ରନ୍ଥି ଶିଥିଳ ହୋଇଥାଏ । ଏହି ପ୍ରକାରରେ କଠ ଉପନିଷଦରେ "ନେହ ନାନାସ୍ତି କିଂଚନ" ଅଥବା "ଅଦ୍ୱୈତତ୍ତ୍ୱ ସରଳ ଭାବରେ ବିସ୍ତୃତ ହୋଇଛି । ଏହାର ଅନେକ ମନ୍ତ୍ର ପରିବର୍ତ୍ତିତ ରୂପରେ ଗୀତାରେ ଦେଖାଯାଇଛି"। "ଦର୍ପଣରେ ପ୍ରତିବିମ୍ବ ଦେଖିଲା ପରି ଆତ୍ମାରେ ପରମାତ୍ମାଙ୍କୁ ଦର୍ଶନ କରିବା ପାଇଁ 'କଠ' ଉପନିଷଦ୍‌ରେ ଉପଦେଶ ଦିଆଯାଇଛି "।(୧୧୯)

**ପ୍ରଶ୍ନୋପନିଷଦ୍ –**

ଋଷି ସୁକେଶା, ସତ୍ୟକାମ, ସୌର୍ଯ୍ୟାୟଣୀ, ଭାର୍ଗବ, ଅଶ୍ୱଳାୟନ ଓ କବନ୍ଧୀ ନାମକ ଛ ଜଣ ବ୍ରହ୍ମଜ୍ଞାନ ଜିଜ୍ଞାସୁ ଋଷି ପିପ୍‌ଲାଦ୍ ନିକଟରେ ପହଞ୍ଚି ତାଙ୍କୁ କେତେକ ପ୍ରଶ୍ନ କରିଥିଲେ । ଏହି ଛଅ ଜଣ ଋଷିଙ୍କର ୬ଟି ପ୍ରଶ୍ନର ଉତ୍ତର ଛଳରେ ପିପ୍ପଳାଦ ବ୍ରହ୍ମଜ୍ଞାନ ଉପଦେଶ ପ୍ରଦାନ କରିଅଛନ୍ତି । ସେ ପ୍ରଶ୍ନ ଛଅଗୋଟି ହେଉଛି –

(୧) ପ୍ରଜାର ଉତ୍ପତ୍ତି ସ୍ଥଳ କିଏ ?

(୨) କେତେକ ସଂଖ୍ୟକ ଦେବତା ପ୍ରଜାଙ୍କୁ ଧାରଣ କରିଅଛନ୍ତି ଓ କିଏ ତାଙ୍କୁ ପ୍ରକାଶିତ କରେ ଓ ସେଥି ଭିତରୁ କିଏ ସର୍ବଶ୍ରେଷ୍ଠ ।

(୩) ଶରୀର ଓ ପ୍ରାଣର ଉତ୍ପତ୍ତି କିପରି ହୋଇଛି ?

(୪) ସ୍ୱପ୍ନ, ଜାଗରଣ ଓ ସ୍ୱପ୍ନ ଦର୍ଶନର ତାତ୍ପର୍ଯ୍ୟ କଣ ?

(୫) ଓଁ କାର ପୁରୁଷଙ୍କର କିପରି ଆରାଧନା କରିବାକୁ ହେବ ।

(୬) ଷୋଡ଼ଶକଳା ସଂପନ୍ନ ପୁରୁଷ କାହାକୁ କୁହାଯାଏ ।

ଏହି ଉପନିଷଦରେ ପ୍ରାଣକୁ ଆବାହନ କରି ଋଷି କହିଅଛନ୍ତି "ହେ ପ୍ରାଣ ତୁମେ ହେଉଛ ଇନ୍ଦ୍ର, ନିଜ ତେଜ ବଳରେ ତୁମେ ହେଉଛ ରୁଦ୍ର ; ପୁଣି ସୌମ୍ୟରୂପରେ ସବୁ ଦିଗରୁ ତୁମେ ରକ୍ଷା କରୁଛ ; ତୁମେ ଜ୍ୟୋତିଷ୍କମାନଙ୍କର ରାଜା ସୂର୍ଯ୍ୟ ହୋଇ ଆକାଶରେ ବିଚରଣ କରୁଛ" । (୧୨୦) ପ୍ରାଣ ଅର୍ଥ ଏଠାରେ ବ୍ରହ୍ମ ଯାହାଙ୍କର ବିଦ୍ୟମାନତାରେ ହିଁ ବସ୍ତୁର ବସ୍ତୁତ୍ୱ ରହିଥାଏ । ସାରା ବିଶ୍ୱରେ ଗୋଟିଏ ଆତ୍ମାର ସଂସ୍ପର ରହିଛି ବୋଲି କୁହାଯାଇଛି । ବିଶ୍ୱର ପ୍ରତୀୟମାନ ବିଭିନ୍ନତା ମଧ୍ୟରେ ଏହି ହେଉଛି ଏକତାର ସୂତ୍ର । ଯାହା ସମସ୍ତଙ୍କୁ ବାନ୍ଧି ରଖିଛି ଏବଂ ସମସ୍ତଙ୍କ ଠାରେ ଐକ୍ୟ - ପ୍ରତିପାଦନ କରାଇ ପାରିଛି ।

**ମୁଣ୍ଡକ ଉପନିଷଦ୍ –**

ଏହା ଅଥର୍ବବେଦୀୟ ଏକ ଉପନିଷଦ୍ । ଏହା ତିନି ମୁଣ୍ଡକରେ ବିଭକ୍ତ । ପ୍ରତ୍ୟେକ ମୁଣ୍ଡକରେ ଦୁଇଟି ଲେଖାଏଁ ଖଣ୍ଡ ଅଛି । ଏହା ମୁଣ୍ଡନ–ସଂପନ୍ନ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ । (୧୨୧) "ଅଙ୍ଗୁତ୍ତର ନିକାୟ"ଗ୍ରନ୍ଥରେ ଦେଖିବାକୁ ମିଳିଥାଏ ଯେ ବୁଦ୍ଧ ଦେବଙ୍କ ସମୟକୁ ମଧ୍ୟ (ଖ୍ରୀ.ପୂ ୬ଷ୍ଠ ଶତାବ୍ଦୀ) ମୁଣ୍ଡିତ ମସ୍ତକ ଥିବା ଏହି ଭଳି ଗୋଟିଏ ଗୋଷ୍ଠୀ ଥିଲେ । ସେମାନଙ୍କୁ କୁହାଯାଉଥିଲା "ମୁଣ୍ଡକ ସାବକ" । (୧୨୨) ସେମାନେ ହୁଏତ ଏହି ମୁଣ୍ଡକ ଗୋଷ୍ଠୀର ଲୋକ ହୋଇପାରନ୍ତି । ଏହି ଉପନିଷଦରେ "ବ୍ରହ୍ମା ନିଜର ପୁଅ ଅଥର୍ବାଙ୍କୁ ବ୍ରହ୍ମ ବିଦ୍ୟାର ଉପଦେଶ ପ୍ରଦାନ କରିଛନ୍ତି । ପରେ ଅଥର୍ବା ଅଙ୍ଗିରଙ୍କୁ, ଅଙ୍ଗିର ଭରଦ୍ୱାଜଙ୍କୁ, ଭରଦ୍ୱାଜ ଅଙ୍ଗିରସକୁ ଉକ୍ତ ବିଦ୍ୟା ଦାନ କରିଥିଲେ । ଅଙ୍ଗିରାଙ୍କ ଠାରୁ ଶୌନକ ଋଷି ଉକ୍ତ ବିଦ୍ୟାଲାଭ କରିଥିଲେ " । ସେ ସ୍ପଷ୍ଟ ଭାବରେ କହୁଛନ୍ତି ଯେ ଯଜ୍ଞୀୟ ଅନୁଷ୍ଠାନ ଦ୍ୱାରା

ସଂସାର - ସାଗରକୁ କଦାପି ପାରିହେବା ସମ୍ଭବ ନୁହେଁ । ଏହା ଏକ ଅଦୃଢ ପ୍ଳବ ; ଏଥିପାଇଁ ବ୍ରହ୍ମ ବିଦ୍ୟାର ଦୃଢ ପ୍ଳବଟିର ଆବଶ୍ୟକତା ରହିଛି । ଏଥିରେ କର୍ମକାଣ୍ଡକୁ ତୁଚ୍ଛ ବୋଲି କୁହାଯାଇ ତାହାର ଉର୍ଦ୍ଧ୍ୱରେ ଥିବା ଜ୍ଞାନ ମାର୍ଗ ଉପରେ ପ୍ରାଧାନ୍ୟ ଦିଆଯାଇଛି ଏବଂ ମାନବ ଜୀବନର ଚରମ ଲକ୍ଷ୍ୟ ନିଃଶ୍ରେୟସ୍ ଲାଭ କରିବାକୁ ହେଲେ ସର୍ବୋଚ୍ଚ ଜ୍ଞାନ ହେଉଛି ବ୍ରହ୍ମ ଜ୍ଞାନ ବୋଲି କୁହାଯାଇଛି । 'ମୁଣ୍ଡକ' ଉପନିଷଦ୍‌ରେ କର୍ମକାଣ୍ଡର ଦୋଷ ଓ ହୀନତା ପ୍ରଦର୍ଶିତ ହୋଇଛି । ଏଥିରେ କୁହାଯାଇଛି ଯଜ୍ଞାନୁଷ୍ଠାନ ଦ୍ୱାରା ବ୍ୟକ୍ତି ସ୍ୱର୍ଗ ଲାଭ କରେ ସତ କିନ୍ତୁ ପୁଣି ତାର ଆତ୍ମା ଶରୀରରେ ପ୍ରବେଶ କରେ । ସେ ଜରା ଓ ମୃତ୍ୟୁ ବରଣ କରେ । ସେମାନଙ୍କ କର୍ମ ଫଳ ଭୋଗିବାକୁ ପୁଣି ଥରେ ପୃଥିବୀରେ ଜନ୍ମ ନେବାକୁ ପଡିବ । (୧୨୩) ଯଜ୍ଞାନୁଷ୍ଠାନ ହେଉଛି ଅଦୃଢ ଭେଳା ସ୍ୱରୂପ । ସେହି ଭେଳାଦ୍ୱାରା ସଂସାର ସାଗର ସନ୍ତରଣ କରିବା ସମ୍ଭବ ନୁହେଁ । ଏହା ଦ୍ୱାରା ଆତ୍ୟନ୍ତିକ ସୁଖଲାଭ କରାଯାଇ ପାରିବ ନାହିଁ ।

ଦ୍ୱୈତବାଦର ଉତ୍ସ ସ୍ୱରୂପ 'ଦ୍ୱା ସୁପର୍ଣ୍ଣା ସଂଯୁଜା ସଖାୟ'' ମନ୍ତ୍ର ଏହି ଉପନିଷଦରେ ଉପଲବ୍ଧ ହୁଏ । ଏହା ଋଗ୍‌ବେଦରୁ ଆହୃତ । ଏହାକୁ ଭିତ୍ତି କରି ଦ୍ୱୈତବାଦୀମାନେ ସେମାନଙ୍କ ମତର ଯଥାର୍ଥତା ପ୍ରତିପାଦନ ଲାଗି ଚେଷ୍ଟା କରିଅଛନ୍ତି । (୧୨୪) ବେଦାନ୍ତ ଶବ୍ଦ ସର୍ବ ପ୍ରଥମେ ଏହି ଉପନିଷଦ୍‌ରେ ପ୍ରଯୁକ୍ତ ହୋଇଛି ।(୧୨୫) ମୁଣ୍ଡକ ଉପନିଷଦ୍‌ରେ ବ୍ରହ୍ମର ସର୍ବ ବ୍ୟାପକତାକୁ ସୁନ୍ଦର ସୁନ୍ଦର ଉଦାହରଣ ଦ୍ୱାରା ବୁଝାଇ ଦିଆଯାଇଛି । ଏଥିରେ କୁହାଯାଇଛି "ଅଗ୍ନି ହେଉଛନ୍ତି ଏହାଙ୍କର ଶିର, ଚନ୍ଦ୍ର ଓ ସୂର୍ଯ୍ୟ ନେତ୍ର ସ୍ୱରୂପ, ଦିଗ ହେଉଛି କାନ । ଏହାଙ୍କର ବାଣୀରୁ ବେଦ ଉତ୍ପତ୍ତି ଲାଭ କରିଛି । ବାୟୁ ହେଉଛି ଏହାଙ୍କର ପ୍ରାଣ । ବିଶ୍ୱ ହେଉଛି ହୃଦୟ । ଏହାଙ୍କର ଚରଣରୁ ପୃଥିବୀ ଉତ୍ପନ୍ନ ହୋଇଛି । ଏ ହେଉଛନ୍ତି ସମସ୍ତଙ୍କର ଅନ୍ତରାତ୍ମା ''। (୧୨୬)

ବ୍ରହ୍ମଜ୍ଞାନୀ ବ୍ରହ୍ମରେ ଲୀନ ହୁଏ । ଏହାର ଉଦାହରଣରେ କୁହାଯାଇଛି – "ଯେପରି ଅଗ୍ନିରୁ ( ଅଗ୍ନିରୂପ) କଣା ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୁଏ, ସେହିପରି ଅକ୍ଷର ବ୍ରହ୍ମରୁ ଜୀବ ଜଗତ ଉତ୍ପନ୍ନ ହୋଇଛି ଏବଂ ସେହି ଜୀବ ଜଗତ ପୁଣି ଅକ୍ଷର ବ୍ରହ୍ମରେ ଲୀନ ହୋଇଥାଏ । ଯେ ସତ୍ ବା ସଦା ବିରାଜିତ ଏବଂ ଯାହାଙ୍କର ସୃଷ୍ଟି ନାହିଁ କି ଅନ୍ତ ନାହିଁ. "ସତ୍ୟମେବ ଜୟତେ ନାନୃତମ୍, ନାୟମାତ୍ମା ବଳହୀନେନ୍ ଲଭ୍ୟଃ'' ଆଦି ଅତି ରୁଚିକର ଓ ଉପାଦେୟ ଉପଦେଶ ମୁଣ୍ଡକ ଉପନିଷଦ୍‌ରେ ବର୍ଣ୍ଣିତ ହୋଇଛି ''। ଏ ସଂପର୍କରେ ରାଧାକୃଷ୍ଣନ୍‌ଙ୍କର ମତାମତ ପ୍ରଣିଧାନ ଯୋଗ୍ୟ । (୧୨୭) ଏହି ତତ୍ତ୍ୱ ଉପରେ ହିଁ ଭିତ୍ତି କରି ପରବର୍ତ୍ତୀ ଯୁଗରେ ବୌଦ୍ଧ ଧର୍ମର ମହାଯାନ - ଚିନ୍ତାଧାରାର ଉଦ୍ଭବ ହୋଇଛି ।

ମୁଣ୍ଡକ ଉପନିଷଦ୍‌ରେ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ସଂପର୍କରେ କେତେକ ସୁନ୍ଦର ଲୌକିକ ଉଦାହରଣ ଦିଆ ହୋଇ ବୁଝାଇ ଦିଆ ହୋଇଅଛି । (୧୨୮) ଏଠାରେ କୁହାଯାଇଛି "ବୁଢିଆଣି ଯେପରି ତାର ସୂତାକୁ ଖାଇଥାଏ ଏବଂ ବାହାର କରିଦିଏ, ଯେମିତି ମାଟି ଉପରେ ଓଷଧର ବୁଦା ଓ ଗଛମାନ ଜନ୍ମ ନିଅନ୍ତି, ଯେମିତି ମଣିଷର ମୁଣ୍ଡରେ ବାଳ ଉଠେ ; ଠିକ୍ ସେମିତି ଅବିନାଶୀ ବ୍ରହ୍ମଙ୍କ ଠାରୁ ସାରା ବିଶ୍ୱ ଜନ୍ମ ନେଇଥାଏ ''। ଏହି ଅବିନାଶୀ ବ୍ରହ୍ମ କ'ଣ ସେ ବିଷୟରେ ମଧ୍ୟ ଶଂସିତ ଉପନିଷଦ୍‌ରେ ଚିନ୍ତା କରାଯାଇଛି । "ସେ ଏହା ନୁହଁନ୍ତି, ଏହା ନୁହଁନ୍ତି ବୋଲି'' କେତେକ ନେତିବାଚକ ବାକ୍ୟରେ ତାଙ୍କର ବ୍ୟାଖ୍ୟା କରିଅଛନ୍ତି । (୧୨୯) ବ୍ରହ୍ମଙ୍କ ସ୍ୱରୂପ ଠିକ୍ ଭାବରେ ବ୍ୟାଖ୍ୟା କରାଯାଇ ନାହିଁ ବୋଲି ଯେ "ବ୍ରହ୍ମଙ୍କର ଅସ୍ତିତ୍ୱ ନାହିଁ ଏହା ଭାବିବା ଠିକ୍ ନୁହେଁ ''। କାରଣ ତାଙ୍କୁ ଅନ୍ୟତ୍ର କୁହାଯାଇଛି 'ଅବାଙ୍

ମାନସ ଗୋଚର' ବୋଲି, ଅର୍ଥାତ୍ ସେ ହେଉଛନ୍ତି ବାକ୍ ଓ ମନର ଅଗୋଚର । ଏହି ଅଚିନ୍ତନୀୟତା ଓ ଅନିର୍ବଚନୀୟତା ବ୍ରହ୍ମଙ୍କୁ ଏକ ସ୍ଥିତି ଆଣି ଦେଇଛି ଯାହାକୁ ପ୍ରକାଶ କରିହେବ ନାହିଁ । ସେ ସ୍ଥିତି ଅତୀବ ରହସ୍ୟମୟ । "ସେଦିନ ବୈଦିକ ଋଷି ପ୍ରଜାପତିଙ୍କୁ ବିଶ୍ୱର ସ୍ରଷ୍ଟା ଓ ନିୟନ୍ତା ବୋଲି କହି ତାଙ୍କର ଅଶେଷ ସ୍ତୁତି କରିଥିଲେ ; ଏବଂ ପ୍ରତିଟି ସ୍ତୁତି ଶେଷରେ କହିଥିଲେ ଆମେ କେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ହବି ଅର୍ପଣ କରିଅଛୁ"?(୧୩୦) ଏହାର ଅର୍ଥ ନୁହେଁ ଯେ ଋଷିଙ୍କ ମନରେ ଦେବତାଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦେହ ଥିଲା ଯେ ଯାହାର ଅତି ପ୍ରିୟ ସେ ତାହାର ସକଳ କାର୍ଯ୍ୟ ବିଷୟରେ ସ୍ଥିର ନିଶ୍ଚୟ ହେଲେ ମଧ୍ୟ ସନ୍ଦେହ ପ୍ରକାଶକ ସ୍ୱରରେ ବକ୍ତବ୍ୟ ଦେଇଥାଏ । ଏ ସ୍ୱର ଅସ୍ତିତ୍ୱକୁ ଆହୁରି ଦୃଢ଼ କରିଥାଏ ।

**ମାଣ୍ଡୁକ୍ୟ ଉପନିଷଦ୍ –**

ଏହା ଅଥର୍ବବେଦୀୟ ଉପନିଷଦ୍ । ଆକାରରେ ଅତି କ୍ଷୁଦ୍ର, ମାତ୍ର ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏଥିରେ ମାତ୍ର ୧୨ ଗୋଟି ଖଣ୍ଡ ବା ବାକ୍ୟ ଅଛି । ଏହା ମଣ୍ଡୁକ ଋଷିଙ୍କ ବଂଶଧରମାନଙ୍କ ଦ୍ୱାରା ସୃଷ୍ଟ । ଏଥିରେ ଆତ୍ମା ଓ ବ୍ରହ୍ମ ଅଭିନ୍ନ ବୋଲି କୁହାଯାଇଛି । "ଆତ୍ମା ସର୍ବଜ୍ଞ, ସର୍ବେଶ୍ୱର, ଅନ୍ତର୍ଯ୍ୟାମୀ ଓ ବିଶ୍ୱର କାରଣ ବୋଲି କୁହାଯାଇଛି । ଆତ୍ମାରୁ ସମସ୍ତ ପ୍ରାଣୀ ଉତ୍ପନ୍ନ ହୁଅନ୍ତି ଓ ଲୀନ ହୁଅନ୍ତି । ଓଁ କାର ଦ୍ୱାରା ଆତ୍ମା ଜ୍ଞାନ ଲାଭ ସମ୍ଭବ ହୋଇଥାଏ । ଏଥିରେ ପ୍ରତୀକ ମନ୍ତ୍ର ଓଁ ର ତାତ୍ପର୍ଯ୍ୟ ସଂପର୍କରେ ଆଲୋଚନା କରାଯାଇଛି । ସମସ୍ତ ଜଗତ 'ପ୍ରଣବ'ରୁ ଉତ୍ପନ୍ନ । ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ସବୁ ପ୍ରଣବର ସ୍ୱରୂପ । 'ଓଁ' କାର ତିନି ମାତ୍ରାରେ ଉଚ୍ଚାରିତ ହୋଇଥାଏ ଓ ତାହାର ଚତୁର୍ଥ ଅଂଶ 'ଅ'ମାତ୍ର । ମନୁଷ୍ୟ ଚେତନାର ଚାରି ଅବସ୍ଥା ଅଛି । ତାହା ହେଲା ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ । ଆତ୍ମା ମଧ୍ୟ ଚାରିପ୍ରକାର - ବୈଶ୍ୱାନର, ତୈଜସ, ପ୍ରାଜ୍ଞ ଓ ପ୍ରପଞ୍ଚୋ; ପଶମ ରୂପୀ ଶିବ । ଆତ୍ମାର ଚାରି ପାଦ ହେଉଛି ଜାଗରିତ ସ୍ଥାନ, ସ୍ୱପ୍ନ ସ୍ଥାନ, ସୁଷୁପ୍ତି ସ୍ଥାନ ଓ ସର୍ବ ପ୍ରପଞ୍ଚୋପଶସ୍ଥାନ । ପ୍ରଥମରେ ପ୍ରଜ୍ଞା ବହିର୍ମୁଖୀ, ଦ୍ୱିତୀୟରେ ଅନ୍ତର୍ମୁଖୀ, ତୃତୀୟରେ ଏକୀଭୂତ, ପ୍ରଜ୍ଞାନ ଜ୍ଞାନ, ଆନନ୍ଦ ମୟ ଓ ଚେତୋମୁଖୀ, ଚତୁର୍ଥର ବର୍ଣ୍ଣନା ଅସମ୍ଭବ । ଏହା ଅନ୍ତର୍ମୁଖୀ ନୁହେଁ, ବହିର୍ମୁଖୀ ନୁହେଁ । କିଂବା ଉଭୟ ପ୍ରକାର ନୁହେଁ ପ୍ରଜ୍ଞାଘନ ନୁହେଁ ଏବଂ ଅପ୍ରଜ୍ଞା ମଧ୍ୟ ନୁହେଁ । ଏପରି ଅବସ୍ଥାରେ ସକଳ ଶାନ୍ତ ରୂପରେ ରହେ । ଏହା କୁ ହିଁ ଶିବ, ଅଦ୍ୱୈତ ଆଦି ଶବ୍ଦ ଦ୍ୱାରା ବର୍ଣ୍ଣନା କରାଯାଇଛି "। (୧୩୧)

ଏଥିରେ ନିରପେକ୍ଷ ବ୍ରହ୍ମଙ୍କ ସଂପର୍କରେ କୁହାଯାଇଛି । ଏହି ବ୍ରହ୍ମଙ୍କୁ ଜଗତର ଆଧାର ବୋଲି କୁହାଯାଇଛି । ସୃଷ୍ଟିକରଣ ବୋଲି କୁହାଯାଇଛି । "ସେ ସମସ୍ତଙ୍କ ସ୍ୱାମୀ, ସର୍ବଜ୍ଞ ଓ ସମସ୍ତଙ୍କର ଆନ୍ତରିକ ନିୟନ୍ତକ" ବୋଲି କୁହାଯାଇଛି ।(୧୩୨) "ଯେ ଶରୀରକୁ ନିୟନ୍ତ୍ରଣ କରୁଛନ୍ତି । ଯାଙ୍କୁ ଶରୀର ନିୟନ୍ତ୍ରଣ କରୁନାହିଁ । ଯେ ଶରୀର ଭିତରେ ନାହାଁନ୍ତି । ଶରୀର ଯାଙ୍କ ଚାରିପଟେ ଅଛି । ଯେ ଶରୀର ପାଇଁକି ନାହାଁନ୍ତି । ଶରୀର ଯାଙ୍କ ପାଇଁ କି ଅଛି । ଯେ ଚାଲିଗଲେ ଶରୀରର ଶରୀରତ୍ୱ ନାହିଁ । ମୁଁ ର ମୁଁ ତ୍ୱ ନାହିଁ । ସେଠି ମୃତ୍ୟୁ ଆସିଗଲା ବୋଲି କୁହାଯାଉଛି । ଆତ୍ମା ବା ବ୍ରହ୍ମ ସତ୍ୟର ସତ୍ୟ । ପରମ ସତ୍ୟ । ଆତ୍ମାଜ୍ଞାନ ବା ବ୍ରହ୍ମଜ୍ଞାନ ହିଁ କେବଳ ଅମୃତତ୍ୱ ଦେଇଥାଏ ।"(୧୩୩)

## ତୈତ୍ତିରୀୟ ଉପନିଷଦ୍ –

ତୈତ୍ତିରୀୟ କୃଷ୍ଣ ଯଜୁର୍ବେଦୀୟ ଉପନିଷଦ । ଏହା ତିନି ବଲ୍ଲୀରେ ବିଭକ୍ତ । ଏହାର ପ୍ରଥମ ବଲ୍ଲୀରେ ୧୨, ଦ୍ୱିତୀୟ ବଲ୍ଲୀରେ ୯ ଏବଂ ତୃତୀୟ ବଲ୍ଲୀରେ ୧୦ ଅନୁବାକ ଅଛି । ଏହି ବଲ୍ଲୀକୁ ପ୍ରପାଠକ ମଧ୍ୟ କୁହାଯାଏ । ପ୍ରଥମ ବଲ୍ଲୀଟି ହେଉଛି ଶିକ୍ଷା ବଲ୍ଲୀ । ଏହି ବଲ୍ଲୀରେ ଓଁ କାର ଭୂଃ, ଭୁବଃ ଓ ସ୍ୱ ଶବ୍ଦର ନିରୁକ୍ତି ଦିଆଯାଇଛି । ପୁଣି ବର୍ଣ୍ଣସ୍ୱର ବିଷୟକ ଆଲୋଚନା ମଧ୍ୟ କରାଯାଇଛି । ଏଥିରେ ବ୍ରହ୍ମର ସ୍ୱରୂପ ନିରୂପଣ କରାଯାଇଛି । ଆଚାର୍ଯ୍ୟ ଶିଷ୍ୟକୁ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଉପଦେଶ ମଧ୍ୟ ପ୍ରଦାନ କରିଛନ୍ତି । ଚିତ୍ତଶୁଦ୍ଧି ଓ ଗୁରୁକୃପା ସଂପର୍କୀୟ ତଥ୍ୟ ମଧ୍ୟ ଏଥିରେ ଦିଆଯାଇଛି । ଏଥିରେ ଅନେକ ପ୍ରକାର ଉପାସନାର କଥା କୁହାଯାଇଛି । ଗୁରୁ ଶିଷ୍ୟ ସଂପର୍କୀୟ ଶିଷ୍ଟାଚାର ମଧ୍ୟ ପ୍ରଦତ୍ତ ହୋଇଛି । ଆଚାର୍ଯ୍ୟ ଶିଷ୍ୟଙ୍କୁ କହୁଅଛନ୍ତି ଦେବ ଓ ପିତାଙ୍କର ସନ୍ତୋଷ ଭାଜନ କାର୍ଯ୍ୟକର । ମାତା ପିତାଙ୍କୁ ଦେବତା ସ୍ୱରୂପ ପୂଜା କର ଓ ଭକ୍ତିକର । (୧୩୪)

ଦ୍ୱିତୀୟ ବଲ୍ଲୀ ହେଉଛି ବ୍ରହ୍ମାନନ୍ଦ ବଲ୍ଲୀ । ଏଥିରେ ବ୍ରହ୍ମଙ୍କୁ ଆନନ୍ଦମୟ ବୋଲି କୁହାଯାଇଛି । ସେହି ପରମ ଆନନ୍ଦରେ ମଜ୍ଜି ରହିବାକୁ ମଧ୍ୟ ଉପଦେଶ ଦିଆଯାଇଛି । ସେଠାରେ କୁହାଯାଇଛି ଆନନ୍ଦ ହେଉଛି ବ୍ରହ୍ମ । ସାରା ସଂସାର ଆନନ୍ଦରୁ ସୃଷ୍ଟ । ଏହା ମଧ୍ୟ ଆନନ୍ଦ ଦ୍ୱାରା ବଞ୍ଚି ରହିଥାଏ । ଏହା ଆନନ୍ଦ ଦ୍ୱାରା ଲୀନ ହୋଇଯାଇଥାଏ । ଏହି ଯେଉଁ ଆନନ୍ଦର କଥା କୁହାଯାଇଛି ତାହା ଖିଆ ପିଆ ମଜା ମଉଲିସ୍‌ର ଆନନ୍ଦ ନୁହେଁ । ଏହା ହେଉଛି 'ଜୀବନର ଆନନ୍ଦ' । ଏକ ଉଚ୍ଚ ମାନସିକ ସ୍ଥିତି । (୧୩୫)

ତୈତ୍ତିରୀୟ ଉପନିଷଦ୍‌ର ତୃତୀୟ ଖଣ୍ଡ ହେଉଛି ଭୃଗୁବଲ୍ଲୀ । ଉକ୍ତ ବଲ୍ଲୀରେ ବରୁଣ ନିଜର ପୁତ୍ର ଭୃଗୁଙ୍କୁ ପ୍ରଦାନ କରିଥିବା ବ୍ରହ୍ମ ଜ୍ଞାନର ବିଷୟ ବର୍ଣ୍ଣିତ ହୋଇଅଛି । ଏଥିରେ ବ୍ରହ୍ମଙ୍କର ସ୍ୱରୂପ ସଂପର୍କରେ ଆଲୋଚନା କରାଯାଇଛି । ବ୍ରହ୍ମଙ୍କୁ ମନରେ ଚିନ୍ତା କରି ହେବ ନାହିଁ । ବାକ୍ୟରେ ପ୍ରକାଶ କରିହେବ ନାହିଁ । ସେ ହେଉଛନ୍ତି ଅନିର୍ବଚନୀୟ ଓ ଅଚିନ୍ତନୀୟ । ସେଠି କୁହାଯାଇଛି "ଯାହାକୁ ନ ପାଇ, ମନ ସହିତ ସକଳ ବାଣୀ ଫେରି ଆସେ" ( ସେ ବ୍ରହ୍ମ) (୧୩୬) ଏହି ଦୃଷ୍ଟିରୁ 'ବ୍ରହ୍ମ ବିଦ୍ୟା'ର ତତ୍ତ୍ୱ ଅଧ୍ୟୟନ ନିମିତ୍ତ ତୈତ୍ତିରୀୟ ଉପନିଷଦ୍‌ର ଯଥେଷ୍ଟ ଗୁରୁତ୍ୱ ରହିଅଛି ।

## ଐତରେୟ ଉପନିଷଦ୍ –

ଐତରେୟ ଉପନିଷଦ୍ ହେଉଛି ଋଗ୍‌ବେଦୀୟ ଉପନିଷଦ୍ । ଏଥିରେ ତିନୋଟି ଅଧ୍ୟାୟ ଅଛି । ଏହି ଉପନିଷଦ୍ ପ୍ରଥମ ଅଧ୍ୟାୟ ଦୁଇ ଖଣ୍ଡରେ ବିଭକ୍ତ । ଏହାର ପ୍ରଥମ ଅଧ୍ୟାୟରେ ସୃଷ୍ଟି ତତ୍ତ୍ୱ ବର୍ଣ୍ଣିତ ହୋଇଅଛି । ପ୍ରଥମରେ କେବଳ ଆତ୍ମା ବା ବ୍ରହ୍ମ ଥିଲେ । ଏହାଙ୍କର ଇଚ୍ଛାରୁ ଜଗତର ସୃଷ୍ଟି ହୋଇଅଛି । ପରେ ଅନ୍ୟ ବସ୍ତୁସବୁ ସୃଷ୍ଟି ହୋଇଅଛନ୍ତି । ସେଇଥିରୁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିହେଲା । (୧୩୭) ସେ ଚାହିଁଲେ ମଣିଷ ଶରୀରରେ ପ୍ରବେଶ କରିବେ । ଆତ୍ମା ବା ବ୍ରହ୍ମ ଚାହିଁଲେ "ମୁଁ ଏକ ବହୁ

ଭାବରେ ପ୍ରତିଭାତ ହୁଏ'' । (୧୩୮) ତାହାରି ଫଳଶ୍ରୁତି ସ୍ୱରୂପ ଏ ବିରାଟ ବିଶ୍ୱ ବ୍ରହ୍ମାଣ୍ଡ . ଋଗ୍‌ବେଦର ସୃଷ୍ଟି ସମ୍ବନ୍ଧୀୟ ''ନାସଦୀୟ ସୂକ୍ତ''ରେ ଚିତ୍ରିତ ହୋଇଛି । ଏହି ସୃଷ୍ଟିର ଇଚ୍ଛା ଆସିବା ପରେ ସେ ଏହି ଲୋକ ଗୁଡିକ ସୃଷ୍ଟି କଲେ । (୧୩୯) ଏହି ବ୍ରହ୍ମ ବା ଆତ୍ମା ଜଗତକୁ ସୃଷ୍ଟି କରି ତାହା ଭିତରେ ରହିଗଲେ । ସେ ଅକ୍ଷର ଓ ଅମର । ତଥାପି ସେ ମରଣଶୀଳ ଶରୀର ମଧ୍ୟରେ ରହି ପାରିଛନ୍ତି । ରାଧାକୃଷ୍ଣନ୍ ତାହାକୁ ହିଁ ମାୟା କହିଅଛନ୍ତି ।

ମାନବ ଶରୀର ଅତ୍ୟନ୍ତ ପବିତ୍ର । ଫଳରେ ଏହା ସମସ୍ତ ଦେବତାଙ୍କ ବାସସ୍ଥଳୀ ହୋଇ ପଡିଛି । ଏହି ଉପନିଷଦ୍‌ରେ ବର୍ଣ୍ଣନା କରାଯାଇଛି ''ଅଗ୍ନି ବାଣୀ ହୋଇ ମୁଖରେ ପ୍ରବେଶ କଲେ, ବାୟୁ ପ୍ରାଣ ହୋଇ ନାସିକାରେ ପ୍ରବଶେ କଲେ ; ସୂର୍ଯ୍ୟ ଆଖି ହୋଇ ଦୁଇ ଆଖିରେ ପ୍ରବେଶ କଲେ ; ଈଶ୍ୱର କାନ ହୋଇ ଦୁଇ କାନରେ ପ୍ରବେଶ କଲେ'' ଇତ୍ୟାଦି । (୧୪୦)

ଏହାର ଦ୍ୱିତୀୟ ଅଧ୍ୟାୟରେ ମାନବ ଜୀବନର କ୍ରମ ବର୍ଣ୍ଣିତ ହୋଇଅଛି । ଜୀବ ଯେତେବେଳେ ପ୍ରଥମେ ଗର୍ଭରେ ପ୍ରବେଶ କରେ ତାହା ହେଉଛି ତାହାର ପ୍ରଥମ । ଯେତେବେଳେ ଗର୍ଭରୁ ବାହରି ଆସେ ସେତେବେଳେ ତାହାର ଦ୍ୱିତୀୟ ଜନ୍ମ । ସଂସାର ଶେଷ କରି ଯେତେବେଳେ ବୃଦ୍ଧାବସ୍ଥାରେ ପୁତ୍ର ହସ୍ତରେ ସମସ୍ତ ଅର୍ପଣ କରି ଦେହତ୍ୟାଗ କରେ ତାହା ତାହାର ତୃତୀୟ ଜନ୍ମ । ଏହି ଅଧ୍ୟାୟରେ ମନୁଷ୍ୟ ଶରୀର ପୁରୁଷ ନିବାସର ଉପଯୁକ୍ତ ସ୍ଥାନ ବୋଲି କୁହାଯାଇଛି ।

ତୃତୀୟ ଅଧ୍ୟାୟରେ ଆତ୍ମା ବିଷୟକ ଆଲୋଚନା ପରିଦୃଷ୍ଟ ହୁଏ । ଏଥିରେ ଇନ୍ଦ୍ରିୟ ଆତ୍ମା କିମ୍ବା ଅନ୍ତଃକରଣଃ ଆତ୍ମା ଏ ବିଷୟରେ ଆଲୋଚନା ହୋଇଅଛି । ଏଥିରେ ସ୍ଥିରୀକୃତ ହୋଇଅଛି ଯେ ''ବ୍ରହ୍ମା, ଇନ୍ଦ୍ର, ଆଦି ସକଳ ଦେବତା, ପଞ୍ଚଭୂତ, ଉଦ୍ଭିଦଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ ଓ ସ୍ଥାବର ଜଙ୍ଗମ ଆଦି ସମସ୍ତଙ୍କର ନେତା ହେଉଛନ୍ତି ପ୍ରଜ୍ଞାନ । ସକଳ ବ୍ରହ୍ମାଣ୍ଡ ପ୍ରଜ୍ଞାନରେ ପ୍ରତିଷ୍ଠିତ, ତେଣୁ ଅନ୍ତରିନ୍ଦ୍ରିୟ, ବହିରିନ୍ଦ୍ରିୟ, ଇନ୍ଦ୍ରିୟର ସକଳ ବ୍ୟାପାର ସର୍ବ ଉପାଧି ବିମୁକ୍ତ ପ୍ରଜ୍ଞାନ ହେଉଛି ବ୍ରହ୍ମ'' । (୧୪୧) ସ୍ଥୂଳତଃ ଏହି ଉପନିଷଦ୍‌ରେ କୁହାଯାଇଛି ''ମାନବ ଶରୀର ଧରି, ଏହି ଜୀବନରେ ହିଁ ପରମ ଜ୍ଞାନ ଲାଭ କରିବା ସମ୍ଭବ । ଦିବ୍ୟ ଆନନ୍ଦରେ ମଜ୍ଜି ରହି ସାରା ବିଶ୍ୱରେ ଥିବା ଅନିର୍ବଚନୀୟ ଐକ୍ୟକୁ ଉପଲବ୍ଧ କରିବା ସମ୍ଭବ । ମଣିଷ ଶରୀର ବ୍ରହ୍ମଙ୍କର ନିବାସସ୍ଥଳୀ ହୋଇଥିବାରୁ ଏହା ନିରର୍ଥକ ନୁହେଁ । ମର୍ତ୍ତ୍ୟର ମାଧ୍ୟମରେ ଏହି ଉପନିଷଦ୍ ଆମକୁ ଅମର୍ତ୍ତ୍ୟର ସ୍ୱାଦୁ ଗ୍ରହିବା ପାଇଁ ଉପଦେଶ ଦେଇଅଛି । (୧୪୨)

ଏ ଉପନିଷଦ୍‌ର ସୃଷ୍ଟି କର୍ତ୍ତା ହେଉ ଅଛନ୍ତି ମହୀଦାସ ବା 'ଇତରା'ଙ୍କ ପୁତ୍ର ଐତରେୟ । ଏହି 'ଇତରା' ଜଣେ ଶୂଦ୍ରାଣୀ । ତାଙ୍କ ଗର୍ଭରୁ ଓ ଜଣେ ବ୍ରାହ୍ମଣଙ୍କ ଔରସରୁ ଏହି ଐତରେୟ ଜନ୍ମ ଗ୍ରହଣ କରିଥିଲେ । ଉପନିଷଦ୍ ଯୁଗରେ ବ୍ରହ୍ମଜ୍ଞାନର ଅଧିକାରୀ ହେବା ନିମିତ୍ତ ଶୂଦ୍ରଙ୍କ ନିମିତ୍ତ କିଛି ବାରଣ ନଥିଲା । ଏ ସମୟରେ ଜାତି ବିଭାଗ ସଂପର୍କରେ କେବଳ ବିତର୍କ ସୃଷ୍ଟି ହୋଇଥିଲା । ଜନ୍ମ ଅନୁଯାୟୀ ଜାତି ବିଭାଗକୁ ବିଜ୍ଞଜନମାନେ ସ୍ୱୀକୃତି ପ୍ରଦାନ କରିନଥିଲେ । ବରଂ ପରବର୍ତ୍ତୀ କାଳରେ ଏହା ଦୃଢ ହୋଇଗଲା ।

**ଛାନ୍ଦୋଗ୍ୟ ଉପନିଷଦ୍ –**

ଛାନ୍ଦୋଗ୍ୟ ହେଉଛି ସାମବେଦୀୟ ଉପନିଷଦ୍ । ଏହା ସୁ ବୃହତ୍ । "ଏହା ଆଠ ଅଧ୍ୟାୟରେ ବିଭକ୍ତ । ଏହାର ଶେଷ ତିନି ଅଧ୍ୟାୟ ଅଧ୍ୟାତ୍ମଜ୍ଞାନ ପାଇଁ ଅତ୍ୟନ୍ତ ମହତ୍ତ୍ଵ ପୂର୍ଣ୍ଣ । ପ୍ରଥମ ଓ ଦ୍ଵିତୀୟ ଅଧ୍ୟାୟରେ ଓଁ କାର, ଉଦ୍‌ଗୀଥ ଓ ସାମରର ବିସ୍ତୃତ ବ୍ୟାଖ୍ୟା ଦିଆଯାଇଛି । ଦ୍ଵିତୀୟ ଅଧ୍ୟାୟରେ ଭୌତିକ ଉନ୍ନତି ନିମିତ୍ତ ଯଜ୍ଞାନୁଷ୍ଠାନ ଓ ସାମ ଗାନ କରୁଥିବା ବ୍ୟକ୍ତି ମାନଙ୍କ ପ୍ରତି ବ୍ୟଙ୍ଗ କରାଯାଇଛି । ତୃତୀୟ ଅଧ୍ୟାୟରେ ଗାୟତ୍ରୀର ବର୍ଣ୍ଣନା ରହିଅଛି । ଏହି ଅଧ୍ୟାୟରେ ଦେବକୀ ନନ୍ଦନ ଶ୍ରୀକୃଷ୍ଣ ଘୋର ଅଙ୍ଗିରସଙ୍କ ଠାରୁ ଧର୍ମୋପଦେଶ ଶ୍ରବଣ କରିଥିଲେ ବୋଲି କୁହାଯାଇଛି । (୧୪୩) ଏହି ଅଧ୍ୟାୟରେ "ସର୍ବଖଲ୍ଵିଦଂ ବ୍ରହ୍ମ"ର ଉଲ୍ଲେଖ ମିଳେ ଏବଂ ଶେଷରେ ଅଣ୍ଡରୁ ସୂର୍ଯ୍ୟଙ୍କର ଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ଚତୁର୍ଥ ଅଧ୍ୟାୟରେ ସତ୍ୟକାମ ଜାବାଳ ଉପାଖ୍ୟାନ ବର୍ଣ୍ଣିତ ହୋଇଅଛି । ସତ୍ୟକାମ ପ୍ରକୃତିର ପରମ୍ପରା ଦେଖି ବ୍ରହ୍ମଜ୍ଞାନ ଲାଭ କରିଥିଲେ । ଏହି ଅଧ୍ୟାୟରେ ରାଜ "ଜନ ଶ୍ରୁତି" କିଭଳି 'ରୈକକ୍' ଋଷିଙ୍କ ଠାରୁ ବ୍ରହ୍ମ ଜ୍ଞାନ ଲାଭ କରିଥିଲେ ତା ବର୍ଣ୍ଣନା କରାଯାଇଛି । ରାଜ "ଜନ ଶ୍ରୁତି" ସଂବର୍ଗ ବା ବାୟୁ ତତ୍ତ୍ଵ ଶିକ୍ଷା ପାଇଥିଲେ । (୧୪୪) ପଞ୍ଚମ ଅଧ୍ୟାୟରେ ପ୍ରବାହଣ 'ଜୈବଳି'ଙ୍କର ଦାର୍ଶନିକ ସିଦ୍ଧାନ୍ତ ଓ 'କେକୟ' ଅଶ୍ଵପତିଙ୍କର ସୃଷ୍ଟି ବିଷୟକ ତତ୍ତ୍ଵର ଆଲୋଚନା ସନ୍ନିବେଶିତ ହୋଇଛି । ଷଷ୍ଠ ଅଧ୍ୟାୟରେ 'ଶ୍ଵେତକେତୁ'ଙ୍କ ପ୍ରତି ଉଦ୍ଦାଳକ ଆରୁଣିଙ୍କ ଉପଦେଶ ବର୍ଣ୍ଣିତ । ସପ୍ତମ ଅଧ୍ୟାୟରେ ନାରଦ ସନତ୍ କୁମାରଙ୍କ ଠାରୁ ନାମ, ବାକ୍ୟ, ମନ, ସଂକଳ୍ପ, ଚିତ୍ତ, ଧ୍ୟାନ, ବିଜ୍ଞାନ ସରଣ, ଆଶା, ପ୍ରାଣ, ଜଳ, ଅନ୍ନ, ତେଜ, ଆକାଶ ଓ ବ୍ରହ୍ମଜ୍ଞାନ ଶିକ୍ଷା କରିଥିବା ବର୍ଣ୍ଣିତ । ଅଷ୍ଟମ ଅଧ୍ୟାୟରେ ଆତ୍ମା , ବ୍ରହ୍ମ , ପ୍ରଜାପତି, ଆଦିର ବିସ୍ତୃତ ଆଲୋଚନା ହୋଇଅଛି ।

ବୃହଦାରଣ୍ୟକ ଉପନିଷଦ୍‌ରେ ଯାଜ୍ଞବଲ୍କ୍ୟ ଯେପରି ବ୍ରହ୍ମ ସଂପର୍କୀୟ ଉପଦେଶମାନ ଦେଇଛନ୍ତି ଛାନ୍ଦୋଗ୍ୟ ଉପନିଷଦ୍‌ରେ ସେହିଭଳି ଆରୁଣି ଉପଦେଶ ଦେଇଅଛନ୍ତି । ସେ ତାଙ୍କ ଶିଷ୍ୟଙ୍କୁ ବ୍ରହ୍ମ ବିଷୟରେ କହିଛନ୍ତି "ତୁମେ ହେଉଛ ସେହି ବ୍ରହ୍ମ"। (୧୪୫) ତାଙ୍କ ମତରେ ପ୍ରତ୍ୟେକ ମନୁଷ୍ୟ ବିଗ୍ରର କରିବା ଉଚିତ ଯେ ସେ ହେଉଛି ଚିରନ୍ତନ ବିରାଜମାନ ବ୍ରହ୍ମଙ୍କର ଏକ ଅଂଶ ବିଶେଷ । ଏହି ଅନୁଭବଟି ଆସି ଗଲେ ତାକୁ ବ୍ରହ୍ମଜ୍ଞାନ ମିଳି ଗଲା ବୋଲି ବୁଝିବାକୁ ହେବ । ଏହା ହେଉଛି ଅଦ୍ଵୈତ ବାଦର ମୂଳ ମନ୍ତ୍ର । ଅଦ୍ଵୈତବାଦୀମାନେ ସେଥିପାଇଁ କହିଥାନ୍ତି ଯେ ଏ ସବୁ ଯାହା ଅଛି ସବୁ ହେଉଛି ବ୍ରହ୍ମ । ଏହାର ତାତ୍ପର୍ଯ୍ୟ ହେଲା ସର୍ବତ୍ର ବ୍ରହ୍ମଙ୍କର ସ୍ଫୁରଣ ବିଦ୍ୟମାନ । (୧୪୬) ଗୋଟିଏ ସୁନ୍ଦର ଉଦାହରଣ ଦେଇ ଆରୁଣି ତାଙ୍କ ପୁତ୍ର 'ଶ୍ଵେତକେତୁଙ୍କୁ' ନିଗ୍ରୋଧ ଫଳ ଭିତରେ ଥିବା ଅଣିମାକୁ ଦେଖାଇ କହିଥିଲେ ଏହି ଅଣୁରୁ ବିରାଟ ବୃକ୍ଷର ଉତ୍ପତ୍ତି ହୋଇଛି । ଏହି ଅଣୁ ସକଳ ବସ୍ତୁର ଉପାଦାନ । ଅଣୁ ହିଁ ଆତ୍ମା ଏବଂ ତାହାହିଁ ତୁ ନିଜେ । ସେହି ଭଳି 'ଲବଣ ସିକ୍ତ ଜଳ'ର ଅନ୍ୟ ଏକ ଉଦାହରଣ ଦେଇ କହିଲେ ଆତ୍ମାକୁ ସହଜେ ଚିହ୍ନି ହୁଏ ନାହିଁ । ଲବଣ ଜଳରେ ମିଶି ଗଲେ ଯେଉଳି ତାହାର ସ୍ଥୂଳ ସ୍ଵରୂପ ଦର୍ଶନ କରିହୁଏ ନାହିଁ ମାତ୍ର ସେହି ଜଳକୁ ପାନ କଲେ ଲବଣର ସତ୍ତାକୁ ଅନୁଭବ କରିହୁଏ ସେହିପରି ଏହି ବ୍ରହ୍ମାଣ୍ଡର ପ୍ରତ୍ୟେକ ଜୀବନରେ ସର୍ବତ୍ର ବିଦ୍ୟମାନ ସତ୍‌କୁ ମଧ୍ୟ ତୁ ଦେଖିପାରୁ ନାହୁଁ । ସେହି ସତ୍ ହିଁ ଅଣିମା , ତାହାହିଁ ଆତ୍ମା ଓ ତାହା ହିଁ ତୁ ନିଜେ ।

ଏହି ଛାନ୍ଦୋଗ୍ୟ ଉପନିଷଦ୍‌ରେ ସାଣ୍ଡିଲ୍ୟଙ୍କର ଧାରଣା ହୋଇଥିଲା "ଆତ୍ମା, ଅନ୍ତଃକରଣର ଅନ୍ତଃ ସ୍ଥଳ ଠାରୁ ଅଧିକ ସୂକ୍ଷ୍ମ, ତଣ୍ଡୁଳ ଠାରୁ ଓ ଯବଦାନା ଠାରୁ ମଧ୍ୟ ଲଘୁ । ସେହି ଆତ୍ମା ଅନ୍ତରୀକ୍ଷ ଓ ଭୂମଣ୍ଡଳ ଠାରୁ ବିଶାଳ । ଆତ୍ମାରୁ କ୍ରିୟା କଳାପ, ସ୍ୱାଦ ଆଦିର ଅନୁଭୂତି ହୋଇଥାଏ । ଆତ୍ମାହିଁ ବ୍ରହ୍ମ, ବ୍ରହ୍ମ ହିଁ ସୃଷ୍ଟିର କାରଣ ଓ ରକ୍ଷାକର୍ତ୍ତା । ବ୍ରହ୍ମରେ ସୃଷ୍ଟି ହିଁ ଲୀନ ହୁଏ"।

ଏଥିରେ ଥିବା ସତ୍ୟକାମ ଜାବାଳ ଉପାଖ୍ୟାନରେ ଆମେ ପ୍ରକୃତ ବ୍ରାହ୍ମଣ କିଏ ସେ ସଂପର୍କରେ ସମ୍ୟକ ଜ୍ଞାନ ଅର୍ଜନ କରିଥାଉଁ । ତାହା ହେଲା ଜାବାଳ ବୋଲି ଦାସୀଟିଏ ଥିଲା । ତାହାର ପୁତ୍ର ସତ୍ୟକାମ । ସତ୍ୟକାମ ଗୌତମଙ୍କର ଶିଷ୍ୟ ହେବାକୁ ଇଚ୍ଛା କରିଥିଲେ ମାତ୍ର ଗୌତମ ତାଙ୍କ ଜାତି ଗୋତ୍ର ନ ଜାଣି ତାଙ୍କୁ ଶିଷ୍ୟ କରିବାକୁ ମନା କରିଦେବାରୁ ସତ୍ୟକାମ ମାତାଙ୍କୁ ତାଙ୍କ ପିତାଙ୍କ ନାମ ପଚ୍ଚରିବାରୁ ତାଙ୍କ ମା କହିଥିଲେ "ମୁଁ ଯୁବତୀ ଥିଲି, ଘରକୁ ଘର ଦାସୀ ହୋଇ ବୁଲିଥିଲି . ସେହି ସମୟରେ ମୁଁ ତୋତେ ପାଇଥିଲି"।(୧୪୭) ଏହି କଥା ସତ୍ୟକାମ ଗୌତମଙ୍କୁ କହିବାରୁ ଗୌତମ ଆଷ୍ଟର୍ଯ୍ୟ ହୋଇଗଲେ । ସେ ସ୍ଥିର କରି ନେଲେ ଯେ ସତ୍ୟକାମ ହେଉଛନ୍ତି ପ୍ରକୃତରେ ବ୍ରାହ୍ମଣ ; କାରଣ ଯାହାର ମାତା ତାଙ୍କ ଜନ୍ମ ବୃତ୍ତାନ୍ତ ଭଳି ସତ୍ୟକୁ ନିର୍ବିକାର ଚିତ୍ତରେ ତାଙ୍କ ପୁଅ ଆଗରେ କହିଲେ ଏବଂ ତାଙ୍କ ପୁଅ ସ୍ୱଚ୍ଛ ହୃଦୟରେ ସମସ୍ତଙ୍କ ନିକଟରେ ପ୍ରକାଶ କରିପାରିଲେ ତେଣୁ ସେ ପ୍ରକୃତରେ ବ୍ରାହ୍ମଣ । ଏହି ସତ୍ୟ ନିଷ୍କାସିତ ହେଉଛି ଯେ ଜାତିର ବିଚ୍ଚର କର୍ମ ଭିତ୍ତିରେ କରିବାକୁ ହେବ, ଜନ୍ମ ଭିତ୍ତିରେ କିନ୍ତୁ ନୁହେଁ । ଏହି ସବୁ ଦୃଷ୍ଟିରୁ ବିଚ୍ଚର କଲେ ଛାନ୍ଦୋଗ୍ୟ ଉପନିଷଦ୍‌ର ଉପନିଷଦ୍ ସାହିତ୍ୟରେ ଏକ ମହତ୍ତ୍ୱପୂର୍ଣ୍ଣ ଆସନ ରହିଅଛି । ଏହି ଉପନିଷଦ୍ ସଂପର୍କରେ ବଳଦେବ ଉପାଧ୍ୟାୟ କହିଅଛନ୍ତି "ଏହି ଉପନିଷଦ୍‌ର ପ୍ରାଚୀନତା, ଗମ୍ଭୀରତା ତଥା ବ୍ରହ୍ମଜ୍ଞାନ ସଂପର୍କୀୟ ତଥ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ"। (୧୪୮)

**ବୃହଦାରଣ୍ୟକ ଉପନିଷଦ୍ –**

ବୃହଦାରଣ୍ୟକ ଏକ ପ୍ରାଚୀନ ଓ ପ୍ରାମାଣିକ ଉପନିଷଦ୍ । ତତ୍ତ୍ୱ ଜ୍ଞାନରେ ଏହା ଭରପୂର । ଏଥିରେ ପ୍ରଖ୍ୟାତ ମୁନି ଯାଜ୍ଞବଲ୍‌କ୍ୟ ହେଉଛନ୍ତି ଉପଦେଷ୍ଟା । ସେ ତାଙ୍କ ସ୍ତ୍ରୀ ମୈତ୍ରୀୟୀଙ୍କୁ ବ୍ରହ୍ମ ବିଦ୍ୟା ସଂପର୍କରେ ଉପଦେଶ ମାନ ଦେଇଛନ୍ତି । ଆତ୍ମଜ୍ଞାନ କିପରି ପାଇବାକୁ ହେବ ସେ ତାଙ୍କ ସ୍ତ୍ରୀ ମୈତ୍ରେୟୀକୁ କହିଛନ୍ତି "ଆଗୋ ମୈତ୍ରେୟି ! ଆତ୍ମାକୁ ଦେଖିବା ଉଚିତ୍"। ଏହାର ତାତ୍ପର୍ଯ୍ୟ ହେଲା .ଆତ୍ମା ବା ପରଂବ୍ରହ୍ମଙ୍କୁ ଦେଖିବାକୁ ହେବ । ତାଙ୍କର ସ୍ଥିତି ଯେ ସର୍ବତ୍ର ବିଦ୍ୟମାନ ତାହା ଅନୁସନ୍ଧାନ କରିବାକୁ ହେବ । ଖାଲି ଶୁଣି ଦେଲେ ଚଳିବ ନାହିଁ ; ଅନ୍ୟମାନେ ସେ ବିଷୟରେ କଣ କହୁଛନ୍ତି ତାହା ଶୁଣି ସେ ବିଷୟରେ ମନନ କରିବାକୁ ହେବ । କେବଳ ମନନ କଲେ ଚଳିବ ନାହିଁ; କାରଣ ଏଥିରୁ ସତ୍ୟ ବାହାରିବ ନାହିଁ । କାରଣ ପୂର୍ବରୁ ଯାହା ଶୁଣା ଯାଇଥିବ ତାହାର ପ୍ରଭାବ ମନନ କ୍ରିୟା ଉପରେ ପଡିଥିବ । ତେଣୁ ମନନର ଫଳ ଶ୍ରୁତି ସର୍ବଦା ସତ୍ୟନିଷ୍ଠ ନ ହୋଇପାରେ । ବେଳେ ବେଳେ ତାହା ପୂର୍ବରୁ ଶୁଣିଥିବା କଥାକୁ ଅନୁସରଣ କରିପାରେ । ସେଥିନେଇ ବୈଜ୍ଞାନିକ ଦୃଷ୍ଟିଭଂଗୀ ନେଇ ଦେଖିବାକୁ ହେବ । ହେତୁବାଦର କଷଟି ପଥରରେ ଘଷି ସାରିବା ପରେ ତାହା ଗ୍ରହଣ କରିବାକୁ ହେବ ।(୧୪୯) ଏଥିରୁ ଜଣା ପଡୁଛି ଯେ ଆର୍ଯ୍ୟମାନେ ହେତୁବାଦୀ ଚିନ୍ତାଧାରାରେ ଅଟଳ ବିଶ୍ୱାସୀ ଥିଲେ ଏବଂ ଅନ୍ଧ

ବିଶ୍ୱାସକୁ ଆଦୌ ଗ୍ରହଣ କରୁ ନଥିଲେ । ଏହି ଦୃଷ୍ଟିରୁ ବୃହଦାରଣ୍ୟକ ଉପନିଷଦ୍ ଅଧ୍ୟାତ୍ମବିଦ୍ୟା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଆସନରେ ସମାସୀନ ।

ଏହି ଉପନିଷଦ୍ ୬ ଅଧ୍ୟାୟରେ ବିଭକ୍ତ । ପ୍ରଥମ ଅଧ୍ୟାୟରେ ଉପାସନାର ସୂକ୍ଷ୍ମ ରୂପ ବର୍ଣ୍ଣନା ସହିତ ସୃଷ୍ଟି କର୍ମ ଓ ସୃଷ୍ଟି କର୍ତ୍ତାଙ୍କ ସଂପର୍କରେ ଆଲୋଚନା ହୋଇଅଛି । ଦ୍ୱିତୀୟ ଅଧ୍ୟାୟରେ ଗାର୍ଗ୍ୟଙ୍କର ଅଜାତଶତ୍ରୁଙ୍କ ଠାରୁ ବ୍ରହ୍ମ ବିଦ୍ୟା ଉପଦେଶ ଗ୍ରହଣ ବର୍ଣ୍ଣିତ ହୋଇଅଛି । ଏଥିରେ ମଧ୍ୟ ଯାଜ୍ଞବଳକ୍ୟ ମୈତ୍ରେୟୀ ସଂବାଦ ଉପଲବ୍ଧ ହୁଏ । ତୃତୀୟ ଅଧ୍ୟାୟରେ ମହାରାଜା ଜନକଙ୍କର ଆହୂତ ବିଶ୍ୱଜିତ ପରିଷଦ କଥା ବର୍ଣ୍ଣିତ ହୋଇଅଛି । ଚତୁର୍ଥ ଅଧ୍ୟାୟରେ ଜନକ ଓ ଯାଜ୍ଞବଲ୍‌କ୍ୟଙ୍କ ଭିତରେ ବ୍ରହ୍ମ ବିଷୟକ ଆଲୋଚନା ହୋଇଅଛି । ପଞ୍ଚମ ଅଧ୍ୟାୟରେ ବ୍ରହ୍ମ, ପ୍ରଜାପତି, ଗାୟତ୍ରୀ ଆଦି ଦାର୍ଶନିକ ଆଲୋଚନା ଘଟିଅଛି । ଷଷ୍ଠ ଅଧ୍ୟାୟରେ ପ୍ରବାହଣ ଜୈବିକ ଉଦ୍ଦାଳକ ଆରୁଣିଙ୍କୁ ବ୍ରହ୍ମ ବିଦ୍ୟାର ଉପଦେଶ ପ୍ରଦାନ କରିଥିବା ବର୍ଣ୍ଣିତ ହୋଇଅଛି ।

### ଶ୍ୱେତାଶ୍ୱତର ଉପନିଷଦ୍ –

କୃଷ୍ଣ ଯଜୁର୍ବେଦୀୟ ଉପନିଷଦ୍ ହେଉଛି ଶ୍ୱେତାଶ୍ୱତର । ଏହା ଛଅ ଭାଗରେ ବିଭକ୍ତ । ଏହି ଉପନିଷଦ୍‌ରେ ପରମାତ୍ମାଙ୍କ ଦର୍ଶନର ଉପାୟ ଓ ଧ୍ୟାନ ବର୍ଣ୍ଣିତ ହୋଇଅଛି । ଆତ୍ମା ଓ ପରାମାତ୍ମାର ଦର୍ଶନର ଉପାୟ ଏଥିରେ କଥିତ । ଯେପରି ତିଳକୁ ଘଷିଲେ ତେଲ, ଦହିକୁ ମନ୍ଥିଲେ ଲହୁଣି, ଅରଣି କାଠକୁ ଘର୍ଷଣ କଲେ ଅଗ୍ନି ଉତ୍ପନ୍ନ ହୋଇଥାଏ ; ସେହିପରି ସତ୍ୟ ଓ ତପସ୍ୟା ଦ୍ୱାରା ଅନ୍ୱେଷଣ କଲେ ଆତ୍ମାରେ ପରାମାତ୍ମାଙ୍କର ଦର୍ଶନ ମିଳିଥାଏ ।(୧୫୦) ଏହି ଉପନିଷଦ୍‌ରେ ଯୋଗର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରେ ମଧ୍ୟ ଶୈବ ଦର୍ଶନ ଓ ସାଙ୍ଖ୍ୟ ସିଦ୍ଧାନ୍ତ ବିବୃତ ହୋଇଅଛି । ଏହାର ଶେଷ ଅଧ୍ୟାୟରେ ଗୁରୁଭକ୍ତିର ମହିମା କୀର୍ତ୍ତିତ ହୋଇଅଛି । ପ୍ରଥମ ଥର ପାଇଁ ଏହି ଉପନିଷଦ୍‌ରେ ଭକ୍ତିତତ୍ତ୍ୱର ବର୍ଣ୍ଣନା ଦେଖିବାକୁ ମିଳେ ।

### କୌଷୀତକି ଉପନିଷଦ୍ –

କୌଷୀତକି ଋଗ୍‌ବେଦୀୟ ଉପନିଷଦ୍ । ଏହା ଚାରି ଅଧ୍ୟାୟରେ ବିଭକ୍ତ । କ୍ଷତ୍ରିୟ ରାଜା ଚିତ୍ର ଗାର୍ଗ୍ୟନି ଉଦ୍ଦାଳକ ଆରୁଣିକୁ ପରଲୋକ ସଂବନ୍ଧୀ ଜ୍ଞାନ ପ୍ରଦାନ କରିଥିବା କଥା ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଏହାର ଦ୍ୱିତୀୟ ତୃତୀୟ ଅଧ୍ୟାୟରେ ନାନା ପ୍ରକାର ଉପାସନା, ମହାପ୍ରାଣ (ବ୍ରହ୍ମ) ଆଦି ଦାର୍ଶନିକ ସିଦ୍ଧାନ୍ତର ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରେ ପିତା ପୁତ୍ର ସଂବନ୍ଧୀ ଆଲୋଚନା ସହିତ ଏହାର ତୃତୀୟ ଅଧ୍ୟାୟରେ ଇନ୍ଦ୍ର କାଶୀ ରାଜା ଦିବୋଦାସଙ୍କୁ ପ୍ରାଣ ଓ ପ୍ରଜ୍ଞା ସଂପର୍କରେ ପ୍ରଦାନ କରିଥିବା ଉପଦେଶ ବର୍ଣ୍ଣିତ ହୋଇଅଛି । ଏହାର ଚତୁର୍ଥ ଅଧ୍ୟାୟରେ କାଶୀରାଜା ଅଜାତଶତ୍ରୁ 'ବାଳାକି'ଙ୍କୁ ଦେଇଥିବା ବ୍ରହ୍ମ ବିଦ୍ୟାର ଉପଦେଶ ବର୍ଣ୍ଣିତ ହୋଇଅଛି । ଏହି ଉପନିଷଦ୍‌ରେ ଆଧ୍ୟାତ୍ମିକ ତତ୍ତ୍ୱାନୁସନ୍ଧାନ ସହିତ ମନୋବିଜ୍ଞାନର ସୂକ୍ଷ୍ମତତ୍ତ୍ୱ ମଧ୍ୟ ଆଲୋଚିତ ହୋଇଅଛି । ଯାଜ୍ଞିକ ବିଧି ବିଧାନର ସୁନ୍ଦର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । କେତେକ ଲୌକିକ ବିଷୟର ମଧ୍ୟ ଅବତାରଣା କରାଯାଇଛି ।

ସେଗୁଡିକ ହେଲା ମନୁଷ୍ୟ ନିଜର ଅଭିଳଷିତ ବସ୍ତୁ ଲାଭ କରିବା । ମନ୍ତ୍ର ଦ୍ୱାରା ପ୍ରେମୀର ମନକୁ ଆକର୍ଷଣ କରିବା ଏବଂ ଯନ୍ତ୍ର ଦ୍ୱାରା ପ୍ରେମିକାକୁ ସମ୍ମୋହିତ କରିବା ଏହାର ଅନ୍ତର୍ଗତ ।

**ମୈତ୍ରୀ ଉପନିଷଦ୍ –**

ମୈତ୍ରୀ ଗଦ୍ୟାତ୍ମକ ଉପନିଷଦ୍ । କେତେକ ସ୍ଥାନରେ ପଦ୍ୟ ମଧ୍ୟ ଦେଖାଯାଏ । ଏଥିରେ ସାଂଖ୍ୟ ଓ ଯୋଗ ଦର୍ଶନର ତତ୍ତ୍ୱ ବର୍ଣ୍ଣିତ ହୋଇଛି । ଏହା ୭ ପ୍ରପାଠକରେ ବିଭକ୍ତ । ଅନ୍ୟ ଉପନିଷଦ୍‌ର ସଂକେତ ଓ ଉଦ୍ଧରଣ ଏଥିରେ ମିଳେ । ୭ମ ପ୍ରପାଠକରେ "ଈଶ ଓ କଠ" ଉପନିଷଦ୍‌ର ଉଦ୍ଧରଣ ଦେଖାଦିଏ । ଏହାକୁ ପରବର୍ତ୍ତୀ କାଳର ରଚନା ବୋଲି କୁହାଯାଇପାରେ । ଏହାକୁ ମଧ୍ୟ ମୈତ୍ରାୟଣୀ ଉପନିଷଦ୍ କୁହାଯାଏ ।(୧୫୧) ସାମଗ୍ରିକ ଭାବରେ ଉପନିଷଦ୍ ସାହିତ୍ୟରେ ନିମ୍ନ ଲିଖିତ ବିଷୟ ମାନ ଉପଲବ୍ଧ ହୁଏ –

"୧- ଏଥିରେ ବ୍ରହ୍ମ ବିଦ୍ୟା ସଂପର୍କରେ ବର୍ଣ୍ଣିତ ହୋଇଅଛି ଏବଂ ବ୍ରହ୍ମଙ୍କର ସ୍ୱରୂପ କଳ୍ପନା କରାଯାଇଅଛି ।

୨- ସୃଷ୍ଟିର ଆଦ୍ୟରେ ଏକ ମାତ୍ର ବ୍ରହ୍ମ ଅବସ୍ଥିତ ଥିଲେ ।

୩ - ସାରାଜଗତ ବ୍ରହ୍ମଙ୍କର ସ୍ଫୁରଣ ବୋଲି କୁହାଯାଇଛି । ମାୟା ସଂପର୍କରେ ବର୍ଣ୍ଣନା କରାଯାଇଛି ।

୪- ବିଭିନ୍ନତା ସତ୍ତ୍ୱେ ସାରା ବିଶ୍ୱରେ କିଭଳି ଐକ୍ୟ ବିରାଜିତ ତାହା ଏଥିରେ ବର୍ଣ୍ଣିତ ।

୫- ବେଦାନ୍ତ ଦର୍ଶନ ମଧ୍ୟ ଏଥିରେ ପ୍ରତିପାଦିତ ହୋଇଅଛି ।

୬- ଏଥିରେ ଦ୍ୱୈତ ବାଦ ଏବଂ ଅଦ୍ୱୈତ ବାଦ ମୂଳ ବୀଜ ନିହିତ ।

୭- ଦାର୍ଶନିକତା ଓ ଅଧ୍ୟାତ୍ମବାଦର ଏଥିରେ ସମନ୍ୱୟ ଘଟିଛି ।

୮- ବ୍ରହ୍ମଙ୍କୁ 'ସତ୍ୟର ସତ୍ୟ' ବା 'ପରମ ସତ୍ୟ' ବୋଲି କୁହାଯାଇଛି ।

୯- ବ୍ରହ୍ମ ହେଉଛନ୍ତି ସତ୍ , ଚିତ୍ ଓ ଆନନ୍ଦମୟ ବୋଲି ଏଥିରେ କୁହାଯାଇଛି ।

୧୦- ବ୍ରହ୍ମଙ୍କୁ ଅବିନାଶୀ ଭାବରେ କଳ୍ପନା କରାଯାଇଛି ଏବଂ ସେ ସର୍ବଦା ପରିପୂର୍ଣ୍ଣ । ଏହାଙ୍କ ଠାରୁ ସମଗ୍ର ବିଶ୍ୱ ଉଦ୍ଭୂତ ହୋଇଥିଲେ ମଧ୍ୟ ଏହାଙ୍କ ପୂର୍ଣ୍ଣତା ସାମାନ୍ୟ ହ୍ରାସ ହୁଏ ନାହିଁ ।

୧୧- ତ୍ୟାଗ ଓ ଭୋଗ ମଧ୍ୟରେ, ବିଦ୍ୟା ଓ ଅବିଦ୍ୟା ମଧ୍ୟରେ, ଜ୍ଞାନ ଓ କର୍ମ ମଧ୍ୟରେ ବସ୍ତୁବାଦ ଓ ଅଧ୍ୟାତ୍ମବାଦ ମଧ୍ୟରେ ସମନ୍ୱୟ ଆଣିବାକୁ କୁହାଯାଇଛି ।

୧୨- ଜୀବାତ୍ମା ଓ ପରମାତ୍ମାଙ୍କ ସ୍ୱରୂପ ବିଷୟ ଏଥିରେ ବର୍ଣ୍ଣିତ, ଉଭୟଙ୍କ ମଧ୍ୟରେ କିପରି ଐକ୍ୟ ବିଦ୍ୟମାନ ତାହା ବର୍ଣ୍ଣିତ ।

୧୩- ଏଥିରେ ବିଭିନ୍ନ ସଦାଗ୍ରହ ବିଷୟରେ ଉପଦେଶ ଦିଆଯାଇଛି ।

୧୪- ଅନେକତ୍ର ସେ ସମୟର ସାମାଜିକ ଚିତ୍ର ମଧ୍ୟ ଏହି ଉପନିଷଦ୍ ଗୁଡିକରେ ଦିଆ ଯାଇଛି । "(୧୫୨)

## ୪ - ବେଦାଂଗ

ଉପନିଷଦ୍‌ରେ ଦୁଇ ପ୍ରକାର ଜ୍ଞାନ ମାର୍ଗ ନିର୍ଦ୍ଦେଶିତ ହୋଇଛି । ଯଥା - ଶ୍ରେୟ ଓ ପ୍ରେୟ । ମାଣ୍ଡୁକ୍ୟ ଉପନିଷଦ୍‌ରେ ଦୁଇ ପ୍ରକାର ବିଦ୍ୟାର ଉଲ୍ଲେଖ ମିଳେ । ପ୍ରଥମଟି 'ପରା ଦ୍ୱିତୀୟଟି ଅପରା' । ବ୍ରହ୍ମତତ୍ତ୍ୱ ଜ୍ଞାନ 'ପରା ବିଦ୍ୟାର ଅନ୍ତର୍ଗତ । 'ଅପରା' ବିଦ୍ୟାର ଅନ୍ତର୍ଗତ ହେଉଛି ବେଦ ଚତୁଷ୍ଟୟ ଓ ଷଟ୍ ବେଦାଙ୍ଗ । ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ, ଜ୍ୟୋତିଷ ଏହି କ୍ରମରେ ଏହା ଷଡାଙ୍ଗ । (୧୫୩) ଆଜି କାଲି ଯେଉଁ ଷଡଙ୍ଗୀ ସଂଜ୍ଞାଧାରୀ ବ୍ରାହ୍ମଣମାନେ ଅଛନ୍ତି , ସେମାନଙ୍କର ପୂର୍ବଜମାନେ ହୁଏତ ଏହି ଷଡ୍ଙ୍ଗ ବିଦ୍ୟାରେ ପ୍ରବୀଣ ଥିଲେ ।

ବେଦାଙ୍ଗକୁ ବେଦର ଅଙ୍ଗ କହିବାର ଅର୍ଥ ନୁହେଁ ଯେ ଏହା ବେଦର ଅଂଶ ସ୍ୱରୂପ । ଭାରତୀୟ ପରମ୍ପରାରେ ବେଦକୁ ଋଷିମାନେ ସେମାନଙ୍କର ଦିବ୍ୟଜ୍ଞାନ ବଳରେ ପାଇଛନ୍ତି ବୋଲି ବିଶ୍ୱାସ କରାଯାଏ । ସେଥିପାଇଁ ଯାସ୍କଙ୍କ ମତରେ ଋଷିମାନେ ହେଉଛନ୍ତି ମନ୍ତ୍ରର ଦ୍ରଷ୍ଟା । (୧୫୪) ଋଷିମାନେ ଏହାକୁ ଅନ୍ତରତମ ପ୍ରଦେଶରେ ଦିବ୍ୟ କର୍ଣ୍ଣରେ ଶୁଣିଥିଲେ ବୋଲି ଏହାକୁ 'ଶ୍ରୁତି' କୁହାଯାଏ । ମାତ୍ର ବେଦାଙ୍ଗ ବେଦସୃଷ୍ଟିର ବହୁ ବର୍ଷ ପରେ ହୋଇଥିଲା ଏବଂ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା କିପରି ଠିକ୍ ଭାବରେ ବୈଦିକ ମନ୍ତ୍ର ଗୁଡିକୁ ପାଠ କରିବାକୁ ହେବ । ଏଥିରେ ମଧ୍ୟ ବୈଦିକ କର୍ମକାଣ୍ଡ ଗୁଡିକ ଠିକ୍ ଭାବରେ କିଭଳି ସମାହିତ ହେବ ତାହା ଉଲ୍ଲେଖିତ । ବେଦର ଶୁଦ୍ଧତା ରକ୍ଷା କରିବାହିଁ ଥିଲା ଏହାର ଉଦ୍ଦେଶ୍ୟ । ଗୁରୁଶିଷ୍ୟ ପରମ୍ପରା କ୍ରମେ ଏହାର ଶିକ୍ଷା ଆମ ଦେଶରେ ଗଢ଼ି ଆସିଥିଲା । ଏହା ତେଣୁ ସ୍ମୃତି ଶାସ୍ତ୍ରର ଅନ୍ତର୍ଗତ । ସ୍ମୃତି ସର୍ବଦା ଶ୍ରୁତିକୁ ଆଶ୍ରୟ କରିଛି । ଯଦି କୌଣସି କ୍ଷେତ୍ରରେ ସ୍ମୃତି ଓ ଶ୍ରୁତି ବାକ୍ୟ ମଧ୍ୟରେ ପାରସ୍ପରିକ ସଂଘର୍ଷ ଉପୁଜେ ତେବେ ଶ୍ରୁତି ବାକ୍ୟ ହିଁ ଗ୍ରହଣୀୟ ହୋଇଥାଏ । ସଂକ୍ଷେପରେ କହିବାକୁ ଗଲେ ମନ୍ତ୍ରର ସଠିକ୍ ଉଚ୍ଚାରଣ ଲାଗି ଶିକ୍ଷାର ଆବଶ୍ୟକତା ହୋଇଥାଏ ।

କର୍ମକାଣ୍ଡ ଓ ଯଜ୍ଞୀୟ ଅନୁଷ୍ଠାନ ଲାଗି କଳ୍ପର ଆବଶ୍ୟକତା ହୋଇଥିଲା । ଶବ୍ଦଗୁଡିକର ସ୍ୱରୂପ ସମ୍ପର୍କରେ ଜ୍ଞାନ ଅର୍ଜନ କରିବା ଲାଗି 'ବ୍ୟାକରଣ'ର ଆବଶ୍ୟକତା ହେଲା । ଶବ୍ଦତାତ୍ତ୍ୱିକ ଦୃଷ୍ଟିରୁ ବିଭିନ୍ନ ଶବ୍ଦଗୁଡିକୁ ବିସ୍ତୃତ କରିବା ଲାଗି 'ନିରୁକ୍ତ'ର ଆବଶ୍ୟକତା ହୋଇଥିଲା । ଉଚିତ ସ୍ୱର ଲୟ ରଖି ବୈଦିକ ମନ୍ତ୍ରଗୁଡିକ ଗାନ କରିବା ଲାଗି 'ଛନ୍ଦ'ର ଆବଶ୍ୟକତା ହୋଇଥିଲା । ଠିକ୍ ସେହିଭଳି ଉଚିତ କାଳ ନିର୍ଣ୍ଣୟ ଲାଗି 'ଜ୍ୟୋତିଷ'ର ଆବଶ୍ୟକତା ପଡିଗଲା । ଏହି ପରି ଭାବରେ ବେଦର ଶୁଦ୍ଧତା ରକ୍ଷା କରିବା ଲାଗି ଉପରୋକ୍ତ ଛଅ ପ୍ରକାର ଶାସ୍ତ୍ର ଗଢି ଉଠିଥିଲା । ସେଗୁଡିକର ସମଷ୍ଟି ହେଉଛି ବେଦାଙ୍ଗ । ବେଦ ଓ ବେଦାଙ୍ଗ ମଧ୍ୟରେ ଏହା ହିଁ ହେଉଛି ପାରମ୍ପରିକ ସଂପର୍କ । ଏହି ଛଅଟି ବେଦାଙ୍ଗ ବିଷୟରେ ବୈଦିକ ବିଦ୍ୟାଳୟ ଗୁଡିକରେ ବିଧିବଦ୍ଧ ଭାବରେ ଶିକ୍ଷା ଦିଆଯାଉଥିଲା । ଏହାକୁ ଲକ୍ଷ୍ୟ କରି 'ଆପ୍ତେ' ଏକ ସୁଚିନ୍ତିତ ମତାମତ ବ୍ୟକ୍ତ କରିଅଛନ୍ତି ।(୧୫୫)

ପାଣିନି ବ୍ୟାକରଣରେ ବେଦକୁ ଦେବତା ଜ୍ଞାନ କରି ଏହି ଦେବତାଙ୍କ ଛଅ ଅଙ୍ଗକୁ ବେଦାଙ୍ଗ ବୋଲି କହିଅଛନ୍ତି । ଗୋଟିଏ ଅତି ସୁନ୍ଦର ରୂପକ ମାଧ୍ୟମରେ କୁହାଯାଇଛି ଶିକ୍ଷା ହେଲା ବେଦ ଦେବତାଙ୍କ 'ନାସିକା' , କଳ୍ପ ହେଲା ହାତ, ବ୍ୟାକରଣ ହେଲା ମୁଖ, ନିରୁକ୍ତ

ହେଲା କର୍ଣ୍ଣ ଏବଂ ଛନ୍ଦ ହେଲା ପାଦ ଓ ଜ୍ୟୋତିଷ ହେଲା ଚକ୍ଷୁ । ଏହି ଦୃଷ୍ଟିରୁ ବୈଦିକ ସାହିତ୍ୟରେ ବେଦାଙ୍ଗର ମାହାତ୍ମ୍ୟ ରହିଅଛି । ବେଦାଙ୍ଗକୁ କେତେକ ସୂତ୍ରଗ୍ରନ୍ଥ ବୋଲି କହିଅଛନ୍ତି । କାରଣ କଣ୍ଠସ୍ଥ କରିବା ଅଭିପ୍ରାୟରୁ ଯେଉଁ ନୂତନ ଗଦ୍ୟ ଶୈଳୀ ଜନ୍ମ ନେଲା ତାହାକୁ ସୂତ୍ର ନାମରେ ଅଭିହିତ କରାଯାଇଛି । ବୈୟାକରଣ ପତଞ୍ଜଳିଙ୍କ ଭାଷାରେ ପରବର୍ତ୍ତୀ ସମୟରେ ବୈୟାକରଣମାନେ ସୂତ୍ର ରଚନା କରିବା ସମୟରେ ଅର୍ଦ୍ଧମାତ୍ରାଟି ଲୋପ କରି ପାରିଲେ ପୁତ୍ରଜନ୍ମଜନିତ ଆନନ୍ଦ ଅନୁଭବ କଲେ । (୧୫୬) ସୂତ୍ର ଗ୍ରନ୍ଥ ଉପରେ ପରବର୍ତ୍ତୀ ସମୟରେ ଭାଷ୍ୟ ରଚନା କରାଯାଇଛି । 'ପାଣିନି' ଏ ସଂପର୍କରେ ଏ ଷଡ଼ାଙ୍ଗକୁ ପୂର୍ବ ରୂପକ ଭଳି ଗ୍ରହଣ କରିଛନ୍ତି । (୧୫୭)

**ବେଦାଙ୍ଗର କାଳ –**

ଏହାର ସୃଷ୍ଟି ବୈଦିକ ସଂହିତାର ପରବର୍ତ୍ତୀ କାଳରୁ । ଗୋପଥ ବ୍ରାହ୍ମଣ (୨/୨୭) ବୌଧାୟନ ଧର୍ମ ସୂତ୍ର (୨/ ୧୪୨) ଏବଂ ରାମାୟଣ (ବାଳକାଣ୍ଡ ୭/୧୫) ଆଦି ଗ୍ରନ୍ଥରେ ବେଦାଙ୍ଗ ବିଷୟରେ ଉଲ୍ଲେଖ ଅଛି । ଏହି ବେଦାଙ୍ଗ ମଧ୍ୟରୁ କେତେକ ପ୍ରାଚୀନ ଓ ଆଉ କେତେକ ଅର୍ବାଚୀନ । ଏହି ଦୃଷ୍ଟିରୁ ବିଗ୍ଚର କଲେ ବେଦାଙ୍ଗ ଗୁଡିକର ପ୍ରାଚୀନତା ଓ ପ୍ରସିଦ୍ଧି ସମ୍ପର୍କରେ ସନ୍ଦେହ ରୁହେ ନାହିଁ । ଅନେକ ବିଦ୍ୱାନ ବେଦାଙ୍ଗର ପ୍ରାଚୀନତମ କାଳକୁ ଖ୍ରୀଷ୍ଟପୂର୍ବ ୧୫୦୦ ଶତାବ୍ଦୀରେ ସ୍ଥାନିତ କରିଥାନ୍ତି ଏବଂ ଏହା ଖ୍ରୀ.ପୂ. ୫୦୦ ଶତାବ୍ଦୀ ଠାରୁ ଆଉ ଅର୍ବାଚୀନ ନୁହେଁ ବୋଲି କହିଥାନ୍ତି । ଏହି ମତ ପ୍ରଦାନ କରି ବେଦାଙ୍ଗ ଓ ଜ୍ୟୋତିର୍ବିଦ ପଣ୍ଡିତ ଶଙ୍କର ବାଳକୃଷ୍ଣ କହିଅଛନ୍ତି ମେଷାଦି ରାଶିଙ୍କର ନାମ ବେଦାଙ୍ଗ ଜ୍ୟୋତିଷରେ ପ୍ରଥମେ ନଥିଲା । ଏଗୁଡିକର ନାମ ଖ୍ରୀ.ପୂ. ୫୦୦ ଶତାବ୍ଦୀର ହିଁ ପ୍ରବେଶ କରିଛି । ଅତଏବ ବେଦାଙ୍ଗ ଜ୍ୟୋତିଷର ସୃଷ୍ଟି ନିଶ୍ଚିତ ଭାବରେ ଖ୍ରୀ.ପୂ. ୫୦୦ ଶତାବ୍ଦୀରୁ ବହୁବର୍ଷ ପୂର୍ବରୁ । ଜ୍ୟୋତିଷ ବେଦାଙ୍ଗ ର ଗୋଟିଏ ଭାଗ ହୋଇଥିବାରୁ ଏହି ସାମଗ୍ରିକ ବେଦାଙ୍ଗ ଶାସ୍ତ୍ର ନିଶ୍ଚିତ ଭାବରେ ଏହାର ବହୁ ବର୍ଷ ପୂର୍ବରୁ ରଚିତ ହୋଇଥିଲା ।(୧୫୮) 'ଗୋପଥ' ବ୍ରାହ୍ମଣରେ ଏହାର ନାମୋଲ୍ଲେଖ ଥିବାରୁ ବ୍ରାହ୍ମଣ ଯୁଗରେ ଏହାର ପ୍ରାଧାନ୍ୟ ଜନ ସମାଜରେ ଅନୁଭୂତ ହୋଇଥିବା ପରିମନେ ହୁଏ । ଏହି ଦୃଷ୍ଟିରୁ ବିଗ୍ଚର କଲେ ବେଦାଙ୍ଗର ସୃଷ୍ଟି ଖ୍ରୀ.ପୂ. ୫୦୦ ଶତାବ୍ଦୀ ମଧ୍ୟରେ ବୋଲି ଗ୍ରହଣ କରିବାକୁ ହେବ ।

**ଶିକ୍ଷା –**

ବେଦ ମନ୍ତ୍ରର ପ୍ରକୃତ ଉଚ୍ଚାରଣ ନିମିତ୍ତ ବିରଚିତ ହୋଇଥିବା ବେଦାଙ୍ଗ ହେଉଛି ଶିକ୍ଷା । ଶିକ୍ଷା ବେଦରୂପୀ ପୁରୁଷର ପ୍ରାଣ ସ୍ୱରୂପ । ଶିକ୍ଷାର ବ୍ୟାଖ୍ୟାରେ ସାୟଣାଗ୍ଚର୍ଯ୍ୟ ଲେଖିଛନ୍ତି ବେଦର ସ୍ୱର, ବର୍ଣ୍ଣ, ଆଦି ଉଚ୍ଚାରଣ ବିଧିକୁ ଯେଉଁ ଶାସ୍ତ୍ର ଶିକ୍ଷା ଦିଏ ତାହା ହେଉଛି ଶିକ୍ଷା ।(୧୫୯) ଯେଉଁଥିରେ ଶବ୍ଦର ସ୍ୱର, ବର୍ଣ୍ଣ ଆଦି ଉଚ୍ଚାରଣ ସଂପର୍କରେ ଉପଦେଶ ଦିଆ ଯାଇଥାଏ ତାହାକୁ ଶିକ୍ଷା କୁହାଯାଏ । ଏହାର ଅନ୍ୟ ନାମ ସ୍ୱର ଶାସ୍ତ୍ର । ବେଦରେ ତିନି ପ୍ରକାର ସ୍ୱର ଅଛି । ସେଗୁଡିକ ହେଲା - ଉଦାତ୍ତ, ଅନୁଦାତ୍ତ, ଓ ସ୍ୱରିତ । ଉଦାତ୍ତ ହେଉଛି ଉଚ୍ଚସ୍ୱର, ଅନୁଦାତ୍ତ ଅଳ୍ପ ସ୍ୱର (ହ୍ରସ୍ୱ ସ୍ୱର ) ଓ ସ୍ୱରିତ ଉଦାତ୍ତ

ଓ ଅନୁଦାତ୍ତର ମଧ୍ୟବର୍ତ୍ତୀ ଅବସ୍ଥା । ସ୍ୱର ବେଦ ମନ୍ତ୍ରର ଅର୍ଥ ନିର୍ଦ୍ଧାରକ । ଉଚ୍ଚାରଣର ବିଭିନ୍ନତାରେ ଅର୍ଥର ବିଭିନ୍ନତା ଆସିଥାଏ ଏବଂ ତଦ୍ୱାରା ବେଦ ମନ୍ତ୍ରର ଫଳାଫଳ ମଧ୍ୟ ଭିନ୍ନ ହୋଇଯାଏ । ବେଳେ ବେଳେ ଏହା ବିପରୀତ ଫଳ ମଧ୍ୟ ଦେଇଥାଏ । ସାୟଣ ତାଙ୍କର ଋଗ୍‌ବେଦ ଭାଷ୍ୟ ଭୂମିକାରେ ଏକ ସୁନ୍ଦର ଉଦାହରଣ ଦେଇଅଛନ୍ତି । ଏହି ବିଷୟରେ ଗୋଟିଏ ବୈଦିକ ଗଳ୍ପ ହେଉଛି - ବୃତ୍ରାସୁର ନିଜ ଶତ୍ରୁ ଇନ୍ଦ୍ରଙ୍କୁ ମାରିବା ପାଇଁ ଗୋଟିଏ ଯଜ୍ଞର ଆୟୋଜନ କରିଥିଲେ । ଏହି ଯଜ୍ଞର ଆହୁତି ମନ୍ତ୍ର ହେଲା "ଇନ୍ଦ୍ରଶତ୍ରୁ ର୍ବର୍ଧସ୍ୱ" । ଅର୍ଥାତ୍ ଇନ୍ଦ୍ରଙ୍କ ଶତ୍ରୁ ବୃତ୍ରାସୁର ବିଜୟ ଲାଭ କରୁ । କିନ୍ତୁ ଅସାବଧାନତା ବଶତଃ 'ଇ' ବର୍ଣ୍ଣଟି ଉଦାତ୍ତ ସ୍ୱରରେ ଉଚ୍ଚାରିତ ହୋଇଗଲା । ପ୍ରକୃତରେ 'ତ୍ରୁ' ଏହି ବର୍ଣ୍ଣଟି ଉଦାତ୍ତ ସ୍ୱରରେ ଉଚ୍ଚାରିତ ହେବା କଥା । ଫଳରେ ଇନ୍ଦ୍ର ଶତ୍ରୁର ଅର୍ଥ ସ୍ୱୟଂ ଇନ୍ଦ୍ର ହୋଇଗଲା ଏବଂ ବୃତ୍ରାସୁରର ନିଧନ ହେଲା ଓ ଇନ୍ଦ୍ର ବିଜୟ ଲାଭକଲେ । (୧୬୦) ଏଥିରୁ ଅନୁମିତ ହୁଏଯେ ଆର୍ଯ୍ୟମାନେ ଉଚ୍ଚାରଣର ଶୁଦ୍ଧତା ଉପରେ ଖୁବ୍ ଗୁରୁତ୍ୱ ଦେଉଥିଲେ । ବାଚସ୍ପତି ଗୈରୋଲା ଏଥିପ୍ରତି ଲକ୍ଷ୍ୟ କରି କହି ଅଛନ୍ତି ବେଦ ପାଠର ଶୁଦ୍ଧ ଶବ୍ଦ ଉଚ୍ଚାରଣର ଆବଶ୍ୟକତା ରହିଅଛି । ଉଚ୍ଚାରଣ ସ୍ଖଳନରେ ବା ସ୍ୱର ଭ୍ରଷ୍ଟରେ ବିପରୀତ ତଥା ଅନିଷ୍ଟକାରୀ ଫଳ ଫଳି ଥାଏ । (୧୬୧)

ପାଣିନି ଶିକ୍ଷା ଗ୍ରନ୍ଥରେ କୁହା ଯାଇଛି ଯେ ଯେଉଁ ବେଦପାଠୀ ବ୍ୟକ୍ତି ଶୁଦ୍ଧ ଭାବରେ ବେଦମନ୍ତ୍ର ଉଚ୍ଚାରଣ କରନ୍ତି, ସେ ଏହି ଇହଲୋକ ଓ ବ୍ରହ୍ମଲୋକ, ଉଭୟରେ ସମ୍ମାନ ପାଇଥାନ୍ତି । ପାଣିନିଙ୍କ "ଅଷ୍ଟାଧ୍ୟାୟୀଃ"ର ଭାଷ୍ୟକାର 'ପତଞ୍ଜଳି' ତାଙ୍କ ମହାଭାଷ୍ୟରେ କହିଛନ୍ତି ଶବ୍ଦଟିକୁ ଭଲ ଭାବରେ ଜାଣିଥିଲେ ଏବଂ ଭଲ ଭାବରେ ପ୍ରୟୋଗ କରିଥିଲେ ତାହା ଇହଲୋକ ଓ ସ୍ୱର୍ଗଲୋକ ଉଭୟରେ ସକଳ କାମନା ପୂରଣ କରିଥାଏ । (୧୬୨)

ପ୍ରାଚୀନ ଭାରତରେ ବହୁତ ଗୁଡିଏ ଶିକ୍ଷା ଗ୍ରନ୍ଥ ଥିଲା । ସେମାନଙ୍କ ମଧ୍ୟରୁ 'ପାଣିନୀୟ ଶିକ୍ଷା' ପ୍ରଧାନ । ଏଥିରେ ପାଣିନୀ ବ୍ୟାକରଣର ସୂତ୍ର ଗୁଡିକ ପ୍ରଦାନ କରାଯାଇଛି । ଏହାର ରଚୟିତା ହେଉଛନ୍ତି ପିଙ୍ଗଳ । ଏହା ବ୍ୟତୀତ ଅନେକ ଶିକ୍ଷା ଗ୍ରନ୍ଥ ରହିଥିଲା । ସେଗୁଡିକ ମଧ୍ୟରୁ (କ) ଯାଜ୍ଞବଲ୍‌କ୍ୟ ଶିକ୍ଷା, (ଖ) ବାଶିଷ୍ଠୀ ଶିକ୍ଷା, (ଗ) କାତ୍ୟାୟନୀ ଶିକ୍ଷା, (ଘ) ପାରଶରୀ ଶିକ୍ଷା, (ଙ) ମାଣ୍ଡବ୍ୟ ଶିକ୍ଷା, (ଚ) ଅମୋଘାନନ୍ଦିନୀ ଶିକ୍ଷା, (ଛ) ମାଧ୍ୟାନ୍ଦିନୀ ଶିକ୍ଷା, (ଜ) ବର୍ଣ୍ଣରତ୍ନ ପ୍ରଦୀପିକା ଶିକ୍ଷା (ଝ) କେଶବୀ ଶିକ୍ଷା, (ଞ) ମଲ୍ଲଶ୍ରର୍ମ ଶିକ୍ଷା (ଟ) ସ୍ୱରାଙ୍କୁଶ ଶିକ୍ଷା, (ଠ) ଷୋଡଶଶ୍ଳୋକୀ ଶିକ୍ଷା, (ଡ଼) ଅବସାନ ନିର୍ଣ୍ଣୟ ଶିକ୍ଷା, (ଢ) ସ୍ୱର ଭକ୍ତି ଲକ୍ଷଣ ଶିକ୍ଷା, (ଣ) ପ୍ରାତିଶାଖ୍ୟ ପ୍ରଦୀପ ଶିକ୍ଷା, (ତ) ନାରଦୀୟ ଶିକ୍ଷା, (ଥ) ମାଣ୍ଡୁକୀ ଶିକ୍ଷା, (ଦ) ମନସ୍ୱର ଶିକ୍ଷା ଇତ୍ୟାଦି ପ୍ରଧାନ । ଏତେ ଗୁଡିଏ ଶିକ୍ଷା ଗ୍ରନ୍ଥର ରଚନାରୁ ଏହି ସୂଚନା ମିଳୁଛି ଯେ ବେଦାଧ୍ୟୟନ ଲାଗି ଶିକ୍ଷା ଏକ ଅପରିହାର୍ଯ୍ୟ ଶାସ୍ତ୍ର ହିସାବରେ ସେତେବେଳେ ଗଣ୍ୟ ହେଉଥିଲା ।(୧୬୨(କ)

**କଳ୍ପ –**

ବିଧି, ନିୟମ ଓ ନ୍ୟାୟ ଆଦିକୁ ସଂକ୍ଷେପ ଭାବରେ ପ୍ରକାଶ କରୁଥିବା ଗ୍ରନ୍ଥକୁ କଳ୍ପସୂତ୍ର କୁହାଯାଏ । କଳ୍ପ ଅର୍ଥ ହେଲା ବିଧି ବା ନିୟମ । ସୂତ୍ର ଅର୍ଥ ହେଲା ଯାହା ସଂକ୍ଷେପରେ କୁହାଯାଏ । ବେଦର ଷଡ଼ଙ୍ଗ ମଧ୍ୟରୁ ଏହା ଅନ୍ୟତମ । ବ୍ରାହ୍ମଣ କାଳରେ ଯାଜ୍ଞିକ ଅନୁଷ୍ଠାନ, ବିଧି ବିଧାନ, ଏତେ

ବ୍ୟାପକ ଓ ବହୁଳ ହୋଇ ପଡିଲା ଯେ ସେଗୁଡିକ ସଂପୂର୍ଣ୍ଣ ରୂପରେ ସ୍ମରଣ ରଖିବା ଅସମ୍ଭବ ହୋଇପଡିଲା । ଏଣୁ ସେଗୁଡିକୁ ସଂକ୍ଷେପରେ ପ୍ରକାଶ କରିବାର ଆବଶ୍ୟକତା ଅନୁଭୂତ ହେଲା । ଏହି ଆବଶ୍ୟକତା ମେଣ୍ଟାଇବା ଲାଗି ହେଲା କଳ୍ପସୂତ୍ରର ସୃଷ୍ଟି । କଳ୍ପସୂତ୍ର ହେଉଛି ବ୍ରାହ୍ମଣ ଗ୍ରନ୍ଥର ବ୍ୟାଖ୍ୟା ଗ୍ରନ୍ଥ । କଳ୍ପସୂତ୍ର ଚାରିପ୍ରକାର — ଯଥା — ଶ୍ରୌତ୍ରସୂତ୍ର, ଗୃହ୍ୟସୂତ୍ର, ଶୁଲ୍କ ସୂତ୍ର ଓ ଧର୍ମ ସୂତ୍ର । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଅବଶ୍ୟ ଏକ ହଜାରରୁ ଅଧିକ କଳ୍ପସୂତ୍ର ମାନଙ୍କର ନାମୋଲ୍ଲେଖ କରାଯାଇଛି । କିଂନ୍ତୁ ସେ ଗୁଡିକ ମଧ୍ୟରୁ ଏବେ ୪୦ ଟି କଳ୍ପସୂତ୍ର ଉପଲବ୍ଧ । ଏହି ସୂତ୍ର ଗ୍ରନ୍ଥ ଗୁଡିକ ଖ୍ରୀ.ପୂ. ୩ୟ ଶତକରେ ରଚନା ବୋଲି କୁହାଯାଇଛି ।

**(କ) ଶ୍ରୌତ୍ରସୂତ୍ର —**

ବ୍ରାହ୍ମଣ ଗ୍ରନ୍ଥ ଭଳି ବୈଦିକ କର୍ମକାଣ୍ଡ ବର୍ଣ୍ଣିତ । ଶ୍ରୌତ୍ରସୂତ୍ରରେ ବେଦ ସହିତ ଯଜ୍ଞାନୁଷ୍ଠାନର କ୍ରମବଦ୍ଧ ବର୍ଣ୍ଣନା ପରିଲକ୍ଷିତ ହୁଏ । ଶ୍ରୌତ୍ର ଗୁଡିକ ବିଭିନ୍ନ ବେଦର ଅଧୀନ । ଅଶ୍ୱାଳାୟନ ଶ୍ରୌତସୂତ୍ର ଋଗ୍‌ବେଦର ଅଧୀନ ହେଲା ବେଳକୁ ବୌଧାୟନ, ଆପସ୍ତମ୍ବ ଓ ମାନବ ଶ୍ରୌତ ସୂତ୍ର ଗୁଡିକ ହେଉଛି କୃଷ୍ଣ ଯଜୁର୍ବେଦର ଅଧୀନ । ଅନ୍ୟାନ୍ୟ ଶ୍ରୌତ୍ର ସୂତ୍ର ଗୁଡିକ ସେହିପରି ଅନ୍ୟ ବେଦ ଗୁଡିକର ଅଧୀନ ଅଟନ୍ତି । କେତେକ ଶ୍ରୌତ୍ର ସୂତ୍ରର ନାମ ହେଲା ଆଶ୍ୱାଳାୟନ, ଶାଙ୍ଖାୟନ,କୌଷିତକ ମାନବ, ବୌଧାୟନ, ଆପସ୍ତମ୍ବ, ହିରଣ୍ୟକେଶୀ, ଭରଦ୍ୱାଜ,, ଲାଟ୍ୟାୟନ, ଦ୍ରାହ୍ମାୟଣ, ଜୈମିନୀୟ, ବୈତାନ ଖାଡିର ଏବଂ କୌଶିକ । ଯେଉଁ ୧୪ ପ୍ରକାର ଯଜ୍ଞ ବୈଦିକ ପରମ୍ପରାରେ ରହିଛି ତାହାର ବିଶଦ୍ ବର୍ଣ୍ଣନା ଶ୍ରୌତ୍ର ସୂତ୍ରରେ ରହିଅଛି ।

**(ଖ) ଗୃହ୍ୟସୂତ୍ର —**

ଗୃହ୍ୟସୂତ୍ରରେ ବର୍ଣ୍ଣିତ ଯଜ୍ଞ ଓ ନିତ୍ୟକର୍ମ ଅର୍ଥାତ୍ ଆବଶ୍ୟକ କର୍ତ୍ତବ୍ୟ ଭାବରେ ଗୃହୀତ ହୋଇଛି । ତାହାକୁ ପାକ୍ ବା ପ୍ରଧାନ ଯଜ୍ଞ କୁହାଯାଏ । ଏଥିରେ ସାତ ଗୃହଯଜ୍ଞ ଓ ପାଞ୍ଚ ମହାଯଜ୍ଞ ବିଶେଷ ଭାବରେ ବର୍ଣ୍ଣିତ । "ସାତଗୃହ ଯଜ୍ଞ ହେଲା - ପିତୃଯଜ୍ଞ, ପାର୍ବଣ ଯଜ୍ଞ, ଅଷ୍ଟକା ଯଜ୍ଞ, ଶ୍ରାବଣୀ ଯଜ୍ଞ, ଅଶ୍ୱାଯୁଜୀ ଯଜ୍ଞ, ଆଗ୍ରହାୟଣୀୟ ଯଜ୍ଞ, ଚୈତ୍ରୀଯଜ୍ଞ, ସେହିପରି ପଞ୍ଚ ମହାଯଜ୍ଞ ହେଲା — ଦେବ ଯଜ୍ଞ, ପିତୃ ଯଜ୍ଞ, ଭୂତ ଯଜ୍ଞ, ଋଷି ଯଜ୍ଞ, ମନୁଷ୍ୟ ଯଜ୍ଞ । ଦେବ ଯଜ୍ଞ ଦ୍ୱାରା ଦେବତା ମାନଙ୍କୁ ପୂଜା କରାଯାଇଥାଏ । ପିତୃଯଜ୍ଞ ଦ୍ୱାରା ଶ୍ରାଦ୍ଧାଦିରେ ପିତୃପୁରୁଷମାନଙ୍କୁ ପୂଜା କରାଯାଇଥାଏ । ଭୂତ ଯଜ୍ଞ ଦ୍ୱାରା ପଶୁପକ୍ଷୀଙ୍କ ଆହାର ଲାଗି ଖାଦ୍ୟ ଅର୍ପଣ କରାଯାଇଥାଏ । ବିଦ୍ୟାଧ୍ୟୟନକୁ ଋଷି ଯଜ୍ଞ କୁହାଯାଏ । ଅତିଥି ସତ୍କାର ଦ୍ୱାରା ମନୁଷ୍ୟ ଯଜ୍ଞ ସମାହିତ କରାଯାଇଥାଏ" । (୧୬୩) ଗୃହ୍ୟ ସୂତ୍ରରେ ବିଭିନ୍ନ ପ୍ରକାର ବର୍ଣ୍ଣନା ଦେଖାଦିଏ । ସେଥିରୁ ମନୁଷ୍ୟର ଗର୍ଭାଧାନ ଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ସଂସ୍କାର ଓ ଶ୍ରାଦ୍ଧ ଆଦିର ବର୍ଣ୍ଣନା କରାଯାଇଛି । ସେଥିରେ ଉପନୟନ ଓ ବିବାହ ସଂସ୍କାରର ସୁନ୍ଦର ବର୍ଣ୍ଣନା ମିଳେ । ପୁଣି ଗୃହ ନିର୍ମାଣ, ପଶୁପାଳନ ଉତ୍ସବ, ଅପଶକୁନ, କୃଷି ଆଦି ବିଭିନ୍ନ ବିଷୟରେ ଉଲ୍ଲେଖ ମିଳେ । ଗୃହ୍ୟ ଶାସ୍ତ୍ରରେ ତତ୍କାଳୀନ ସାମାଜିକ ସଂସ୍ଥା, ଆଗ୍ର୍ୱର ବିଗ୍ୱର, ରୀତି ନୀତି, ସାମାଜିକ ଜୀବନ ଓ କାର୍ଯ୍ୟ କଳାପ ପ୍ରତିଫଳିତ ହୋଇଛି । (୧୬୪) ଗୃହ୍ୟ ସୂତ୍ର ହେଉଛି ବ୍ୟକ୍ତି କୈନ୍ଦ୍ରିକ ଓ ପରିବାର ପାଇଁ ଉଦ୍ଦିଷ୍ଟ ।

**ଶୁଳ୍ବସୂତ୍ର –**

ଏହି ସୂତ୍ରରେ ବେଦୀର ମାପ, ସ୍ଥାନ ନିରୂପଣ, ବେଦିର ନିର୍ମାଣ ଆଦିର ବର୍ଣ୍ଣନା ଦେଖିବାକୁ ମିଳେ । ଏହା ଭାରତୀୟ ଜ୍ୟାମିତି ଶାସ୍ତ୍ରର ପ୍ରାଚୀନତମ ପ୍ରତିନିଧି ସ୍ୱରୂପ । ଏହା ଶ୍ରୌତ୍ର ସୂତ୍ର ସହିତ ସଂପୃକ୍ତ ।

**ଧର୍ମସୂତ୍ର –**

ଧର୍ମ ସୂତ୍ର ଗୃହ୍ୟ ସୂତ୍ରର ଏକ ବିଭାଗ ମାତ୍ର । ଏହି ଧର୍ମ ସୂତ୍ରରୁ ପରବର୍ତ୍ତୀ ସମୟରେ ଯାଜ୍ଞବଲ୍‌କ୍ୟ, ମନୁ ସ୍ମୃତି ଆଦି ଗ୍ରନ୍ଥ ବିକଶିତ ହୋଇଛି । ଧର୍ମ ସୂତ୍ରରେ ଧାର୍ମିକ ନିୟମ, ପ୍ରାୟଶ୍ଚିତ ବିଧି ଆଦିର ନିୟମ, ରାଜା ଏବଂ ପ୍ରଜା ଆଦିଙ୍କର କର୍ତ୍ତବ୍ୟ ବର୍ଣ୍ଣିତ ହୋଇଛି । ଜମିର ଭାଗବାଣ୍ଟ, ସ୍ତ୍ରୀର ପାରତନ୍ତ୍ରୀ ବ୍ୟଭିଚାରର ପ୍ରାୟଶ୍ଚିତ ଏବଂ ଗୃହସ୍ଥର ନିତ୍ୟ ନୈମିତ୍ତିକ କର୍ତ୍ତବ୍ୟର ବର୍ଣ୍ଣନା ଦେଖାଯାଏ । ଚାରିବର୍ଣ୍ଣର ଅଧିକାର ପାର୍ଥକ୍ୟ ଏଥିରେ ଦର୍ଶିତ । ବିଶିଷ୍ଟ ଧର୍ମସୂତ୍ର ଗୁଡିକ ହେଲା- ବଶିଷ୍ଠ, ବିଷ୍ଣୁ, ହିରଣ୍ୟକେଶୀ, ଆପସ୍ତମ୍ବ, ବୌଧାୟନ ଓ ଗୌତମ ଇତ୍ୟାଦି । ବଶିଷ୍ଠ ଧର୍ମ ସୂତ୍ରରେ ମୌଳିକ ଆଚାର ବିଚାରର ବର୍ଣ୍ଣନା ରହିଅଛି ।(୧୬୫)

**ବ୍ୟାକରଣ –**

ଯେଉଁ ଶାସ୍ତ୍ରରେ ପ୍ରକୃତି ପ୍ରତ୍ୟୟ ସହିତ ପଦର ସ୍ୱରୂପ ତଥା ପଦର ଅର୍ଥ ନିର୍ଣ୍ଣିତ ହୁଏ ତାହାହିଁ ବ୍ୟାକରଣ (୧୬୬) ଏହା ବେଦ ପୁରୁଷର ମୁଖ ସ୍ୱରୂପ । ବ୍ୟାକରଣ ଶାସ୍ତ୍ରର ବ୍ୟାଖ୍ୟା କରି କୁହାଯାଇଛି ଏହା ବୃଷଭ ପରି ବନ୍ଧା ଯାଇଛି ଓ ତାହା କାମନା ପୂର୍ଣ୍ଣ କରୁଅଛି । ତାର ଚାରିଟି ଶୃଙ୍ଗ ଅଛି । ତାହା ହେଉଛି ନାମ, ଆଖ୍ୟାତ (କ୍ରିୟା), ଉପସର୍ଗ, ନିପାତ । ତାହାର ତିନି ପାଦ ହେଉଛି ଭୂତ, ବର୍ତ୍ତମାନ ଓ ଭବିଷ୍ୟତ । ସୁପ୍ ଓ ତିଙ୍ ହେଉଛନ୍ତି ତା'ର ଦୁଇଟି ମୁଣ୍ଡ । ତା'ର ୭ ହାତ ହେଉଛି ୭ ବିଭକ୍ତି । ସେହି ବୃଷଭ ଛାତି, କଣ୍ଠ ଓ ମୁଣ୍ଡ ଏହି ତିନି ସ୍ଥାନରେ ବନ୍ଧା ହୋଇଛି । (୧୬୭) ଏହି ମନ୍ତ୍ରର ଏକ ଦାର୍ଶନିକ ବ୍ୟାଖ୍ୟା ହେଉଛି – "ସୁନ୍ଦର ବସ୍ତ୍ର ଦ୍ୱାରା ସୁଶୋଭିତା କାମିନୀ ଯେପରି ନିଜର ପତି ନିକଟରେ ନିଜକୁ ସମର୍ପଣ କରିଥାଏ, ସେହିପରି ବ୍ୟାକରଣରେ ପ୍ରବୀଣ ବିଦ୍ୱାନ ବ୍ୟକ୍ତି ନିକଟରେ ବାଣୀ ନିଜର ସ୍ୱରୂପକୁ ପ୍ରକଟିତ କରିଥାଏ"। (୧୬୮)

"ପରମ୍ପରା କ୍ରମେ ବ୍ୟାକରଣ ହେଉଛି ବେଦାଙ୍ଗର ତୃତୀୟ ଭାଗ । ବେଦ ମନ୍ତ୍ରର ବନାନ ଶୁଦ୍ଧି ଓ ଉଚ୍ଚାରଣ ଶୁଦ୍ଧି ରକ୍ଷା କରିବା ହେଉଛି ବ୍ୟାକରଣର ଉଦ୍ଦେଶ୍ୟ । ଏହା ପ୍ରାଚୀନ ପରମ୍ପରା ଉପରେ ପର୍ଯ୍ୟବସିତ । ଖ୍ରୀ.ପୂ. ୪ର୍ଥ ଶତାବ୍ଦୀରେ ପାଣିନୀ ତାଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥରେ ବ୍ୟାକରଣ ନିୟମରେ ବିଧିବଦ୍ଧତା ଆଣି ଦେଇଥିଲେ । ତାଙ୍କ ପୂର୍ବରୁ ଖ୍ରୀ.ପୂ ୭ମ ଶତାବ୍ଦୀରେ ଯାସ୍କ ବିଭିନ୍ନ ବୈଦିକ ଶବ୍ଦର ଶବ୍ଦତାତ୍ତ୍ୱିକ ଅର୍ଥ ପ୍ରଦାନ କରିଥିଲେ । ଏହାଙ୍କ ପୂର୍ବରୁ ଶକଟାୟନ, ଶାକ ପୁଣି, ଗାଲବ ଇତ୍ୟାଦି ମନିଷୀମାନେ ଏ ବିଷୟରେ ଚର୍ଚ୍ଚା କରିଥିଲେ" । ଦୀର୍ଘଦିନ ପୂର୍ବରୁ ରଚିତ ପାଣିନୀଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥ ଏବେବି ସଂସ୍କୃତ ସାହିତ୍ୟକୁ ନିୟନ୍ତ୍ରଣ କରୁଅଛି । ପାଣିନିଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥ ବ୍ୟାଖ୍ୟାକାର ପତଞ୍ଜଳି ଖ୍ରୀ.ପୂ ୨ୟ ଶତାବ୍ଦୀରେ ଏହି ଗ୍ରନ୍ଥର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଯାଇ ତାଙ୍କ ରଚିତ

ମହାଭାଷ୍ୟ ରେ କହିଛନ୍ତି ଏହା ହେଉଛି "ମହତ୍ ଶାସ୍ତ୍ରୌଘ" ବା "ଶାସ୍ତ୍ରର ମହାସମୁଦ୍ର" । ଶବ୍ଦଗୁଡ଼ିକର ମୌଳିକ ଧାତୁ ନିର୍ଣ୍ଣୟ କରି ସଂକ୍ଷେପରେ ଓ ଅର୍ଥଗର୍ଭକ ଭାବରେ ପ୍ରକାଶ କରିବା ପାଇଁ ଏହି ଅଷ୍ଟାଧ୍ୟାୟୀ ହେଉଛି ପୃଥିବୀର ସର୍ବଶ୍ରେଷ୍ଠ ଗ୍ରନ୍ଥ । (୧୬୯) ପାଣିନୀ ଆଧୁନିକ ଆଫଗାନି ସ୍ଥାନର 'ସଲତୁର' ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଏହି ଗ୍ରାମର ଏଭଳି ପ୍ରସିଦ୍ଧି ଥିଲା ଯେ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ହୁଏନସାଂ ମଧ୍ୟ ସେଠାକୁ ଯାଇଥିଲେ । ହୁଏନସାଂ ତାଙ୍କ ବିବରଣୀରେ ବ୍ୟକ୍ତ କରିଅଛନ୍ତି ଯେ ସେ ଗ୍ରାମରେ ବହୁ ବୈୟାକରଣ ପଣ୍ଡିତ ରହିଥିଲେ ।

ପାଣିନୀଙ୍କ ପୂର୍ବରୁ ବହୁ ବୈୟାକରଣ ଥିବାର କୁହାଯାଇଛି । ସେମାନେ ଯେଉଁ ବୈଦିକ ବ୍ୟାକରଣ ଗ୍ରନ୍ଥ ରଚନା କରିଥିଲେ ତା ହେଉଛି 'ପ୍ରାତିଶାଖ୍ୟ' । ଏହି ଗ୍ରନ୍ଥ ଗୁଡ଼ିକ ବିଭିନ୍ନ ବେଦକୁ ଆଶ୍ରୟ କରିଥିଲେ । ବର୍ତ୍ତମାନ ମାତ୍ର ଛଅଟି ପ୍ରାତିଶାଖ୍ୟ ଗ୍ରନ୍ଥ ଉପଲବ୍ଧ ହେଉଛି । ସେଗୁଡ଼ିକ ହେଲେ (କ) ଋକ୍ ପ୍ରାତିଶାଖ୍ୟ, (ଖ) ଶୁକ୍ଳ ଯଜୁଃ ପ୍ରାତିଶାଖ୍ୟ, (ଗ) ସାମବେଦ ପ୍ରାତିଶାଖ୍ୟ, (ଘ) ଅଥର୍ବ ବେଦ ପ୍ରାତିଶାଖ୍ୟ, (ଙ) ତୈତ୍ତିରୀୟ ପ୍ରାତିଶାଖ୍ୟ ଏବଂ (ଚ) କୃଷ୍ଣ ଯଜୁଃ ପ୍ରାତିଶାଖ୍ୟ । ଏହି ପ୍ରାତିଶାଖ୍ୟ ଗୁଡ଼ିକ ଯେଉଁ ଯେଉଁ ବେଦକୁ ଆଶ୍ରୟ କରି ରଚିତ ହୋଇଛି ତାହାର ପ୍ରାଧାନ୍ୟ ପ୍ରତିପାଦନ କରିଅଛି । ଏଗୁଡ଼ିକ ଖଣ୍ଡିତ ଭାବରେ ଥିବାରୁ ସଂପୂର୍ଣ୍ଣ ଭାବେ ବ୍ୟାକରଣ ମର୍ଯ୍ୟାଦା ଗ୍ରହଣ କରିପାରି ନାହିଁ । ଏଗୁଡ଼ିକର କେବଳ ବର୍ଣ୍ଣ ବିଗ୍ରହ, ପଦ ବିଭାଗ, ସନ୍ଧିବିଚ୍ଛେଦ ଏବଂ ସ୍ୱର ବିଗ୍ରହ ବ୍ୟତୀତ ଅନ୍ୟଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯାଇ ନଥିଲା । ଶବ୍ଦଗୁଡ଼ିକର ବ୍ୟୁତ୍ପତ୍ତିଗତ ବିଗ୍ରହ ନଥିଲା । ମାତ୍ର ଏଗୁଡ଼ିକର ସ୍ୱୀୟଶାଖାର ଶ୍ରେଷ୍ଠତା ବିଶେଷ ଭାବରେ ପ୍ରତିପାଦିତ ହୋଇଥିଲା । ବୈଦିକ ପ୍ରତିଶାଖ୍ୟ ଗ୍ରନ୍ଥ ଗୁଡ଼ିକରେ ଯେଉଁ ଦୋଷ ତ୍ରୁଟି ରହିଥିଲା ତାହାର ନିରାକରଣ ପାଇଁ ପାଣିନୀ ତାଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥରେ ଉଦ୍ୟମ କରିବା ସହିତ ତତ୍କାଳୀନ ସାମାଜିକ ତଥା ରାଜନୈତିକ ଅବସ୍ଥା ସଂପର୍କରେ କେତେକ ଆଲୋକପାତ କରିଅଛନ୍ତି । ଏହାର କେତେକ ଦୃଷ୍ଟାନ୍ତ ଦେଲେ ସହଜରେ ଅନୁମାନ କରିହେବ ।

(କ) ରାଜାଙ୍କର ମନ୍ତ୍ରୀ ପରିଷଦଟିଏ ଥିଲା ଏବଂ ମନ୍ତ୍ରୀ ପରିଷଦ ରାଜାଙ୍କୁ ନିର୍ବାଚିତ କରୁଥିଲା ଏବଂ ଆବଶ୍ୟକତା ପଡ଼ିଲେ ଗାଦିରୁ ହଟାଇ ଦେଉଥିଲା । ଏହି ମନ୍ତ୍ରୀ ପରିଷଦ ଥିଲା 'ରାଜ କର୍ତ୍ତା' ଏବଂ ବହୁ କ୍ଷମତାଶାଳୀ ।

(ଖ) ରାଜାଙ୍କର ବ୍ୟକ୍ତିଗତ ଦେହରକ୍ଷୀ ଥିଲେ । ସେମାନେ 'ରାଜ ପ୍ରତ୍ୟେଣ' ଭାବରେ ପରିଚିତ ଥିଲେ ।

(ଗ) ଦୁଇ ପ୍ରକାର ରାଷ୍ଟ୍ର ଥିଲା । ଗୋଟିଏ କୁହାଯାଉଥିଲା 'ଏକ ରାଜା', ଯେଉଁଥିରେ ରାଜା ମୁଖ୍ୟ ଥିଲେ । ଆଉ ଗୋଟିଏ 'ସଂଘ' ବା 'ଗଣ' ଯେଉଁଥିରେ ଗଣତନ୍ତ୍ର ଶାସନ ଚାଲୁଥିଲା ।

(ଘ) ଗ୍ରାମର ପ୍ରଧାନଙ୍କୁ 'ଗ୍ରାମଣି' କୁହାଯାଉଥିଲା । ସେ ଥିଲେ ଗ୍ରାମସ୍ତରୀୟ କର୍ମଚାରୀ ।

ଉପରୋକ୍ତ ଚିତ୍ରରୁ ଅନୁମିତ ହେଉଛି ଯେ 'ପାଣିନୀ'ଙ୍କ ଅଷ୍ଟାଧ୍ୟାୟୀ ରେ ବ୍ୟାକରଣ ଗତ ବ୍ୟୁତ୍ପତ୍ତି ସହିତ ସାମାଜିକ ତଥା ରାଜନୈତିକ ଚିତ୍ର ଗୁଡ଼ିକ ଦେବାକୁ ସକ୍ଷମ ହୋଇଥିଲା ।(୧୭୦)

ବରରୁଚି ବ୍ୟାକରଣ ପଠନର ଆବଶ୍ୟକତା ନିମିତ୍ତ କେତେକ ବିଷୟର ଉଲ୍ଲେଖ କରିଅଛନ୍ତି । ସେଗୁଡ଼ିକ ହେଲା —

(କ) ରକ୍ଷା - ବେଦର ରକ୍ଷା ନିମିତ୍ତ ବ୍ୟାକରଣ ପଠନର ଆବଶ୍ୟକତା ରହିଅଛି । ମନ୍ତ୍ରର ଶୁଦ୍ଧ ଉଚ୍ଚାରଣକୁ ପ୍ରତ୍ୟେକ ବେଦ ପାଠକ ଜାଣିବା ଉଚିତ୍ । ଏହା ହେଲେ ବେଦ ମନ୍ତ୍ର ରକ୍ଷା ହୁଏ ।

(ଖ) ଉହ- ଏହାର ଅର୍ଥ ନୂତନ ପଦାର୍ଥର କଳ୍ପନା, ବେଦର ଲିଙ୍ଗ ଓ ବିଭକ୍ତିକୁ ଜାଣିବା ଉଚିତ୍ ।

(ଗ) ଆଗମ- ଏହାର ଅର୍ଥ ହେଉଛି ଶ୍ରୁତି । ଶ୍ରୁତିର ପ୍ରମାଣକୁ ସ୍ୱୀକାର କରି ବ୍ୟାକରଣ ପାଠ କରିବା ବେଦ ବିଦ୍ୱାନର କର୍ତ୍ତବ୍ୟ ।

(ଘ) ଲଘୁ - ଲଘୁତା ନିମିତ୍ତ ବ୍ୟାକରଣ ଜ୍ଞାନ ଅପରିହାର୍ଯ୍ୟ ।

(ଙ) ଅସନ୍ଦେହ - ବେଦରେ ସଂଯୋଜିତ ଯେ କୌଣସି ଶବ୍ଦ ବିଷୟରେ ସନ୍ଦେହ ହେଲେ ବ୍ୟାକରଣ ମୋଚନ କରେ । ସମାସ ପଦ ମଧ୍ୟରେ ବିଭିନ୍ନତା ର ସନ୍ଦେହକୁ ବ୍ୟାକରଣ ଦୂରକରେ ।

ବ୍ୟାକରଣ ପ୍ରୟୋଜନ ସଂପର୍କରେ ଉପରୋକ୍ତ ୫ଟି କୁ ଛାଡିଦେଲେ ପାତଞ୍ଜଳି ୧୩ ପ୍ରକାର ପ୍ରୟୋଜନର ଉଲ୍ଲେଖ କରିଛନ୍ତି । ସେଗୁଡିକ ମଧ୍ୟରୁ କେତୋଟି ହେଲା — ଅପ ଭାଷଣ, ଦୁଷ୍ଟ ଶବ୍ଦ, ଅର୍ଥଜ୍ଞାନ, ଧର୍ମ ଲାଭ, ନାମକରଣ ଇତ୍ୟାଦି । "ଶକଟାୟନକୃତ ଋଗ୍‌ତନ୍ତ୍ରରେ ଉଲ୍ଲିଖିତ ହୋଇଛି ବ୍ରହ୍ମା ବ୍ୟାକରଣର ଉପଦେଶ ବୃହସ୍ପତିଙ୍କୁ, ବୃହସ୍ପତି ଇନ୍ଦ୍ରଙ୍କୁ, ଇନ୍ଦ୍ର ଭରଦ୍ୱାଜଙ୍କୁ, ଭରଦ୍ୱାଜ ଅନ୍ୟ ଋଷିମାନଙ୍କୁ ଏବଂ ଋଷିମାନେ ବ୍ରାହ୍ମଣମାନଙ୍କୁ ଦେଇଥିଲେ" । ପୁଣି ଏକ ପ୍ରାଚୀନ ପରମ୍ପରାରୁ ଜଣାପଡେ "ମହେଶ୍ୱର ହେଉଛନ୍ତି ବ୍ୟାକରଣରୂପକ ସମୁଦ୍ର । ବୃହସ୍ପତିଙ୍କ ଠାରେ ସେହି ସମୁଦ୍ରରୁ କୁମ୍ଭ ( ମାଠିଆ ) ପରିମିତ ବ୍ୟାକରଣ ବିଦ୍ୟମାନ । ଇନ୍ଦ୍ରଙ୍କ ଠାରେ କୁମ୍ଭର ଶତାଂଶ ଓ ପାଣିନୀଙ୍କଠାରେ କୁଶର ଅଗ୍ର ଭାଗର ଜଳ ପରିମିତ ବ୍ୟାକରଣ ବିଦ୍ୟମାନ ଥିଲା" । ପାଣିନୀଙ୍କ ପୂର୍ବରୁ ଇନ୍ଦ୍ର —ବ୍ୟାକରଣ ପ୍ରଚଳିତ ଥିଲା । ଇନ୍ଦ୍ର ବ୍ୟାକରଣ ବର୍ତ୍ତମାନ ମିଳୁ ନାହିଁ ; ତାହାର କେବଳ ଉଲ୍ଲେଖ ମାତ୍ର ଅଛି ।(୧୭୧)

**ନିରୁକ୍ତ —**

ନିରୁକ୍ତ ହେଉଛି ବେଦାଙ୍ଗର ଆଉ ଗୋଟିଏ ଭାଗ । ଏହାର ରଚୟିତା ହେଉଛନ୍ତି ଯାସ୍କ । ଯାସ୍କ ହେଉଛନ୍ତି ଖ୍ରୀ.ପୂ ୭ମ ଶତାବ୍ଦୀର । ନିରୁକ୍ତ ହେଉଛି 'ନିଘଣ୍ଟୁ'ର ଏକ ପ୍ରାମାଣିକ ଟୀକା । ଏଥିରେ ବୈଦିକ ମନ୍ତ୍ର ଗୁଡିକର ଶବ୍ଦ ବ୍ୟୁତ୍ପତ୍ତି ଓ ଶବ୍ଦ ବୋଧ ଉଭୟ ବର୍ଣ୍ଣିତ । ନିରୁକ୍ତ ଓ ବ୍ୟାକରଣ ଅଙ୍ଗାଙ୍ଗୀ ଭାବେ ଜଡିତ । ବ୍ୟାକରଣ ଜ୍ଞାନ ବିନା ନିରୁକ୍ତିକୁ ବୁଝି ହେବ ନାହିଁ । ଯାସ୍କ କହିଛନ୍ତି ତାଙ୍କ ନିରୁକ୍ତ ଗ୍ରନ୍ଥଟି "ନା ବୈୟାକରଣାୟ", ଅର୍ଥାତ୍ ବ୍ୟାକରଣ ଜାଣି ନଥିବା ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଯାସ୍କଙ୍କ ପୂର୍ବରୁ ଅଠର ଜଣ ନିରୁକ୍ତକାର, ବୈୟାକରଣ, କୋଷାକାରଙ୍କ ନାମ ଯାସ୍କ ଉଲ୍ଲେଖ କରିଅଛନ୍ତି । ସେମାନେ ହେଲେ (୧) ଆଗ୍ରାୟଣ, (୨) ଔଦୁମ୍ବରାୟଣ, (୩) ଔର୍ଣ୍ଣନାଭ, (୪) କାଥକ୍ୟ, (୫) କ୍ରୌଷ୍ଟୁକ, (୬) ଗାର୍ଗ୍ୟ, (୭) ଗାଲବ, (୮) ଚର୍ମଶିରା, (୯) ତୈଟୀକି, (୧୦) ଶତବଳାକ୍ଷ, (୧୧) ଶାକପୂଣି , (୧୨) ସ୍ଥୌଲାଷ୍ଠୀବି, (୧୩) ଔପମନ୍ୟବ, (୧୪) ଶାକଟାୟନ, (୧୫) ଶାକ୍ୟ, (୧୬) କୌତ୍ସ, (୧୭) ଔର୍ଣ୍ଣବାମ ଏବଂ (୧୮) ବାର୍ଷାୟଣି । ଏହା ଛଡା "ଅନ୍ୟେ" "ଅପରେ" , "ଆଗ୍ରର୍ଯ୍ୟ" ଆଦି ଶବ୍ଦର ପ୍ରୟୋଗ ଦ୍ୱାରା ସେ ସୂଚାଇ ଦେଇଅଛନ୍ତି ଏମାନଙ୍କୁ ଛାଡି ଅନେକ ନିରୁକ୍ତକାର ମଧ୍ୟ ଥିଲେ । ସେମାନଙ୍କର ଗ୍ରନ୍ଥ ଗୁଡିକ ଏବେ ଉପଲବ୍ଧ ହେଉନାହିଁ । ଏଥିରୁ ଅନୁମିତ ହୁଏ ଯେ ବୈଦିକ ନିରୁକ୍ତର ଅଧ୍ୟୟନର ପରମ୍ପରା ଅତି ପ୍ରାଚୀନ । (୧୭୨)

"ବୈଦିକ ଶବ୍ଦ କୋଷ 'ନିଘଣ୍ଟ' ଉପରେ ଟୀକା ଗ୍ରନ୍ଥ ହେଉଛି ନିରୁକ୍ତ । ଏହି 'ନିଘଣ୍ଟ'ରେ ତିନୋଟି କାଣ୍ଡ ଅଛି । ଏହା ହେଲା 'ନୈଘଣ୍ଟୁକ', 'ନୈଗମ' ଓ 'ଦୈବତ' । ପ୍ରଥମ କାଣ୍ଡରେ (ନୈଘଣ୍ଟୁକ) ଏକାର୍ଥ ବୋଧକ ବହୁ ଶବ୍ଦର ସଂକଳନ କରାଯାଇଅଛି । ଦ୍ୱିତୀୟରେ (ନୈଗମ) ବହୁ ଅର୍ଥବୋଧକ ଗୋଟିଏ ଗୋଟିଏ ଶବ୍ଦର ସଂକଳନ କରାଯାଇଛି । ତୃତୀୟରେ (ଦୈବତ) ଋଗ୍‌ବେଦର ସମସ୍ତ ଦେବତାଙ୍କ ନାମ ସଂକଳିତ ହୋଇଅଛି । ନିରୁକ୍ତ ମଧ୍ୟ ଏହିଭଳି ତିନି ଭାଗରେ ବିଭକ୍ତ । ଏଥିରୁ ମନେ ହେଉଛି 'ନିଘଣ୍ଟୁ' ହେଉଛି ମୂଳ ଗ୍ରନ୍ଥ ଓ ନିରୁକ୍ତ ହେଉଛି ଭାଷ୍ୟ ଗ୍ରନ୍ଥ । ମାତ୍ର ଷଡ ବେଦାଙ୍ଗରେ 'ନିଘଣ୍ଟୁ' ର ଉଲ୍ଲେଖ ନରହି 'ନିରୁକ୍ତ'ର ନାମ ରହିଅଛି । ମହାଭାରତରେ ମଧ୍ୟ ନିରୁକ୍ତକାର ଯାସ୍କଙ୍କର ଯଶୋଗାନ କରାଯାଇଛି । (୧୭୩) 'ନିରୁକ୍ତ'ରେ ଭାଷା ବିଜ୍ଞାନ, ସାହିତ୍ୟ, ସମାଜ ଶାସ୍ତ୍ର, ଇତିହାସ ଆଦିର ଏକ ସମନ୍ୱୟ ସଂଘଟିତ । ସେଥିପାଇଁ ବେଦାଙ୍ଗ ମଧ୍ୟରେ ଏହାର ଗୁରୁତ୍ୱ ରହିଅଛି । 'ନିରୁକ୍ତ'ର ଅର୍ଥ ହେଉଛି ବ୍ୟୁତ୍ପତ୍ତି । 'ନିରୁକ୍ତ'ରେ ବୈଦିକ ଶବ୍ଦ ସମାହାର ଦେଖିବାକୁ ମିଳେ । କେଉଁ ଧାତୁରୁ ଶବ୍ଦ ନିଷ୍ପନ୍ନ ହୋଇଛି , କେଉଁ ଧାତୁ ସହିତ ଶବ୍ଦ ସଂପୃକ୍ତ ଏହା ଜାଣିବା ନିମିତ୍ତ 'ନିରୁକ୍ତ' ଜ୍ଞାନ ଆବଶ୍ୟକ । ଭାଷା ବିଜ୍ଞାନ ଦୃଷ୍ଟିରୁ ନିରୁକ୍ତ ଏକ ମହତ୍ୱପୂର୍ଣ୍ଣ ଗ୍ରନ୍ଥ । ଅନେକଙ୍କ ମତରେ 'ନିରୁକ୍ତ'ର ଭାଷା ଅନେକ ସ୍ଥାନରେ ଦୁର୍ବୋଧ୍ୟ ହୋଇପଡିଛି । ଏକଥା ସ୍ୱୀକାର୍ଯ୍ୟ ଶବ୍ଦ ଓ ଅର୍ଥର ନିର୍ବଚନ ଜ୍ଞାନ 'ନିରୁକ୍ତ' ଦେଇଥାଏ ।

**ଛନ୍ଦ –**

ଛନ୍ଦ ହେଉଛି ବେଦର ଅନ୍ୟ ଏକ ଅଙ୍ଗ । ବୈଦିକ ସାହିତ୍ୟ ହେଉଛି ଛନ୍ଦୋବଦ୍ଧ । ପ୍ରତି ଛନ୍ଦର ସ୍ୱର ଲୟ ସହିତ ଗାନ କରିବାର ସ୍ୱତନ୍ତ୍ରତା ରହିଅଛି । ସ୍ୱର ଲୟରେ ବୈଦିକ ମନ୍ତ୍ର ଗୁଡିକ ଗାନ କଲେ ସୁଫଳ ମିଳେ । ଠିକ୍ ଭାବରେ ନଗାଇଲେ କୁଫଳ ମିଳେ ବୋଲି ପ୍ରାୟତଃ ବିଶ୍ୱାସ । ପ୍ରତିଟି ଛନ୍ଦ ନିର୍ଦ୍ଦିଷ୍ଟ ସଂଖ୍ୟକ ବର୍ଣ୍ଣକୁ ଅନୁସରଣ କରିଥାଏ । ପ୍ରଧାନତଃ ଏହା ୭ ପ୍ରକାର ଥିଲା । ବର୍ତ୍ତମାନ ବେଦରେ ପ୍ରଧାନ ପ୍ରଧାନ ୧୭ ଟି ଛନ୍ଦ ବ୍ୟବହୃତ ହେଉଥିବାର ଉପଲବ୍ଧ ହେଉଛି । ସେଗୁଡିକ ହେଲା ଗାୟତ୍ରୀ (ବର୍ଣ୍ଣସଂଖ୍ୟା ୨୪) ଉଷ୍ଣିକ୍ (୨୮) ଅନୁଷ୍ଟୁପ୍ (୩୨) ବୃହତୀ (୩୬) ପଙ୍‌କ୍ତି (୪୦) ତ୍ରିଷ୍ଟୁପ୍ (୪୪) ଜଗତୀ (୪୮) ଅତି ଜଗତୀ (୫୨) ଶକ୍ୱରୀ (୫୬) ଅତି ଶକ୍ୱରୀ (୬୬) କୃତି (୮୦), ପ୍ରକୃତି (୮୪) ଆକୃତି (୮୮) ବିକୃତି (୯୨) ସଂସ୍କୃତି (୯୬) ଅଭିକୃତି (୧୦୦) ଉତ୍କୃତି (୧୦୪) । (୧୭୪)

ପିଙ୍ଗଳାଚାର୍ଯ୍ୟ ହେଉଛନ୍ତି ଛନ୍ଦ ସାହିତ୍ୟର ରଚୟିତା । ପିଙ୍ଗଳ ଛନ୍ଦ ସୂତ୍ରରେ ବୈଦିକ ଓ ଲୌକିକ ଛନ୍ଦ ପରିଲକ୍ଷିତ ହୁଏ । ପିଙ୍ଗଳଙ୍କ ମତରେ ଛନ୍ଦ ଶବ୍ଦ ଛଦ୍ ( ଆବରଣ) ଧାତୁରୁ ନିଷ୍ପନ୍ନ ହୋଇଅଛି । ବୈଦିକ ଛନ୍ଦରେ ଲୌକିକ ଛନ୍ଦ ପରି ଗୁରୁ ଲଘୁ ନିୟମ ପରିଲକ୍ଷିତ ହୁଏ ନାହିଁ । ବୈଦିକ ଛନ୍ଦ ଅକ୍ଷରର ଗଣନା ଉପରେ ଅବସ୍ଥିତ । ଲୌକିକ ସଂସ୍କୃତ ଛନ୍ଦ ଚାରି ଚରଣରେ ବିଭକ୍ତ । କିନ୍ତୁ ବୈଦିକ ଛନ୍ଦରେ ସେପରି ଦେଖାଯାଏ ନାହିଁ ।

ବୈଦିକ ଆର୍ଯ୍ୟମାନଙ୍କ ନିକଟରେ ଛନ୍ଦ ଗୁଡିକ ଥିଲେ ପବିତ୍ର । ସେଗୁଡିକ ଦୈବ ସମ୍ଭବ ଥିଲା ବୋଲି ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଛନ୍ଦର ଶୁଦ୍ଧତା ରକ୍ଷା ନିମିତ୍ତ କାବ୍ୟରେ ଅନ୍ୟ ସବୁ ଦୋଷକୁ କ୍ଷମା ଦିଆଯାଇପାରେ । ଏହି ସବୁ ଦୃଷ୍ଟିରୁ ବିଚାର କରି ବେଦାଙ୍ଗରେ ଛନ୍ଦ ଶାସ୍ତ୍ର ଏକ ମହତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଜ୍ୟୋତିଷ –

ଜ୍ୟୋତିଷ ହେଉଛି ବେଦାଙ୍ଗର ଷଷ୍ଠ ଅଙ୍ଗ । ଏହା ମଧ୍ୟ ଅନ୍ୟ ଅଙ୍ଗ ଭଳି ଗୁରୁତ୍ୱପୂର୍ଣ୍ଣ । ଏଥିରେ ବିଭିନ୍ନ ଶ୍ରେଣୀୟ ବ୍ୟକ୍ତି ଭିନ୍ନ ଭିନ୍ନ ସମୟରେ ଅଗ୍ନ୍ୟାଧାନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ବସନ୍ତ ଋତୁରେ ବ୍ରାହ୍ମଣ ମାନେ, ଗ୍ରୀଷ୍ମରେ ରାଜନ୍ୟବର୍ଗ, ଶରତରେ ବୈଶ୍ୟମାନେ ଅଗ୍ନିଧ୍ୟାନ କରୁଥିଲେ । ଏଥିରେ ତିଥି, ନକ୍ଷତ୍ର ,ମାସ, ପକ୍ଷ ଆଦି ସହିତ ବିବିଧ ବୈଦିକ ଯଜ୍ଞ ସଂପୃକ୍ତ । ଶୁଭ ସମୟ, ଶୁଭ ଦିନ, ଶୁଭ ମାସ ତିଥି, ନକ୍ଷତ୍ର ଇତ୍ୟାଦିରେ ଯଜ୍ଞ କର୍ମ ଆରମ୍ଭ ହେବା ବିଧେୟ । ନକ୍ଷତ୍ର, ତିଥି, ଲଗ୍ନ ଇତ୍ୟାଦିର ଉଚିତ ସମୟ ଜାଣିବା ନିମିତ୍ତ ଜ୍ୟୋତିଷ-ଶାସ୍ତ୍ରର ଏକାନ୍ତ ଆବଶ୍ୟକ । ଏ ପର୍ଯ୍ୟନ୍ତ ବୈଦିକ ସାହିତ୍ୟରେ "ଆର୍ଯ୍ୟଜ୍ୟୋତିଷ" ତଥା ଯାଜୁଷ ଜ୍ୟୋତିଷ ଉପଲବ୍ଧ ହୁଏ । ବେଦାଙ୍ଗ ଜ୍ୟୋତିଷ ଗ୍ରନ୍ଥ ଶ୍ଳୋକରେ ରଚିତ ଏବଂ ଆକାରରେ କ୍ଷୁଦ୍ର । 'ଲଗ୍ଧ' ହେଉଛନ୍ତି ଏହି ଜ୍ୟୋତିଷର ରଚୟିତା । ଏଥିରେ ଋଗ୍ ବେଦରୁ ୩୬ ମନ୍ତ୍ର, ଯଜୁର୍ବେଦରୁ ୪୩ ମନ୍ତ୍ର ଓ ଅଥର୍ବ ବେଦରୁ ୧୬୨ ମନ୍ତ୍ର ରହିଅଛି ।

ବେଦାଙ୍ଗ ଜ୍ୟୋତିଷର ସମୟ ସଂପର୍କରେ ନାନାମତ ଦେଖାଯାଏ । ମ୍ୟାକ୍ସମୁଲାର ଏହାକୁ ଖ୍ରୀ.ପୂ. ୩୦୦ରେ ସ୍ଥାନିତ କରିଅଛନ୍ତି । ହ୍ୱିଟେନ ଏହାକୁ ଖ୍ରୀ.ପୂ. ୧୪୦୮ରେ ସ୍ଥାନିତ କଲାବେଳେ ବାଳ ଗଙ୍ଗାଧର ତିଳକ ଏହାର ସମୟ ଖ୍ରୀ.ପୂ. ୧୨୦୦ରୁ ଖ୍ରୀ.ପୂ ୧୪୦୦ ବୋଲି ମତ ବ୍ୟକ୍ତ କରିଅଛନ୍ତି ।

ଜ୍ୟୋତିଷର ସୃଷ୍ଟି ଯଜ୍ଞ କର୍ମ ସହିତ ସମ୍ବନ୍ଧିତ । ଯଜ୍ଞ କର୍ମ ଏକ ବିଧିବଦ୍ଧ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇଥିଲା । ଯଜ୍ଞର ଆରମ୍ଭ ଏକ ନିର୍ଦ୍ଦିଷ୍ଟ ସମୟରେ ଆରମ୍ଭ ହୋଇ ନିର୍ଦ୍ଦିଷ୍ଟ ସମୟରେ ଶେଷ ହେଉଥିଲା । ପ୍ରାଥମିକ ଅବସ୍ଥାରେ ବର୍ଷର ଗଣନା ଯଜ୍ଞ ଭିତ୍ତିକ ଥିଲା । ଏହା ସୂର୍ଯ୍ୟଙ୍କର ବାର୍ଷିକ ଗତିକୁ ଅନୁସରଣ କରାଯାଉଥିଲା । ବିଭିନ୍ନ ବୈଦିକ ଗ୍ରନ୍ଥରେ ଜ୍ୟୋତିଷ ସଂପର୍କରେ ବିଭିନ୍ନ ପ୍ରକାର ଉଲ୍ଲେଖ କରାଯାଇଅଛି । ସେଥିରୁ କେତୋଟି ପଂକ୍ତି ପ୍ରଦତ୍ତ ହେଲା -

(କ) ସୂର୍ଯ୍ୟ ବିଷୁବ ରେଖାର ଉତ୍ତରକୁ ଗତି କରୁଥିବା ସମୟକୁ ଦେବଯାନ ବୋଲି କୁହାଯାଏ । ଏହା ହେଉଛି ସୂର୍ଯ୍ୟଙ୍କର ଛଅ ମାସ ଧରି ହେଉଥିବା ଉତ୍ତରାୟଣ । (୧୭୫)

(ଖ) ଗୋଟିଏ ସୂକ୍ତରେ ଅତ୍ରି ମୁନି ପୂର୍ଣ୍ଣ ସୂର୍ଯ୍ୟୋପରାଗ ଦେଖିଥିବା କଥା ଉଲ୍ଲିଖିତ ।(୧୭୬)

(ଗ) ବର୍ଷର ନାମକୁ ସମ୍ବତ୍ସର ବୋଲି କୁହାଯାଇଛି । (୧୭୭)

(ଘ) ଦିନ ଓ ରାତ୍ରିକୁ ଏକତ୍ର ଅହୋରାତ୍ର ବୋଲି କୁହାଯାଇଛି । (୧୭୮)

(ଙ) ଦିନ ଓ ରାତ୍ରି ମଧ୍ୟରେ ବିଭାଜନ ହେଉଥିବା କଥା ଉଲ୍ଲିଖିତ । (୧୭୯)

(ଚ) ଦିନକୁ ଅର୍ଜୁନ ବା ପ୍ରକାଶମୟ ବୋଲି କୁହାଯାଇଛି ଏବଂ ରାତିକୁ କୃଷ୍ଣ ବୋଲି କୁହାଯାଇଛି । (୧୮୦)

(ଛ) ବାର ରାଶିର ଗଣନାରେ ବର୍ଷର ୩୬୦ ଦିନ ବୋଲି ଧରାଯାଇଛି ।(୧୮୧)

(ଜ) ମଧୁ, ମାଧବ, ଶୁକ୍ର, ସୁଚି, ନିସସ୍, ନିସସ୍ୟ, ତୁଷ, ଉର୍ଜ, ସହସ, ସହସ୍ୟ ତପସ ଓ ତପସ୍ୟ ଭାବରେ ବାରମାସର ନାମ ଉଲ୍ଲିଖିତ । (୧୮୨)

(ଝ) ସମୟ ସ୍ଥାନର ନିଦର୍ଶନ ସ୍ୱରୂପ ଆମେ ଯୁଗ ଶବ୍ଦର ପ୍ରୟୋଗ ଦେଖିଥାଉଁ ।(୧୮୩)

(ଞ) ସର୍ବଶକ୍ତିମାନ ସୂର୍ଯ୍ୟଙ୍କ ଆଗମନରେ ନକ୍ଷତ୍ର, ତାରା ଓ ରାତି ଚୋର ଭଳି ପଳାଇ ଯାଆନ୍ତି । (୧୮୪)

(ଟ) ସପ୍ତର୍ଷି ମଣ୍ଡଳର ନାମୋଲ୍ଲେଖ ଅଛି । ଏହାକୁ ଋଷ ବୋଲି କୁହାଯାଇଛି । (୧୮୫)

(ଠ) ଉଲ୍କାକୁ ଜ୍ୟୋତିଷକୁ ଶୁକ୍ର ବୋଲି କୁହାଯାଇଛି । (୧୮୬)

(ଡ) ନକ୍ଷତ୍ର ବିଦ୍ୟା ସଂପର୍କରେ ନାରଦ ଓ ସନତ୍ କୁମାରଙ୍କ କଥୋପକଥୋନରହିଅଛି ।(୧୮୭)

(ଢ) ମଧୁ ମାଧବର ବର୍ଣ୍ଣନା ରହିଅଛି ଏବଂ ବସନ୍ତରୁ ମାସର ଗଣନା କରାଯାଇଛି ।(୧୮୮)

(ଣ) ମୁହୂର୍ତ୍ତ, ସପ୍ତର୍ଷି, ଦିନ, ରାତ୍ରି, ଶୁକ୍ଳପକ୍ଷ, କୃଷ୍ଣପକ୍ଷ, ଉତ୍ତରାୟଣ ଓ ଦକ୍ଷିଣାୟନ ପ୍ରଭୃତି ଶବ୍ଦ ଗୁଡିକର ଉଲ୍ଲେଖ ଅଛି । (୧୮୯)

**ଅନୁକ୍ରମଣୀ –**

ପୂର୍ବେ ଶୁଣି ଶୁଣି ବେଦମନ୍ତ୍ର ଗୁଡିକୁ ମନେ ରଖା ଯାଉଥିଲା । କାରଣ ପ୍ରାଚୀନ କାଳରେ ମୁଦ୍ରାଯନ୍ତ୍ର ଓ କାଗଜ କଲମର ବ୍ୟବହାର ନଥିଲା । ସେତେବେଳେ କେଉଁ ମନ୍ତ୍ରକୁ କେଉଁ ଋଷି ଲାଭ କରିଥିଲେ, କେଉଁ ମନ୍ତ୍ରର ଦେବତା କିଏ ; କେଉଁ ଶାଖାରେ କେତେ ଅନୁବାକ୍ ଅଛି ଇତ୍ୟାଦି ବିଷୟକୁ ଆମୂଳଚୂଳ ଆୟତ କରି ସ୍ମରଣ କରି ରଖିବା ହୁଏତ କଷ୍ଟକର ହୋଇ ପଡିଥିବ । ଫଳରେ ମନ୍ତ୍ର, ଦେବତା ଓ ଋଷିମାନଙ୍କର ନାମ ଉଚ୍ଚାରଣ କରିବାରେ ବ୍ୟତିକ୍ରମ ହେବାର ସମ୍ଭାବନା ଥିବାରୁ ; ଏହି ସମ୍ଭାବନାକୁ ଦୂରକରି ବୈଦିକ ମନ୍ତ୍ରଗୁଡିକ ଶୁଦ୍ଧତା ରକ୍ଷା କରିବା ଉଦ୍ଦେଶ୍ୟରେ ଅନୁକ୍ରମଣୀ ଓ ବୃହଦ୍ଦେବତା ଗ୍ରନ୍ଥ ଆଦିର ସୃଷ୍ଟି ହୋଇଥିଲା । ବୈଦିକ ସାହିତ୍ୟର ରକ୍ଷା ନିମିତ୍ତ ଏହି ନୂତନ ଶୈଳୀର ସୃଷ୍ଟି ହେଲା ବେଦମନ୍ତ୍ରର ଋଷି, ଦେବତା, ଛନ୍ଦ ଇତ୍ୟାଦିର ଯେଉଁ ସୂଚୀ ପ୍ରସ୍ତୁତ କରାଗଲା ତାହା ଅନୁକ୍ରମଣୀ ନାମରେ ବିଦିତ ହେଲା । ପ୍ରତ୍ୟେକ ବେଦର ଅନୁକ୍ରମଣୀ ଏବେ ଉପଲବ୍ଧ ଏବଂ ସେଗୁଡିକ ମଧ୍ୟରୁ ଅନେକ ମୁଦ୍ରିତ ।

ଅନୁକ୍ରମଣୀ ସ୍ଥୂଳତ ବେଦମନ୍ତ୍ରଗୁଡିକର କ୍ରମବଦ୍ଧ ସୂଚୀ । ଏଥିରେ ବିଭିନ୍ନ ମନ୍ତ୍ର ଗୁଡିକର ଦେବତା, ଋଷି, ଛନ୍ଦ, ମନ୍ତ୍ରପାଠର କ୍ରମ ଆଦି ବିଷୟ ଉଲ୍ଲେଖିତ । ଏଭଳି ବ୍ୟବସ୍ଥା ଥିବାରୁ ବେଦମନ୍ତ୍ର ଗୁଡିକରେ ଆଉ ପ୍ରକ୍ଷିପ୍ତ ପାଠ ଏ ପର୍ଯ୍ୟନ୍ତ ପଶି ପାରିନାହିଁ । ଶୌନକ ଋଷିଙ୍କ କୃତ ଦଶଗୋଟି ଅନୁକ୍ରମଣୀ ବିଷୟରେ କାତ୍ୟାୟନ ତାଙ୍କ କୃତ "ଋକ୍ ସର୍ବାନୁକ୍ରମଣୀ" ଗ୍ରନ୍ଥର ଭୂମିକାରେ ଉଲ୍ଲେଖ କରିଅଛନ୍ତି । ସେଗୁଡିକ ହେଲା -: (କ) ଆର୍ଷାନୁକ୍ରମଣୀ, (ଖ) ଛନ୍ଦୋଽନୁକ୍ରମଣୀ, (ଗ) ଦେବତାନୁକ୍ରମଣୀ, (ଘ) ଅନୁବାକାନୁକ୍ରମଣୀ, (ଙ) ସୂକ୍ତାନୁକ୍ରମଣୀ, (ଚ) ଋଗ୍ ବିଧାନ, (ଛ) ପାଦ ବିଧାନ, (ଜ) ବୃହଦ୍ଦେବତାନୁକ୍ରମଣୀ, (ଝ) ପ୍ରାତିଶାଖ୍ୟାନୁ କ୍ରମଣୀ ଓ (ଞ) ଶୌନକ ସ୍ମୃତି ଅନୁକ୍ରମଣୀ । (୧୯୦) ଅନୁକ୍ରମଣୀମାନଙ୍କ ମଧ୍ୟରେ କାତ୍ୟାୟନ କୃତ ଉପରୋକ୍ତ ଗ୍ରନ୍ଥଟି ସର୍ବ ବୃହତ୍ ଓ ସର୍ବ ପ୍ରଧାନ ଅଟେ । ଏହି ଅନୁକ୍ରମଣୀର ରଚୟିତା କାତ୍ୟାୟନ ଓ ବୈୟାକରଣ କାତ୍ୟାୟନ ଭିନ୍ନ ବ୍ୟକ୍ତି ଅଟନ୍ତି । ବୈୟାକରଣ କାତ୍ୟାୟନ ପାଣିନୀଙ୍କର (ଖ୍ରୀ.ପୂ. ୪ର୍ଥ ଶତାବ୍ଦୀ) ପରବର୍ତ୍ତୀ ; କିନ୍ତୁ "ଋକ୍ ସର୍ବାନୁକ୍ରମଣୀ" ରଚୟିତା କାତ୍ୟାୟନ ପାଣିନିଙ୍କର ପୂର୍ବବର୍ତ୍ତୀ । (୧୯୧) ଛାନ୍ଦୋଗ୍ୟ ଉପନିଷଦ୍‌ରେ କାତ୍ୟାୟନ ବୋଲି ଜଣେ ଋଷିଙ୍କ ନାମ ଉଲ୍ଲିଖିତ । ସେ ହୁଏତ ସେହି କାତ୍ୟାୟନ ହୋଇ ପାରନ୍ତି ।

ଆର୍ଷାନୁକ୍ରମଣୀ ଦଶଟି ମଣ୍ଡଳରେ ବିଭକ୍ତ । ଏଥିରେ ଋକ୍ ବେଦ ମନ୍ତ୍ରର କ୍ରମେ ଦଶ ମଣ୍ଡଳର ଋଷି ଏବଂ ସେମାନଙ୍କର ବଂଶାନୁକ୍ରମଣୀର ସୂଚୀ ପ୍ରସ୍ତୁତ ହୋଇଅଛି । ଛନ୍ଦୋଽନୁକ୍ରମଣୀ ଦଶ ମଣ୍ଡଳରେ

ବିଭକ୍ତ । ଏଥିରେ ଋକ୍‌ବେଦ ଅନ୍ତର୍ଗତ ମନ୍ତ୍ରର ଏକ କ୍ରମ ଦିଆଯାଇଛି । 'ଅନୁବାକ୍ କ୍ରମଣୀ'ରେ ଋକ୍ ବେଦର ଋଗ୍‌ର ସଂଖ୍ୟା ୧୦୫୮୦ ବୋଲି କୁହାଯାଉଛି । ଋକ୍‌ବେଦର ଶୈଶରୀୟ ଶାଖାରେ ଅନୁବାକ୍‌ର ସଂଖ୍ୟା ହେଉଛି ୮୫, ସୂକ୍ତ ୧୦୧୭ ଏବଂ ମନ୍ତ୍ରର ସଂଖ୍ୟା ୧୦୪୧୭ । 'ସୂକ୍ତାନୁକ୍ରମଣୀ'ରେ ଋକ୍‌ବେଦର ସୂକ୍ତର ସୂଚୀ ଦିଆ ହୋଇଛି । ପାଦ ବିଧାନରେ ଋକ୍ ବେଦର ଶବ୍ଦସୂଚୀ ପ୍ରସ୍ତୁତ ହୋଇଛି । ଋକ୍ ପ୍ରାତିଶାଖ୍ୟର ଅନ୍ୟ ନାମ 'ପାର୍ଷଦ ସୂତ୍ର' । ଏହା ଋକ୍ ବେଦର ବ୍ୟାକରଣ । ଅନୁକ୍ରମଣୀ ଭିତରେ କାତ୍ୟାୟନ ବିରଚିତ ସର୍ବାନୁକ୍ରମଣୀ ଏକ ଉପାଦେୟ ଗ୍ରନ୍ଥ ।

**ଯାଜୁଷ ଅନୁକ୍ରମଣୀ –**

ଏହାକୁ 'ଶୁକ୍ଳ ଯଜୁଃ ସର୍ବାନୁକ୍ରମଣୀ' ସୂତ୍ର କୁହାଯାଏ । କାତ୍ୟାୟନଙ୍କୁ ଏହାର ରଚୟିତା ବୋଲି ଅନୁମାନ କରାଯାଏ । ଏହା ପାଞ୍ଚ ଅଧ୍ୟାୟରେ ବିଭକ୍ତ । ଏଥିରେ ଋଗ୍ ଓ ଛନ୍ଦ ସ୍ଥାନର ମହିମା କୀର୍ତ୍ତିତ ହୋଇଛି ।

ସାମବେଦର ଆଠଟି ଅନୁକ୍ରମଣୀ ମିଳେ ।

(୧) କଳ୍ପାନୁପଦସୂତ୍ର, (୨) ଉପଗ୍ରନ୍ଥ ସୂତ୍ର, (୩) ଅନୁପଦ ସୂତ୍ର, (୪) ନିଦାନ ସୂତ୍ର, (୫) ଉପନିଦାନ ସୂତ୍ର, (୬) ପଞ୍ଚ ବିଧାନ ସୂତ୍ର, (୭) ଲଘୁଋଗ୍‌ତନ୍ତ୍ର ସଂଗ୍ରହ, (୮) ସାମସପ୍ତ ଲକ୍ଷଣ । ଏଥିରୁ ପ୍ରଥମଟି ଅପ୍ରକାଶିତ । ଉକ୍ତ ଗ୍ରନ୍ଥଗୁଡ଼ିକରେ ସାମ୍‌ବେଦର ଋଷି, ମନ୍ତ୍ର ଇତ୍ୟାଦିର ବିବରଣୀ ମିଳେ ।

ଅଥର୍ବବେଦ ସହିତ ସଂପୃକ୍ତ ବୃହତ୍ ସର୍ବାନୁକ୍ରମଣୀ ଏକ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏଥିରେ ଅଥର୍ବ ବେଦର ଋଷି, ଦେବତା, ଛନ୍ଦ ଇତ୍ୟାଦିର ବିସ୍ତୃତ କ୍ରମ ପ୍ରସ୍ତୁତ ହୋଇଅଛି । ଏହି ବିଭାଗରେ ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ହେଉଛି ଶୌନକ ରଚିତ 'ଚରଣ ବ୍ୟୂହ' । ଏହା ପାଞ୍ଚ ଖଣ୍ଡରେ ବିଭକ୍ତ । ଏଥିରେ ଋକ୍ ବେଦ, ଯଜୁଃର୍ବେଦ, ସାମବେଦ, ଅଥର୍ବ ବେଦ ଶାଖାର କ୍ରମ ଓ ବିବରଣୀ ସନ୍ନିବେଶିତ ହୋଇଅଛି । ଏହି ବିଭାଗର ଦ୍ୱିତୀୟ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ହେଉଛି 'ନୀତି ମଞ୍ଜରୀ' । ଏଥିରେ ଋକ୍‌ବେଦର ଅନ୍ତର୍ଗତ ଆଖ୍ୟାନ ଉତ୍ତମ ରୂପରେ ସଂକଳିତ ହୋଇଛି । ପ୍ରତି ଶ୍ଳୋକରେ ନିର୍ଦ୍ଦିଷ୍ଟ ମନ୍ତ୍ରର ବ୍ୟାଖ୍ୟା କରାଯାଇଛି । ଉକ୍ତ ଗ୍ରନ୍ଥଦ୍ୱୟ ପରବର୍ତ୍ତୀ କାଳର ରଚନା ।

**ବୃହଦ୍ଦେବତା –**

ବୃହଦ୍ଦେବତା ଗ୍ରନ୍ଥରେ ବିଭିନ୍ନ ଦେବତାମାନଙ୍କର ମହତ୍ତ୍ୱ ପ୍ରତିପାଦିତ କରାଯାଇଛି । ଏହି ଗ୍ରନ୍ଥ ଆଠ ଅଧ୍ୟାୟରେ ବିଭକ୍ତ । ଏଥିରେ ଋକ୍‌ବେଦର ଦେବତାଙ୍କ ବିସ୍ତୃତ ବର୍ଣ୍ଣନା ପରିଲକ୍ଷିତ ହୁଏ । ଏହା ଏକ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏଥିରେ ସୁନ୍ଦର ସୁନ୍ଦର ଆଖ୍ୟାନ ପରିଲକ୍ଷିତ ହୁଏ । ଏହି ଗ୍ରନ୍ଥର ପ୍ରାୟ ଏକ ଚତୁର୍ଥାଂଶ କେବଳ ଦେବତାମାନଙ୍କର ସମ୍ପର୍କରେ ଲିଖିତ । ଏହି କାହାଣୀଗୁଡ଼ିକ ଋଷି ଓ ରାଜାମାନଙ୍କୁ ନେଇ ସୃଷ୍ଟି । ଏଥିରେ ମଧ୍ୟ ବ୍ୟାକରଣ ସମ୍ବନ୍ଧୀୟ ଉପସର୍ଗ, ଲିଙ୍ଗ, ସର୍ବନାମ, ସମାସ, ସନ୍ଧି ଆଦି ବିଷୟ ବର୍ଣ୍ଣିତ । ଫଳତଃ ଏଥିରେ ଦୈବ ଏବଂ ଲୌକିକ ଉଭୟ ବିଷୟବସ୍ତୁର ସମନ୍ୱୟ ଘଟିଛି । ଏହି ବୃହଦ୍ଦେବତା ଗ୍ରନ୍ଥ ଅନ୍ତର୍ଗତ ଆଖ୍ୟାନର କାବ୍ୟିକସଶୈଳୀ ସହିତ ମହାଭାରତ ବର୍ଣ୍ଣିତ ଉପାଖ୍ୟାନର

ଶୈଳୀର ସାମଞ୍ଜସ୍ୟ ପରିଲିକ୍ଷିତ ହୁଏ । ଉଭୟ ଗ୍ରନ୍ଥର ଆଖ୍ୟାନର ତୁଳନା କଲେ ଜଣାପଡେ ମହାଭାରତରେ ବୃହଦେବତାର ଅନୁକରଣ କରାଯାଇଛି । ବୃହଦେବତାରେ ଅପାଣିନୀୟ ଶବ୍ଦ ପ୍ରଯୁକ୍ତ ହୋଇଥିବାରୁ ତାହାକୁ ଖ୍ରୀ.ପୂ. ଅଷ୍ଟମ ଶତକର ରଚନା ରୂପେ ଗ୍ରହଣ କରାଯାଇଛି ।

**ଯଜ୍ଞ –**

ଯଜ୍ଞ ହେଉଛି ବୈଦିକ ଧର୍ମର ଆତ୍ମା ଏବଂ ପ୍ରାଣ ସ୍ୱରୂପ । ବୈଦିକ ସାହିତ୍ୟ ତଥା ଲୌକିକ ସଂସ୍କୃତ ସାହିତ୍ୟର ବହୁସ୍ଥାନରେ ଯଜ୍ଞର ପ୍ରଶଂସା କରାଯାଇଛି । ଅଥର୍ବବେଦରେ କୁହାଯାଇଛି ଯଜ୍ଞ ହେଉଛି ସଂସାରର ନାଭି ସ୍ୱରୂପ ବା ଉତ୍ପତ୍ତି ସ୍ଥଳ । (୧୯୨) ଯଜ୍ଞରୁ ସମସ୍ତ ପଦାର୍ଥ ଓ ଜୀବଜନ୍ତୁ ଉତ୍ପନ୍ନ ହୋଇଥିବା କଥା ଋକ୍‌ବେଦରେ ଉଲ୍ଲେଖ ହୋଇଛି । ପ୍ରସିଦ୍ଧ 'ପୁରୁଷ ସୂକ୍ତ'ରେ କୁହାଯାଇଛି ଦେବତାମାନେ ଧ୍ୟାନ ଯଜ୍ଞରେ ଯଜ୍ଞ ପୁରୁଷର ପୂଜା ସମ୍ପାଦନା କଲେ । (୧୯୩) ଯଜ୍ଞ ହେଉଛି ଶ୍ରେଷ୍ଠତମ କର୍ମ (୧୯୪) ଯଜ୍ଞକୁ ଈଶ୍ୱରଙ୍କର ସ୍ୱରୂପ ରୂପେ ସ୍ୱୀକାର କରାଯାଇଛି । (୧୯୫) ଏଥିରୁ ଜଣାପଡେ ଯଜ୍ଞ ଈଶ୍ୱର ତଥା ଧର୍ମର ସାକ୍ଷାତ୍ ପ୍ରତୀକ ସ୍ୱରୂପ । ଧର୍ମର ଅର୍ଥ ହେଉଛି ଯାହା ଧାରଣ ବା ରକ୍ଷଣ କରେ । (୧୯୬)

ଯଜ୍ଞର ରହସ୍ୟ ପ୍ରତିପାଦନ ନିମିତ୍ତ 'ଆପସ୍ତମ୍ବ' ଏକ ମହାତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ରଚନା କରିଛନ୍ତି । ତାହା ହେଉଛି ଯଜ୍ଞ ପରିଭାଷା ସୂତ୍ର. ଯଜ୍ଞ ଶବ୍ଦର ଅର୍ଥ ହେଉଛି ସ୍ୱାର୍ଥତ୍ୟାଗ ପୂର୍ବକ ପୂଜା । ଅନେକ ବିଦ୍ୱାନ ଯଜ୍ଞକୁ ପରୋପକାର ଅର୍ଥରେ ଗ୍ରହଣ କରିଛନ୍ତି । ବୈଦିକ ଯଜ୍ଞ ହେଉଛି ଦୁଇ ପ୍ରକାର – ଶ୍ରୌତ ଓ ଗୃହ୍ୟଯଜ୍ଞ । ଶ୍ରୌତ ଯଜ୍ଞ ଶ୍ରୌତସୂତ୍ରରେ ଏବଂ ଗୃହ ଯଜ୍ଞ ଗୃହ୍ୟ ସୂତ୍ରରେ ବିବୃତ ହୋଇଛି । ବିଧି ପୂର୍ବକ ଦୀକ୍ଷା ଗ୍ରହଣ କଲେ ମନୁଷ୍ୟ ଶ୍ରୌତ ଯଜ୍ଞର ଅଧିକାରୀ ହୋଇଥାଏ । କେବଳ "ଉପନୀତ" ହେଲା ପରେ ଗୃହ୍ୟ ଯଜ୍ଞର ଅଧିକାରୀ ହୋଇଥାଏ । ଶ୍ରୌତ ଯଜ୍ଞ ପୁଣି ଦୁଇ ଭାଗରେ ବିଭକ୍ତ । ଯଥା - - "ସୋମସଂସ୍ଥା ଓ ହବିଃ ସଂସ୍ଥା" । ଗୃହ୍ୟ ଯଜ୍ଞକୁ 'ପାକ ଯଜ୍ଞ' ନାମରେ ଅବିହିତ କରାଯାଇଛି । ଉକ୍ତ ତିନି ପ୍ରକାର ଯଜ୍ଞ ଭିତରୁ ପ୍ରତ୍ୟେକଟି ସାତଟି ଭାଗରେ ବିଭକ୍ତ । ତାହା ଶ୍ରୌତ ଓ ଗୃହ୍ୟ ସୂତ୍ରରେ ବିସ୍ତୃତ ରୂପରେ ବର୍ଣ୍ଣିତ ହୋଇଛି । **(କ) ପାକ ଯଜ୍ଞ ସଂସ୍ଥା -** ୧) ସାୟଂ ହୋମ. (୨) ପ୍ରାତ ହୋମ. (୩) ସ୍ଥାଳୀପାକ. (୪) ନବଯଜ୍ଞ. (୫) ବୈଶ୍ୱଦେବ. (୬) ପିତୃଯଜ୍ଞ ଏବଂ (୭) ଅଷ୍ଟକ ।**(ଖ) ସୋମ ସଂସ୍ଥା ଯଜ୍ଞ -** (୧) ଅଗ୍ନିଷ୍ଟୋମ. (୨) ଅତ୍ୟଗ୍ନିଷ୍ଟୋମ. (୩) ଉଥ୍ୟ. (୪) ଷୋଡଶୀ (୫) ବାଜପେୟ (୬) ଅତିରାତ୍ର ଏବଂ (୭) ଅପ୍ତୋର୍ଯ୍ୟାମ । **(ଗ) ହବି ଯଜ୍ଞ ସଂସ୍ଥା -** (୧) ଅଗ୍ନ୍ୟାଧେୟ. (୨) ଅଗ୍ନିହୋତ୍ର. (୩) ଦର୍ଶ. (୪) ପୌର୍ଣ୍ଣମାସ. (୫) ଆଗ୍ରାୟଣ. (୬) ଚାତୁର୍ମାସ୍ୟ. (୭) ପଶୁବନ୍ଧ ।

ଶ୍ରୌତ ଓ ଗୃହ୍ୟ ସୂତ୍ରରେ କେଉଁ ଯଜ୍ଞକୁ କ୍ରତୁ ଓ କେଉଁ ଯଜ୍ଞକୁ ସୂତ୍ର କୁହାଯାଏ ତାହା ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । କେଉଁ ଜାତି କେଉଁ ସମୟରେ କେଉଁ ଯଜ୍ଞ କରିବ ତାହା ମଧ୍ୟ ଉଲ୍ଲେଖ କରାଯାଇଛି । ଏହି ଯଜ୍ଞ ଗୁଡିକର ପରିସମାପ୍ତିର ସମୟ ମଧ୍ୟ ନିର୍ଦ୍ଦିଷ୍ଟ ହୋଇଅଛି । କୂମ୍ଭୀର (୧୯୭) ଓ ମାଂସପାକ (୧୯୮) ଇତ୍ୟାଦିର ବର୍ଣ୍ଣନା ଏଥିରେ ମିଳେ । ଚର୍ବିପାକ (୧୯୯) ବିଷୟରେ ବୈଦିକ ସାହିତ୍ୟରେ ବର୍ଣ୍ଣନା ଦେଖିବାକୁ ମିଳେ । ଏହି ବର୍ଣ୍ଣନାରୁ ଯଜ୍ଞରେ ପଶୁବଳି ଦିଆଯିବାର ପ୍ରକାଶ ମିଳୁଅଛି । ଏହି ପଶୁ ବଳି ପ୍ରଦାନ ସଂପର୍କରେ ବିଭିନ୍ନ ଗବେଷକ ଭିନ୍ନ ଭିନ୍ନ ମତ ପ୍ରଦାନ କରିଥାନ୍ତି । ଯେଉଁ ଗବେଷକମାନେ ବେଦର ଆଧ୍ୟାତ୍ମିକ ବ୍ୟାଖ୍ୟା କରିଅଛନ୍ତି ସେମାନେ ବେଦର ପଶୁବଳୀକୁ ଅସ୍ୱୀକାର

କରିଅଛନ୍ତି । ବର୍ଣ୍ଣିତ ଶବ୍ଦ ଗୁଡିକୁ ଭିନ୍ନ ଅର୍ଥରେ ବ୍ୟାଖ୍ୟା କରିଅଛନ୍ତି । ପଶୁ ଯଜ୍ଞ ସ୍ଥାନରେ 'ଅନୁକଳ୍ପ' ପ୍ରଥାର ମଧ୍ୟ ଉଲ୍ଲେଖ ଏହି ଗ୍ରନ୍ଥ ଗୁଡିକରୁ ମିଳିଥାଏ । ପଶୁ ସ୍ଥାନରେ 'ଅଟା' ଆଦିର ବଳି ଦିଆ ଯିବାର ବିଧାନ ବୈଦିକ ସାହିତ୍ୟରେ ରହିଅଛି ।

ସାୟଣାଚାର୍ଯ୍ୟ ତାଙ୍କର ବେଦଭାଷ୍ୟରେ ସକଳ ବୈଦିକ ମନ୍ତ୍ର ଯଜ୍ଞାଭିମୁଖୀ ବୋଲି କହିଅଛନ୍ତି । ମଣିଷ ଅବିରାମ ଜୀବନଯାତ୍ରା କରୁଅଛି । ପ୍ରତିଟି ମୁହୂର୍ତ୍ତରେ ସେ ଯେଉଁ କର୍ମ କରୁଅଛି ତାହା ହେଉଅଛି ଯଜ୍ଞ । ଏହି ଜୀବନ ଯାତ୍ରାକୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳନା କରି ପରିଶେଷରେ ଆତ୍ମୋପଲବ୍ଧି କରି ମୁକ୍ତି ବା ମୋକ୍ଷର ଅଧିକାରୀ ହେବା ହେଉଛି ଆତ୍ମାର ପରମ ଲକ୍ଷ୍ୟ । ଏଥିପାଇଁ ଆତ୍ମାକୁ ଅହରହ ଯେଉଁ ଉଦ୍ୟମ କରିବାକୁ ହୁଏ ତା ହେଉଛି ଯଜ୍ଞ । ପୁରାଣୀଙ୍କ ଉକ୍ତି ଏଠାରେ ପ୍ରଣିଧାନ ଯୋଗ୍ୟ । (୨୦୦) ମାନବ ଜୀବନରେ ଏହି ଶାଶ୍ୱତ ସତ୍ୟର ଅନୁସନ୍ଧାନ କରିବା ହେଉଛି ଯଜ୍ଞର ଉଦ୍ଦେଶ୍ୟ । ଗୀତା ରଚନା ବେଳକୁ ଯଜ୍ଞ ସମ୍ବନ୍ଧୀୟ ଧାରଣା ସୃଷ୍ଟି ହୋଇ ସାରିଥିଲା । ଏହାକୁ ପ୍ରତୀକାତ୍ମକ ଅର୍ଥରେ ଏବଂ ଅନ୍ୟଟିକୁ ସାଧାରଣ ଅର୍ଥରେ ଗ୍ରହଣ କରାଯାଇଥିଲା । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ 'ଅହିଂସ ଯଜ୍ଞ' ସଂପର୍କରେ କହିଅଛନ୍ତି । (୨୦୧) ଯଜ୍ଞ ଯେ ବହୁ ପ୍ରକାରର ଏହା ବେଦରେ ବର୍ଣ୍ଣିତ ହୋଇଅଛି । ତାହାର ଉଦାହରଣ ଭାବରେ ନିଆଯାଏ ଯେ ବ୍ରହ୍ମାଙ୍କ ମୁଖରୁ ବା ବେଦ ମୁଖରୁ ବହୁପ୍ରକାର ଯଜ୍ଞ ପ୍ରକଟିତ ହୋଇଥାଏ । (୨୦୨) ଏହି ଯଜ୍ଞ କର୍ମ ମୁକ୍ତି ପ୍ରଦାନ କରେ ଏବଂ ଅନ୍ୟ କର୍ମ ମନୁଷ୍ୟର ଆତ୍ମାକୁ ପୁଣି ଶରୀର ବନ୍ଧନରେ ଆବଦ୍ଧ କରେ । (୨୦୩)

ଯଜ୍ଞ ଦ୍ୱାରା ପ୍ରଜା ସୃଷ୍ଟି କରି ବ୍ରହ୍ମା ପ୍ରଜାପତି କହିଲେ "ଯଜ୍ଞ ଦ୍ୱାରା ତୁମେ ବୃଦ୍ଧି ଲାଭକର । ସେହି ଯଜ୍ଞରୁ ତୁମେ ଅଭିଳଷିତ ଫଳ ଲାଭ କରିବ । ଯଜ୍ଞ ଦ୍ୱାରା ଦେବତାମାନଙ୍କୁ ସନ୍ତୁଷ୍ଟ କର ଏବଂ ଦେବତାମାନେ ତୁମକୁ ସନ୍ତୁଷ୍ଟ କରନ୍ତୁ । ଏହା ଦ୍ୱାରା ଉଭୟଙ୍କର ପରମ କଲ୍ୟାଣ ସାଧିତ ହେବ ଏବଂ ଦେବତାମାନେ ତୁମକୁ ତୁମର ବାଞ୍ଛିତ ଫଳ ଦାନ କରିବେ । ଦେବତାମାନଙ୍କ ଦ୍ୱାରା ପ୍ରଦତ୍ତ ପଦାର୍ଥକୁ ସେମାନଙ୍କୁ ଅର୍ପଣ ନ କରି ଯେ ଖାଏ ସେ ଚୋର । ଯଜ୍ଞର ଅବଶିଷ୍ଟ ଜିନିଷକୁ ଯେ ଭକ୍ଷଣ କରେ ସେ ସକଳ ପ୍ରକାର ପାପରୁ ମୁକ୍ତି ଲାଭ କରେ । କିନ୍ତୁ ଯେ ବ୍ୟକ୍ତି ଯଜ୍ଞ ନକରି କେବଳ ନିଜ ପାଇଁ ଅନ୍ନ ପାକ କରି ଭକ୍ଷଣ କରେ, ସେ କେବଳ ପାପ ଭକ୍ଷଣ କରେ । ଅନ୍ନରୁ ପ୍ରାଣୀମାନଙ୍କର ଉତ୍ପତ୍ତି ହୁଏ । ବର୍ଷାରୁ ଅନ୍ନ ଉତ୍ପନ୍ନ ହୁଏ । ବର୍ଷା ଯଜ୍ଞରୁ ଉତ୍ପନ୍ନ ହୁଏ ଏବଂ ଯଜ୍ଞ କର୍ମରୁ ଉତ୍ପନ୍ନ ହୁଏ । ପ୍ରକୃତିରୁ କର୍ମ ଉତ୍ପନ୍ନ ହୁଏ ଏବଂ ଅକ୍ଷର ପରମେଶ୍ୱରଙ୍କ ଠାରୁ ପ୍ରକୃତି ଉତ୍ପନ୍ନ ହୁଏ । ତେଣୁ ସର୍ବବ୍ୟାପି ପରମାତ୍ମା ଯଜ୍ଞରେ ବିଦ୍ୟମାନ । ଅନାସକ୍ତ ଭାବରେ ତାଙ୍କରି ପାଇଁ କର୍ମ କରିବା ବିଧେୟ । ତେଣୁ ଯେ ବ୍ୟକ୍ତି କର୍ମ ବା ଯଜ୍ଞ ନକରି କେବଳ ଇନ୍ଦ୍ରିୟ ସୁଖ ନିମିତ୍ତ କର୍ମରେ ପ୍ରବୃତ୍ତ ହୋଇଥାଏ, ତାର ଜୀବନ ହିଁ ବୃଥା "।(୨୦୪) ଭଗବାନ ଶ୍ରୀକୃଷ୍ଣ କହିଥିଲେ "ଯେଉଁ ବ୍ୟକ୍ତି ଭକ୍ତିପୂର୍ଣ୍ଣ ହୃଦୟରେ ଅନ୍ୟ ଦେବତାର ଭକ୍ତ ହୋଇ ଯଜନ କରେ ସେ ମୋ ନିମିତ୍ତ ଯଜନ କରିଥାଏ, କାରଣ ମୁଁ ହେଉଛି ସର୍ବ ପ୍ରକାର ଯଜ୍ଞର ଭୋକ୍ତା ଓ ପ୍ରଭୁ "।(୨୦୫)

ଗୀତାରେ ତିନି ପ୍ରକାର ଯଜ୍ଞର କଥା କୁହାଯାଇଛି, ତାହା ହେଲା — ସାତ୍ତ୍ୱିକ, ରାଜସିକ, ତାମସିକ । ଫଳ କାମନା ନକରି ବିଧିପୂର୍ବକ ଯେଉଁ ଯଜ୍ଞ କରାଯାଏ ତାହା ସାତ୍ତ୍ୱିକ, (୨୦୬) ଫଳ ଲାଭ ଓ ଯଶ ଲାଭ ଆଶାରେ ଯେଉଁ ଯଜ୍ଞ କରାଯାଏ ତାହା ହେଉଛି ରାଜସିକ । ବିଧି ବିଧାନ ରହିତ, ମନ୍ତ୍ର ରହିତ, ଅନ୍ନଦାନ ତଥା ଦକ୍ଷିଣା ନଥାଇ ଶ୍ରଦ୍ଧାହୀନ ଯଜ୍ଞକୁ ତାମସିକ ଯଜ୍ଞ କୁହାଯାଏ । (୨୦୭)

"ଯଜ୍ଞର ହବନ କ୍ରିୟା ହିଁ ବ୍ରହ୍ମ ସ୍ୱରୂପ । ହବିହିଁ ବ୍ରହ୍ମ, ଅର୍ପଣ ଦ୍ରବ୍ୟ ମଧ୍ୟ ବ୍ରହ୍ମ ଏବଂ ବ୍ରହ୍ମରୂପୀ ଅଗ୍ନିରେ ହବନ କର୍ତ୍ତା ମଧ୍ୟ ବ୍ରହ୍ମ" । (୨୦୮) ଗୀତାରେ ଦ୍ରବ୍ୟମୟ ଯଜ୍ଞ ଅପେକ୍ଷା ଜ୍ଞାନ ଯଜ୍ଞକୁ ବିଶେଷ ମହତ୍ତ୍ୱ ଦିଆଯାଇଛି । (୨୦୯) ଏଥିରେ ବ୍ରହ୍ମ ଯଜ୍ଞ, ଦେବ ଯଜ୍ଞ, ସଂଯମ ଯଜ୍ଞ, ଦ୍ରବ୍ୟ ଯଜ୍ଞ, ସ୍ୱାଧ୍ୟୟ ଯଜ୍ଞ, ଯୋଗ ଯଜ୍ଞ, ତପୋ ଯଜ୍ଞ ଏବଂ ଜ୍ଞାନ ଯଜ୍ଞ ଆଦିର ବର୍ଣ୍ଣନା କରାଯାଇଛି । ଏହା ସହିତ ଯଜ୍ଞ ଦ୍ୱାରା ପାପ ଓ କର୍ମ ବନ୍ଧନର ବିନାଶ ସାଧିତ ହେଉଥିବା କଥା କୁହାଯାଇଛି । ଗୀତାରେ କୁହାଯାଇଛି ସଂଯମ ବିନା ଯଜ୍ଞ ସାଧନ ଅସମ୍ଭବ ଏବଂ ଯଜ୍ଞ ବିନା ମୁକ୍ତି ଅସମ୍ଭବ ।

ଯଜ୍ଞ କର୍ମରେ ଅଗ୍ନି ହେଉଛନ୍ତି ମୁଖ୍ୟ । ଋକ୍‌ବେଦରେ ଅଗ୍ନି ଯଜ୍ଞର ଦେବ, ଯଜ୍ଞ ଦୂତ, ହୋତା ଓ ପୁରୋହିତ ନାମରେ ନାମିତ ହୋଇଅଛନ୍ତି । ଇନ୍ଦ୍ର, ବରୁଣ, ରୁଦ୍ର, ସୋମ, ଉଷା, ଆଦି ଦେବାଦେବୀଙ୍କ ନିମିତ୍ତ ଉଦ୍ଦିଷ୍ଟ ଆହୂତି ଅଗ୍ନିରେ ପ୍ରଦତ୍ତ କରାଯାଇଥାଏ । ଅଗ୍ନି ଉକ୍ତ ଆହୂତିକୁ ଉଦ୍ଦିଷ୍ଟ ଦେବାଦେବୀଙ୍କ ନିକଟରେ ପହଞ୍ଚାଇ ଦେଇଥାନ୍ତି । ଅଗ୍ନି ବସ୍ତୁତଃ 'ସ୍ମାର୍ତାଗ୍ନି ଏବଂ ଶ୍ରୌତାଗ୍ନି' । ସ୍ମାର୍ତାଗ୍ନିକୁ ବିବାହ କାର୍ଯ୍ୟରେ ସ୍ଥାପନ କରାଯାଇଥାଏ । ଏହାକୁ 'ପାକ ଯଜ୍ଞ' କୁହାଯାଏ । ଶ୍ରୌତାଗ୍ନି ଦ୍ୱାରା 'ହବିର୍ଯଜ୍ଞ' ଓ 'ସୋମଯଜ୍ଞ' ସଂପାଦନ କରାଯାଏ । ଶ୍ରୌତାଗ୍ନି ଚାରିପ୍ରକାର ; — ଯଥା— ଗାର୍ହପତ୍ୟ, ଆହବନୀୟ, ଦକ୍ଷିଣାଗ୍ନି ଓ ସମ୍ୟାଗ୍ନି । ବିବାହ ସମୟରେ ବ୍ୟବହୃତ ହେଉଥିବା ଅଗ୍ନିକୁ ଗୃହରେ ପ୍ରଜ୍ୱଳିତ କରାଗଲେ ତାହାକୁ 'ଗାର୍ହପତ୍ୟାଗ୍ନି' କୁହାଯାଏ । ଯେଉଁ ଯଜ୍ଞରେ ଆହୂତି ନିମିତ୍ତ ସାମଗ୍ରୀ ପ୍ରସ୍ତୁତ କରାଯାଏ ଏବଂ ଦକ୍ଷିଣା ଦେବା ନିମିତ୍ତ 'ମୋହନ ଭାଗ' ପ୍ରସ୍ତୁତ କରାଯାଏ ତାହା ଦକ୍ଷିଣାଗ୍ନି ଅଟେ । ଅଗ୍ନି ହୋତ୍ରାଦି ଯଜ୍ଞ ଅଗ୍ନିକୁ ଅହବନୀୟାଗ୍ନି କୁହାଯାଏ । ଗାର୍ହପତ୍ୟାଗ୍ନିକୁ ପିତା ଅଗ୍ନି ଓ ଆବହନୟାଗ୍ନିକୁ ପୁତ୍ରାଗ୍ନି କୁହାଯାଏ । ଗାର୍ହପାତ୍ୟାଗ୍ନିକୁ ନିର୍ବାପିତ କରାଯାଏ ନାହିଁ । ସେଥିରୁ ମୃତ୍ୟୁ ସମୟରେ ଦାହାଗ୍ନି ଗ୍ରହଣ କରାଯାଏ । (୨୧୦)

ଯଜ୍ଞର ପ୍ରଧାନ ପ୍ରଧାନ ବିଭାଗ ଗୁଡ଼ିକ ହେଲା ଯଜମାନ । ଯଜ୍ଞରେ ତାହାଙ୍କୁ ସାହାଯ୍ୟ କରୁଥିବା ବ୍ୟକ୍ତିଗଣ, ଋତ୍ୱିକଗଣ ବା ପୁରୋହିତ ଗଣ, ହବି ବା ଅର୍ପଣ କରାଯାଉଥିବା ପଦାର୍ଥମାନ ଏବଂ ହବିର୍ଦ୍ଦାନର ସୁଫଳ ପରବର୍ତ୍ତୀ ସମୟରେ ଯଜ୍ଞର ପ୍ରତୀକାତ୍ମକ ଅର୍ଥ ପ୍ରତି ଆଧ୍ୟାତ୍ମିକବାଦୀମାନେ ଗୁରୁତ୍ୱ ଆରୋପ କରିଅଛନ୍ତି । ମଣିଷର ଆତ୍ମା ବା ବ୍ୟକ୍ତିକୁ ଯଜମାନ କୁହାଯାଇଛି । ସେ ଯଜ୍ଞ କରୁଥାଏ । ଯଜ୍ଞରେ ଯେଉଁ ଚାରି ପୁରୋହିତ ସାହଯ୍ୟ କରନ୍ତି ସେମାନଙ୍କୁ ଋତ୍ୱିକ କୁହାଯାଏ । ସେମାନେ ହେଲେ ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମା ।

ହୋତା ଅନ୍ୟ ପୁରୋହିତ ମାନଙ୍କୁ ଡାକନ୍ତି ଓ ଦେବତା ମାନଙ୍କୁ ଯଜ୍ଞ ପୀଠରେ ଆବାହନ କରନ୍ତି । ସେ ଦିବ୍ୟ ଆଲୋକରେ ଭାସ୍ୱର । ସେ ଦେବତା ମାନଙ୍କୁ ହବିର୍ଦ୍ଦାନ ଗ୍ରହଣ କରିବା ପାଇଁ ଆହ୍ୱାନ କରନ୍ତି । ମରଣଶୀଳ ମଣିଷ ହୃଦୟରେ ସେ ଅମୃତତ୍ତ୍ୱର ସଞ୍ଚାର କରନ୍ତି ।(୨୧୧) "ମଣିଷ ସେତେବେଳେ ବୁଝେ ସେ ଅମୃତର ପାରାବାରରେ ବୁଡି ରହିଅଛି । ଏହି ଉପଲବ୍ଧି ହେଉଛି ବୋଧିଦୀପ୍ତ ମାତ୍ର ବୁଦ୍ଧିଦୀପ୍ତ ନୁହେଁ । ପରବର୍ତ୍ତୀ ସମୟରେ ମଣିଷର ମନ ବୁଦ୍ଧିଦ୍ୱାରା ନିୟନ୍ତ୍ରଣ ହୋଇଗଲା । ଫଳରେ ବେଦର ପ୍ରତୀକାତ୍ମକ ଅର୍ଥ ସୁପ୍ତ ହୋଇଗଲା ଏବଂ ମଣିଷ ସେଥିରୁ ଲୌକିକ ଅର୍ଥ ଓ ଅର୍ଥାନ୍ତର ଖୋଜିବାକୁ ଲାଗିଲା" । ଶ୍ରୀ ଅରବିନ୍ଦ ଏ ସଂପର୍କରେ କହିଅଛନ୍ତି "ବୋଧିଦୀପ୍ତ ଓ ପ୍ରତୀକାତ୍ମକ ପ୍ରାଚୀନ ମନନଶୀଳତାର ସୃଷ୍ଟି ହେଉଛି ବେଦ ; କିନ୍ତୁ ତାହା ପରବର୍ତ୍ତୀ ଯୁଗରେ ବୁଦ୍ଧି ନିୟନ୍ତ୍ରିତ ମନ ପାଖରେ

ସଂପୂର୍ଣ୍ଣ ଅପରିଚିତ ହୋଇ ପଡିଥିଲା । କାରଣ ଏହି ମନ ଗୋଟିଏ ପାଖରେ ଯୁକ୍ତି ବିଗ୍ରହ ଦ୍ୱାରା ସମୃଦ୍ଧ ଭାବଧାରା ଏବଂ ଅମୂର୍ତ୍ତଧାରଣା ଦ୍ୱାରା, ଅନ୍ୟ ଦିଗରେ ଯାହା ଦିବ୍ୟ ରହସ୍ୟମୟ କୌଣସି ମର୍ମର ସନ୍ଧାନ ଦିଏ ନାହିଁ ; କିନ୍ତୁ ଇନ୍ଦ୍ରିୟ ଓ ପ୍ରତ୍ୟକ୍ଷ ବୁଦ୍ଧି ପାଖରେ ଯେଉଁ ଭାବେ ଅସି ପହଞ୍ଚେ, ସେହି ଭାବରେ ଗୃହୀତ ଜଡ଼ ଓ ଜୀବନର ତଥ୍ୟ ଦ୍ୱାରା ଶାସିତ ହୁଏ "। (୨୧୨) ହୋତା ଶବ୍ଦର ପ୍ରତୀକାତ୍ମକ ଅର୍ଥଟିକୁ ଏହି ଦୃଷ୍ଟି କୋଣରୁ ବିଗ୍ରହ କରିବାକୁ ହେବ ।

"ସାଧାରଣ ଯଜ୍ଞରେ ଯଜୁର୍ବେଦର ମନ୍ତ୍ରମାନ ଉଚ୍ଚାରଣ କରି ଅନ୍ୟ ପୁରୋହିତ ମାନଙ୍କୁ ତଦନୁଯାୟୀ କରିବାକୁ ଯେ ପରାମର୍ଶ ଦେଇଥାନ୍ତି ସେ ହେଉଛନ୍ତି ଅଧ୍ୱର୍ଯୁ । ସେ 'ଅଧ୍ୱର' ବା ଯଜ୍ଞର ଜଣେ ଶୀର୍ଷସ୍ଥାନୀୟ ବ୍ୟକ୍ତି । 'ଅଧ୍ୱର' ଶବ୍ଦର ଅର୍ଥ ହେଲା ବାଟ ଚାଲିବା । ଜୀବନ ଯଜ୍ଞ ହେଲା ତୀର୍ଥ ଯାତ୍ରା ଭଳି । ତୀର୍ଥ ସ୍ଥାନ ହେଉଛି ଏହାର ଚରମ ଲକ୍ଷ୍ୟ । ଏହିଠାରେ ପହଞ୍ଚିବା ହେଉଛି ଚରମ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା । ଏହି ସ୍ଥାନରେ ଯେ ଆମକୁ ପହଞ୍ଚାଇ ଦିଏ ସେ ହେଉଛନ୍ତି ଅଧ୍ୱର୍ଯୁ । ହୋତାଙ୍କ ଆବାହନୀ ବାଣୀ ଶୁଣିବା ମାତ୍ରେ ମଣିଷର ଚିତ୍ତ ତଳେ ହୋଇଥାଏ ଅଧ୍ୱର୍ଯୁଙ୍କ ଆବିର୍ଭାବ "। (୨୧୩)

ସାଧାରଣ ଯଜ୍ଞରେ ସାମ ମନ୍ତ୍ର ଗାନ କରି ଉଦ୍‌ଗାତା ଦେବତାମାନଙ୍କ ମନକୁ ଆନନ୍ଦ ପ୍ରଦାନ କରିଥାନ୍ତି । ସାମ ମନ୍ତ୍ର ଗୁଡିକ ସ୍ୱର, ଲୟ ରଖି ବୋଲାଯାଇଥାଏ । ଦେବତାଙ୍କ ଆଗମନରେ ଯଜମାନର ସଂପୂର୍ଣ୍ଣ ଅସମାନତା ଦୂର ହୋଇଥାଏ । ମଣିଷର ଯାତ୍ରାପଥ ପୁଷ୍ପିତ ହୋଇଉଠେ । ଜୀବନ ଯଜ୍ଞରେ ଉଦ୍‌ଗାତା ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । କପାଳୀ ଶାସ୍ତ୍ରୀଙ୍କର ଉକ୍ତି ଏଠାରେ ପ୍ରଣିଧାନ ଯୋଗ୍ୟ । (୨୧୪)

ସାଧାରଣ ଯଜ୍ଞାନୁଷ୍ଠାନରେ ବ୍ରହ୍ମାଙ୍କ ଆସନ ଖୁବ୍ ଉଚ୍ଚରେ । ସେ ପ୍ରତ୍ୟକ୍ଷ ଭାବରେ କୌଣସି ମନ୍ତ୍ର ଉଚ୍ଚାରଣ କରନ୍ତି ନାହିଁ ; କିମ୍ବା କୌଣସି ବିଧିବିଧାନ ସମାଧାନ କରିବାରେ କୌଣସି ଅଂଶ ଗ୍ରହଣ କରନ୍ତି ନାହିଁ । ସେ ସ୍ଥିର ହୋଇ ଗୋଟିଏ ସ୍ଥାନରେ ବସିଥାନ୍ତି ଏବଂ ସାରା ଯଜ୍ଞର କର୍ମବିଧିକୁ ଲକ୍ଷ୍ୟ କରୁଥାନ୍ତି । ସେ ପ୍ରତିଟି କର୍ମବିଧି ପରେ 'ଓଁ' ବୋଲି ଉଚ୍ଚାରଣ କରି ତାଙ୍କର ଅନୁମୋଦନ ଜଣାଇଥାନ୍ତି । ଏ ହେଉଛନ୍ତି ଶବ୍ଦବ୍ରହ୍ମ, ଯେ କି ପ୍ରତ୍ୟେକ ମନ୍ତ୍ରର କାରଣ ସ୍ୱରୂପ । ବୋଧିଦୀପ୍ତ ମନ ନେଇ ମଣିଷ ଏହାଙ୍କ ବିଦ୍ୟମାନତାକୁ ଉପଲବ୍ଧି କରିପାରିବ ; କିନ୍ତୁ 'ବୁଦ୍ଧି ଦୀପ୍ତ' ମନ ପାଖରେ ଏ ସହଜରେ ଧରାଦେବ ନାହିଁ । ଶ୍ରୀ ଅରବିନ୍ଦ ଏ ବ୍ରହ୍ମାଙ୍କ ସଂପର୍କରେ ଯେଉଁ ପ୍ରତୀକାତ୍ମକ ବ୍ୟାଖ୍ୟା କରିଅଛନ୍ତି କପାଳି ଶାସ୍ତ୍ରୀ ତାହାକୁ ଉପଯୁକ୍ତ ଭାବରେ ବୁଝାଇଛନ୍ତି । (୨୧୫) ଯଜ୍ଞର ଏହି ଚାରି ଋତ୍ୱିକଙ୍କ ଆଶ୍ରୟରେ ମନୁଷ୍ୟର ଜୀବନ ଯାତ୍ରାର ପଥଟି ସରଳୀକୃତ, ବିପଦ ଶୂନ୍ୟ, ପୁଷ୍ପିତ ଓ ଆଲୋକିତ ହୋଇ ପରମ ଲକ୍ଷ୍ୟ ଆଡକୁ ଅଗ୍ରସର ହୋଇଥାଏ ।

"କେବଳ ଋତ୍ୱିକମାନଙ୍କ କ୍ଷେତ୍ରରେ ନୁହେଁ ଯଜ୍ଞାର୍ପିତ ହବିର୍ଦାନ କ୍ଷେତ୍ରରେ ମଧ୍ୟ ଏହି ପ୍ରତୀକାତ୍ମତାର ଅନୁରଣିତ ହୋଇଥାଏ । ସାଧାରଣ ଯଜ୍ଞରେ ହର୍ବି ସ୍ୱରୂପ ଘୃତ ଅର୍ପଣ କରାଯାଇଥାଏ । ପ୍ରତୀକାତ୍ମକ ଅର୍ଥରେ ଏହା ଆଲୋକ ଚିନ୍ତା । ଯଜ୍ଞରେ ଘୃତ ଢାଳିବାର ତାତ୍ପର୍ଯ୍ୟ ହେଲା ଆଧ୍ୟାତ୍ମିକ ସିଦ୍ଧିର ପଥ ସୁଗମ କରିବା । ଶୁଦ୍ଧ ନିର୍ମଳ ଭବନାରେ ମଣିଷ ବୋଧିଦୀପ୍ତ ହୋଇ ଉଠିବା । ମହାନନ୍ଦର

ସ୍ୱାଦୁ ଗ୍ରହଣ କରିବା ପାଇଁ ଉନ୍ମୁଖ ହେବା । ଏହି ଆନନ୍ଦ କଥା ଋଗ୍‌ବେଦୀୟ ଋଷି ବାମଦେବ ଚିନ୍ତା କରିଥିଲେ । ସେଥିପ୍ରତି ଲକ୍ଷ୍ୟ କରି 'ପୂରାଣୀ' କହିଛନ୍ତି "ଏହା ହେଉଛି ମହାନନ୍ଦର ମଧୁଭରା ଉର୍ମି"। (୨୧୬) ପୂରାଣୀ ମୁଖ୍ୟତଃ ଶ୍ରୀ ଅରବିନ୍ଦଙ୍କ ଦ୍ୱାରା କରାଯାଇଥିବା ଘୃତ ଶବ୍ଦର ବ୍ୟାଖ୍ୟାଟିକୁ ଗ୍ରହଣ କରି ଏଭଳି କହିଅଛନ୍ତି । ଏ ସଂପର୍କରେ ଶ୍ରୀ ଅରବିନ୍ଦଙ୍କ ବକ୍ତବ୍ୟ ହେଉଛି "ଦିବ୍ୟାନୁଭୂତିରେ ମନରୁ ଏକ ମହାଲୋକର ଧାରା ବିଚ୍ଛୁରିତ ହୋଇଥାଏ । ତାହା ମଣିଷର ବୋଧିକୁ ପଖାଳି ଦେଇଥାଏ । ତାହାହିଁ ହେଉଛି ଘୃତ । ଦିବ୍ୟାଲୋକ ଛଡା ଆଉ କିଛି ନୁହେଁ"। (୨୧୭)

ଏଭଳି ଯଜ୍ଞାନୁଷ୍ଠାନ କଲେ ତାର ଫଳଶ୍ରୁତି କଣ ? ଯଜ୍ଞ ମାଧ୍ୟମରେ ଆର୍ଯ୍ୟ ଋଷି ଗୋ ଓ ପଶୁ ବହୁବାର ମାଗିଛନ୍ତି । ଶ୍ରୀ ଅରବିନ୍ଦ ଏହି 'ଗୋ' ଏବଂ 'ଅଶ୍ୱ'ର ପ୍ରତୀକାତ୍ମକ ଅର୍ଥ କରିଅଛନ୍ତି । "ଗୋ ଶବ୍ଦର ପ୍ରତୀକାତ୍ମକ ଅର୍ଥ ହେଉଛି ଆଲୋକ । ଅଶ୍ୱ ହେଉଛି ପ୍ରାଣ ଶକ୍ତି । ଆଲୋକମନ ମନ୍ଦିରକୁ ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ କରେ । ପ୍ରାଣ ଶକ୍ତି ମଣିଷକୁ କର୍ମଚଞ୍ଚଳ କରାଇଥାଏ । ଏହି ପ୍ରାଣମୟତା ଉପରେ ଯଜ୍ଞରେ ଗୁରୁତ୍ୱ ଆରୋପ କରାଯାଇଛି"। (୨୧୮)

'ଗୋପଥ ବ୍ରାହ୍ମଣ'ରେ ମଧ୍ୟ ଯଜ୍ଞ ଉପରେ ଦେବତ୍ୱ ଆରୋପ କରାଯାଇଛି । ସେଠାରେ କୁହାଯାଇଛି "ଏହି ଯେଉଁ ଯଜ୍ଞ ସେ ଜଣେ ମହାନ ଦେବତା ଅଛନ୍ତି" । (୨୧୯) ଶତପଥ ବ୍ରାହ୍ମଣରେ ମଧ୍ୟ ଠିକ୍ ଅନୁରୂପ ସ୍ୱର ଉଚ୍ଚାରଣ କରାଯାଇଛି । ଏଠାରେ କୁହାଯାଇଛି ଯଜ୍ଞ ହେଲା ସାକ୍ଷାତ୍ ପ୍ରଜାପତି ବା ସୃଷ୍ଟି କର୍ତ୍ତାଙ୍କ ସଦୃଶ । (୨୨୦) "ଏହାର ତାତ୍ପର୍ଯ୍ୟ ହେଲା, ମଣିଷ ଜୀବନରେ ଦେବତ୍ୱର ଅବତାରଣା କରାଇବା ହେଉଛି ଯଜ୍ଞର ଲକ୍ଷ୍ୟ । ଏହାର ଫଳଶ୍ରୁତି ହେଲା ତାହାର ଜୀବନକୁ 'ଗୋ' ବା ଦିବ୍ୟାଲୋକରେ ଭରିଦେବା ଏବଂ ତାହାକୁ ଆଶାନ୍ୱିତ କରିବା । ଅର୍ଥ ତାର ଜୀବନର ପ୍ରାଣ ଶକ୍ତି ଆଣିଦେବା । 'ଅଗ୍ରୱାଲ' ତେଣୁ କହିଛନ୍ତି "ଯଜ୍ଞକୁ ସାରା ବିଶ୍ୱର କେନ୍ଦ୍ର ବିନ୍ଦୁ ବୋଲି ଋଗ୍‌ବେଦରେ କୁହାଯାଇଛି । ଭାରତୀୟ ଚେତନା ଜଗତରେ ଯେଉଁ ସୃଷ୍ଟି, ସ୍ଥିତି, ପ୍ରଳୟର କଥା କୁହାଯାଇଛି ସେ ସମସ୍ତର କେନ୍ଦ୍ରବିନ୍ଦୁ ହେଉଛି ଯଜ୍ଞ" ।(୨୨୧) ଋଗ୍‌ବେଦରେ ତେଣୁ କୁହାଯାଇଛି "ଯଜ୍ଞ ହେଉଛି ସାରା ବିଶ୍ୱର ନାଭି ମଣ୍ଡଳ ସଦୃଶ ବା କେନ୍ଦ୍ର ବିନ୍ଦୁ"। (୨୨୨)

ସଂକ୍ଷେପରେ କହିବାକୁ ଗଲେ ଯଜ୍ଞ ହେଉଛି ଆରାଧନା କର୍ମ । ଏକ ପ୍ରକାର ଦାନ କର୍ମ । ଏହା ଅନ୍ତରତମ ପ୍ରଦେଶର ଆରାଧନା ଓ ଆତ୍ମଦାନ । ବେଦ ବର୍ଣ୍ଣିତ ଏହା ଏକ ଜୀବନ ଯାତ୍ରା ଓ ଜୀବନ ସଂଗ୍ରାମ । ଏହି ଯାତ୍ରାର ନେତୃତ୍ୱ ନିଅନ୍ତି ଅଗ୍ନି । ଅଗ୍ନିଙ୍କ ନେତୃତ୍ୱରେ ମଣିଷ ସତ୍ୟ ଧାମରେ ପହଞ୍ଚିପାରିବ । ଏହି ଧାମକୁ ସୂର୍ଯ୍ୟ ମଣ୍ଡଳ କୁହାଯାଇଛି । ଶ୍ରୀ ଅରବିନ୍ଦଙ୍କ ପରିଭାଷାରେ ଏହା ହେଉଛି "ଅତିମାନସର ଚେତନା ସ୍ତର ।" "ବାମଦେବ, ଦୀର୍ଘତମା ଇତ୍ୟାଦି କେତେକ ବରିଷ୍ଠ ଋଷି ଏହି ଅତି ମାନସ ସ୍ତରରେ ବିଚରଣ କରିଥିବାର ଅନୁମାନ କରାଯାଏ । ସେଥିପାଇଁ ଏହି ଦିବ୍ୟ ଜ୍ଞାନ ଅଧିକାରୀ ସେମାନେ ହୋଇପାରିଥିଲେ । ସେହି ଅବସ୍ଥାରୁ ସେମାନେ ବେଦମନ୍ତ୍ର ଗୁଡିକ ପ୍ରାପ୍ତ ହୋଇଥିଲେ । ସେହି ଦୃଷ୍ଟିରୁ ବେଦକୁ ଅପୌରୁଷେୟ କୁହାଯାଏ । ଏହା ମନୁଷ୍ୟର ଏକ ଅଲୌକିକ ମାନସିକ ଅବସ୍ଥାରୁ ସୃଷ୍ଟ" । ବୈଦିକ ଋଷି ତେଣୁ ସେହି ଅବସ୍ଥାକୁ ଚାଲି ଆସିବାକୁ ମାନବ ସମାଜକୁ ଆହ୍ୱାନ ଦେଇଅଛନ୍ତି । ଶ୍ରୀ ଅରବିନ୍ଦ ସେଥିପାଇଁ ଯଥାର୍ଥରେ କହିଅଛନ୍ତି "ବେଦର ଭାଷା ଅଟେ ସ୍ୱୟଂଶ୍ରୁତି ; ଏହା ଗୋଟିଏ

ଛନ୍ଦ, ଯାହାକି ଋଷି ଦ୍ୱାରା ନିର୍ମିତ ନୁହେଁ । ଏହା କମ୍ପନ ସୃଷ୍ଟି କରି ଅସୀମରୁ ବାହାରି ଅପୌରୁଷେମୟ ଜ୍ଞାନକୁ ଧରି ରଖିବାର କ୍ଷମତା ଥିବା ମନୁଷ୍ୟର ଅନ୍ତଃକରଣରେ ସର୍ବ ପ୍ରଥମେ ପ୍ରବେଶ କରିଥିଲା ''। (୨୨୩) ବୈଦିକ ଋଷି ଏହି ଜ୍ଞାନମୟ ଚକ୍ଷୁରେ ସଞ୍ଚକୁ ଦେଖି ଥିଲେ । ଏହାର ଅବବୋଧ ଆସିଲେ ଯାଇ ବୈଦିକ ଜ୍ଞାନର ଦ୍ୱାର ଉଦ୍‌ଘାଟିତ ହେବ ।

**ବେଦ ଓ ପରଲୋକ –**

ବେଦରେ ମୃତାତ୍ମା ନିମିତ୍ତ କେତେକ ମନ୍ତ୍ର ଉଦ୍ଦିଷ୍ଟ ହୋଇଛି । (୨୨୪) ''ଦ୍ୱିଲୋକ ଆଦି ତିନି ପ୍ରକାର ଲୋକ ଅଛି । ସେଥିରୁ ଦ୍ୟୁଲୋକ ଓ ଭୂଲୋକ ସୂର୍ଯ୍ୟଙ୍କ ନିକଟରେ, ତୃତୀୟ ଲୋକ ଅର୍ଥାତ୍ ଅନ୍ତରୀକ୍ଷ ଲୋକ ଯମ ରାଜାଙ୍କ ଗୃହକୁ ଯିବାର ମାର୍ଗ ଅଟେ । ଯେପରି ରଥର ଅଣି କାଠିକୁ ଆଶ୍ରୟ କରି ଚକ ରହିଥାଏ ସେହିପରି ଚନ୍ଦ୍ର ଓ ନକ୍ଷତ୍ର ଆଦି ସମସ୍ତେ ସୂର୍ଯ୍ୟଙ୍କୁ ଆଶ୍ରୟ କରି ରହିଅଛନ୍ତି''। (୨୨୫) ଋଗ୍‌ବେଦର ଅନ୍ୟ ମନ୍ତ୍ରରେ କୁହାଯାଇଛି ଯେଉଁ ବ୍ୟକ୍ତି ତା ଜୀବନରେ ସତ୍ କର୍ମ କରିଥାଏ ତାହାକୁ ଯମରାଜା ସୁଖପୂର୍ଣ୍ଣ ରାଜ୍ୟକୁ ନେଇଯାଆନ୍ତି । ''ଯମ ସର୍ବଜ୍ଞାତା, ସେ ପ୍ରାଣୀର ସକଳ ଶୁଭ ଅଶୁଭ ଜାଣିଥାନ୍ତି । ଯମର ମାର୍ଗ ସର୍ବଦା ଅବିନାଶ । ସେହି ପଥରେ ଆମର ପୂର୍ବଜମାନେ ଯାଇଅଛନ୍ତି । ନିଜର କର୍ମ ଅନୁସାରେ ସେହି ପଥରେ ସମସ୍ତେ ଯାଇଥାନ୍ତି । ଯମଙ୍କୁ 'ବୈବସ୍ୱତ' କୁହାଯାଏ କାରଣ ସେ 'ବିବସ୍ୱାନ'ଙ୍କର ପୁତ୍ର ଅଟନ୍ତି । ପିତୃ ଲୋକକୁ ଯିବା ବାଟରେ ଯମଙ୍କର ଦୁଇଟି 'ସରମା ପୁତ୍ର ବା କୁକୁର ଅଛନ୍ତି' । ଯମ ଲୋକରେ ଚାରି ନେତ୍ର ବିଶିଷ୍ଟ ( ଚତୁରକ୍ଷୋ ) ମାର୍ଗର ରକ୍ଷକ (ପଥିରକ୍ଷୀ ) ଏବଂ ମନୁଷ୍ୟ ଉପରେ ପହରା ଦେବାବାଲା( ନୃଚକ୍ଷସୌ ) ଅଛନ୍ତି ''। (୨୨୬) ପ୍ରେତାତ୍ମା ଉପଦେଶ ପାଇ ଏହି ଋଷି ବର୍ଗଙ୍କୁ ଅତିକ୍ରମ କରି ଯାଇଥାଏ । ଦୀର୍ଘ ନାସିକା ବିଶିଷ୍ଟ, ପ୍ରାଣ ସଂହାରକ ଓ ନାନା ବର୍ଣ୍ଣ ବିଶିଷ୍ଟ କୁକୁରଙ୍କୁ ଯମଙ୍କର ଦୂତ ବୋଲି କୁହାଯାଇଛି । ସେହି କୁକୁରମାନେ ମର୍ତ୍ତ୍ୟରେ ବୁଲନ୍ତି ଓ ପିତୃ ଲୋକକୁ ଯାଉଥିବା ଲୋକଙ୍କୁ ଖୋଜନ୍ତି । ଯମରାଜା ପିତୃ ପୁରୁଷ ମାନଙ୍କ ସହିତ ପିତୃ ଲୋକରେ ରହିଥାନ୍ତି । ଅଙ୍ଗିରସ, ଅଥର୍ବଣ, ନବଗ୍ୱା, ବଶିଷ୍ଠ, ଭୃଗୁ ଆଦି ଅନେକ ପିତୃପୁରୁଷଙ୍କ ନାମ ବେଦରେ ମିଳିଥାଏ । ଏହି ପିତୃପୁରୁଷମାନେ ମର୍ତ୍ତ୍ୟରେ ଦିଆ ଯାଉଥିବା ଆହୂତି ଓ ସୋମରସ ଗ୍ରହଣ କରିବାକୁ ଲାଳାୟିତ ଥାନ୍ତି । ଉତ୍ତମ, ମଧ୍ୟମ ଓ ଅଧମ ଏହି ଭାବରେ ପିତୃ ଲୋକଙ୍କୁ ବିଭକ୍ତ କରାଯାଇଛି । ତତ୍‌କାଳୀନ ସମାଜରେ ଯଜ୍ଞ ସମୟରେ ସେମାନଙ୍କୁ ଆହ୍ୱାନ କରାଯାଉଥିଲା ।

''ବୈଦିକ ଯୁଗରେ ପ୍ରତ୍ୟେକ ଶବକୁ ଅଗ୍ନି ଦ୍ୱାରା ଦାହ କରାଯାଉ ନଥିଲା । ତଥାପି ଶବ ସଂସ୍କାର ଲାଗି ଅଗ୍ନିଦାହକୁ ସର୍ବଶ୍ରେଷ୍ଠ ଉପାୟ ବୋଲି ଗ୍ରହଣ କରାଯାଉଥିଲା । ଅଗ୍ନି ଶବକୁ ପିତୃଲୋକ ଓ ଦେବଲୋକରେ ପହଞ୍ଚାଇ ଦେବାର ବିଶ୍ୱାସ ତତ୍‌କାଳୀନ ସମାଜରେ ଥିଲା । ସ୍ୱେଚ୍ଛାଚାରିଣୀ, ଦୁଷ୍ଟାଚାରିଣୀ, କୁଳବଂଶା ସ୍ତ୍ରୀ ତଥା ଯଜ୍ଞକର୍ମ ରହିତ ଅସତ୍ୟବାଦୀ, ଅଗ୍ନିବିଦ୍ୱେଷୀ ପୁରୁଷର ନରକ ପ୍ରାପ୍ତି କଥା ବେଦରେ ଉଲ୍ଲିଖିତ ହୋଇଛି ''। (୨୨୭)

ସ୍ୱର୍ଗରେ ଯମରାଜ ଅନ୍ୟ ଦେବଗଣ ସହିତ ଅଶ୍ୱତ୍‌ଥ ବୃକ୍ଷ ତଳେ ବସି 'ପାନ' କରୁଥିବାର କଥା ବୈଦିକ ସାହିତ୍ୟରେ ଦେଖିବାକୁ ମିଳେ । (୨୨୮) ସ୍ୱର୍ଗ ସକଳ ପ୍ରକାର ଆନନ୍ଦର ସ୍ଥାନ ବୋଲି ବର୍ଣ୍ଣନା କରାଯାଇଛି । ସେଠାରେ ଦିନ ରାତି ସକଳ ପଦାର୍ଥ ଆନନ୍ଦ ଦାୟକ । ସେଠାରେ ରହୁଥିବା

ସମସ୍ତ ବ୍ୟକ୍ତି ରୋଗମୁକ୍ତ ଶରୀର ଧାରଣ କରିଥାନ୍ତି । ମର୍ତ୍ତ୍ୟରେ ଯେଉଁ ଲୋକ ଅଧିକ ପୁଣ୍ୟ ଅର୍ଜନ କରିଥାନ୍ତି ସେହିହିଁ ସ୍ୱର୍ଗ ଲାଭ କରିଥାନ୍ତି । ପ୍ରେତାତ୍ମା ଭୌତିକ ପ୍ରକାଶମାନ ଶରୀର ସହିତ ସ୍ୱର୍ଗରେ ଦୁଗ୍ଧ, ମଧୁ, ସୁରା ଓ ସୋମପାନ କରି ଆନନ୍ଦରେ ବିଭୋର ଥିବା କଥା ବୈଦିକ ସାହିତ୍ୟରେ ଉଲ୍ଲେଖ ଅଛି । ସେଠାରେ ପ୍ରେତାତ୍ମା ପ୍ରଣୟ ବ୍ୟାପାରରେ ସ୍ତ୍ରୀମାନଙ୍କ ସହିତ ଲିପ୍ତ ରହିଥିବା କଥା ଅଥର୍ବ ବେଦରେ ଉଲ୍ଲିଖିତ ହୋଇଛି । (୨୨୯)

ବୈଦିକ ଓ ସଂହିତୋତ୍ତର ଯୁଗରେ କିଭଳି ଭାବରେ ସାହିତ୍ୟର ବିକାଶ ଘଟିଥିଲା ତାହାର ଏହା ଏକ ସ୍ଥୂଳ ରୂପ ମାତ୍ର । ସମ୍ୟକ ରୂପେ ଏହାର ଆଲୋଚନା କରିବା ସହଜ ସାଧ୍ୟ ନୁହେଁ ; ମାତ୍ର ଏଥିରୁ ସ୍ପଷ୍ଟ ସୂଚନା ମିଳୁଅଛି ଯେ ଲୌକିକ ଓ ଆଧ୍ୟାତ୍ମିକ ଚିନ୍ତାଧାରାର ସମନ୍ୱୟରେ ଏହି ସାହିତ୍ୟ ମନ୍ଦିର ଗଢି ଉଠିଥିଲା । ଏହି ସାହିତ୍ୟ ପରବର୍ତ୍ତୀ ସମୟରେ ଭାରତୀୟ ସାହିତ୍ୟର ଦୃଢ ଭିତ୍ତିଭୂମି ସ୍ୱରୂପ କାର୍ଯ୍ୟ କରିଥିଲା ।



# ଚତୁର୍ଥ ପରିଚ୍ଛେଦ

## ବୈଦିକ ସମାଜ

ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଲୋକ ଏକତ୍ର ଗୋଟିଏ ଶାସନ ଶୃଙ୍ଖଳାରେ ରହି ଏକ ସ୍ୱତନ୍ତ୍ର ଜାତି ଗଠନ କଲେ ତାହାକୁ ସମାଜ କୁହାଯାଏ । ଏହି ସମାଜରେ ବ୍ୟକ୍ତି, ପରିବାର,କୁଳ, ରାଜ୍ୟ ସମସ୍ତଙ୍କର ପାରସ୍ପରିକ ବନ୍ଧନ ରହିଥାଏ । ବୈଦିକ ଆର୍ଯ୍ୟମାନେ ଏହି ଭଳି ଏକ ସମାଜରେ ଥିଲେ । ସେମାନଙ୍କର ପରିବାର ଥିଲା ଏବଂ କୁଳ ମଧ୍ୟ ଥିଲା । ସେମାନେ ଗୋଷ୍ଠୀବଦ୍ଧ ଭାବରେ ରହୁଥିଲେ । ଜଣେ ବ୍ୟକ୍ତିଙ୍କର ଶାସନାଧୀନରେ ରହୁଥିଲେ । ତାହା କେତେବେଳେ ରାଜତନ୍ତ୍ରୀ ଥିଲା ବା ଆଉ କେତେବେଳେ ପ୍ରଜାତନ୍ତ୍ର ଥିଲା । ନିର୍ଦ୍ଦିଷ୍ଟ ନୀତି ନିୟମ ଦ୍ୱାରା ତାଙ୍କର ବ୍ୟକ୍ତିଗତ ଏବଂ ପାରିବାରିକ ଜୀବନ ନିୟନ୍ତ୍ରିତ ହେଉଥିଲା । ଧର୍ମ ଓ ଅଧ୍ୟାତ୍ମିକତା କ୍ଷେତ୍ରରେ ସେମାନେ ନିର୍ଦ୍ଦିଷ୍ଟ ଶୃଙ୍ଖଳାର ଅନୁବର୍ତ୍ତୀ ଥିଲେ । ବୈଦିକ ଭାରତ ଛୋଟ ଛୋଟ ରଜ୍ୟରେ ବିଭକ୍ତ ହୋଇଥିଲା । ବୈଦିକ ସାହିତ୍ୟରେ ରାଜ୍ୟ ଓ ରାଷ୍ଟ୍ର ଶବ୍ଦର ଉଲ୍ଲେଖ ଅଛି । ଛୋଟ ଛୋଟ ରାଜ୍ୟ ଗୁଡିକ ରାଜା ଦ୍ୱାରା ଶାସିତ ହେଉଥିଲା । ରାଷ୍ଟ୍ରକୁ ସେତେବେଳେ ବୃହତ୍ତର ଅର୍ଥରେ ବିଗ୍ରହ କରାଯାଉଥିଲା । ତାହାର ଅର୍ଥ ଥିଲା ସାରା ବୈଦିକ ସମାଜ । ତୈତ୍ତିରୀୟ ବ୍ରାହ୍ମଣରେ ଉଲ୍ଲେଖ ଅଛି । "ଅସ୍ମିନ୍ ରାଷ୍ଟ୍ରେ ଆବ୍ରହ୍ମନ୍ ବ୍ରାହ୍ମଣୋ ବ୍ରାହ୍ମବର୍ଚସୀ ଜାୟତାମ୍ "। ଅର୍ଥାତ୍ ଏହି ରାଷ୍ଟ୍ରରେ ବ୍ରାହ୍ମଣମାନଙ୍କର ଆଧ୍ୟାତ୍ମିକ ଶକ୍ତି ନେଇ ପିଲାମାନେ ଜନ୍ମ ହୁଅନ୍ତି । ଏଠାରେ ରାଷ୍ଟ୍ର ଅର୍ଥ କୌଣସି ନିର୍ଦ୍ଦିଷ୍ଟ ରାଜ୍ୟ ନୁହେଁ ସମଗ୍ର ବୈଦିକ ଜାତି । ଅଥର୍ବ ବେଦର ଏକ ସ୍ଥାନରେ ଉଲ୍ଲିଖିତ ହୋଇଅଛି "ବୟଂରାଷ୍ଟ୍ରେ ଜାଗୃବାଂସ ପୁରୋହିତାଃ", ଅର୍ଥାତ୍ ପୁରୋହିତମାନେ ବା ଅଗ୍ରଣୀ ବ୍ରାହ୍ମଣମାନେ ରାଷ୍ଟ୍ରରେ ସର୍ବଦା ଜାଗ୍ରତ ରହିଅଛୁ । ଏଠାରେ ମଧ୍ୟ ରାଷ୍ଟ୍ର ଶବ୍ଦ ସମାଜ ଅର୍ଥରେ ପ୍ରଯୁକ୍ତ ।

ବେଦ, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ୍, ଧର୍ମସୂତ୍ର ଇତ୍ୟାଦି ଗ୍ରନ୍ଥମାନ ଏ ଦେଶର ବିଭିନ୍ନ ସ୍ଥାନରେ ସୃଷ୍ଟି ହୋଇଅଛି । ମାତ୍ର ତାହାର ଉପଦେଶ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳ ପାଇଁ ଉଦ୍ଦିଷ୍ଟ ନୁହେଁ । ଶତପଥ ବ୍ରାହ୍ମଣର ଗୋଟିଏ ପଂକ୍ତିରେ କୁହାଯାଇଛି ଯେଉଁ ଲୋକ ମିଛ କୁହେ ସେ ଘୃଣ୍ୟ । ସେ ପ୍ରତିଦିନ ପାପ କାର୍ଯ୍ୟ କରୁଥିବାରୁ ତା'ର ଜ୍ୟୋତି ଦିନକୁ ଦିନ କ୍ଷୀଣ ହୋଇଉଠେ । ତେଣୁ ସମସ୍ତଙ୍କର ସତ କହିବା ଉଚିତ୍ । ଏହି ଉପଦେଶ ସମଗ୍ର ବୈଦିକ ସମାଜ ପାଇଁ ଉଦ୍ଦିଷ୍ଟ ଥିଲା ।

ବୈଦିକ ସାହିତ୍ୟରେ ଜୀବନକୁ ଆନନ୍ଦରେ କଟାଇବାକୁ ନିର୍ଦ୍ଦେଶ ଅଛି । ମୃତ୍ୟୁ ଚିନ୍ତାରେ ସେମାନେ କେବେହେଲେ ଅଧୀର ହୋଇ ନାହାଁନ୍ତି । ପୃଥିବୀ, ଆକାଶ, ସମୁଦ୍ର, ଅରଣ୍ୟ, ବୃକ୍ଷଲତା ସର୍ବତ୍ର ସେମାନେ ମଧୁର ସନ୍ଧାନ ପାଇଛନ୍ତି । ପ୍ରାଥମିକ ଅବସ୍ଥାରେ ସେମାନେ ବିଶ୍ୱାସ କରୁଥିଲେ ଯେ ମୃତ୍ୟୁ ପରେ ଜୀବନର କିଛି ଗୋଟାଏ ସ୍ଥିତି ଅଛି । ଉପନିଷଦ୍ ଯୁଗରେ ଆତ୍ମାକୁ 'ପରଂ ବ୍ରହ୍ମ'ଙ୍କ ସହିତ ଚିହ୍ନିତ କରାଯାଇଛି । ସେତେବେଳେ ବୈଦିକ ଋଷି ଗାଇ ଉଠିଥିଲା । "ତମସୋ ମା ଜ୍ୟୋତିର୍ଗମୟ/ ମୃତ୍ୟୋର୍ମା ଅମୃତ ଗମୟ" । ଅର୍ଥାତ୍ ମତେ ଅନ୍ଧକାରରୁ ଆଲୋକକୁ ନେଇ ଯାଅ । ମୃତ୍ୟୁରୁ ଅମୃତକୁ ନେଇଯାଅ । ତେଣୁ ବୈଦିକ ସମାଜରେ ନିଜକୁ ଆନନ୍ଦ ଏବଂ ଅମୃତର ସନ୍ତାନ ବୋଲି ସେମାନେ ମନେ କରୁଥିଲେ । ଏହି ଆନନ୍ଦକୁ କିଭଳି ପୂର୍ଣ୍ଣମାତ୍ରାରେ ଉପଲବ୍ଧି କରିବେ ସେଥିପାଇଁ ବୈଦିକ ଆର୍ଯ୍ୟମାନେ ସାମଜିକ ବ୍ୟବସ୍ଥାକୁ ନିୟନ୍ତ୍ରିତ କରୁଥିଲେ ।

ବୈଦିକ ଜୀବନ ଯାତ୍ରା ଅତି ସରଳ ଥିଲା । ଲୋକମାନେ କୋଳାହଳମୟ ଜୀବନ ଗ୍ରହୁଁ ନଥିଲେ । ଜୀବିକା ନିର୍ବାହ ଲାଗି ପ୍ରତିଯୋଗିତା ନଥିଲା । ମଉଜ ମଜଲିସ ଅପେକ୍ଷା 'ଦିବ୍ୟାନନ୍ଦ' ପ୍ରତି ବୈଦିକ ସମାଜ ଅଧିକ ଆଗ୍ରହୀଥିଲା । ବହୁ ଭୋଗର ସାମଗ୍ରୀ ସେତେବେଳେ ଥିଲେ ମଧ୍ୟ ସେମାନେ 'ତ୍ୟାଗ'ର ହୃଦୟ ନେଇ ଜୀବନ ଯାପନ କରୁଥିଲେ । ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା ଚତୁର୍ବର୍ଗ ପ୍ରାପ୍ତି । ( ଏହା ପରବର୍ତ୍ତୀ ସମୟରେ ଆଲୋଚିତ ହେବ ) ବୈଦିକ ସାମାଜିକ ଜୀବନର ବିଭିନ୍ନ ଧାରା ସଂପର୍କରେ ନିମ୍ନରେ ବର୍ଣ୍ଣିତ ହେବ । ଏଗୁଡ଼ିକର ବିଶ୍ଳେଷଣ କଲେ ଆମେ ବୈଦିକ ସାମାଜିକ ଜୀବନ କିପରି ଥିଲା ତାହା ସହଜରେ ଅନୁମାନ କରିପାରିବା ।

(କ) ମାତୃଭୂମି :-

ବୈଦିକ ଆର୍ଯ୍ୟଙ୍କର ମୂଳ ବାସଭୂମି ଥିଲା ସପ୍ତସିନ୍ଧୁ ଅଞ୍ଚଳ । ଏହା ମୁଖ୍ୟତଃ ପଶ୍ଚିମ ଭାରତ । ପାକିସ୍ଥାନ ଓ ଆଫଗାନି ସ୍ଥାନର କେତେକ ଅଞ୍ଚଳ । ସପ୍ତସିନ୍ଧୁ ଅଞ୍ଚଳରୁ କ୍ରମେ କ୍ରମେ ବୈଦିକ ଆର୍ଯ୍ୟମାନଙ୍କର ପୂର୍ବାଭିମୁଖରେ ଓ ଦକ୍ଷିଣାଭିମୁଖରେ ଗତି ହୋଇଥିଲା । ଏଠାରେ ଆର୍ଯ୍ୟେତର ଗୋଷ୍ଠୀର ଲୋକେ ରହୁଥିଲେ । କାଳକ୍ରମେ ସେମାନେ ବୈଦିକ ଆର୍ଯ୍ୟମାନଙ୍କ ସହିତ ସଂପର୍କିତ ହୋଇଗଲେ । ଫଳରେ ପରବର୍ତ୍ତୀ କାଳରେ ଏହି ଭୂମି ଗୁଡ଼ିକ ଆର୍ଯ୍ୟାବର୍ତ୍ତର ମର୍ଯ୍ୟଦା ପାଇଥିଲା । ବୈଦିକ ଆର୍ଯ୍ୟମାନେ ଏହି ଅଞ୍ଚଳରେ ସେମାନଙ୍କର ସଭ୍ୟତା ଓ ସଂସ୍କୃତିର ବିସ୍ତାର କରିଥିଲେ ହେଁ ସେମାନଙ୍କ ଜନ୍ମଭୂମିର ମର୍ଯ୍ୟଦା ପ୍ରଦାନ କରିଥିଲେ । ଏହାକୁ ସେମାନେ ଉପନିବେଶ ଭାବରେ ଗ୍ରହଣ କରୁନଥିଲେ । ଏହି ଦୃଷ୍ଟିରୁ ସମଗ୍ର ଭାରତ ବର୍ଷ ତାଙ୍କର ମାତୃଭୂମି ଥିଲା । ବୈଦିକ ଆର୍ଯ୍ୟମାନେ ତାଙ୍କର ମାତୃଭୂମିକୁ 'ଦେବସୃଷ୍ଟ' ବୋଲି ବିଶ୍ୱାସ କରୁଥିଲେ । ଏହାର ସାର୍ବଭୌମତ୍ୱ ରକ୍ଷା ଏମାନଙ୍କର ମୁଖ୍ୟ କର୍ତ୍ତବ୍ୟ ଥିଲା ।

ଅନେକ ସମୟରେ ଆର୍ଯ୍ୟେତର କେତେକ ଗୋଷ୍ଠୀ, ଭିନ୍ନମତବାଦୀ ଆର୍ଯ୍ୟ ଗୋଷ୍ଠୀଙ୍କ ସହିତ ମିଶି ଭାରତର ସ୍ୱାଧୀନତା ଓ ସାର୍ବଭୌମତ୍ୱ ପ୍ରତି ବିପଦ ସୃଷ୍ଟି କରୁଥିଲେ । ଏମାନଙ୍କ ସହିତ ବୈଦିକ ଆର୍ଯ୍ୟଙ୍କର ଯୁଦ୍ଧ ହୋଇଅଛି । ସାଧାରଣ ଜନତା ମଧ୍ୟ ଏଥିରେ ସହଯୋଗ କରିଅଛନ୍ତି । ବୈଦିକ ଇତିହାସରେ ଏ ପ୍ରକାର ଅନେକ ଯୁଦ୍ଧ ସଂଘଠିତ ହୋଇଛି ସେମାନଙ୍କ ମଧ୍ୟରୁ 'ଦାଶରାଜ୍ଞ' ଯୁଦ୍ଧ ଅନ୍ୟତମ । (୧)

ରାଜା ସିଂହାସନ ଆରୋହଣ କରୁଥିବା ବେଳେ 'ଭୂମିମାତା'ଙ୍କ ପ୍ରତି ଅନିଷ୍ଟ ସାଧନ କରିବେ ନାହିଁ ବୋଲି ଗୋଟିଏ ଶପଥ ନେଇଥାନ୍ତି । ସେ ଶପଥଟି ହେଲା ଜନ୍ମଭୂମି ପ୍ରତି ବିଶ୍ୱାସ ଘାତକତା କରିବେ ନାହିଁ ଓ ତାହାର ସାର୍ବଭୌମତ୍ୱ ପ୍ରତି ସର୍ବଦା ଚେଷ୍ଟିତ ରହିବେ । (୨) ଜନ୍ମଭୂମିକୁ ମା' ବୋଲି ବ୍ରାହ୍ମଣ ଯୁଗରେ ମଧ୍ୟ ଦର୍ଶାଯାଇଛି । "ବେଦରେ ରାଜାଙ୍କୁ ଜନ୍ମ ମାଟି ସହିତ ସାମିଲ କରିବାର ଅନେକ ପ୍ରତ୍ୟକ୍ଷ ବର୍ଣ୍ଣନା ରହିଅଛି । ରାଜାଙ୍କ ଅଭିଷେକ ସମୟରେ ସାରା ଦେହରେ ମୃତ୍ତିକାର ଏକ ପ୍ରଲେପ ଦିଆଯାଏ । ପାହାଡ ଉପରୁ ଅଣାଯାଇଥିବା ମାଟିକୁ ମୁଣ୍ଡରେ ବୋଳା ଯାଏ । ବିଲରୁ ଅଣାଯାଇଥିବା ମାଟିକୁ ହାତରେ ବୋଳା ଯାଏ । ବିଷ୍ଣୁ ମନ୍ଦିରରୁ ଆସିଥିବା ମାଟିକୁ ମୁହଁରେ ବୋଳା

ଯାଏ ଏବଂ ଘୋଡାଶାଳରୁ ଆସିଥିବା ମାଟିକୁ ଗୋତରେ ବୋଳାଯାଏ । (୩) ଏହା ଦ୍ୱାରା ରାଜା ଏବଂ ମାତୃଭୂମି ମଧ୍ୟରେ ଐକ୍ୟ ସଂସ୍ଥାପିତ ହୋଇଥାଏ । ଯଦ୍ୱାରା ରାଜା ଜନ୍ମଭୂମିର ସ୍ୱାର୍ଥକୁ ନିଜ ସ୍ୱାର୍ଥ ଭାବରେ ଦେଖିଥାନ୍ତି । ଏଥିପାଇଁ ସେ ଅଭିଷେକ ବେଳେ ପବିତ୍ର ଶପଥ ନେଇଥାନ୍ତି ''। (୪)

"ଅଥର୍ବ ବେଦରେ ଜନ୍ମଭୂମିକୁ ଦେବୀ ଭାବରେ ସ୍ତୁତି କରାଯାଇଅଛି । ସେ ଦେବୀ ଅତୁଳନୀୟ, ଧନରତ୍ନ ଏବଂ ନାନା ପ୍ରକାର ଅନ୍ୟାନ୍ୟ ଜିନିଷ ଦେଇଥାନ୍ତି । ତାଙ୍କ ଯୋଗୁ ବୈଦିକ ଆର୍ଯ୍ୟ ମାନଙ୍କର ଜୀବନ ଧାରଣ ସମ୍ଭବ ହୋଇଅଛି । ତେଣୁ ଏହି ଭୂମିଦେବୀଙ୍କୁ ଆର୍ଯ୍ୟମାନେ ପ୍ରାର୍ଥନା କରି କହିଥାନ୍ତି - "ନାନା ପ୍ରକାର ଧନରତ୍ନରେ ଭରି ଥିବା ଏହି ପୃଥିବୀ ମୋଲାଗି ଗିରି ଗୁହାର ଧନ, ମଣି ଆଉ ସୁନା ଦେଉ ''।(୫) ଅଥର୍ବ ବେଦରେ ମଧ୍ୟ କୁହାଯାଇଛି - "ଯେଉଁ ଭୂମିର ଚ୍ୱରି ପରିସୀମା ଅଛି, ଯେଉଁଠି କୃଷୀମାନେ ଖାଦ୍ୟ ଉତ୍ପାଦନ କରନ୍ତି, ଯେ ସକଳ ପ୍ରାଣୀଙ୍କ ଠାରେ ଜୀବନ ଭରି ଦେଇଥାଏ, ସେହି ଭୂମି ଆମ ଲାଗି ଗାଈ, ଘୋଡା ଓ ଖାଦ୍ୟ ଧାରଣ କରିଥାଉ'' । (୬) ଆର୍ଯ୍ୟମାନଙ୍କର ଜନ୍ମଭୂମି ଲାଗି ଥିବା ଏହି ଗର୍ବ ଓ ଅହଂକାର, ଏହି ସ୍ନେହ ଓ ପ୍ରୀତି, ଏହି ଶ୍ରଦ୍ଧା ଓ ସମ୍ମାନ ଜାତୀୟତାର ଏକ ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ନରହି ଆନ୍ତର୍ଜାତୀୟ ବା ସାର୍ବଜନୀନ ରୂପ ନେଇଥିଲା ''।(୭)

ଫଳରେ ଏଥିରୁ ଅନୁମାନ କରାଯାଏ ବୈଦିକ ଆର୍ଯ୍ୟମାନଙ୍କ ଲାଗି ମାତୃଭୂମି ଥିଲା ଏକ ପୂତ ପବିତ୍ର ଭୂମି । ଏହା ଥିଲା ସ୍ୱର୍ଗଠାରୁ ପବିତ୍ରତର । ବୈଦିକ ଆର୍ଯ୍ୟମାନଙ୍କର ଜନ୍ମଭୂମି ସହିତ ସଂପର୍କ ଥିଲା ମାତା ପୁତ୍ରଙ୍କର । ଜନ୍ମଭୂମି ପ୍ରତି ସେମାନଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନ ଥିଲା । ମାତୃଭୂମିର ସ୍ୱାଧୀନତା ଓ ସାର୍ବଭୌମତ୍ୱ ରକ୍ଷା କରିବା ସେମାନଙ୍କର କର୍ତ୍ତବ୍ୟ ଥିଲା । ଜନ୍ମଭୂମିଥିଲା ସେମାନଙ୍କ ନିକଟରେ ଦେବୀ ସମାନ । ସେମାନେ ଜନ୍ମଭୂମିକୁ ସକଳ ଧନ ରତ୍ନ ଓ ପ୍ରାଣର ଆଧାର ବୋଲି ମନେ କରୁଥିଲେ । ବୈଦିକ ଆର୍ଯ୍ୟମାନଙ୍କର ଏହି ଧାରଣା ସ୍ୱାମୀ ବିବେକାନନ୍ଦଙ୍କ ଭାଷଣରେ ସେଦିନ ଅନୁରଣିତ ହୋଇଥିଲା । ସେ କହିଥିଲେ - "ଭାରତ ବାସୀ ମୋର ଭାଇ, ଭାରତ ବାସୀ ମୋର ପ୍ରାଣ, ଭାରତର ଦେବା ଦେବୀ ମୋର ଈଶ୍ୱର, ଭାରତର ସମାଜ ମୋର ଶିଶୁଶଯ୍ୟା, ମୋର ଯୌବନର ଉପବନ, ମୋର ବାର୍ଦ୍ଧକ୍ୟର ବାରଣାସୀ, କୁହ ଭାଇ ଭାରତର ମୃର୍ତ୍ତିକା ମୋର ସ୍ୱର୍ଗ , ଭାରତର କଲ୍ୟାଣ ମୋର କଲ୍ୟାଣ'' । (୮)

**(ଖ) ବର୍ଣ୍ଣ ବ୍ୟବସ୍ଥା :-**

ବର୍ଣ୍ଣ ଧର୍ମ ପୃଷ୍ଠଭୂମିରେ ବୈଦିକ ଆର୍ଯ୍ୟମାନଙ୍କର ସହସ୍ର ସହସ୍ର ବର୍ଷର ସାଂସ୍କୃତିକ ଅଭ୍ୟୁଦୟ ଓ ସାମାଜିକ ସଂଗଠନର ଇତିହାସ ରହିଅଛି । ବର୍ଣ୍ଣ ଅର୍ଥ ଆମେ ରଙ୍ଗ ବୋଲି ସାଧାରଣତଃ ଗ୍ରହଣ କରିଥାଉ । କେତେକ ତତ୍ତ୍ୱବିତ୍‌ଙ୍କ ମତରେ ରଙ୍ଗର ବିଭିନ୍ନତାକୁ ନେଇ ସର୍ବ ପ୍ରଥମେ ବର୍ଣ୍ଣ ବିଭାଗର ସୃଷ୍ଟି ହୋଇଥିଲା । ସେମାନଙ୍କ ମତରେ ପ୍ରଥମେ "ଆର୍ଯ୍ୟବର୍ଣ୍ଣ ଓ ଦାସବର୍ଣ୍ଣ ବୋଲି ଦୁଇଟି ବର୍ଣ୍ଣ ଥିଲା । ସେମାନଙ୍କ ଦେହ ବର୍ଣ୍ଣ ଭେଦରେ 'ଆର୍ଯ୍ୟ ଓ ଦାସ' ଗୋଷ୍ଠୀରେ ବିଭକ୍ତ ହୋଇଥିଲେ । ମାତ୍ର ଏହି ବିଗ୍ୱର ଧାରାକୁ ଅନେକ ଗ୍ରହଣ କରିପାରନ୍ତି ନାହିଁ । ସେମାନଙ୍କ ମତରେ ଯେଉଁମାନେ ଆର୍ଯ୍ୟ ଜୀବନ ଧାରାର ଅନୁବର୍ତ୍ତୀ ଥିଲେ ସେମାନଙ୍କୁ କୁହାଯାଉଥିଲା ଆର୍ଯ୍ୟ ବର୍ଣ୍ଣ ଓ ଅନ୍ୟ ପକ୍ଷରେ ଯେଉଁମାନେ ଆର୍ଯ୍ୟେତର ଦାସ ଜୀବନ ଧାରାର ଅନୁବର୍ତ୍ତୀ ଥିଲେ ସେମାନଙ୍କୁ କୁହାଯାଉଥିଲା ଦାସବର୍ଣ୍ଣ ''।

ବହୁ ବର୍ଷ ପର୍ଯ୍ୟନ୍ତ ଆର୍ଯ୍ୟ ଓ ଦାସମାନଙ୍କ ମଧ୍ୟରେ ସଂଘର୍ଷ ଗ୍ଲି ରହିଥିଲା । କାଳକ୍ରମେ ଏହି ଦାସମାନେ ଆର୍ଯ୍ୟମାନଙ୍କ ସହିତ ଏକାଠି ରହିବା ପାଇଁ ଆଗେଇ ଆସିଥିଲେ । ଏହି ଯୁଦ୍ଧ ମଧ୍ୟରେ 'ଦାଶରାଜ୍ଞ' ଥିଲା ସବୁଠାରୁ ବଡ ଯୁଦ୍ଧ । ଜଣେ ଆର୍ଯ୍ୟ ରାଜାଙ୍କ ସହିତ ଆର୍ଯ୍ୟମାନଙ୍କର ଏକ ଭିନ୍ନ ଗୋଷ୍ଠୀ ସହିତ ମିଶି 'ଦାସମାନେ' ଯୁଦ୍ଧ କରିଥିଲେ ଏବଂ ଫଳରେ ମୂଳ ଆର୍ଯ୍ୟମାନେ ଜୟୀ ହୋଇଥିଲେ । ଫଳରେ ଆର୍ଯ୍ୟମାନେ ଏମାନଙ୍କୁ ସିଧା ସଳଖ ଭାବରେ ଆର୍ଯ୍ୟସମାଜକୁ ନ ନେଇ ତାଙ୍କୁ 'ଦାସବର୍ଣ୍ଣ' ଭାବରେ ଡାକିଲେ । "ଋଷି ଅଗସ୍ତ୍ୟ ଓ ତାଙ୍କ ସ୍ତ୍ରୀ ଲୋପାମୁଦ୍ରା" ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ଆର୍ଯ୍ୟ ଧର୍ମର ପ୍ରଗ୍ର କରିଥିଲେ । ଆର୍ଯ୍ୟ ସଂସ୍କୃତିକୁ ଦକ୍ଷିଣ ଭାରତର ଦକ୍ଷିଣ ପ୍ରାନ୍ତରକୁ ନେବାରେ ସେ ହେଉଛନ୍ତି ପ୍ରଥମ । ତେଣୁ ଉଭୟେ ଆର୍ଯ୍ୟ ଏବଂ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ପ୍ରିୟପାତ୍ର ଥିଲେ । କାଳକ୍ରମେ ଆର୍ଯ୍ୟମାନେ ନିଜକୁ ତିନି ଶ୍ରେଣୀରେ ବିଭକ୍ତ କଲେ । ସେମାନେ ହେଲେ - ବ୍ରହ୍ମ, ରାଜନ୍ୟ ଓ ବୈଶ୍ୟ । ଏଠାରେ ମନେ ରଖିବାକୁ ହେବ ପ୍ରାଥମିକ ଅବସ୍ଥାରେ ଋଗ୍‌ବେଦରେ ବ୍ରାହ୍ମଣ ବର୍ଣ୍ଣକୁ ବ୍ରହ୍ମ, କ୍ଷତ୍ରିୟ ବର୍ଣ୍ଣକୁ ରାଜନ୍ୟ ଓ ବୈଶ୍ୟ ବର୍ଣ୍ଣକୁ ବୈଶ୍ୟ ବୋଲି କୁହାଗଲା । ଏହି ତିନି ବର୍ଣ୍ଣର କର୍ତ୍ତବ୍ୟ କ'ଣ ତାହା ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି । (୯) ସର୍ବ ପ୍ରଥମେ ପୁରୁଷ ସୂକ୍ତ ୧୦ ମଣ୍ଡଳରେ ଆମେ ଶୂଦ୍ର ନାମର ଉଲ୍ଲେଖ ଦେଖିବାକୁ ପାଇଥାଉ । ଏ ପର୍ଯ୍ୟନ୍ତ ଦାସ ବର୍ଣ୍ଣର ଲୋକେ ଆର୍ଯ୍ୟମାନଙ୍କର ସାମାଜିକ ଜୀବନ ସହିତ ସଂପୃକ୍ତ ହୋଇନଥିଲେ । ପୁରୁଷ ସୂକ୍ତରେ "ବିରାଟ ପୁରୁଷ"ଙ୍କ ଶରୀରର ବିଭିନ୍ନ ଅଂଶରୁ ଗ୍ରି ବର୍ଣ୍ଣର ସୃଷ୍ଟି ବୋଲି କୁହାଯାଇଛି । ବିରାଟ ପୁରୁଷଙ୍କ ମୁଖରୁ ବ୍ରାହ୍ମଣ, ଦୁଇ ବାହୁରୁ ରାଜନ୍ୟ (କ୍ଷତ୍ରିୟ) ଦୁଇ ଉରୁରୁ ବୈଶ୍ୟ ଏବଂ ଦୁଇ ପାଦରୁ ଶୂଦ୍ର ସୃଷ୍ଟି ହେବାର ଉଲ୍ଲେଖ ରହିଅଛି । (୧୦)

ଋଗ୍‌ବେଦରେ ବର୍ଣ୍ଣିତ ବର୍ଣ୍ଣ ବ୍ୟବସ୍ଥା ଯଜୁର୍ବେଦରେ ପୂର୍ଣ୍ଣ ପ୍ରକାଶିତ ହୋଇଅଛି । ସମାଜକୁ ଗ୍ରି ଶ୍ରେଣୀରେ ବିଭକ୍ତ କରିବାରେ ଆର୍ଯ୍ୟମାନେ ଏତେ ତତ୍ପରତା ଦେଖାଇଥିଲେ ଯେ ସେମାନେ ଦେବତାମାନଙ୍କ ଠାରେ ଏହି ଗ୍ରି ଶ୍ରେଣୀ ଲକ୍ଷ୍ୟ କରିପାରିଥିଲେ । ସାୟଣାଗ୍ର୍ଯ୍ୟ ବ୍ରାହ୍ମଣର ବ୍ୟାଖ୍ୟାନୁକ୍ରମରେ ଏକଥା ସ୍ପଷ୍ଟ ଭାବରେ କହିଛନ୍ତି । (୧୧) ସେମାନେ କେବଳ ଦେବତାଙ୍କୁ ଶ୍ରେଣୀ ବିଭାଗ କରି ନାହାଁନ୍ତି । ପଶୁମାନଙ୍କ ମଧ୍ୟରେ ଏହି ଶ୍ରେଣୀ ବିଭାଗକୁ ଲକ୍ଷ୍ୟ କରିଅଛନ୍ତି । (୧୨) ଶତପଥ ବ୍ରାହ୍ମଣରେ ଗୋଟିଏ ସ୍ଥାନରେ କୁହାଯାଇଛି "ଛେଳି ହେଉଛି ବ୍ରାହ୍ମଣ, ଘୋଡା ହେଉଛି କ୍ଷତ୍ରିୟ, ଏବଂ ଗଧ ହେଉଛି ବୈଶ୍ୟ ଓ ଶୂଦ୍ର" । କେବଳ ପଶୁମାନଙ୍କ ମଧ୍ୟରେ ନୁହେଁ ପକ୍ଷୀମାନଙ୍କ ମଧ୍ୟରେ ଏହି ଶ୍ରେଣୀ ବିଭାଗ କରାଯାଇଛି । ଆର୍ଯ୍ୟମାନଙ୍କର ପ୍ରାଥମିକ ଅବସ୍ଥାରେ ଗ୍ରିବର୍ଣ୍ଣର ବିଭାଗ ଥିଲା ଗୁଣଭିତ୍ତିକ । ଜନ୍ମଭିତ୍ତିକ ନୁହେଁ । କର୍ମ ବଳରେ କ୍ଷତ୍ରିୟ ମଧ୍ୟ ବ୍ରାହ୍ମଣ ହୋଇ ପାରୁଥିଲା । "ରାଜା ଜନକ, ପ୍ରବହଣ, ରଥବୀତି" ହେଉଛନ୍ତି ଏହାର ନିଦର୍ଶନ । ଖାଲି ସେତିକି ନୁହେଁ କର୍ମ ବଳରେ ଶୂଦ୍ର ମଧ୍ୟ ଋଷିତ୍ୱର ମର୍ଯ୍ୟାଦା ଲାଭ କରିପାରୁଥିଲା । ଋଷି କକ୍ଷିବାନ୍, ତାଙ୍କ କନ୍ୟା ଋଷିକା ଘୋଷା, ଇତରାଙ୍କ ପୁତ୍ର ମହୀଦାସ, ଯେ କି ଐତରେୟ ନାମରେ ଖ୍ୟାତ , ହେଉଛନ୍ତି ଗୋଟିଏ ଗୋଟିଏ ନିଦର୍ଶନ ।(୧୩) ଏଥିରୁ ପ୍ରମାଣିତ ହୁଏ ଯେ ପ୍ରାଥମିକ ଅବସ୍ଥାରେ ବୈଦିକ ସମାଜରେ ଜାତି ପ୍ରଥା ଆଦୌ ନଥିଲା । ପ୍ରଥମେ ଥିଲା ଆର୍ଯ୍ୟ ଉଚ୍ଚ ବର୍ଣ୍ଣର ତିନି ଶ୍ରେଣୀ ପରେ ତାଙ୍କ ସହିତ ସାମିଲ ହେଲେ ଶୂଦ୍ର ବର୍ଣ୍ଣ ।

ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳ ଛାଡି ଯେତେବେଳେ ବାହାରକୁ ଗଲେ ସେମାନେ ଆର୍ଯ୍ୟେତର ସଂସ୍କୃତି ସହିତ ସମ୍ମୁଖୀନ ହୋଇଥିବେ । କାଳକ୍ରମେ ଉଭୟ ଗୋଷ୍ଠୀ ସହାବସ୍ଥାନ ନୀତି ଅବଲମ୍ବନ କରିଥିବେ ଶାନ୍ତିରେ ରହିବା ପାଇଁ । ଏହା ଫଳରେ ଦୁଇ ସଂସ୍କୃତିର ମିଳନ ଘଟିଥିବ । ଆର୍ଯ୍ୟଦାସମାନଙ୍କ ମଧ୍ୟରେ ବେଳେ ବେଳେ ପାରସ୍ପରିକ ବିବାହ ସଂଘଟିତ ହୋଇଥିବ । ଉଚ୍ଚବର୍ଣ୍ଣ ପୁରୁଷ ଓ ନୀଚ ବର୍ଣ୍ଣର ସ୍ତ୍ରୀ ଅନୁଲୋମ ବିବାହରେ ଏକତ୍ର ହୋଇଥିବେ ଅଥବା ଉଚ୍ଚବର୍ଣ୍ଣ ସ୍ତ୍ରୀ ଏବଂ ନୀଚ ବର୍ଣ୍ଣ ପୁରୁଷ ପ୍ରତିଲୋମ ବିବାହରେ ଏକତ୍ର ହୋଇଥିବେ । ଏହି ପରିପ୍ରେକ୍ଷୀରେ ମୌଳିକ ଚ଼ରିବର୍ଣ୍ଣରୁ ନାନା ପ୍ରକାର ଜାତି, ଉପଜାତି ସୃଷ୍ଟି ହୋଇଥିବେ । ଯୁଗ ଯୁଗ ଧରି ଗଢ଼ି ଆସିଥିବା ଏ ପ୍ରକାର ସ୍ଥିତି ଯଜୁର୍ବେଦର ରଚନା ବେଳକୁ ଖୁବ୍ ଦୃଢ ହୋଇଥିବ । ଫଳରେ ଜାତି ଓ ଉପଜାତି ମାନଙ୍କର ସଂଖ୍ୟା କ୍ରମେ କ୍ରମେ ବଢିବାକୁ ଲାଗିଲା । ପ୍ରତିଟି କାମ ପାଇଁ ଗୋଟିଏ ଗୋଟିଏ ଜାତି ସୃଷ୍ଟି ହେଲା । 'ବାଜସନେୟୀ ସଂହିତା'ରେ 'ଶତରୁଦ୍ରୀୟ ସୂକ୍ତ'ରେ ସତୁରି ବିଭିନ୍ନ କର୍ମର ଉଲ୍ଲେଖ ଅଛି ଏବଂ ପ୍ରତ୍ୟକ କର୍ମ ପାଇଁ ଗୋଟିଏ ଜାତି କିଂବା ଉପଜାତିର ସୃଷ୍ଟି ହୋଇଛି । (୧୪) ଯଦ୍ଵାରା କମାର, କୁମ୍ଭାର, ବଢେଇ , ଭଣ୍ଡାରି, ଧୋବା ଆଦି ଜାତିଙ୍କର ସୃଷ୍ଟି ହୋଇଅଛି । ଏହି ଜାତି ବିଭାଗ ଯୋଗୁ ଦଣ୍ଡବିଧି ଆଇନ୍ ଓ ସୂତ୍ର ସଂପର୍କୀୟ ଆଇନ ମଧ୍ୟ ପରିବର୍ତ୍ତିତ ହୋଇଗଲା । ଏ ସମସ୍ତ ବିଧି ବିଧାନ ସାମାଜିକ ବ୍ୟବସ୍ଥାକୁ ଦୁର୍ବଳ କରିଦେଲା । ସମାଜରେ ବଡ ସାନର ବାଛ ବିଚ଼ର ଆଣି ଥୋଇଲା । ଏହା ଫଳରେ ସାମଜିକ ଏକତାର ସୂତ୍ର ଦୁର୍ବଳ ହୋଇପଡିଲା । ଆର୍ଯ୍ୟମାନଙ୍କର ମୂଳ ଉଦ୍ଦେଶ୍ୟ ନଷ୍ଟ ହୋଇଗଲା । ବର୍ଣ୍ଣ ବିଭାଗ ସମାଜରେ ଜୀବନୀ ଶକ୍ତି ଦେଉ ଥିବାବେଳେ ଜାତି ବିଭାଗ ତାହାକୁ ଦୁର୍ବଳ କରିଦେଲା । ଜାତି ବିଭାଗ ସମାଜରେ ଏକ କଳଙ୍କ ଭାବରେ ଠିଆ ହେଲା । ଯଜୁଃ, ସାମ, ଅଥର୍ବ ଓ ବ୍ରାହ୍ମଣ କାଳରେ ବର୍ଣ୍ଣ ବ୍ୟବସ୍ଥା ପୂର୍ଣ୍ଣ ରୂପରେ ବିକାଶ ଲାଭ କରିଥିଲା । ଚ଼ତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାରେ ଯେଉଁ ବିଭାଗ ଗୁଡିକ ଗ୍ରହଣ କରାଯାଇଥିଲା ତାହାର କେତେକ ସୂଚନା ଏଠାରେ ପ୍ରଦାନ କରାଗଲା ।

**ବ୍ରାହ୍ମଣ :-**

ବ୍ରାହ୍ମଣଙ୍କ ପାଇଁ ବେଦମନ୍ତ୍ର ଗୁଡିକରେ ବ୍ରହ୍ମ ଶବ୍ଦର ପ୍ରୟୋଗ ହୋଇଅଛି ।(୧୫) ଏହି ବ୍ରାହ୍ମଣ ଶବ୍ଦ ପ୍ରଥମେ ଋଗ୍ ବେଦରେ ବ୍ୟବହାର ହୋଇଥିଲା । ଚ଼ରିବର୍ଣ୍ଣ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ ଥିଲେ । ସେମାନେ ସମାଜର ନେତା ଥିଲେ । ଐହିକ ଏବଂ ପାରତ୍ରିକ ମଙ୍ଗଳ ପାଇଁ ସେମାନେ ପଥ ପରିଷ୍କାର କରୁଥିଲେ । ସଂସାରର ଯାହା ଭୋଗ୍ୟବସ୍ତୁ ବ୍ରାହ୍ମଣମାନେ ସେଗୁଡିକ ତ୍ୟାଗ କରି ଅନ୍ୟ ବର୍ଗର ଲୋକମାନଙ୍କ ପାଇଁ ବ୍ୟବସ୍ଥା କରୁଥିଲେ ।(୧୬) ସେମାନଙ୍କୁ ପୁରୋହିତ କୁହାଯାଉଥିଲା । କେବଳ ସାମାଜିକ କର୍ମ କର୍ମାଣି ସେମାନେ କରୁନଥିଲେ, ସେମାନେ ସବୁ କାମରେ ଆଗରେ ରହୁଥିଲେ । ସାରା ସମାଜର ସାଂସ୍କୃତିକ ମୂଲ୍ୟବୋଧ ଗୁଡ଼ିକ ରକ୍ଷା କରିବାରେ ଜାଗ୍ରତ ପ୍ରହରୀ ରୂପେ ସେମାନେ କାର୍ଯ୍ୟ କରୁଥିଲେ । ଅଥର୍ବ ବେଦରେ ବ୍ରାହ୍ମଣ ନିଜ ସଂପର୍କରେ କହିଅଛନ୍ତି "ଆମେ ପୁରୋହିତମାନେ ବା ବ୍ରାହ୍ମଣମାନେ ରାଷ୍ଟ୍ରରେ ଜାଗ୍ରତ ରହିଅଛୁ" । (୧୭) ବ୍ରାହ୍ମଣମାନେ ଯୁଦ୍ଧ ସମୟରେ ସେନା ବାହିନୀଙ୍କ ସଂଗେ ଆଗେ ଆଗେ ଚ଼ଲୁଥିଲେ । 'ଦାଶରାଜ୍ଞ' ଯୁଦ୍ଧରେ ବଶିଷ୍ଠ ଓ ବିଶ୍ଵାମିତ୍ର ସ୍ଵସ୍ଵ ବାହିନୀର ନେତୃତ୍ଵ ନେଇଥିଲେ । ଐତରେୟ ବ୍ରାହ୍ମଣରେ ପୁରୋହିତଙ୍କ ଠାରେ ଦୁଇଗୋଟି ଗୁଣର ଆରୋପ କରାଯାଇଅଛି ।

ପ୍ରଥମରେ ସେମାନେ 'ବିଦ୍ୱାନ,' ଦ୍ୱିତୀୟରେ "ରାଷ୍ଟ୍ର ଗୋପ ବା ରାଷ୍ଟ୍ର ରକ୍ଷକ"। (୧୮) "ଯେଉଁ ରାଷ୍ଟ୍ରରେ ଏଭଳି ବିଦ୍ୱାନ, ରାଷ୍ଟ୍ରର ରକ୍ଷକ ପୁରୋହିତ ଅଛନ୍ତି ତାହାର ରାଜାଙ୍କୁ ସମସ୍ତେ ମିତ୍ର ବୋଲି ଭାବନ୍ତି ଏବଂ ଶତ୍ରୁମାନେ ତାଙ୍କ ଦ୍ୱାରା ପରାସ୍ତ ହୁଅନ୍ତି"।

ବ୍ରାହ୍ମଣମାନେ ସାଂସାରିକ କାମନା ବାସନାର ଉର୍ଦ୍ଧ୍ୱରେ ରହୁଥିଲେ । ସେମାନେ ଶୁଦ୍ଧପୂତ ଜୀବନ ଯାପନ କରୁଥିଲେ । ସେମାନେ ଆଦର୍ଶ ପୁରୁଷ ଭାବରେ ସମାଜରେ ପ୍ରତିଷ୍ଠିତ ହେବାକୁ ସମସ୍ତେ ଚାହୁଁଥିଲେ । ଏହି ବୈଦିକ ପରମ୍ପରା 'ସୂତ୍ର ଯୁଗ' ପର୍ଯ୍ୟନ୍ତ ଚାଲିଥିଲା । 'ଧର୍ମ ସୂତ୍ର'ରେ କୁହାଯାଇଛି ଦ୍ୱିଜମାନଙ୍କର ( ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ଅଧ୍ୟୟନ, ପୂଜା ଓ ଦାନ ଦେବା ହେଉଛି କର୍ତ୍ତବ୍ୟ । ବ୍ରାହ୍ମଣମାନଙ୍କର ଏହା ସହିତ ପାଠ ପଢେଇବା, ଯଜ୍ଞ କର୍ମରେ ସହାଯ୍ୟ କରିବା ଏବଂ ଦାନ ଗ୍ରହଣ କରିବା ଇତ୍ୟାଦି କର୍ମମାନଥିଲା ।(୧୯) ଏହି ନିୟମ ବୈଦିକ କାଳରୁ ଚଳି ଆସିଅଛି । ସଂକ୍ଷେପରେ କହିବାକୁ ଗଲେ ସେମାନେ ସମାଜ କଥା ଭାବୁଥିଲେ ଏବଂ ସମାଜ ସେମାନଙ୍କ କଥା ଭାବୁଥିଲା । ଏ ସମାଜରେ ବ୍ରାହ୍ମଣ ଗୋଷ୍ଠୀ ଥିଲେ ସମ୍ମାନସ୍ପଦ । ପ୍ରାଚୀନ ଚୈନିକ ସଂସ୍କୃତି ଭଳି ବୈଦିକ ସଂସ୍କୃତିରେ ବିଦ୍ୟା ଓ ଜ୍ଞାନକୁ ଉଚ୍ଚତମ ସ୍ଥାନ ଦିଆଯାଇଛି । ବ୍ରାହ୍ମଣ ଓ କ୍ଷତ୍ରିୟମାନେ ସମାଜର ଉଚ୍ଚ ସ୍ଥାନରେ ରହିଥିଲେ ମଧ୍ୟ କ୍ଷତ୍ରିୟମାନଙ୍କୁ ସର୍ବଦା ସତର୍କ କରାଇ ଦିଆଯାଇଛି ଯେ ବ୍ରାହ୍ମଣମାନଙ୍କ ସ୍ଥାନ ଉଚ୍ଚରେ । ଐତରେୟ ବ୍ରାହ୍ମଣରେ କୁହାଯାଇଛି "ବ୍ରହ୍ମ ବା ବ୍ରାହ୍ମଣ ଆଗ ଓ ତାଙ୍କ ପଛରେ କ୍ଷତ୍ର ବା କ୍ଷତ୍ରିୟ" । (୨୦) ରାଜା ବ୍ରାହ୍ମଣ ମାନଙ୍କୁ ଖୁବ୍ ମାନୁଥିଲେ । ଯେଉଁ ରାଜା ବ୍ରାହ୍ମଣମାନଙ୍କର ଅଧୀନ ଥିଲେ ସେହି ରାଜ୍ୟ ସମୃଦ୍ଧ ଥିଲା । 'ତାଣ୍ଡ୍ୟ ବ୍ରାହ୍ମଣ'ରେ କୁହାଯାଇଛି ବ୍ରାହ୍ମଣ ବର୍ଣ୍ଣ ହେଉଛି ଦେବତା । (୨୧) ବ୍ରାହ୍ମଣମାନେ ଦେବାତା ଭଳି ପୂଜନୀୟ । 'ପୁରୋହିତ' ଶବ୍ଦଟି ଦେବତା ମାନଙ୍କ ଅଗ୍ରଣୀ ଥିବା ଅଗ୍ନିଙ୍କ ପ୍ରତି ପ୍ରଯୁଜ୍ୟ ହେଉଥିଲା । ସେଥିପାଇଁ ଋଗ୍ ବେଦର ପ୍ରଥମ ମନ୍ତ୍ରରେ ଅଗ୍ନିଙ୍କୁ 'ପୁରୋହିତ' ଭାବରେ ଆବାହନ କରାଯାଇଛି । ଏଥିପାଇଁ ଭାରତୀୟ ପରମ୍ପରାରେ ବ୍ରାହ୍ମଣଙ୍କୁ 'ଭୂଦେବ' ବା ପୃଥିବୀର ଦେବତା ବୋଲି କୁହାଯାଏ ।

ବୈଦିକ ବ୍ରାହ୍ମଣ ଥିଲା ଏକ ଚିନ୍ତା ଧାରା, ଏକ ମନୋବୃତ୍ତି । ଯେ କୌଣସି ବ୍ୟକ୍ତି ନିଜର ନିଷ୍ଠାପର ଉଦ୍ୟମ ବଳରେ ଏହି ବ୍ରାହ୍ମଣତ୍ୱ ଲାଭ କରି ପାରୁଥିଲା । କର୍ମକୁ ନେଇ ଜଣେ ବ୍ରାହ୍ମଣ ଭାବରେ ନିଜକୁ ପରିଚିତ କରାଇ ପାରୁଥିଲା । ଦାସୀପୁତ୍ର 'ସତ୍ୟକାମ ଜାବାଳ' ସତ୍ୟ କଥା କହିବାରୁ ଗୌତମ ଋଷିଙ୍କ ଦ୍ୱାରା ବ୍ରାହ୍ମଣ ବୋଲି ଗଣ୍ୟ ହେବା କଥା ଛାନ୍ଦୋଗ୍ୟ ଉପନିଷଦ୍‌ରେ ବର୍ଣ୍ଣିତ ହୋଇଅଛି । 'କକ୍ଷିବାନ'ଙ୍କ ଭଳି ଶୂଦ୍ରଙ୍କୁ ମନ୍ତ୍ରଦ୍ରଷ୍ଟା ଋଷିଙ୍କ ସ୍ଥାନ ଦିଆଯାଇଛି ।-ତାଙ୍କ କନ୍ୟା 'ଘୋଷା' ଜଣେ ଋଷିକାଙ୍କ ମର୍ଯ୍ୟଦା ଲାଭ କରିଅଛନ୍ତି । କ୍ଷତ୍ରିୟଙ୍କ ବଳ ଠାରୁ ବ୍ରାହ୍ମଣଙ୍କ ବଳ ଅଧିକ ବୋଲି ବଶିଷ୍ଠଙ୍କ ବଳକୁ ନେଇ ଯେଉଁ 'ଗାଇ ଗଳ୍ପଟି' କୁହାଯାଇଛି ଏଥିରୁ ତାହା ସ୍ପଷ୍ଟ ଅନୁମେୟ । ( ଧିଗ୍‌ବଳଂ କ୍ଷତ୍ରିୟ ବଳଂ ବ୍ରହ୍ମତେଜୋ ବଳଂ ବଳମ୍ ) ଏହି ସବୁ ଆଲୋଚନାରୁ ପ୍ରତୀତ ହେଉଛି ଯେ ବୈଦିକ ସମାଜରେ ବ୍ରାହ୍ମଣଙ୍କ ଆସନ ଖୁବ୍ ଉଚ୍ଚରେ ଥିଲା । ବାସ୍ତବିକ୍ ସେ ଥିଲେ ସାରା ସମାଜର, ବନ୍ଧୁ, ଦାର୍ଶନିକ ଓ ପଥ ପ୍ରଦର୍ଶକ ।

**କ୍ଷତ୍ରିୟ :-**

ବୈଦିକ ସମାଜରେ ବ୍ରାହ୍ମଣଙ୍କ ତଳକୁ କ୍ଷତ୍ରିୟମାନଙ୍କର ସ୍ଥାନ ଥିଲା । ଏମାନେ ଥିଲେ ବାହୁବଳର ପ୍ରତୀକ । ଏମାନଙ୍କ ଲାଗି ଆର୍ଯ୍ୟ ସଂସ୍କୃତିର ରକ୍ଷଣାବେକ୍ଷଣ ଓ ପ୍ରସାର ସମ୍ଭବ ହୋଇଥିଲା । ଦାସ, ଦସ୍ୟୁ ଓ ଅସୁରମାନଙ୍କ ସହିତ ଆର୍ଯ୍ୟମାନଙ୍କର ବହୁକାଳ ବ୍ୟାପି ଯେଉଁ ସଂଗ୍ରାମ ଚାଲିଥିଲା ସେଥିରେ ମୁଖ୍ୟ ଅଂଶ କ୍ଷତ୍ରିୟମାନେ ଗ୍ରହଣ କରିଥିଲେ । ଋଗ୍‌ବେଦୀୟ 'ପୁରୁଷ ସୂକ୍ତ'ରେ କୁହାଯାଇଛି "ବ୍ରାହ୍ମଣୋଽସ୍ୟ ମୁଖ ମାସୀଦ୍ ବାହୁ ରାଜନ୍ୟକୃତ"। ଅର୍ଥାତ୍ ଏହାଙ୍କର ( ବିରାଟ ପୁରୁଷଙ୍କର) ମୁଖରୁ ବ୍ରାହ୍ମଣଙ୍କ ସୃଷ୍ଟି ହେଲା ବେଳେ ବାହୁ ଦ୍ୱୟରୁ ରାଜନ୍ୟ ବା କ୍ଷତ୍ରିୟଙ୍କର ସୃଷ୍ଟି ହୋଇଥିଲା । ବିଦ୍ୟାଧ୍ୟୟନ, ରାଜ୍ୟରକ୍ଷା ଓ ଜ୍ଞାନଚର୍ଚ୍ଚାର ପରିବେଶ ସୃଷ୍ଟି କରିବା ଲାଗି ଶାନ୍ତିର ନିହାତି ଆବଶ୍ୟକ । ତାହା ସହିତ ଆଭ୍ୟନ୍ତରୀଣ ବିଦ୍ରୋହ ଦମନ କେବଳ ଶସ୍ତ୍ର ବଳରେ ସମ୍ଭବ । (ଶସ୍ତ୍ରେଣ ରକ୍ଷିତେ ରାଷ୍ଟ୍ରେ ଶାସ୍ତ୍ର ଚିନ୍ତା ପ୍ରବର୍ତ୍ତତେ । ) ଯେଉଁ ରାଷ୍ଟ୍ର ଶସ୍ତ୍ର ଦ୍ୱାରା ସୁରକ୍ଷିତ ସେଠାରେ ଶାସ୍ତ୍ର ଅଧ୍ୟୟନ ଓ ଅଧ୍ୟାପନା ସମ୍ଭବ । ସାମାଜିକ ଆବଶ୍ୟକତାକୁ ଉପଲବ୍ଧି କରି ଆର୍ଯ୍ୟମାନେ କ୍ଷତ୍ରୀୟ ଶ୍ରେଣୀ ସୃଷ୍ଟି କରିଥିଲେ । ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କୁ ମର୍ଯ୍ୟାଦା ଓ ସମ୍ମାନ ଦେବାକୁ କୁଣ୍ଠାବୋଧ କରୁନଥିଲେ । ରାଜା ସମାଜକୁ ରକ୍ଷା କରୁଥିବାରୁ ତାଙ୍କୁ ସାଧାରଣ ଜନତା କାହିଁକି ମୁନି, ଋଷି, ବ୍ରାହ୍ମଣମାନେ ମଧ୍ୟ 'କର' ଦେଉଥିଲେ । ଏଭଳି ସ୍ଥିତିରେ ବ୍ରାହ୍ମଣ ଓ ମୁନି ଋଷିମାନଙ୍କର ସ୍ଥାନ ତଳକୁ ଚାଲି ଯାଉ ନଥିଲା । ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ସହଯୋଗ ହିଁ ଏକ ସୁସ୍ଥ ଓ ସୁସଂହତ ସମାଜ ଗଠନ କରିବାରେ ସହାୟକ ହୋଇପାରିଥିଲା । ସେଥିପାଇଁ ଯଥାର୍ଥରେ ବୈଦିକ ସମାଜ ବିଜ୍ଞାନୀମାନେ ଜାଣି ଶୁଣି କେତେକ ନିୟମ ଖଞ୍ଜିଥିଲେ । କାରଣ କ୍ଷତ୍ରୀୟମାନଙ୍କ ହାତରେ ଥିଲା ଅସ୍ତ୍ରର ବଳ । ସ୍ୱାର୍ଥ ସାଧନ ଲାଗି ସେମାନେ ଏହି ବାହୁ ବଳରେ ଅପପ୍ରୟୋଗ କାଳେ କରିପାରନ୍ତି ତେଣୁ ଆଉ ଗୋଟିଏ ନିଃସ୍ୱାର୍ଥପର ଜ୍ଞାନୀ ବ୍ୟକ୍ତିଙ୍କ ପ୍ରୟୋଜନୀୟତାକୁ ଉପଲବ୍ଧି କରି ବ୍ରାହ୍ମଣ ଗୋଷ୍ଠୀଙ୍କୁ ତାଙ୍କର ଦିଗଦର୍ଶକ ଭାବରେ ଆଗରେ ରଖୁଥିଲେ । (୨୨)

**ବୈଶ୍ୟ :-**

ବୈଦିକ ଚତୁର୍ବର୍ଣ୍ଣ ମଧ୍ୟରେ ବୈଶ୍ୟ ବର୍ଣ୍ଣର ସ୍ଥାନ ତୃତୀୟରେ । ବୈଶ୍ୟ ଶବ୍ଦଟି ବୈଦିକ 'ବିଶ୍' ଶବ୍ଦ ସହିତ ସଂବନ୍ଧିତ । 'ବିଶ୍' ଶବ୍ଦର ଅର୍ଥ ହେଲା ଜନ ସାଧାରଣ । ଅଥର୍ବ ବେଦରେ ରାଜାଙ୍କ ମୂର୍ଦ୍ଧାଭିଷେକ ମନ୍ତ୍ର ବୋଲାଯିବା ପ୍ରସଙ୍ଗରେ କୁହାଯାଇଛି "ତୁମକୁ ପ୍ରଜାମାନେ ଗ୍ରହଁନ୍ତୁ ବା ନିର୍ବାଚିତ କରନ୍ତୁ"। ( ବାଞ୍ଛନ୍ତୁ ନୋ ବିଶଃ ) ଋଗ୍ ବେଦରେ ମଧ୍ୟ 'ବିଶଃ' ଅର୍ଥ ସାଧାରଣ ଜନତା ବୋଲି କୁହାଯାଇଛି । (୨୩) ବ୍ରାହ୍ମଣ, କ୍ଷତ୍ରିୟଙ୍କୁ ଛାଡିଦେଲେ ଯେଉଁ ଜନ ସାଧାରଣ ରହିଗଲେ ସେମାନେ ବୈଶ୍ୟ । ଶୂଦ୍ର ବର୍ଣ୍ଣର ଉଦ୍ଭବ ନ ହୋଇଥିବା ସମୟ ହେଉଛି ଋଗ୍‌ବେଦର ପ୍ରାଥମିକ କାଳ । ସେତେବେଳେ 'ତ୍ରିବର୍ଣ୍ଣ'ର କଳ୍ପନା କରାଯାଇଥିଲା । କୃଷୀ, ବ୍ୟବସାୟୀ, ଶିଳ୍ପୀ, କଳାକାର ଆଦି ଗୋଷ୍ଠୀ ଥିଲେ ବୈଶ୍ୟ ସଂପ୍ରଦାୟର । ବୈଶ୍ୟମାନଙ୍କର ଉତ୍ପତ୍ତିର ପୃଷ୍ଠଭୂମି ଉପରେ ଆଲୋକପାତ କରି ନେହୁରୁ କହିଛନ୍ତି "ସମାଜର ଦରବାରରେ ଆସୁଥିବା ଦ୍ରବ୍ୟର ଉତ୍ପାଦନ ଓ ବଣ୍ଟନର ଦାୟିତ୍ୱ ଥିଲା ବୈଶ୍ୟ ଉପରେ"। (୨୪) ଏହି ବୈଶ୍ୟ ଗୋଷ୍ଠୀ ସମାଜରେ ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲେ ।

ମାତ୍ର ସେମାନଙ୍କର ସ୍ଥାନ ବୈଦିକ ସମାଜରେ ସେତେ ଉଚ୍ଚ ସ୍ଥାନରେ ନଥିଲା । ସେମାନେ କ୍ଷତ୍ରିୟଙ୍କ ନିମ୍ନରେ ସ୍ଥାନ ପାଉଥିଲେ । ଐତରେୟ ବ୍ରାହ୍ମଣରେ କୁହାଯାଉଛି ବୈଶ୍ୟମାନଙ୍କୁ ରାଜାଙ୍କୁ ଟିକସ ଦେବାକୁ ପଡିବ ଏବଂ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ତାଙ୍କୁ ଶୋଷଣ କରିପାରିବେ । ଆଉ ମଧ୍ୟ କୁହାଯାଇଛି କ୍ଷତ୍ରିୟମାନେ ଜମିର ମାଲିକ ଏବଂ ବୈଶ୍ୟମାନେ ତାଙ୍କର ପ୍ରଜା । କ୍ଷତ୍ରିୟମାନଙ୍କ ଅଧିନରେ ରହିବାକୁ ଏକ ଧର୍ମଗତ ସ୍ୱୀକୃତି ପ୍ରଦାନ କରିବା ଲାଗି ଏକ ପ୍ରକାର 'ଯାଜ୍ଞିକ ବିଧି' ମଧ୍ୟ ଖଞ୍ଜା ଯାଇଥିଲା । (୨୫) ପୁରୋହିତ ବ୍ରାହ୍ମଣଙ୍କ ପଛରେ କ୍ଷତ୍ରିୟ ଓ କ୍ଷତ୍ରିୟଙ୍କ ପଛରେ ବୈଶ୍ୟ ରହିଥିଲେ ।

ପ୍ରାଥମିକ ଅବସ୍ଥାରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ଭଳି ନହେଲବି ବୈଶ୍ୟମାନଙ୍କ ସ୍ଥିତି ସାମାନ୍ୟ ଭଲଥିଲା । ମାତ୍ର ଋଗ୍ ବେଦୋତ୍ତର ତଥା ବ୍ରାହ୍ମଣ କାଳରେ ତାଙ୍କର ସ୍ଥିତି ଦୁର୍ବଳ ହୋଇଯାଇଥିଲା । ଏହାର କାରଣ ହେଲା ବୈଶ୍ୟମାନଙ୍କୁ ସେମାନଙ୍କ ବୃତ୍ତି ନିମିତ୍ତ ଶୂଦ୍ରଗୋଷ୍ଠୀ ସହିତ ସଂପର୍କ ରକ୍ଷା କରିବାକୁ ହେଉଥିଲା । ସେତେବେଳେ ଶୂଦ୍ରମାନେ ବିରାଟ ସେବାକାରୀ ଦଳ ଥିଲେ ଏବଂ ସେଥିମଧ୍ୟରୁ ବହୁ ଶ୍ରମିକ ଥିଲେ । ଏମାନଙ୍କ ବ୍ୟତୀତ ବୈଶ୍ୟ ତାଙ୍କର କାର୍ଯ୍ୟ ନିର୍ବାହ କରିବାକୁ ଅସକ୍ଷମ ହେବାରୁ ଶୂଦ୍ର ଗୋଷ୍ଠୀ ସହିତ ସଂପର୍କ ସ୍ଥାପନ କଲେ, ମାତ୍ର ବ୍ରାହ୍ମଣ ଓ କ୍ଷତ୍ରିୟ ଗୋଷ୍ଠୀ ଏ କଥାକୁ ଗ୍ରହଣ କରିପାରୁ ନଥିଲେ । ଶୂଦ୍ରମାନେ 'ଦାସ ବର୍ଣ୍ଣ'ର ଥିବାରୁ ଆର୍ଯ୍ୟମାନଙ୍କର ଦୃଷ୍ଟିରେ ନୀଚ ଥିଲେ । ଫଳରେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ବୈଶ୍ୟମାନଙ୍କର ଶୂଦ୍ରମାନଙ୍କ ସହିତ ମିଳା ମିଶାକୁ ପସନ୍ଦ କଲେ ନାହିଁ । ଫଳରେ ବୈଶ୍ୟମାନଙ୍କୁ ସମାଜରେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ନିମ୍ନ ସ୍ଥାନରେ ରଖିଥିଲେ । 'ଆଡେ'ଙ୍କ ମତରେ ବୈଶ୍ୟମାନଙ୍କର ସାମାଜିକ ସ୍ଥିତି ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ଠାରୁ ଦୁର୍ବଳ ଥିଲା । (୨୬)

**ଶୂଦ୍ର –**

ଶୂଦ୍ରବର୍ଣ୍ଣ ଥିଲା ସମାଜର ନିମ୍ନତମ ବର୍ଣ୍ଣ । ଏମାନେ ମୂଳରୁ ଆର୍ଯ୍ୟ ବର୍ଣ୍ଣ ସହିତ ନଥିଲେ । 'ଦାସ ବର୍ଣ୍ଣ' ଅନ୍ତର୍ଗତ ଥିଲେ । ଆର୍ଯ୍ୟ ତିନି ବର୍ଣ୍ଣ ପରେ ଏହା ସ୍ୱତନ୍ତ୍ର ଭାବରେ ମୁଣ୍ଡ ଟେକି ଉଠିଥିଲେ । ଏହା 'ଋଗ୍ ବେଦର ୧୦ ମଣ୍ଡଳର ପୁରୁଷ ସୂକ୍ତ'ର ରଚନା ବେଳକୁ ଉଦ୍ଭବ ହୋଇ ସାରିଥିଲା । ଋଗ୍‌ବେଦରେ ଗୋଟିଏ ସ୍ଥାନରେ ଆମେ 'ଶୂଦ୍ର' ନାମର ଉଲ୍ଲେଖ ଦେଖିବାକୁ ପାଇଥାଉ । 'ବିରାଟ ପୁରୁଷ'ଙ୍କର ଦୁଇ ପାଦରୁ ଏମାନେ ଉଦ୍ଭବ ହୋଇଥିବା କୁହାଯାଇଛି । ଏହା ଦ୍ୱାରା ଶୂଦ୍ରମାନଙ୍କର କର୍ତ୍ତବ୍ୟ ଓ ସାମାଜିକ ସ୍ଥିତିର ସୂଚନା ମିଳୁଅଛି । ଶୂଦ୍ରମାନେ ସମସ୍ତଙ୍କର ସେବା କରିବା କଥା ନିର୍ଣ୍ଣିତ ହୋଇଅଛି । ବୈଦିକ ସମାଜ ଜଟିଳ ହୋଇ କ୍ରମେ ନୂଆ ନୂଆ ଗୋଷ୍ଠୀର ଲୋକମାନଙ୍କ ସହିତ ସଂପର୍କ ସ୍ଥାପନ କଲା । ଏମାନେ ଆର୍ଯ୍ୟମାନଙ୍କ ଦ୍ୱାରା ପରାସ୍ତ ହୋଇ ଆର୍ଯ୍ୟମାନଙ୍କର ବଶତା ସ୍ୱୀକାର କଲେ । ଫଳରେ ଦାସ ଗୋଷ୍ଠୀ ବଢି ଚାଲିଲା । ଫଳରେ ଶୂଦ୍ରମାନଙ୍କର ସଂଖ୍ୟା ବଢିଲା । ଏହା ଛଡା ଆର୍ଯ୍ୟେତର ଅନେକ ଜାରଜ ସନ୍ତାନ ଜନ୍ମ ହୋଇ ଶୂଦ୍ର ଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇଗଲେ ବୋଲି 'ମନୁ' ମତ ବ୍ୟକ୍ତ କରିଅଛନ୍ତି । (୨୭) ଯଜୁର୍ବେଦ ବେଳକୁ ଏହା ଚତୁର୍ବର୍ଣ୍ଣ ଭାବରେ ସମାଜର ଦୃଢ଼ ହୋଇଯାଇଥିଲା । ଶୂଦ୍ରମାନେ ଯେ ଆର୍ଯ୍ୟ ବର୍ଣ୍ଣର ଅନ୍ତର୍ଗତ ତାହା ବହୁ ପରବର୍ତ୍ତୀ କାଳରେ (ଖ୍ରୀ.ପୂ. ୪ର୍ଥ ଶତାବ୍ଦୀ ) ଅର୍ଥ ଶାସ୍ତ୍ରରେ ଦେଖିବାକୁ ମିଳିଥାଏ ।(୨୮)

ବ୍ରାହ୍ମଣ ଗ୍ରନ୍ଥମାନ ଅଧ୍ୟୟନ କଲେ ଜଣାଯାଏ ଶୂଦ୍ରମାନଙ୍କର ସାମଜିକ ସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା । ଯଜ୍ଞ କରିବାର ଅଧିକାର ସେମାନଙ୍କର ନଥିଲା । ସେମାନେ ଯେଉଁ ଦୁଗ୍ଧ ଦୁହୁଁଥିଲେ ଯଜ୍ଞ କାର୍ଯ୍ୟରେ ଲାଗୁ ନଥିଲା । ସେମାନଙ୍କୁ ଯଜ୍ଞକାର୍ଯ୍ୟ ନିମିତ୍ତ 'ଗାଇ' ଦୁହିଁବାକୁ ମନା ଥିଲା ।(୨୯) ବ୍ରାହ୍ମଣ ଦେବଯୋନିରୁ ସଂଭୂତ ବୋଲି କୁହାଯାଇଥିଲା ବେଳେ ଶୂଦ୍ର ଅସୁରଯୋନିରୁ ସଂଭୂତ ବୋଲି କଳ୍ପନା କରାଯାଇଛି । ତାଣ୍ଡ୍ୟ ବ୍ରାହ୍ମଣରେ ଏହା ବର୍ଣ୍ଣିତ ହୋଇଅଛି ।(୩୦) ଶୂଦ୍ରମାନେ ସବୁବେଳେ ଶ୍ରମଜୀବୀ । ସେମାନେ ଉଚ୍ଚ ତିନି ବର୍ଣ୍ଣଙ୍କ ଦ୍ୱାରା ନାନାପ୍ରକାର ଶ୍ରମନିଷ୍ଠ କର୍ମରେ ନିଯୁକ୍ତ ହେଉଥିଲେ । ଶ୍ରମ ସେମାନଙ୍କର ଜୀବନର ଧର୍ମ ଓ କର୍ତ୍ତବ୍ୟ । ସେ ଉଚ୍ଚ ତିନିବର୍ଣ୍ଣଙ୍କ ଦ୍ୱାରା ବହୁ ଭାବରେ ଶୋଷିତ ହେଉଥିଲେ । ସେମାନଙ୍କର ସାମଜିକ ସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା । ଶୂଦ୍ରମାନଙ୍କର ଜୀବନ ନିର୍ବାହର ଧାରା ସଂପର୍କରେ ଶତପଥ ବ୍ରାହ୍ମଣରେ କୁହାଯାଇଛି 'ଶୂଦ୍ରୋ ବୈ ତପଃ'। (୩୧) ସମାଜରେ ଶୂଦ୍ରମାନଙ୍କର ଦୟନୀୟ ସ୍ଥିତି ବିଷୟରେ ଲକ୍ଷ୍ୟ କରି 'ବସୁ' କହିଛନ୍ତି ଏହା ମାନବ ଧର୍ମର ପରିପନ୍ଥୀ ଥିଲା । (୩୨) ମାତ୍ର ଏହା ବୈଦିକ ସମାଜର ପ୍ରଥମ ଅବସ୍ଥାରେ ନଥିଲା । ଋଷିମାନେ ମାନବଗୋଷ୍ଠୀ ମଧ୍ୟରେ ଥିବା ସାମ୍ୟ ଓ ଏକତା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ସେଥିପାଇଁ କୁହାଯାଉଥିଲା 'ବ୍ରହ୍ମ ଦାସାଃ' । ଅଗସ୍ତ୍ୟ ଋଷି 'ଆର୍ଯ୍ୟ ଓ ଦାସ' ଉଭୟ ଗୋଷ୍ଠୀର ପ୍ରିୟ ଥିଲେ । କିନ୍ତୁ ବ୍ରାହ୍ମଣ ଯୁଗ ବେଳକୁ ବର୍ଣ୍ଣ ବିଭାଗ କ୍ରମେ ଜାତି ବିଭାଗରେ ପରିଣତ ହୋଇ ଜାତି ଜାତି ମଧ୍ୟରେ ସାନ ବଡର ବିଗ୍ରହ କରିବାକୁ ଲାଗିଲା । ଫଳରେ ଶୂଦ୍ର ସଂପ୍ରଦାୟ ବିଶେଷ କ୍ଷତି ଗ୍ରସ୍ତ ହେଲେ ।

**(ଗ) ଚତୁର୍ବର୍ଣ୍ଣେତର ଜାତି –**

ଚତୁର୍ବର୍ଣ୍ଣ ବ୍ୟତୀତ ଅନ୍ୟ କୌଣସି ଜାତି କଥା ବେଦ ଗୁଡିକରେ ଉଲ୍ଲେଖ କରାଯାଇନାହିଁ । ବୈଦିକ ଆର୍ଯ୍ୟମାନେ ପଞ୍ଜାବର ସପ୍ତସିନ୍ଧୁ ଅଞ୍ଚଳ ଛାଡି ପୂର୍ବାଭିମୁଖ ଏବଂ ଦକ୍ଷିଣାଭିମୁଖ ହେଲାବେଳେ ସେମାନେ ଆର୍ଯ୍ୟେତର ଅନେକ ଗୋଷ୍ଠୀର ସମ୍ମୁଖୀନ ହୋଇଛନ୍ତି । ସେତେବେଳେ ସେମାନେ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତିର ପ୍ରସାର କରିବା ନିମିତ୍ତ ବ୍ୟଗ୍ର ଥିଲେ । ସେମାନେ ଆର୍ଯ୍ୟେତର ଜାତି ସହିତ ଅନୁଲୋମ ଓ ପ୍ରତିଲୋମ ବିବାହ ହୁଏତ ସଂଗଠିତ କରିଥିବେ । ଏହି ବିବାହ ଜନିତ ସନ୍ତାନ ସନ୍ତତିମାନେ ଆର୍ଯ୍ୟ ସଂପ୍ରଦାୟରେ ରହିପାରିଲେ ନାହିଁ । ସେମାନଙ୍କର ପରିଚୟ ନିମିତ୍ତ ଜାତି ବିଭାଗର କଳ୍ପନା କରାଯାଇଥିବା 'ଐତରେୟ ବ୍ରାହ୍ମଣ'ରେ ବର୍ଣ୍ଣିତ ହୋଇଛି । ବିଶ୍ୱାମିତ୍ରଙ୍କ ପୁତ୍ରମାନେ ତାଙ୍କ କଥା ନମାନି ଆନ୍ଧ୍ର, ପୁଣ୍ଡ୍ର, ଶବର, ପୁଳିନ୍ଦ ଓ ମୂତିବ ଗୋଷ୍ଠୀରେ ପରିଣତ ହୋଇଗଲେ । ଆନ୍ଧ୍ରନାମର ଉଲ୍ଲେଖରୁ ଜଣାପଡୁଛି ଐତରେୟ ବ୍ରାହ୍ମଣ ରଚନା ବେଳକୁ ଆର୍ଯ୍ୟମାନେ ଦକ୍ଷିଣ ଭାରତରେ ଥିଲେ । କାଳକ୍ରମେ ଏହି ଜାତି ବିଭାଗ କର୍ମ ଓ ଜନ୍ମ ଉଭୟ ଭିତ୍ତିକ ହୋଇଗଲା । ଏହି ଜାତି ଉପଜାତିର ସଂଖ୍ୟା କ୍ରମେ ବଢି ବଢି ଚାଲିଲା । ଏହି ପୃଷ୍ଠଭୂମିରେ ଚତୁର୍ବର୍ଣ୍ଣେତର ଜାତି ଗୁଡିକ ଉଦ୍ଭବ ହୋଇଥିଲା । ଜାତିଗତ ବିଭାଜନ ଯୋଗୁ ସମାଜ କ୍ରମେ ଦୁର୍ବଳ ହୋଇଉଠିଲା । ଫଳରେ ମୌଳିକ ଚାତୁର୍ବର୍ଣ୍ଣ୍ୟର ଲକ୍ଷ୍ୟ ବ୍ୟାହତ ହେଲା । ଏହା ସତ୍ତ୍ୱେ ଏହା ଭାରତୀୟ ସଂସ୍କୃତିର ବିକାଶର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି ।

(ଘ) ଚତୁରାଶ୍ରମ –

ଚାରି ଆଶ୍ରମ ଚିନ୍ତାଧାରା ବୈଦିକ ଆର୍ଯ୍ୟମାନଙ୍କ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରୁଥିଲା । ସେମାନେ ଜୀବନକୁ ଚାରିଟି ଆଶ୍ରମ ବା ଅବସ୍ଥାରେ ବିଭକ୍ତ କରିଥିଲେ । ସେଥିପାଇଁ ସେ ବିଭିନ୍ନ ଶୃଙ୍ଖଳା ଖଂଜି ଥିଲେ । ଆଶ୍ରମ ଧର୍ମର ସୃଷ୍ଟି ବର୍ଣ୍ଣ ଧର୍ମର ପରେ ହୋଇଥିବ ବୋଲି ଅନୁମାନ କରାଯାଏ । ବର୍ଣ୍ଣ ଧର୍ମ ଭଳି ଆଶ୍ରମ ଧର୍ମର ଗୁରୁତ୍ୱ ମଧ୍ୟ ବୈଦିକ ସମାଜରେ ଥିଲା ଏବଂ ବୈଦିକ ଧର୍ମରେ ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମ ଦୁଇ ପାଦ ବୋଲି କଳ୍ପନା କରାଯାଇଅଛି । (୩୪)

ମାନବ ଜୀବନରେ କର୍ମ ଏବଂ ଜ୍ଞାନ ଉଭୟର ଆବଶ୍ୟକତା ରହିଅଛି । ବୈଦିକ ସମାଜ ତତ୍ତ୍ୱବିତ୍‌ମାନେ ଜୀବନର ଦୁଇଟି ଅବସ୍ଥାକୁ କର୍ମ ସାଧନ ଲାଗି ଓ ଅନ୍ୟ ଦୁଇଟି ଅବସ୍ଥାକୁ ଜ୍ଞାନ ସାଧନ ଲାଗି ଛାଡି ଦେଇଥିଲେ । ପ୍ରଥମ ଦୁଇଟି ଅବସ୍ଥା ହେଉଛି ବ୍ରହ୍ମଚର୍ଯ୍ୟ ଓ ଗାର୍ହସ୍ଥ୍ୟ । ଶେଷ ଦୁଇଟି ବାନପ୍ରସ୍ଥ ଓ ସନ୍ନ୍ୟାସ ।

**ବ୍ରହ୍ମଚର୍ଯ୍ୟାଶ୍ରମ** ହେଉଛି ଶିକ୍ଷା ଗ୍ରହଣ ସମୟ । ଗୁରୁ ଆଶ୍ରମକୁ ଯାଇ ଶିକ୍ଷା ଗ୍ରହଣ କରାଯାଉଥିଲା । ଉଭୟ ପୁଅ ଝିଅ ଶିକ୍ଷା ଗ୍ରହଣ କରୁଥିଲେ । ସେମାନଙ୍କୁ ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ଭାବରେ ଗଣା ଯାଉଥିଲା । ବ୍ରହ୍ମଚାରୀ ଦୁଇ ପ୍ରକାର ଥିଲେ - 'ଉପା କୁର୍ବନ ଓ ନୈଷ୍ଠିକ' । ଏମାନେ ଗୁରୁକୁଳରେ ରହି ଭିକ୍ଷାର୍ଜନ ଓ ଗୁରୁସେବା କରି ୨୫ ବର୍ଷ ପର୍ଯ୍ୟନ୍ତ ବିଦ୍ୟାଧ୍ୟୟନ କରୁଥିଲେ । ତାପରେ ଘରକୁ ଫେରି ଆସି ବିବାହ କରି ଗାର୍ହସ୍ଥ୍ୟ ଜୀବନ ନିର୍ବାହ କରୁଥିଲେ ।

**ଗାର୍ହସ୍ଥାଶ୍ରମ** କୁ ଏକ ମହତ୍ୱପୂର୍ଣ୍ଣ ଆଶ୍ରମ ବୋଲି ଧରା ଯାଉଥିଲା । ଏହି ଆଶ୍ରମରେ ମଣିଷକୁ ଦେବ ଋଣ , ଋଷି ଋଣ ଓ ପିତୃ ଋଣରୁ ମୁକ୍ତ ହେବାକୁ ପଡୁଥିଲା । ଗୃହସ୍ଥାଶ୍ରମରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ୫ ମହାଯଜ୍ଞ ଓ ୮ ପାକ ଯଜ୍ଞ କରିବାକୁ ପଡୁଥିଲା । ଏହି ପାଞ୍ଚ ମହଯଜ୍ଞ ହେଉଛି ( ୧) ବ୍ରହ୍ମଯଜ୍ଞ ( ଅଧ୍ୟୟନ, ଅଧ୍ୟାପନ ଓ ସ୍ୱଧ୍ୟାୟ ), ( ୨) ପିତୃଯଜ୍ଞ, (ଶ୍ରାଦ୍ଧ ଓ ତର୍ପଣ ଆଦି ) (୩) ଦେୟ ଯଜ୍ଞ, (ହୋମ ପ୍ରଦାନ) ,(୪) ଭୂତ ଯଜ୍ଞ ( ବଳି ପ୍ରଦାନ ) ,(୫) ଅତିଥି ଯଜ୍ଞ (ଅତିଥି ସତ୍କାର), ସେହିଭଳି ଆଠ ପ୍ରକାର ପାକ ଯଜ୍ଞ ହେଉଛି- ଆଷ୍ଟକ, ଶ୍ରାବଣୀ, ଆଗ୍ରହାୟଣୀ, ଚୈତ୍ରୀ, ଆଶ୍ୱିନୀ, ଫାଲଗୁନୀ, ପାର୍ବଣ ଓ ଶ୍ରାଦ୍ଧ । ଏହି ଆଶ୍ରମରେ ରହି ପିତୃଋଣରୁ ମୁକ୍ତ ହେବା ଲାଗି ସନ୍ତାନ ଉତ୍ପନ୍ନ କରିବାକୁ ହୋଇଥାଏ । ସନ୍ତାନକୁ ବିଦ୍ୟା ଶିକ୍ଷା ଦେଇ ଗୃହସ୍ଥାଶ୍ରମ ନିମିତ୍ତ ଯୋଗ୍ୟ ବିବେଚିତ କରାଇବାକୁ ହୋଇଥାଏ । ତା ସହିତ ପରିବାର ଓ ସମାଜର କିଭଳି ମଙ୍ଗଳ କରିପାରିବ ସେଥିପାଇଁ ତାକୁ ଯୋଗ୍ୟ ଓ ସମର୍ଥ କରିବାକୁ ହୋଇଥାଏ । ସନ୍ତାନ ସନ୍ତତିଙ୍କୁ ବିବାହ କରିବାକୁ ଦୁଏ । ଗୃହସ୍ଥାଶ୍ରମ ସକଳ କାମନାର ସିଦ୍ଧି ଲାଗି ଏକ ପବିତ୍ର ଆଶ୍ରମ । ଧର୍ମାଚରଣ, ସଶ୍ରଦ୍ଧଜୀବନ ଯାପନ, ଅତିଥି ସତ୍କାର, ଇତ୍ୟାଦି କର୍ତ୍ତବ୍ୟ ତାକୁ ଅତି ନିଷ୍ଠାପର ଭାବରେ ପାଳନ କରିବାକୁ ହେଉଥିଲା । ଏହିଗୁଡିକ ପାଳନ କରିବାକୁ ତାକୁ ବହୁ ଶୃଙ୍ଖଳା ଓ ନିୟମ ମଧ୍ୟ ଦେଇ ଗତି କରିବାକୁ ହେଉଥିଲା । ଶୃଙ୍ଖଳାର ଉଲଙ୍ଘନରେ ସେ ଦଣ୍ଡିତ ହେଉଥିଲା । ଗୃହସ୍ଥ ଜୀବନ ବହୁ କର୍ତ୍ତବ୍ୟ ଓ ଦାୟିତ୍ୱବୋଧର ଭାରାକ୍ରାନ୍ତ ଥିଲା । ଚାରି ଆଶ୍ରମ ମଧ୍ୟରେ ଗୃହସ୍ଥାଶ୍ରମକୁ ଉଚ୍ଚ ସ୍ଥାନ ଦିଆଯାଉ ଥିଲା । ଏହି ବୈଦିକ ପରମ୍ପରା ମନୁଙ୍କ ପର୍ଯ୍ୟନ୍ତ ମଧ୍ୟ ରହି ଆସିଥିଲା । ସେଥିପାଇଁ ମନୁ କହିଥିଲେ "ସକଳ ନଦନଦୀ ଯେତେବେଳେ ସମୁଦ୍ରରେ ପଡି

ଯାଆନ୍ତି ସେତେବେଳେ ସେମାନଙ୍କ ଠାରେ ସ୍ଥିରତା ଆସିଥାଏ । ଠିକ୍ ସେହିପରି ଭାବରେ ସକଳ ଆଶ୍ରମୀ ଯେତେବେଳେ ଗୃହସ୍ଥାଶ୍ରମରେ ପ୍ରବେଶ କରନ୍ତି ସେତେବେଳେ ସେମାନଙ୍କ ଜୀବନରେ ସ୍ଥିରତା ଆସିଥାଏ"। (୩୫) "ଗୃହସ୍ଥାଶ୍ରମକୁ ଶାନ୍ତ, ଗମ୍ଭୀର ଓ ଗଭୀର ସମୁଦ୍ର ସହିତ ତୁଳନା କରିବାର ତାତ୍ପର୍ଯ୍ୟ ଅଛି । ଏହି ସମୁଦ୍ରରେ ନ ପଡିଲେ ମଣିଷ ଜୀବନ ପ୍ରବାହରେ ସ୍ଥିରତା ଆସି ପାରେ ନାହିଁ । ଗୃହସ୍ଥାଶ୍ରମ କେବଳ ବ୍ୟକ୍ତି ବା ପରିବାର ପାଇଁ ଉଦ୍ଦିଷ୍ଟ ନୁହେଁ । ସାରା ସମାଜର ସ୍ଥିତିକୁ ଦୃଢ ଓ ଶୃଙ୍ଖଳିତ ଏହା କରିଥାଏ ବୋଲି ରବୀନ୍ଦ୍ର ନାଥ କହିଅଛନ୍ତି"। (୩୬)

**ବାନପ୍ରସ୍ଥାଶ୍ରମର** ମଣିଷ ଗୃହସ୍ଥାଶ୍ରମରୁ ୫୦ରୁ ୫୫ ବର୍ଷ ବୟସରେ ବାନପ୍ରସ୍ଥାଶ୍ରମରେ ପ୍ରବେଶ କରେ । ତାର ପୁତ୍ର ଏତେ ବେଳକୁ ଗୃହସ୍ଥ ହୋଇ ସାରିବଣି । ପରିବାରର କୌଣସି ଦାୟିତ୍ୱ ତାକୁ ନେବାକୁ ପଡ଼େ ନାହିଁ । ଯୋଗମୁଖୀ ନିର୍ଲିପ୍ତ ଜୀବନ ଯାପନ କରିବା ବାନପ୍ରସ୍ଥାଶ୍ରମର ଲକ୍ଷ୍ୟ । ବାନପ୍ରସ୍ଥୀ ପରିବାରର ଦୈନନ୍ଦିନ କାର୍ଯ୍ୟ କଳାପରେ କୌଣସି ହସ୍ତକ୍ଷେପ କରେ ନାହିଁ । ଆବଶ୍ୟକ ସ୍ଥଳେ ବହୁ ଅନୁଭୂତିଲବ୍ଧ ଜ୍ଞାନ ବଳରେ ପରିବାର ମଙ୍ଗଳ ନିମିତ୍ତ-ଉପଦେଶମାନ ପ୍ରଦାନ କରିଥାନ୍ତି । ଫଳରେ ପରିବାରରେ କୌଣସି ବିଭ୍ରାଟ ଘଟୁ ନଥିଲା କି ପାରିବାରିକ ଶାନ୍ତି ବିପର୍ଯ୍ୟସ୍ତ ହେଉ ନଥିଲା । ବାନପ୍ରସ୍ଥୀ ଜ୍ଞାନଚର୍ଚ୍ଚାରେ ସମୟ ବିତାଇ ଥାଏ । ଜୀବନରେ ନିଃଶ୍ରେୟର ପାଇଁ ପଥ ପ୍ରସ୍ତୁତ କରେ । ପରବର୍ତ୍ତୀ 'ସନ୍ନ୍ୟାସ' ଜୀବନ ଲାଗି ତାକୁ ଦେହ ଓ ମନରେ ପ୍ରସ୍ତୁତ ହେବାକୁ ହୋଇଥାଏ । ଏହି ସମୟରେ ଅନ୍ୟ କେତେକ ବଣରେ କୁଡିଆ କରି ରହୁଥିଲେ । କୌପୀନ ଧାରଣ କରୁଥିଲେ । ଏହି ସମୟ ଊର୍ଦ୍ଧ୍ୱରେତା ଜୀବନ ଯାପନ କରୁଥିଲେ । ଥରକପାଇଁ ନଗରକୁ ଭିକ୍ଷା ପାଇଁ ଆସୁଥିଲେ । ଅନ୍ୟମାନଙ୍କୁ ଉପଦେଶ ପ୍ରଦାନ କରୁଥିଲେ । ଏମାନେ ଏହିଭଳି ଜୀବନ ଯାପନ କରି ସନ୍ନ୍ୟାସାଶ୍ରମ ପାଇଁ ପ୍ରସ୍ତୁତ ହେଉଥିଲେ । ତାହା ପରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ପ୍ରବେଶ କରିବାକୁ ହେଉଥିଲା ଚତୁର୍ଥ ଆଶ୍ରମ ବା ସନ୍ନ୍ୟାସାଶ୍ରମରେ ।

**ସନ୍ନ୍ୟାସାଶ୍ରମ**ରେ ବ୍ୟକ୍ତିକୁ ସଂପୂର୍ଣ୍ଣ ରୂପେ ଘର ଛାଡି ବଣରେ ସନ୍ନ୍ୟାସୀ ହୋଇ ରହିବାକୁ ହେଉଥିଲା । ସେ ସେତେବେଳେ ତାର କ୍ରୋଧକୁ ବିଲୁପ୍ତ କରୁଥିଲା । ସକଳ ଇନ୍ଦ୍ରିୟକୁ ଅଧୀନ କରୁଥିଲା । ସେ ସର୍ବଦା ପ୍ରସନ୍ନ ରହି ଚିତ୍ତବୃତ୍ତିକୁ ଶାନ୍ତ ରଖୁଥିଲା । ସର୍ବଦା ଆତ୍ମଜିଜ୍ଞାସାରେ ସମୟ ଅତିବାହିତ କରୁଥିଲା । ସକଳ ଜୀବଙ୍କ ପ୍ରତି ସ୍ନେହ, ପ୍ରୀତି, ଶ୍ରଦ୍ଧା ଓ ମୈତ୍ରୀ ଭାବ ପ୍ରଦର୍ଶନ କରି ଧୀରେ ଧୀରେ ମୁକ୍ତି ପଥରେ ଅଗ୍ରସର ହେଉଥିଲା । ଏହି ଆଶ୍ରମରେ ପ୍ରବେଶ କରୁଥିବା ବ୍ୟକ୍ତି ଫଳମୂଳ ଉପରେ ନିର୍ଭର କରିଥାଏ । ଅଗ୍ନିହୋତ୍ର, ପଞ୍ଚମହାଯଜ୍ଞ, ଫଳମୂଳ ଓ ପତ୍ରର ବଳି ପ୍ରଦାନ କରିବା ଥିଲା ତାର କର୍ତ୍ତବ୍ୟ । ପତ୍ନୀ ସହିତ ତାକୁ ତପସ୍ୟା ଆଚରଣ କରିବାର ସୁବିଧା ଦିଆଯାଉଥିଲା । ସେ ବଳ୍କଳ ଧାରଣ କରି ଅରଣ୍ୟରେ ତପସ୍ୟା କରୁଥିଲା । ଏହି ସନ୍ନ୍ୟାସୀମାନଙ୍କୁ ଭିକ୍ଷୁ, ଯତି, ନୈଷ୍ଠିକ ଓ ପ୍ରବର୍ଜନ ଭାବରେ ଗ୍ରହଣ କରାଯାଇଥାଏ ।

ବୈଦିକ ଆର୍ଯ୍ୟମାନଙ୍କର ଜୀବନ ଚାରି ଆଶ୍ରମ ଦେଇ ଗତି କରୁଥିଲା । ଏହି ଆଶ୍ରମ ଗୁଡିକ ଗୋଟିଏ ଗୋଟିଏ ଘାଟ ସଦୃଶ । ପ୍ରତ୍ୟେକ ଆଶ୍ରମ ଅନ୍ୟ ଠାରୁ ଭିନ୍ନ ହେଲେ ମଧ୍ୟ ଏମାନେ ଗୋଟିଏ ଗୂଢ ସୂତ୍ରରେ ଗ୍ରଥିତ ହୋଇଥିଲେ । ଏହି ସୂତ୍ରଟି ଥିଲା ନିଃଶ୍ରେୟସ ପ୍ରାପ୍ତିର ଅଭୀପ୍ସା । ଫଳରେ ତାର ସାରା ଜୀବନ ଏକ ପ୍ରବହମାନ ଧାରାରେ ଗତି କରୁଥିଲା । ଆର୍ଯ୍ୟମାନଙ୍କର ଏହି ଆଶ୍ରମ ଧର୍ମ ବର୍ଣ୍ଣ

ଧର୍ମ ପରି ଏକ ସୁସ୍ଥ ବୈୟକ୍ତିକ ଜୀବନ ନିର୍ବାହ ଲାଗି ସହାୟକ ହେବା ସଂଗେ ସଂଗେ ସାମାଜିକ ଶୃଙ୍ଖଳା ରକ୍ଷା କରି ଦେଶ ଓ ଜାତିର ଅଭିବୃଦ୍ଧି ଅଣାଇବାରେ ସମର୍ଥ ହେଉଥିଲା । ବ୍ୟକ୍ତି ଜୀବନର ସ୍ୱାଧୀନତା ଥିଲେ ମଧ୍ୟ ତାହାର ନିର୍ଣ୍ଣୟ ସର୍ବଦା ସମାଜର ମଙ୍ଗଳାଭିମୁଖୀ ହେଉଥିଲା । ଏହା ସାମାଜିକ ସମୂହର ଚଳଣିର ପରିପନ୍ଥୀ ନଥିଲା । ବରଂ ଏହା ସୁନ୍ଦର ସାମାଜିକ ସ୍ଥିତି ଗଢ଼ି ତୋଳି ଥିଲା । ଏହି ଶୃଙ୍ଖଳାରେ ବ୍ୟକ୍ତିବାଦ ଓ ସମାଜ ବାଦ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇପାରୁଥିଲା ।

**(ଡ) ବୈଦିକ ସଂସ୍କାର –**

ବୈଦିକ ସମାଜରେ ଯେଉଁ ଚତୁଃବର୍ଣ୍ଣ ଥିଲେ ସେମାନଙ୍କ ମଧ୍ୟରୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ବର୍ଣ୍ଣର ବ୍ୟକ୍ତିମାନଙ୍କ ଜୀବନକୁ ନିୟନ୍ତ୍ରଣ କରିବା ନିମିତ୍ତ ଷୋଡ଼ଶ ସଂସ୍କାର ଦେଇ ସେମାନେ ଗତି କରୁଥିଲେ । ଯଦିଓ ଏହି ସଂସ୍କାର ସଂଖ୍ୟା ୪୦ ଥିଲା । ସେ ମଧ୍ୟରୁ ଷୋହଳଟିକୁ ସ୍ମାର୍ତ୍ତ ସଂସ୍କାର କୁହାଯାଉଥିଲା । ଏହି ସଂସ୍କାର ଗୁଡ଼ିକ ଯୋଗୁ ମଣିଷର ଜୀବନ ଶୁଦ୍ଧପୂତ ହୋଇଯିବ ବୋଲି ବୈଦିକ ସମାଜତତ୍ତ୍ୱବିତ୍‌ମାନଙ୍କର ବିଶ୍ୱାସ ଥିଲା । ତେଣୁ "କୌଣସି ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ କର୍ମ ଦ୍ୱାରା ନିଜକୁ ଶୁଦ୍ଧପୂତ କରାଇ ସେଥିପାଇଁ ଯୋଗ୍ୟତା ଅର୍ଜନର ନାମ ହେଲା ସଂସ୍କାର" । ଏହି ଷୋଡଶ ସଂସ୍କାର ହେଲା ଗର୍ଭାଧାନ, ପୁଂସବନ, ସୀମୋନ୍ତନୟନ, ଜାତକର୍ମ, ନାମ କରଣ, ନିଷ୍କ୍ରମଣ, ଅନ୍ନ ପ୍ରାଶନ, ଚୂଡ଼ାକର୍ମ, କର୍ଣ୍ଣବେଧ, ଉପନୟନ, ବ୍ରତାଦେଶ, ବେଦସ୍ୱାଧ୍ୟାୟ, କେଶାନ୍ତ, ସାମାବର୍ତ୍ତନ, ବିବାହ ତଥା ଅଗ୍ନି ପରିଗ୍ରହଣ । ଏଗୁଡ଼ିକ ସଂପର୍କରେ ନିମ୍ନରେ ଆଲୋଚନା କରାଗଲା ।

**ଗର୍ଭାଧାନ –**

ବୈଦିକ ବିବାହର ଉଦ୍ଦେଶ୍ୟ ନଥିଲା କାମସୁଖ ଭୋଗ କରି ଜୀବନ ବିତାଇ ଦେବା । ପ୍ରତ୍ୟେକ ବ୍ୟକ୍ତିଙ୍କୁ ବୈଦିକ ସମାଜରେ ପିତୃଋଣ ସୁଝିବାକୁ ପଡୁଥିଲା । ପିତୃ ପୁରୁଷଙ୍କର ଏହି ଋଣକୁ ସୁଝିବା ପାଇଁ ତାଙ୍କୁ ସନ୍ତାନ ଉତ୍ପାଦନ କରିବାକୁ ପଡୁଥିଲା । ସେଥିପାଇଁ କୁହାଯାଇଛି "ସ୍ତ୍ରୀ କରାଯାଇଥାଏ ପୁତ୍ର ଜନ୍ମ କରାଇବା ଲାଗି ଏବଂ ପୁତ୍ର ଜନ୍ମ ହୋଇଥାଏ ପିତୃ କୁଳକୁ ପିଣ୍ଡ ଦେବା ଲାଗି"। ( ପୁତ୍ରାୟ କ୍ରିୟତେ ଭାର୍ଯ୍ୟା ପୁତ୍ର ପିଣ୍ଡ ପ୍ରୟୋଜନମ୍ ) ଉପଯୁକ୍ତ ପୁତ୍ରଟିଏ କିଭଳି ମିଳିବ ତାହା ବୃହଦାରଣ୍ୟକ ଉପନିଷଦ୍‌ରେ କାମନା କରାଯାଇଛି । (୩୭) ଏହି ପୁତ୍ର କିଭଳି ଦଶ ମାସ ଧରି ମାତୃଗର୍ଭରେ ସୁରକ୍ଷିତ ହୋଇ ରହିବ ସେଥିପାଇଁ ଅଥର୍ବ ବେଦରେ ପ୍ରଜାପତିଙ୍କୁ ପ୍ରାର୍ଥନା କରାଯାଇଛି ।(୩୮) ପିତା ମାତାଙ୍କର ସଂଯୋଗରୁ ସନ୍ତାନ ଉତ୍ପତ୍ତି ହୋଇଥାଏ । ଏହି ସନ୍ତାନ ପିତା ମାତା ଉଭୟଙ୍କ ଗୁଣ ଧରି ଆସିଥାଏ । ତା ସହିତ ମଧ୍ୟ ପ୍ରାରବ୍ଧ ଫଳ ସଂଯୋଜିତ ହୋଇଥାଏ । ପିତାମାତାଙ୍କ ରଜବୀର୍ଯ୍ୟର ପ୍ରାକୃତିକ ଦୋଷ ଜନିତ ପ୍ରଭାବ ମଧ୍ୟ ସନ୍ତାନ ଉପରେ ପଡିଥାଏ । ଏହି ସବୁ ଦୋଷରୁ ଆଗନ୍ତୁକ ସନ୍ତାନଟିକୁ ରକ୍ଷା କରିବା ପାଇଁ 'ଗର୍ଭାଧାନ' ସଂସ୍କାର କରାଯାଇଥାଏ । ବିବାହ ପରେ ଅତି କମ୍‌ରେ ତିନି ଦିନ କିମ୍ବା ଅତି ବେଶିରେ ସାତ ବର୍ଷ ପର୍ଯ୍ୟନ୍ତ ଗୃହସ୍ଥଙ୍କୁ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଗର୍ଭାଧାନ ସଂସ୍କାର ଲାଗି ପ୍ରସ୍ତୁତ ହେବାକୁ ପଡିଥାଏ ।

**(୨) ପୁଂସବନ –**

ଗର୍ଭର ତିନିମାସ ପରେ ଏହି ସଂସ୍କାର କରାଯାଇଥାଏ । ଗର୍ଭିଣୀର ନାସା ରନ୍ଧ୍ର ଦେଇ ବର ଓହଳ, କୁଶ ଓ ଘାସର ରସ ଦିଆଯାଏ । ଏହା ବ୍ୟତୀତ ଆୟୁର୍ବେଦ ଶାସ୍ତ୍ର ଦ୍ୱାରା ଅନୁମୋଦିତ କିଛି

ଜଡି ବୁଟି ମଧ୍ୟ ତାଙ୍କୁ ସେବନ କରିବାକୁ ପଡିଥାଏ । ଏହି ସବୁ କାର୍ଯ୍ୟ ମନ୍ତ୍ରୋଚ୍ଚାରଣ ସହିତ କରାଯାଇଥାଏ । ଫଳରେ ଗର୍ଭସ୍ଥ ଶିଶୁ ପରିପୁଷ୍ଟ ହୋଇଥାଏ ।

**(୩) ସୀମନ୍ତୋନୟନ –**

ଗର୍ଭର ଚତୁର୍ଥ, ଷଷ୍ଠ ଓ ଅଷ୍ଟମ ମାସରେ ଏହି ସଂସ୍କାର କରାଯାଏ । ଏହି ସଂସ୍କାର ବିଧିରେ ସ୍ତ୍ରୀର ସୀମନ୍ତକୁ ଝିଙ୍କ କାଠିରେ ସ୍ପର୍ଶ କରାଯାଏ । ମନ୍ତ୍ରୋଚ୍ଚାରଣ କରି ସୋମଆଦି ଦେବତାମାନଙ୍କ ସ୍ତୁତି କରାଯାଏ । ଗର୍ଭପାତ ନହେବା ପାଇଁ ଏହି ସଂସ୍କାରଟି କରାଯାଇଥାଏ । ପ୍ରାୟତଃ ତୃତୀୟ ମାସରେ ଗର୍ଭପାତ ହେବାର ଆଶଙ୍କା ଥାଏ । ତେଣୁ ତୃତୀୟ ମାସରେ ସୀମନ୍ତୋନୟନ ସଂସ୍କାର କରାଯାଏ ।

**(୪) ଜାତକର୍ମ –**

ସନ୍ତାନ ଜନ୍ମ ପରେ ଜାତକର୍ମ ସଂସ୍କାର କରାଯାଏ । ଏହି ସଂସ୍କାରର ଉଦ୍ଦେଶ୍ୟ ଥାଏ ପିଲାଟିର ଆୟୁଷ ଓ ବୁଦ୍ଧି ବଢାଇବା । ନାଭି ଛେଦନ ପୂର୍ବରୁ ସୁନାର ଶିକାରେ କିଛି ମହୁ, ଦହି, ଘିଅ ଆଣି ପିଲାର ଜିଭରେ ଚଟାଇ ଦିଆଯାଇଥାଏ । ମନ୍ତ୍ରୋଚ୍ଚାରଣ ସହିତ ଗୋଟିଏ ସୁନା କାଠିରେ ତାର ଜିଭରେ 'ବେଦ' ବୋଲି ଲେଖି ଦିଆଯାଏ । ପିଲାଟି ଅଧିକ ଜ୍ଞାନୀ ହେବା ପାଇଁ ଦେବତାଙ୍କୁ ପ୍ରାର୍ଥନା କରାଯାଏ ।

**(୫) ନାମକରଣ –**

ନାମକରଣ ସଂସ୍କାରଟି ସନ୍ତାନ ଜନ୍ମର ଏଗାର ଦିନରେ କରାଯାଇଥାଏ । ଶାସ୍ତ୍ରରେ ଯେଉଁ ବିଧାନ ଖଞ୍ଜା ଯାଇଛି ତାହାରି ଅନୁସାରେ ନାମକରଣ ହୁଏ । ନାମଟି ସାତ୍ତ୍ୱିକ, ପବିତ୍ର ଓ ଶ୍ରୁତି ମଧୁର ହେବା ଉଚିତ୍ । ଏହି 'ନାମକରଣ'ରୁ ସନ୍ତାନର କର୍ତ୍ତବ୍ୟ ସୂଚିତ ହେଉଥିବ । ଝିଅ ପିଲା ହୋଇଥିଲେ ଦୁଇ ତିନି ଅକ୍ଷରିଆ ନାମ ହୋଇଥିଲେ ସୁନ୍ଦର । ଏହାର ମଧ୍ୟ ବ୍ୟତିକ୍ରମ କରାଯାଇପାରେ ।

**(୬) ନିଷ୍କ୍ରମଣ –**

ପିଲାକୁ ପ୍ରଥମ କରି ବାହାରକୁ ଆଣିବା ପାଇଁ ଏହି ନିଷ୍କ୍ରମଣ ସଂସ୍କାର କରାଯାଇଥାଏ । ପିଲାକୁ ଚାରି ମାସ ପରେ ଏହି ସଂସ୍କାର କରାଯାଇଥାଏ । ଏହି ସଂସ୍କାର ଉଦ୍ଦେଶ୍ୟ ହେଉଛି ଶାରିରୀକ ଦୃଷ୍ଟିରୁ ନିରୋଗ ରଖିବା ।

**(୭) ଅନ୍ନପ୍ରାଶନ –**

ଅନ୍ନପ୍ରାଶନ କର୍ମରେ ପିଲାକୁ ପ୍ରଥମ ଥର ପାଇଁ ମହୁ ଓ କ୍ଷୀର ମିଶାଇ ଖାଇବାକୁ ଦିଆଯାଇଥାଏ । ଏହି ସଂସ୍କାର ପିଲାର ଷଷ୍ଠ ମାସରେ କରାଯାଇଥାଏ । କେତେବେଳେ ଏହା ଆଠ ମାସରେ ବା ଆଉ କେତେବେଳେ ବର୍ଷେ ପୂରିଲେ କରାଯାଇଥାଏ । କନ୍ୟା ସନ୍ତାନ ଲାଗି ଏହା ପାଞ୍ଚ କିମ୍ବା ସାତ ମାସରେ କରା ଯାଇଥାଏ ।

**(୮) ଚୂଡ଼ାକର୍ମ –**

ଚୂଡ଼ାକର୍ମ ସଂସ୍କାରରେ ଶିଶୁ ଲଣ୍ଡା ହୁଏ । ଏହି ସଂସ୍କାର ଜନ୍ମର ତୃତୀୟ କିମ୍ବା ପଞ୍ଚମ ବର୍ଷରେ କରାଯାଇଥାଏ । ମୁଣ୍ଡକୁ ସଂପୂର୍ଣ୍ଣ ରୂପେ ଲଣ୍ଡା ନକରି ଗୋଟିଏ 'ଜଟ' ରଖାଯାଇଥାଏ ।

**(୯) କର୍ଣ୍ଣବେଧ –**

କର୍ଣ୍ଣବେଧ ସଂସ୍କାର ତୃତୀୟ କିମ୍ବା ପଞ୍ଚମ ବର୍ଷରେ କରାଯାଇଥାଏ । ଏହାକୁ କାନ ଫୋଡା କୁହାଯାଇଥାଏ । "ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମଃ ଦେବାଃ" ଆଦି ଋଗ୍‌ବେଦୀୟ ମନ୍ତ୍ର ବୋଲା ଯାଇଥାଏ । ଏହି ମନ୍ତ୍ରରେ ଭଲ କଥା ଶୁଣିବା ପାଇଁ ଏବଂ ଖରାପ କଥା ନ ଶୁଣିବା ପାଇଁ କାମନା କରାଯାଇଥାଏ ।

**(୧୦) ଉପନୟନ –**

ଏହାକୁ ଉପବୀତ ଧାରଣ ବା ବ୍ରତ ଉତ୍ସବ ସଂସ୍କାର ଭାବେ ଗ୍ରହଣ କରାଯାଏ । ଏହି ସଂସ୍କାରରେ ପିଲାଙ୍କୁ ଗୁରୁ ଆଶ୍ରମକୁ ବିଦ୍ୟାଧ୍ୟୟନ ଲାଗି ନିଆଯାଇଥାଏ । ବ୍ରହ୍ମଚର୍ଯ୍ୟାଶ୍ରମ ଆରମ୍ଭ ହୋଇଥାଏ ଉପନୟନରୁ ଏବଂ ପରିସମାପ୍ତି ଘଟିଥାଏ 'ସମାବର୍ତ୍ତନ' ସଂସ୍କାରରେ । ସମାବର୍ତ୍ତନ ସଂସ୍କାରରେ ପିଲା ପିତୃଗୃହକୁ ବାହୁଡୁଥିଲା । ଗୁରୁଗୃହ ଆବାସିକ ବିଦ୍ୟାଳୟ ଥିବାରୁ ଉପନୟନ ସଂସ୍କାରରେ ପିଲାଙ୍କୁ ବିଦ୍ୟା ଶିକ୍ଷା ଲାଗି ଗୁରୁଗୃହକୁ ନିଆ ଯାଉଥିଲା । ଏହି ଦିନ ଠାରୁ ବିଦ୍ୟାର୍ଥୀଙ୍କୁ ବ୍ରହ୍ମଚାରୀ ବୋଲି କୁହାଯାଉଥିଲା । ସେ ଯଜ୍ଞୋପବୀତ ଧାରଣ କରି ସ୍ୱୀୟ ଗୋଷ୍ଠୀ ସହିତ ନିଜକୁ ସାମିଲ କରୁଥିଲା ।

**(୧୧) ବ୍ରତାଦେଶ –**

ଉପନୟନପରେ ଆଚାର୍ଯ୍ୟ ଶିଷ୍ୟଙ୍କୁ କେତେକ ଉପଦେଶ ଦେଇଥାନ୍ତି ପାଳନ କରିବା ପାଇଁ । ତାହାକୁ ବ୍ରତାଦେଶ ସଂସ୍କାର କୁହାଯାଏ । ଗୃହସ୍ଥାଶ୍ରମରେ ପ୍ରବେଶ ପୂର୍ବରୁ ସେ ଯେମିତି ସତ୍ୟବାଦିତା, ଅହିଂସାପରାୟଣତା ଆଦି ସଦ୍‌ଗୁଣର ଅଧିକାରୀ ହୋଇପାରିବ ସେଥିପାଇଁ ଆଚାର୍ଯ୍ୟ ଉପଦେଶମାନ ପ୍ରଦାନ କରିଥାନ୍ତି । ଗୁରୁଗୃହରେ ଶିକ୍ଷା କରିଥିବା ସମସ୍ତ ଶିକ୍ଷାକୁ ବ୍ରତନିଷ୍ଠ ଭାବରେ କିଭଳି ଗୃହସ୍ଥାଶ୍ରମରେ ପାଳନ କରି ପାରିବ ତାହା ଏହି ସଂସ୍କାରରେ ନିର୍ଣ୍ଣିତ ।

**(୧୨) ବେଦସ୍ୱାଧ୍ୟାୟ ବା ବେଦାରମ୍ଭ –**

ବେଦସ୍ୱାଧ୍ୟାୟ ସଂସ୍କାର ବିନା ବ୍ରାହ୍ମଣ ଯଜ୍ଞାଦି କର୍ମ ସଂପାଦନ କରିବାର ଅଧିକାର ପାଇ ପାରେ ନାହିଁ । ମନୁ କହିଛନ୍ତି "ବେଦ ଗୁଡିକ ଉପଯୁକ୍ତ ଭାବରେ ଶିକ୍ଷା କରି ସାରିବା ପରେ ଶିଷ୍ୟ ବ୍ରହ୍ମଚର୍ଯ୍ୟ ରକ୍ଷା ପୂର୍ବକ ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପାଇଁ ଯୋଗ୍ୟ ବିବେଚିତ ହୋଇଥାନ୍ତି" ।

**(୧୩) କେଶାନ୍ତ –**

କେଶାନ୍ତ ସଂସ୍କାରରେ ପ୍ରଥମ ଥର ପାଇଁ ବାଳକର ନିଶ ଦାଢି ଖିଅର କରାଯାଇଥାଏ । ଏହି ସଂସ୍କାର ଲାଗି ବିଭିନ୍ନ ବର୍ଣ୍ଣର ଲୋକଙ୍କ ପାଇଁ ଭିନ୍ନ ଭିନ୍ନ ବୟସର ସୀମା ନିର୍ଦ୍ଦିଷ୍ଟ । ବ୍ରାହ୍ମଣ ଲାଗି ଏହା ଷୋହଳ ବର୍ଷ, କ୍ଷତ୍ରିୟ ଲାଗି ବାଇଶ ବର୍ଷ ଓ ବୈଶ୍ୟ ଲାଗି ଚବିଶ ବର୍ଷ ହୋଇଥାଏ ।

**(୧୪) ସମାବର୍ତ୍ତନ –**

ବେଦାଧ୍ୟୟନ ସରି ଗଲେ ଗୁରୁ ଆଶ୍ରମରେ ବ୍ରହ୍ମଚର୍ଯ୍ୟାଶ୍ରମର ପରିସମାପ୍ତି ହୁଏ । ବ୍ରହ୍ମଚାରୀ ଗୁରୁ ଆଶ୍ରମରେ ଶେଷ ସ୍ନାନ କରେ ଏବଂ ସ୍ନାତକ ବୋଲି ପରିଚିତ ହୁଏ । ସେ ଗୃହସ୍ଥାଶ୍ରମ ଲାଗି ନିଜ ଘରକୁ ଫେରି ଆସେ । ଏହି ସଂସ୍କାରକୁ କୁହାଯାଏ ସମାବର୍ତ୍ତନ । ଉଭୟ ଗୁରୁଗୃହ ଓ ପିତୃଗୃହରେ ଏହି ସମାବର୍ତ୍ତନ ଉତ୍ସବ ସମାହିତ ହୋଇଥାଏ ।

(୧୫) ବିବାହ –

ଏହା ହେଉଛି ପଞ୍ଚଦଶ ସଂସ୍କାର । ବିବାହ ସଂସ୍କାର ଲୋକଙ୍କୁ ପ୍ରତିଷ୍ଠା ଦେଇଥାଏ । ଏହି ସଂସ୍କାର ଦ୍ୱାରା ସେ ସନ୍ତାନ ଉତ୍ପନ୍ନ ଓ ଧର୍ମାର୍ଜନ ନିମିତ୍ତ ଯୋଗ୍ୟତା ଲାଭ କରିଥାଏ । ବୈଦିକ ବିବାହ କେବଳ ବଂଶ ରକ୍ଷା ପାଇଁ ଉଦ୍ଦିଷ୍ଟ ନଥିଲା । ଏହା ବ୍ୟକ୍ତିର ଭୌତିକ ଏବଂ ଅଧ୍ୟାତ୍ମିକ ଉଭୟବିଧ ବିକାଶ ସାଧନର ସହାୟକ ହୋଇଥାଏ । ଏଥିରେ ସପ୍ତପଦୀ ମନ୍ତ୍ର ବୋଲା ଯାଇଥାଏ । ପଣ୍ଡିତମାନଙ୍କ ମତରେ 'ସପ୍ତମ ପଦ' ଚାଲିବା ପରେ ବିବାହ ସିଦ୍ଧ ହୋଇଥାଏ ।

(୧୬) ଅଗ୍ନି ପରିଗ୍ରହ –

ବିବାହ ସଂସ୍କାର ପରେ ଗୃହସ୍ଥ ଜୀବନରେ ପ୍ରବେଶ ଉତ୍ତାରୁ ଅଗ୍ନି ପରିଗ୍ରହ ସଂସ୍କାର କରାଯାଇଥାଏ । ଗୃହସ୍ଥ ଜୀବନରେ ସୁଖ ଓ ଐଶ୍ୱର୍ଯ୍ୟ ଅଣାଇବା ଲାଗି ଏବଂ ମନ ଓ ଦେହର ପବିତ୍ରତା ରକ୍ଷା କରିବା ଲାଗି ଗୃହସ୍ଥଙ୍କୁ 'ପ୍ରତ୍ୟୟ ହୋମ' କରିବାକୁ ପଡିଥାଏ । ଏହି ସଂସ୍କାରରେ ତାଙ୍କୁ 'ଗୃହାଗ୍ନି'ର ପ୍ରତିଷ୍ଠା କରିବାକୁ ପଡିଥାଏ ।

ଗୃହ୍ୟସୂତ୍ରରେ ତତ୍କାଳୀନ ପାରିବାରିକ ଜୀବନର ସୁନ୍ଦର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ସେଥିରେ ପ୍ରତ୍ୟେକ ଗୃହସ୍ଥର ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ କର୍ତ୍ତବ୍ୟ ନିର୍ଦ୍ଧାରିତ ହୋଇଅଛି । ପ୍ରତ୍ୟେକ ଗୃହସ୍ଥକୁ ୧୬ ପ୍ରକାର ସଂସ୍କାର ଭିତରେ ଗତି କରିବାକୁ ପଡିଥିଲା । ପୂର୍ବରୁ ଯେଉଁ ୧୬ ପ୍ରକାର ସଂସ୍କାର ଉଲ୍ଲେଖ କରାଗଲା ସେଥିରେ କେତେକ ବ୍ୟତିକ୍ରମ ଥିବା ବୈଦିକ ସଂସ୍କୃତି ସାମାଜିକ ଜୀବନ ପୃ ୧୧୦ ରେ ଅଧ୍ୟାପକ ଅଭିନ୍ନ ଚନ୍ଦ୍ର ଦାଶ ଉଲ୍ଲେଖ କରିଅଛନ୍ତି । ସେ ବାନପ୍ରସ୍ଥ, ସନ୍ୟାସ ଓ ଅନ୍ତ୍ୟେଷ୍ଟିକୁ ଯଥାକ୍ରମେ ୧୪, ୧୫, ୧୬, ସଂସ୍କାର ଭାବରେ ଗ୍ରହଣ କରିଅଛନ୍ତି । ଚାରି ଆଶ୍ରମରେ ବାନପ୍ରସ୍ଥ ଓ ସନ୍ନ୍ୟାସ ସଂପର୍କରେ ଆଲୋଚନା କରାଯାଇଛି । ଷୋଡଶ ସଂସ୍କାର ବା ଅନ୍ତ୍ୟେଷ୍ଟି ସଂସ୍କାର ପାଳନ କଲେ ମୃତ ବ୍ୟକ୍ତିର ଆତ୍ମା ସଦ୍‌ଗତି ହୁଏ ବୋଲି ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଜନ୍ମ ପରେ ମଣିଷ ଯେଉଁଳି ବିଭିନ୍ନ ସଂସ୍କାର ପାଳନ କରେ ମରଣ ପରେ ଏହି ସଂସ୍କାର ପାଳିତ ହୋଇଥାଏ । ଋଗ୍‌ବେଦ XIV ୧୦/୧୪ ଓ ଅଥର୍ବ ବେଦ XVIII 1, 2, 3, 4 ରେ ଶବ ସଂସ୍କାର ସଂପର୍କରେ ଉଲ୍ଲେଖ ଅଛି । ଏହାକୁ ପ୍ରାଚୀନତମ ବୋଲି କୁହାଯାଏ ।

(ଚ) ଚତୁର୍ବର୍ଗ ଫଳ –

ମାନବ ଜୀବନର ପରମ ପୁରୁଷାର୍ଥ ଧର୍ମ, ଅର୍ଥ, କାମ, ମୋକ୍ଷର ପ୍ରାପ୍ତି ନିମିତ୍ତ ଚାରି ଆଶ୍ରମର ସୃଷ୍ଟି ହୋଇଥିଲା । ଧର୍ମ, ଅର୍ଥ, କାମ, ମୋକ୍ଷ, ପ୍ରାପ୍ତି ବୈଦିକ ଆର୍ଯ୍ୟମାନଙ୍କ ଜୀବନର ଲକ୍ଷ୍ୟ ଥିଲା । ଏହାକୁ ଚତୁର୍ବର୍ଗ ଫଳ କୁହାଯାଏ । ପିଲାଦିନରୁ ବ୍ରହ୍ମଚର୍ଯ୍ୟାଶ୍ରମରେ ଗୁରୁ ଶିଷ୍ୟଙ୍କୁ ଶିକ୍ଷା ଦେଇ କହୁଥିଲେ "ଧର୍ମଂଚର ସତ୍ୟଂ ବଦ" ଅର୍ଥାତ୍ "ଧର୍ମ ବାଟେ ଚାଲ । ସତକଥା କୁହ" । ଧର୍ମ ସାର୍ବଜନୀନ ଥିଲା । ଯାହା ମାନବ ସମାଜ ଓ ମାନବ ଜାତିକୁ ଧରି ରଖିଅଛି । ବୈଦିକ ସମାଜକୁ ବିଧି ଏବଂ ଧର୍ମ ଚେତନା ଧରି ରଖିଥିଲା । ବାଚସ୍ପତି ଗୈରେଲା ଧର୍ମ ଉପରେ ଗୁରୁତ୍ୱ ଦେଇ କହିଛନ୍ତି ଧର୍ମ ମନୁଷ୍ୟକୁ ଅନର୍ଥରୁ ବଞ୍ଚାଇ ଭଗବାନ ସହିତ ସଂଯୋଜିତ କରିଥାଏ ।(୩୯) 'ଅର୍ଥର' ସାଧାରଣ ଅର୍ଥ ଧନ ହେଲେ ହେଁ ଏଠାରେ

ଏହାକୁ ଆନନ୍ଦ ପାଇବାର ବିଭିନ୍ନ ଉପାୟ ବୋଲି ଗ୍ରହଣ କରାଯାଇଛି । କାମ ଓ ଅର୍ଥ କେବଳ ମଣିଷର ଈପ୍ସିତ ବସ୍ତୁ ନଥାଏ । ପଶୁ ମଧ୍ୟ ଏହାକୁ ସ୍ପୃହି ଥାଏ । ହେଲେ ଏ ଦୁହିଁଙ୍କ ମଧ୍ୟରେ ଗୁଣଗତ ପାର୍ଥକ୍ୟକୁ ବୈଦିକ ଆର୍ଯ୍ୟମାନେ ନିର୍ଣ୍ଣୟ କରି ଅଛନ୍ତି । ସେମାନେ ଅର୍ଥକୁ ଧର୍ମ ଓ ମୋକ୍ଷ ପାଇବା ଅଭିଷ୍ଟାରେ ପର୍ଯ୍ୟବେସିତ କରିଅଛନ୍ତି । ବୈଦିକ ଜୀବନରେ କାମନାର ପରିପୂର୍ତ୍ତି ଲାଗି ଯେଉଁ ଅର୍ଥ ବା ଉପାୟର ଚିନ୍ତା କରାଯାଉଥିଲା ତାହା ଧର୍ମନିଷ୍ଠ ହେବା ନିମିତ୍ତ ସମ୍ୟକ ଦୃଷ୍ଟି ଦିଆଯାଉଥିଲା । 'କାମ' ଅର୍ଥ ହେଲା ଜାଗତିକ । ସକଳ କାମ୍ୟ ବସ୍ତୁ ଯେଉଁ ଗୁଡିକ ଇନ୍ଦ୍ରିୟ ଦ୍ୱାରା ଉପଲଭ୍ୟ , ସେଗୁଡିକ ପାଇଲେ ମଣିଷ ଖୁସି ହୁଏ । ଆନନ୍ଦିତ ହୁଏ । ଏ ପ୍ରକାର ଆନନ୍ଦ ହେଉଛି ବାହ୍ୟ ଆନନ୍ଦ । ମାତ୍ର ବୈଦିକ ଆର୍ଯ୍ୟମାନେ ଏହି 'କାମକୁ' ଧର୍ମ ଓ ମୋକ୍ଷ ପାଇବାର ଅଭିଷ୍ଟାରେ ପର୍ଯ୍ୟବେସିତ କରିଅଛନ୍ତି । ଚତୁର୍ବର୍ଗ ଫଳର ଶେଷ ପର୍ଯ୍ୟାୟ ହେଉଛି 'ମୋକ୍ଷ' ବା ସଂସାରର ସକଳ ବନ୍ଧନରୁ ମୁକ୍ତି । ଏହା ଜୀବନର ଚରମ ଲକ୍ଷ୍ୟଥିଲା । ବୈଦିକ ଆର୍ଯ୍ୟମାନେ ଏହାକୁ ଏକ ଅନୁଭୂତିର ସାମଗ୍ରୀ ବୋଲି କହୁଥିଲେ । ଏହି ଅନୁଭୂତିର ସାମଗ୍ରୀ ମିଳିଥାଏ ମାନସିକ ଚେତନାର ଊର୍ଦ୍ଧ୍ୱତମ ସ୍ତରରେ । 'ରାଧାକୃଷ୍ଣନ୍'ଙ୍କ ଭାଷାରେ ଏହା ଥିଲା ବର୍ତ୍ତମାନର ଏକ ମାନସିକ ସ୍ଥିତି । ଭବିଷ୍ୟତରେ ସିଦ୍ଧି କିନ୍ତୁ ନୁହେଁ । ଏହି ଉଚ୍ଚ ଆଦର୍ଶକୁ ଆଖି ଆଗରେ ରଖିବା ଦ୍ୱାରା ସମାଜରେ ଶୀଳାତ୍ମକ ମୂଲ୍ୟବୋଧର ଆଦର୍ଶ ସୃଷ୍ଟି ହେଉଥିଲା । ଏହା ଦ୍ୱାରା ଆଧ୍ୟାତ୍ମିକ ଓ ଭୌତିକ ବିକାଶ ସାଧିତ ହେଉଥିଲା । ଏହି ଶୃଙ୍ଖଳା ଓ ନିୟମ ଋଗ୍‌ବେଦ କାଳରୁ ରହି ଆସିଥିଲା । ଋଗ୍‌ବେଦୋତ୍ତର କାଳରେ ଏହା ଆହୁରି ଅଧିକତର ଭାବରେ ବିଧିନିଷ୍ଠ ହୋଇଗଲା । ଏଥିପ୍ରତି ଲକ୍ଷ୍ୟ କରି 'ବିଶ୍ୱାସ' ଯଥାର୍ଥରେ କହିଛନ୍ତି "ଋଗ୍‌ବେଦକାଳୀନ ସମାଜ ଏକ ନିୟନ୍ତ୍ରିତ ସମାଜ ଥିଲା" ।(୪୦)

**(ଛ) ଅତିଥି ସତ୍କାର –**

ଅତିଥି ସତ୍କାର ଆର୍ଯ୍ୟମାନଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ଥିଲା । 'ବ୍ରହ୍ମଚର୍ଯ୍ୟାଶ୍ରମରୁ' ଏ ଶିକ୍ଷା ଦିଆଯାଉଥିଲା । 'ଅତିଥିଦେବୋଭବ' ବୋଲି 'ତୈତ୍ତିରୀୟ ଆରଣ୍ୟକ'ରେ ଗୁରୁ ଶିଷ୍ୟଙ୍କୁ ଉପଦେଶ ଦେଇଅଛନ୍ତି । ସେମାନେ ଅତିଥିଙ୍କୁ ଦେବତା ଭଳି ଜ୍ଞାନ କରି ପୂଜା କରୁଥିଲେ । ରାଜା 'ଦିବୋଦାସ' ଜଣେ ଅତିଥି ପରାୟଣ ରାଜା ଥିଲେ ବୋଲି ତାଙ୍କୁ 'ଅତିଥିଗ୍ୱଃ' ବୋଲି ଋଗ୍‌ବେଦରେ ପ୍ରଶଂସା କରାଯାଇଛି । (୪୧) ଏବେମଧ୍ୟ ଭାରତୀୟମାନେ ଅତିଥି ପରାୟଣ । ଏହା ନିଶ୍ଚିତ ଭାବରେ ବୈଦିକ ପରମ୍ପରାର ଫଳଶ୍ରୁତି ଅଟେ । ପଞ୍ଚତନ୍ତ୍ରରେ ଅତିଥିଙ୍କୁ ସର୍ବଦେବତାର ଆଧାର ବୋଲି କୁହାଯାଇଅଛି ।

**(ଜ) ପରିବାର –**

ପରିବାର ବୈଦିକ ସମାଜର ' ହୃତ' କେନ୍ଦ୍ର ସ୍ୱରୂପ ଥିଲା । ଏହିଠାରେ ଯେଉଁ ନୀତି,. ନିୟମ, ନିଷ୍ଠାମାନ ପାଳିତ ହେଉଥିଲା ତାହାର ପ୍ରଭାବ ସମାଜରେ ପଡୁଥିଲା । ଜ୍ୟେଷ୍ଠଙ୍କୁ ସମ୍ମାନ ଦେବା ଏବଂ କନିଷ୍ଠଙ୍କୁ ଶ୍ରଦ୍ଧା କରିବା ପାରିବାରିକ ଜୀବନର ମୂଳ ସ୍ୱରୂପ ଥିଲା । ବୈଦିକ ପରିବାରର ପିତୃକୈନ୍ଦ୍ରିକ ଥିଲା ମାତ୍ର ଏହା ପିତୃସର୍ବସ୍ୱ ନଥିଲା । ପିତା ନିଜ ସୁଖ ପାଇଁ ଧାଉଁ ନଥିଲେ କି ଯଥେଚ୍ଛାଗ୍ରହୀ ନଥିଲେ । ପରିବାରର ମଙ୍ଗଳ ପାଇଁ ସେ ସର୍ବଦା ଚିନ୍ତା କରୁଥିଲେ । ତାଙ୍କରି ଥିଲା ତ୍ୟାଗୀ ଓ ଭୋଗୀର ଏକ ସମନ୍ୱିତ ଜୀବନ । ଋଗ୍‌ବେଦ ( ୧/୨/୯) ରେ ପିତାଙ୍କୁ ଦୟାମୟ ଓ ପରିବାରର ମଙ୍ଗଳଦାୟକ

ବୋଲି ବର୍ଣ୍ଣନା କରାଯାଇଛି । ବୈଦିକ ଆର୍ଯ୍ୟମାନଙ୍କର ପରିବାରଥିଲା ସଂଯୁକ୍ତ ଏବଂ ଏକାନ୍ନବର୍ତ୍ତୀ । ଏଥିରେ ବୃଦ୍ଧ ପିତା, ମାତା, ସ୍ତ୍ରୀ, ପିଲାପିଲି ଏବଂ ପରିବାରର ଅବିବାହିତା ଭଉଣୀ ଇତ୍ୟାଦି ଏକତ୍ର ବାସ କରୁଥିଲେ । ଯେଉଁ ଅବିବାହିତା ଭଉଣୀ ର ଭାଇ ନାହିଁ ତା ଜୀବନ ଦୁଃଖମୟ ବୋଲି ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି । (୪୨)

ପିତାଙ୍କର ମୃତ୍ୟୁରେ ପୁତ୍ର ପାଇଁ ଏକ ବିଧାନ ଖଞ୍ଜାଯିବାର କଥା ଉପନିଷଦ୍‌ରେ ବର୍ଣ୍ଣିତ ହୋଇଅଛି । ଏହି ବିଧାନଟିର ନାମ ହେଉଛି "ପିତା ପୁତ୍ରୀୟ ସଂପ୍ରତ୍ତି" ବା ସଂପାଦାନ । ଏହାର ଉଲ୍ଲେଖ 'ବୃହଦାରଣ୍ୟକୋପନିଷଦ୍'ରେ (୧/୫/୧୭) ହୋଇଅଛି । ପିତାଙ୍କ ମୃତ୍ୟୁ ସମୟରେ ପୁତ୍ର ଆସି ତାଙ୍କ ମୁଖ ପାଖରେ ବସୁଥିଲା । ପିତା କହୁଥିଲେ ତୋ ଠାରେ "ବାକ୍, ଆଖି, କାନ ନେଇ ଥୋଇଛି"। ଅର୍ଥାତ୍ ଏହି ଶକ୍ତି ଗୁଡିକ ପିତା ପୁତ୍ରଙ୍କୁ ପ୍ରଦାନ କରିଅଛନ୍ତି । ସଂକ୍ଷେପରେ ମଧ୍ୟ କହିଥାନ୍ତି "ମୁଁ ତୋତେ ମୋ ପ୍ରାଣ ଶକ୍ତି ଅର୍ପଣ କଲି"। ସେତିକିବେଳେ ପୁତ୍ର ଏସବୁ ଧାରଣ କଲା ବୋଲି କହିଥାଏ । ତାପରେ ପିତା ଶାନ୍ତିରେ ନିଶ୍ୱାସ ମାରିଥାନ୍ତି । ଏହା ସହିତ ଦେଖିବାକୁ ମିଳେ ଏ ସମାଜରେ 'ଅଜୀଗର୍ତ୍ତ' ମୁନିଙ୍କ ଭଳି କ୍ରୁରକର୍ମା ପିତା ମଧ୍ୟ ଥିଲେ; କିନ୍ତୁ ଏସବୁ ଅସାଧାରଣ ଘଟଣା ଥିଲା ।

ପିତାଙ୍କର ମୁଖ୍ୟ ଦାୟିତ୍ୱ ଥିଲା ସନ୍ତାନ ସନ୍ତତିଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରିବା । ଏହା ସହିତ ସନ୍ତାନ ସନ୍ତତିଙ୍କ ସମସ୍ତ କାର୍ଯ୍ୟ କଳାପକୁ ନିୟନ୍ତ୍ରିତ କରୁଥିଲେ । ଶଶୁରଙ୍କ ପାଖରେ ବୋହୁ ଥିଲା ଲଜ୍ଜାଶୀଳା । 'ଐତରେୟ ବ୍ରାହ୍ମଣ'ରେ କୁହାଯାଇଛି "ସ୍ନୁଷା ଶ୍ୱଶରା ଲଜ୍ଜମାନା ନିଲୀୟମାନା ଇତି"। ଅର୍ଥାତ୍ ଶଶୁରଙ୍କ ଆଗରେ ବୋହୂ ଲାଜେଇ ଯାଇ ନିଜର ଶରୀର ଘୋଡାଇ ଆସିଥାଏ । ଏହା ନାରୀ ସମାଜର ନମ୍ରତା ଏବଂ ଶାଶୁ ଶଶୁରଙ୍କ ପ୍ରତି ନମ୍ର ଭାବର ସୂଚନା । ପରିବାରର ଗୁରୁତ୍ୱ ଏକକ ଭାବେ ଗଣା ଯାଉଥିଲା । କୌଣସି ଅଞ୍ଚଳର ଲୋକସଂଖ୍ୟା ପରିବାରରୁ ନିର୍ଣ୍ଣିତ ହେଉଥିଲା । ପରିବାର ଭିତରେ ବ୍ୟକ୍ତିସତ୍ତା ଲୋପ ପାଇଯାଉଥିଲା । ମାତ୍ର ବ୍ୟକ୍ତିତ୍ୱର ଅଭିବୃଦ୍ଧି ପରିବାର ଦ୍ୱାରା ସାଧିତ ହେଉଥିଲା । ପରିବାର ଏବଂ ବ୍ୟକ୍ତି ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଥିଲା । ବ୍ୟକ୍ତି ଏବଂ ପରିବାର ପରିପୂରକ ଥିଲେ ଉଭୟଙ୍କ ପାଇଁ । ବ୍ୟକ୍ତି ବିଶେଷଙ୍କୁ ଏକ ଦୃଢବନ୍ଧନରେ ବାନ୍ଧି ରଖିବାରେ ପାରିବାରିକ ବ୍ୟବସ୍ଥାଟି ସହାୟକ ହୋଇଥିଲା ।

ଏହି ବ୍ୟବସ୍ଥାକୁ ଅଧିକ ଦୃଢତର କରିଥିଲା "ଗୋତ୍ର ଓ ପ୍ରବର" ସଂପର୍କୀୟ ଚିନ୍ତାଧାରା । ଅଥର୍ବ ବେଦରେ ସର୍ବ ପ୍ରଥମେ 'ଗୋତ୍ର'କୁ ଗୋଷ୍ଠୀ ଅର୍ଥରେ ଗ୍ରହଣ କରାଯାଇଛି ।(୪୩) ପରିବାରର ବ୍ୟକ୍ତିମାନଙ୍କୁ ଗୋଟିଏ ଗୋତ୍ରରେ ଅନ୍ତର୍ଭୁକ୍ତ କରାଗଲା । ବଡ଼ ପରିବାର ଗୁଡିକ ଭାଙ୍ଗି ଯାଇ କ୍ଷୁଦ୍ର ହେଲେ ମଧ୍ୟ ସେମାନେ ଗୋତ୍ରର ବୋଲି ଚିହ୍ନିତ ହେଉଥିଲେ । ଏହି ଗୋତ୍ର ଚିନ୍ତାଧାରା ପ୍ରଥମେ ବ୍ରାହ୍ମଣଙ୍କ ପ୍ରତି ପ୍ରଯୁଜ୍ୟ ଥିଲା । ସେମାନେ ମୁନିଋଷି ମାନଙ୍କ ନାମରେ ନିଜ ଗୋତ୍ରର ପରିଚୟ କରାଇଥିଲେ । ଯଥା ବଶିଷ୍ଠ, ଭରଦ୍ୱାଜ ଇତ୍ୟାଦି । ଏହାପରେ କ୍ଷତ୍ରିୟ ଓ ବୈଶ୍ୟ ଏହି ଗୋତ୍ର ପରମ୍ପରାକୁ ଗ୍ରହଣ କରିନେଲେ । ଏହି ଗୋତ୍ରର ବନ୍ଧନ ଖୁବ୍ ଦୃଢ ଥିବାରୁ ତାହାଙ୍କୁ ସପିଣ୍ଡିକ ବୋଲି କୁହାଯାଉଥିଲା । ସପିଣ୍ଡିକମାନଙ୍କ ମଧ୍ୟରେ ବିବାହ ନିଷିଦ୍ଧ ଥିଲା । କେତେକ ଗୋତ୍ର ପ୍ରଥା ଅନୁଯାୟୀ ପୃଥକ୍ ହେଲେ ମଧ୍ୟ ପ୍ରବର ଯଦି ସମାନ ତେବେ ପୁଅ ଝିଅଙ୍କ ମଧ୍ୟରେ ବିବାହ ହୋଇ ପାରୁନଥିଲା । ଏହି ଗୋତ୍ର

ଏବଂ ପ୍ରବର ଚିନ୍ତାଧାରା ବୈଦିକ ପରିବାରର ବନ୍ଧନକୁ ଦୃଢ଼ କରିଥିଲା । ଏହି ବନ୍ଧନର ଦୃଢ଼ତାରୁ ପରିବାରର ଲୋକେ ଯେ କୌଣସି ଶତ୍ରୁ ଆଗରେ ଏକୀଭୂତ ହୋଇ ଠିଆ ହେଉଥିଲେ । ଏହି ଗୋତ୍ର ଓ ପ୍ରବର ସାମାଜିକ ଏକତା ଆଣିବାରେ ବହୁତ ସାହାଯ୍ୟ କରୁଥିଲା ।

**(୯) ବିବାହ ଓ ନାରୀ –**

"ବୈଦିକ ଆର୍ଯ୍ୟର ଦୃଷ୍ଟିରେ ବିବାହ ଥିଲା ସମାଜର ମୂଳ ପ୍ରତିଷ୍ଠା । ମୂଳଭିତ୍ତିହୀନ ପ୍ରାସାଦ ଯେପରି କ୍ଷଣସ୍ଥାୟୀ, ବିବାହ ବିହୀନ ସମାଜ ମଧ୍ୟ ସେହିପରି କ୍ଷଣସ୍ଥାୟୀ । ଆର୍ଯ୍ୟର ସାତ୍ତ୍ୱିକ ଦୃଷ୍ଟିରେ ବିବାହ ଯଜ୍ଞର ଗରିମା ଅନ୍ୟ ଯଜ୍ଞ ଠାରୁ କୌଣସି ଗୁଣରେ ନ୍ୟୂନ ନଥିଲା । ବିବାହ ଥିଲା ଯଜ୍ଞ ପରି ପବିତ୍ର ଓ କଳ୍ପତରୁ ପରି କାମଦ । ବିବାହ କେବଳ ସ୍ତ୍ରୀ ପୁରୁଷର କ୍ଷଣିକ ଇନ୍ଦ୍ରିୟ ବାସନା ତୃପ୍ତିର ସାଧନା ମାତ୍ର ନଥିଲା ; କିନ୍ତୁ କଳୁଷିତ କାମନା ବାସନାକୁ ଦୂର କରି ବିଶୁଦ୍ଧ ପ୍ରେମକୁ ଉତ୍ପନ୍ନ କରିବା ପାଇଁ ତଥା ବରବଧୂଙ୍କୁ ଏକତ୍ର ବାନ୍ଧି ରଖିବା ପାଇଁ ପବିତ୍ର ପାଶ ସ୍ୱରୂପ ଥିଲା । ବିବାହ ହେଉଛି ପ୍ରକୃତ ପଥ ଯେଉଁଥିରେ କି ମନୁଷ୍ୟ ସ୍ୱାର୍ଥ ଛାଡି ପରମାର୍ଥ ଦିଗରେ ଅଗ୍ରସର ହେଉଥିଲା । ତାହାହିଁ ପ୍ରକୃତ ସୋପାନ ଯେଉଁଥିରେ କି ମାନବ ସମାଜ ପାଶବିକ ପଙ୍କରୁ ଉଦ୍ଧାର ଲାଭ କରି ପହଞ୍ଚିପାରୁ ଥିଲା ଦେବତ୍ୱର ଅଭିରାମ ମନ୍ଦିରରେ"। (୪୪)

ବିବାହ ଶବ୍ଦଟିର ତାତ୍ତ୍ୱିକ ଅର୍ଥ ହେଲା - 'ବି'ଅର୍ଥ ଗତି ବା ମୁକ୍ତି । ସେହିଠାକୁ ଯେଉଁ ଅନୁଷ୍ଠାନଟି ବହନ କରି ନେଇଯାଏ ତାହାକୁ କୁହାଯାଏ ବିବାହ । ଏହା ଉଭୟ ଐହିକ ଏବଂ ପାରତ୍ରିକ ସୁଖ ଆଣି ଦେବାରେ ସହାୟକ ହେଉଥିଲା । ଏହା ମଧ୍ୟ 'ଚତୁର୍ବର୍ଗ' ଫଳ ପ୍ରାପ୍ତି ମାର୍ଗରେ ମଣିଷକୁ ନେଇ ଥାଏ । ଋଗ୍‌ବେଦ କାଳରେ ବିବାହର ଶୃଙ୍ଖଳିତ ବ୍ୟବସ୍ଥା ଦେଖା ଯାଇଥାଏ । ଋଗ୍‌ବେଦ କାଳରେ ଆର୍ଯ୍ୟ ଥିଲା ସଂଗ୍ରାମ ପ୍ରେମୀ ଓ ଧର୍ମ ନିଷ୍ଠ । ପୁତ୍ର ଲାଭ ପାଇଁ ଆର୍ଯ୍ୟର ହୃଦୟ ଯେ ସବୁବେଳେ ବ୍ୟାକୁଳ ଥିଲା ତାହା ଋଗ୍ ବେଦର ବହୁ ସୂତ୍ରରୁ ପ୍ରମାଣ ମିଳେ । ଲୋକାଳୟ କାହିଁକି ଅରଣ୍ୟରେ ମଧ୍ୟ ମୁନିଋଷି ବୈବାହିକ ଜୀବନ ଯାପନ କରିଥାନ୍ତି । ଗୃହସ୍ଥଙ୍କର ଯେଉଁ ପାଞ୍ଚ ଯଜ୍ଞ କରିବାର କଥା, ବିବାହ ବିନା ସେ ତାହା କରି ପାରିବ ନାହିଁ ବୋଲି କୁହାଯାଇଛି । 'ଶତ୍‌ପଥ ବ୍ରାହ୍ମଣ'ରେ କୁହାଯାଇଛି ଯାହାଙ୍କର ପତ୍ନୀ ନାହାଁନ୍ତି, ସେ ଯଜ୍ଞ କରି ପାରିବେ ନାହିଁ । (୪୫) "ଆର୍ଯ୍ୟର ପୂର୍ଣ୍ଣ ବିଶ୍ୱାସ ଥିଲା ପୁତ୍ର ଦ୍ୱାରା ପିତା ଐହିକ, ଆମୁଷ୍ମିକ, ଲୌକିକ ତଥା ପାରଲୌକିକ ଉଭୟ ପ୍ରକାର ଗହନ ଅନ୍ଧକାରକୁ ଦୂରକରିବାକୁ ସମର୍ଥ ହୁଏ ଏବଂ ପୁତ୍ର ପିତାକୁ ଅନ୍ଧକାରରୁ ଆଣି 'ପରମ ବ୍ୟୋମନ୍'ରେ, 'ପରମ ବ୍ରହ୍ମ'ରେ ପ୍ରତିଷ୍ଠିତ କରିଥାଏ"।(୪୬) ଏଥିପାଇଁ ଗୃହସ୍ଥ ନିମିତ୍ତ 'ଜାୟା' ଏକାନ୍ତ ଆବଶ୍ୟକ । ପାରିବାରିକ ବ୍ୟବସ୍ଥା ଭିତରେ ଲାଳିତ ପାଳିତ ହୋଇଥିବା ଅବିବାହିତ କନ୍ୟାମାନଙ୍କର ବର୍ଣ୍ଣନା ଋଗ୍‌ବେଦରେ ମିଳେ ।(୪୭)

ଏହି ସମୟରେ ଝିଅମାନେ ମଧ୍ୟ ପାଠ ପଢାପଢି କରୁଥିଲେ ଏବଂ ସେମାନଙ୍କୁ ବ୍ରହ୍ମଚାରିଣୀ ବୋଲି କୁହାଯାଉଥିଲା । ସେମାନେ ଘରେ ପାଠ ପଢୁଥିଲେ । 'ଯମ ସ୍ମୃତି'ରେ କୁହାଯାଇଛି ପୁରାକାଳରେ ସ୍ତ୍ରୀମାନେ ମଧ୍ୟ 'ମୌଞ୍ଜୀବନ୍ଧନ' ପିନ୍ଧି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରୁଥିଲେ । ଗୁରୁକୁଳରେ ପାଠ

ପଢାଇବାର ଅସୁବିଧା ସୃଷ୍ଟି ହେବା ଆଶଙ୍କା କରି ବୈଦିକ ଆର୍ଯ୍ୟମାନେ ସେମାନଙ୍କୁ ପିତୃ ଗୃହରେ ଶିକ୍ଷା ଦେବାର ବ୍ୟବସ୍ଥା କରାଇଥିଲେ । (୪୮) ବୈଦିକ ବିବାହ ଥିଲା ସ୍ୱାମୀ ସ୍ତ୍ରୀଙ୍କର ଏକ ପବିତ୍ର ମିଳନ । ଆର୍ଯ୍ୟମାନେ ଭାବୁଥିଲେ ଏହା ଦେବତାମାନଙ୍କର ଆଶୀର୍ବାଦରୁ ସଂଗଠିତ ହୋଇଥାଏ । ବିବାହ ବନ୍ଧନ ଥିଲା ସ୍ୱାମୀ, ସ୍ତ୍ରୀ ଙ୍କ ପାଇଁ ଅଚ୍ଛେଦ୍ୟ, ସ୍ୱାମୀ ସ୍ତ୍ରୀ ଇହକାଳ ଓ ପରକାଳର ଚିର ସାଥି । ବିବାହ ମନ୍ତ୍ରରେ ସେଥିପାଇଁ ସ୍ୱାମୀ ସ୍ତ୍ରୀଙ୍କୁ କହିଥାନ୍ତି "ଆକାଶ ଓ ଧରଣୀର ସଂପର୍କ ଯେଉଁଭଳି ଚିରନ୍ତନ, ତୁମର ମୋର ସଂପର୍କ ଠିକ୍ ସେହି ଭଳି ଚିରନ୍ତନ ରହିଥାଉ"। ହସ୍ତଗ୍ରନ୍ଥି ପଡିଲା ବେଳେ ସ୍ୱାମୀ ସ୍ତ୍ରୀଙ୍କୁ କହିଥାନ୍ତି । "ତୁମର ସୌଭାଗ୍ୟ ଆଣିବା ଲାଗି ମୁଁ ତୁମ ହାତ ଧରୁଛି"। ମୁଁ ତୁମ ସ୍ୱାମୀ ଏବଂ ତୁମେ ମୋ ସାଥୀରେ ବାର୍ଦ୍ଧକ୍ୟ ଅବସ୍ଥା ପାଇବା ଯାଏ ରହିବ । ଗୃହସ୍ଥାଶ୍ରମର କାର୍ଯ୍ୟ ନିର୍ବାହ କରିବା ଲାଗି 'ଭଗ, ଅର୍ଯମା, ସବିତା ଓ ପୁରନ୍ଧି' ଆଦି ଦେବତାମାନେ ମତେ ତୁମକୁ ଆଣି ଦେଇଅଛନ୍ତି ।(୪୯) ସେତେବେଳେ କେହି କାହାକୁ ଛାଡ଼ପତ୍ର ଦେଉ ନଥିଲେ ।

ବୈଦିକ ବିବାହରେ ସ୍ୱାମୀ ସ୍ତ୍ରୀଙ୍କର କେବେ ମନୋମାଳିନ୍ୟ ହେଉନଥିଲା । ଜଣେ ଅପରକୁ ନିଜ ଆତ୍ମାର ଅଂଶ ଭାବରେ ଗ୍ରହଣ କରୁଥିଲେ । ଉଭୟଙ୍କର ଉତ୍ତମ ବୁଝାମଣା ଥିଲା । ଏହାକୁ ଅତୁଟ ରହିବାକୁ ଉଭୟ ଉଦ୍ୟମ କରୁଥିଲେ । ବୈଦିକ ଚିନ୍ତାଧାରାରେ "ଏ ନିଜର ଅର୍ଦ୍ଧେକ ବୋଲି ଏହାଙ୍କୁ କୁହାଯାଏ 'ଜାୟା' । (୫୦) ସ୍ତ୍ରୀକୁ ମଧ୍ୟ ପତ୍ନୀ ଭାବରେ କୁହାଯାଇଛି । ସେଠାରେ କୁହାଯାଇଛି "ଏହାଙ୍କୁ ଜଂଘରେ ଅର୍ଦ୍ଧାଙ୍ଗିନୀ ଭାବରେ ବସାଇ ଯଜ୍ଞ କରାଯାଏ ବୋଲି ଏ ହେଉଛନ୍ତି ପତ୍ନୀ" ।(୫୧) ପତି ପତ୍ନୀଙ୍କ ଅବିଚ୍ଛେଦ୍ୟ ସଂପର୍କର ବର୍ଣ୍ଣନା 'ଐତରେୟ ବ୍ରାହ୍ମଣ'ରେ କରାଯାଇଛି । "ସ୍ୱାମୀ ସତ୍ୟ ହେଲେ ସ୍ତ୍ରୀ ହେଉଛନ୍ତି ଶ୍ରଦ୍ଧା, ସ୍ୱାମୀ ମନ ହେଉ ଥିଲେ ସ୍ତ୍ରୀ ହେଉଛନ୍ତି ବାଣୀ । ସ୍ୱାମୀ ଯେଉଁଠି ଥାନ୍ତି, ସ୍ତ୍ରୀ ରହିଥାନ୍ତି ସେଇଠି । ସତ୍ୟ ସହିତ ଶ୍ରଦ୍ଧାର ସଂପର୍କ ନିତ୍ୟ ଏବଂ ମନ ସହିତ ବାଣୀର ସଂପର୍କ ନିତ୍ୟ"। (୫୨) ଉଭୟେ ଉଭୟଙ୍କୁ ଅର୍ଦ୍ଧେକ ସ୍ଥାନ କଲେ ଦାମ୍ପତ୍ୟ ଜୀବନ ମଧୁମୟ ହୁଏ ଏବଂ ପରସ୍ପରର ଅଭିବୃଦ୍ଧି ଏବଂ ସନ୍ତୋଷ ସାଧିତ ହୋଇଥାଏ । ଏହା ଦ୍ୱାରା ପରିବାରରେ ଶାନ୍ତି ବିରାଜମାନ କରିଥାଏ ।

ନାରୀକୁ ମଙ୍ଗଳମୟୀ ବୋଲି କୁହାଯାଉଥିଲା । ସେ ପରିବାରରେ ଅମୃତର ଝରଣା ବୁହାଇ ଦିଏ । ତେଣୁ ତା'ର 'ବଧୂ' ନାମର ସାର୍ଥକତା ରହିଅଛି । 'ବ' ଅର୍ଥ ହେଲା ଆନନ୍ଦ । ଏହାକୁ 'ଧୁନୋତି' ବା କମ୍ପମାନ କରି ଯେ ଆସେ ସେ ବଧୂ । ବଧୂର ଆଗମନରେ ପରିବାରର ସମସ୍ତେ ଆନନ୍ଦିତ ହୋଇଥାନ୍ତି । ଋଗ୍‌ବେଦର ଏକ୍ ମନ୍ତ୍ରରେ ହସ୍ତଗ୍ରନ୍ଥି ପଡ଼ିବାର ପୂର୍ବରୁ କୁହାଯାଇଛି "ଏହି ବଧୂ ହେଉଛନ୍ତି ମଙ୍ଗଳମୟୀ । ତୁମେମାନେ ୟାଙ୍କ ପାଖକୁ ଆସି ଦେଖ । ୟାଙ୍କୁ ସୌଭାଗ୍ୟବତୀ ହେବାପାଇଁ ତୁମ୍ଭମାନଙ୍କର ସଦିଚ୍ଛା ଦେଇ ସାରିବା ପରେ ତୁମ୍ଭେମାନେ ଘରକୁ ଫେରିଯାଅ"।(୫୩) ତେଣୁ ନାରୀ ଥିଲା ଲକ୍ଷ୍ମୀ ସ୍ୱରୂପା ମଙ୍ଗଳମୟୀ ।

ପରିବାରରେ ସୁଖ ଆଣିବା ନିମିତ୍ତ ତାର କର୍ତ୍ତବ୍ୟ ସଂପର୍କରେ କନ୍ୟାକୁ ବିବାହ ବେଦୀରେ ସଚେତନ କରାଇ ଦିଆଯାଇଥାଏ । ଋଗ୍‌ବେଦରେ କୁହାଯାଇଛି "ତୁମେ ଶାଶୂ ଶଶୁରଙ୍କ ଠାରେ ସମ୍ରାଜ୍ଞୀ ଭଳି ଆଚରଣ କର । ନଣନ୍ଦ ଓ ଦିଅରଙ୍କ ଠାରେ ସମ୍ରାଜ୍ଞୀ ଭଳି ଆଚରଣ କର" ।(୫୪)

ଏଠାରେ ସମ୍ରାଜ୍ଞୀର ଅର୍ଥ ହେଉଛି ଯେଉଳି ସମ୍ରାଜ୍ଞୀ ନିଜର ସ୍ୱାର୍ଥକୁ ବଳି ଦେଇ ପ୍ରଜାମାନଙ୍କର ସୁଖ ଦେଖିଥାନ୍ତି ସେହି ଭଳି ବଧୂ ନିଜ ସ୍ୱାଥକୁ ବଳି ଦେଇ ଶାଶୁ, ଶଶୁର, ନଣନ୍ଦ, ଦିଅର ର ସ୍ୱାର୍ଥ ଦେଖିଥାନ୍ତି । ଏଠାରେ ସ୍ୱାର୍ଥ ତ୍ୟାଗ ସମସ୍ତଙ୍କୁ ପ୍ରେମ କରିବା ଅର୍ଥରେ ପ୍ରଯୁକ୍ତ ହୋଇଅଛି । ବିବାହ କର୍ମକୁ ତିନୋଟି ଲକ୍ଷ୍ୟ ନେଇ ବୈଦିକ ଆର୍ଯ୍ୟମାନେ ସମାହିତ କରୁଥିଲେ । ପ୍ରଥମଟି ଧର୍ମ, ଦ୍ୱିତୀୟଟି ପ୍ରଜା ବା ସନ୍ତାନ ଉତ୍ପାଦନ ଓ ତୃତୀୟଟି ହେଲା ଜୀବନର ଆନନ୍ଦପ୍ରାପ୍ତି । ଉତ୍ତମ ସନ୍ତାନ ଯୋଗୁ କୁଳର ମାନ ସମ୍ମାନ ବୃଦ୍ଧି ହୋଇଥାଏ, ତାହା ଆର୍ଯ୍ୟମାନଙ୍କର ଧାରଣା ଥିଲା । ତେଣୁ ବୈଦିକ ମନ୍ତ୍ର ଅଗ୍ନିଙ୍କୁ ପ୍ରାର୍ଥନା କରି ଯାହା କୁହାଯାଇଛି "ସନ୍ତାନମାନଙ୍କ ମାଧ୍ୟମରେ ଆମେ ଅମର ହୋଇଉଠୁ" । (୫୫) ବୈଦିକ ନାରୀମାନେ ମଧ୍ୟ ଅନୁରୂପ ପ୍ରାର୍ଥନା କରି କହିଥାନ୍ତି "ମୋର ପୁତ୍ରମାନେ ଶତ୍ରୁହନ୍ତା ହୁଅନ୍ତୁ । ମୋ ଝିଅ ଖୁବ୍ ବଡ଼ ହେଉ । ମୁଁ ଜୀବନରେ ସଫଳତା ପାଏ ଏବଂ ସ୍ୱାମୀଙ୍କ ଯଶ ଗୁରିଆଡ଼େ ବ୍ୟାପ୍ତ ହେଉ" । (୫୬)

ବୈଦିକ ଯୁଗରେ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ କର୍ମ ବିଭାଜନ ଥିଲା । ପରିବାରରେ ପୁରୁଷକୁ କଠିନ ପରିଶ୍ରମ କରିବାକୁ ପଡୁଥିଲା । କର୍ମକ୍ଳାନ୍ତ ଶରୀର ନେଇ ଗୃହକୁ ଫେରିଲା ବେଳେ ସ୍ତ୍ରୀ ତାର ସମସ୍ତ ସ୍ନେହ ଶ୍ରଦ୍ଧା ପ୍ରତିପାଦନ କରିଥାଏ ଯଦିଓ ଘର ଭିତରର ସମସ୍ତ କର୍ମ ସ୍ତ୍ରୀ କରିଥାଏ । ସ୍ୱାମୀ ସ୍ତ୍ରୀ ମଧ୍ୟରେ ଅହେତୁକ ପ୍ରେମ ଥିଲେ ଜ୍ୟେଷ୍ଠମାନେ ସମ୍ମାନ ଏବଂ କନିଷ୍ଠମାନେ ଶ୍ରଦ୍ଧା ପାଇଥାନ୍ତି । ପ୍ରାଚୀନ ବୈଦିକ ସମାଜତତ୍ତ୍ୱବିତ୍‌ମାନେ କହିଛନ୍ତି "ପୁଅର ମନ ବାପା ମାଆଙ୍କ ମନ ସହିତ ମେଳ ରହୁ ଏବଂ ସେ ସେମାନଙ୍କ କଥା ମାନି ଚଳୁ । ସ୍ତ୍ରୀ ସବୁବେଳେ ସ୍ୱାମୀ ସହିତ ମଧୁର ଭାବରେ କଥାବାର୍ତ୍ତା କରୁ ।" (୫୭)

ବୈଦିକ ସ୍ତ୍ରୀ ସ୍ୱାମୀ , ଶଶୁର, ଶାଶୁ ଏବଂ ଅନ୍ୟାନ୍ୟ ବରିଷ୍ଠ ବ୍ୟକ୍ତିମାନଙ୍କୁ ଭକ୍ତି କରୁଥିଲା । ସ୍ୱାମୀଙ୍କ ଆଦେଶକୁ ଶିରୋଧାର୍ଯ୍ୟ ମନେ କରୁଥିଲା । ପିଲାମାନଙ୍କର ଯତ୍ନ ନେଉଥିଲା । ଘର ଭିତରର ଯାବତୀୟ କାର୍ଯ୍ୟ କରୁଥିଲା । ପାରିବାରିକ ପରମ୍ପରା ପିତୃକୈନ୍ଦ୍ରିକ ଥିବାରୁ ପରିବାର ସମ୍ପତ୍ତିକୁ ପୁରୁଷ ପରିଚାଳନା କରୁଥିଲା । ଯୌତୁକ ସ୍ୱରୂପ ସ୍ତ୍ରୀ ଯେଉଁ ସମ୍ପତ୍ତି ଆଣିଥିଲା ସ୍ତ୍ରୀ ତାହାର ସଂପୂର୍ଣ୍ଣ ଅଧିକାରିଣୀ ଥିଲା । ଏ ପ୍ରକାର ସଂପତ୍ତିର ନାମ ଥିଲା 'ପାରିଣାୟ' ଯାହା ପରବର୍ତ୍ତୀ ସମୟରେ ସ୍ତ୍ରୀ ଧନ ଭାବରେ ନାମିତ ହୋଇଥିଲା । ପରବର୍ତ୍ତୀ ବ୍ରାହ୍ମଣ ସମୟ ବେଳକୁ ସ୍ତ୍ରୀମାନଙ୍କର ସମ୍ପତ୍ତି ଉପରେ ଅଧିକାର ରହିଲା ନାହିଁ । ତୈତ୍ତିରୀୟ ସଂହିତାରେ ତେଣୁ କୁହାଯାଇଛି "ସ୍ତ୍ରୀମାନେ ହେଲେ ଦୁର୍ବଳା, ତେଣୁ ସେମାନଙ୍କର ସମ୍ପତ୍ତିରେ ଉତ୍ତରାଧିକାର ନାହିଁ ।" (୫୮) ସଂପତ୍ତି ସଂପର୍କରେ ଏ ଧରଣର ମତାମତ ଥିଲେ ମଧ୍ୟ ସମାଜରେ ସ୍ତ୍ରୀ ଓ ପୁରୁଷଙ୍କର ସମାନ ଅଧିକାର ବୈଦିକ କାଳରେ ଥିଲା ।

ବୈଦିକ କାଳରେ ବୋହୂ ନମ୍ର ଓ ଲଜ୍ଜାଶୀଳା ଥିଲା । ଐତରେୟ ବ୍ରାହ୍ମଣରେ କୁହାଯାଇଛି "ଶଶୁରଙ୍କୁ ଦେଖି ଲାଜେଇ ବୋହୂଟି ତାର ସାରା ଦେହ ଘୋଡାଇ ଦେଇ ଆସୁଅଛି ।" (୫୯) ପରଦା ପ୍ରଥା ବୈଦିକ କାଳରେ ନଥିଲା । ପୁରୁଷମାନଙ୍କ ଭଳି ସ୍ତ୍ରୀ ସ୍ୱଚ୍ଛନ୍ଦରେ ଯାତାୟାତ କରୁଥିଲା । ସ୍ତ୍ରୀମାନଙ୍କୁ ତେଜସ୍ୱିନୀ ହୋଇ ସଭା ସମିତିରେ ଭାଷଣ ଦେବାକୁ ଉପଦେଶ ଦିଆଯାଇଅଛି ଋଗ୍ ବେଦରେ । (୬୦) ଏ ପ୍ରକାର ସ୍ଥିତି ବେଦୋତ୍ତର କାଳରେ ବଦଳି ଯାଇଥିଲା । ସ୍ତ୍ରୀ ମାନଙ୍କୁ ସଭା ସମିତିକୁ ଯିବାକୁ

ବାରଣ କରାଯାଉଥିଲା । ମୈତ୍ରାୟଣୀ ସଂହିତାରେ କୁହାଯାଇଛି "ସେହି ହେତୁ ସଭାକୁ ପୁରୁଷମାନେ ଯାଆନ୍ତି । ସ୍ତ୍ରୀମାନେ ଯାଆନ୍ତି ନାହିଁ" । (୬୧) ଏହା ସତ୍ତ୍ୱେ ବୈଦିକ କାଳରେ ସ୍ତ୍ରୀମାନଙ୍କର ସଭା ସମିତି ଓ ତର୍କ ସଭାକୁ ଯିବାରେ ବାଧା ବିଘ୍ନ ନଥିଲା ।

ପର୍ବ ପର୍ବାଣୀରେ କୁମାରୀମାନଙ୍କ ଦ୍ୱାରା ବ୍ୟବହୃତ ଅଳଙ୍କାର ଯୁବକମାନଙ୍କୁ ଆକୃଷ୍ଟ କରୁଥିଲା । ପ୍ରେମିକ ପ୍ରେମିକାମାନଙ୍କ ମଧ୍ୟରେ ନିବିଡ଼ ସଂପର୍କ ଥିଲା । ପ୍ରଣୟୀ ଯୁବକ ପ୍ରଣୟିନୀଙ୍କୁ ପାଇବା ନିମିତ୍ତ ବିଭିନ୍ନ 'ମନ୍ତ୍ର' ଶକ୍ତିର ଆଶ୍ରୟ ନେଉଥିଲା । ଏଥିରୁ ମନେ ହୁଏ ଯୁବକ ଯୁବତୀମାନେ ବୟଃପ୍ରାପ୍ତିପରେ ବିବାହ କରୁଥିଲେ । ନିର୍ବାଚିତ ବିଧି ସହିତ ମନୋନୀତ ବିଧି ବୈଦିକ କାଳରେ ପ୍ରଚଳନ ଥିଲା । ଏ ଧରଣର ବିବାହକୁ ଗାନ୍ଧର୍ବ ବିବାହ କୁହାଯାଉଥିଲା । ଏହା ସତ୍ତ୍ୱେ ବିବାହ କାର୍ଯ୍ୟରେ ପିତାମାତାଙ୍କର ନିୟନ୍ତ୍ରଣ ଥିଲା । ସେଥିପାଇଁ 'ଶତପଥ ବ୍ରାହ୍ମଣ'ରେ ଯୁକନ୍ୟା କହିଛନ୍ତି- "ମୋର ପିତା ମୋତେ ଯାହାକୁ ପ୍ରଦାନ କରିଛନ୍ତି ସେ ମୋର ପୂଜ୍ୟ ପତି । ମୁଁ କଦାପି ତାଙ୍କୁ ଜୀବନରେ ଛାଡି ପାରିବି ନାହିଁ"।(୬୨) ବୈଦିକ କାଳରେ ଦସ୍ୟୁ ବର୍ଣ୍ଣ ସହିତ ବିବାହକୁ ବାରଣ କରାଯାଇଥିଲା । ବୈଦିକ ଆର୍ଯ୍ୟ ସମାଜରେ ଭାଇ ଭଉଣୀ ଭିତରେ, ପିତା ଓ କନ୍ୟା ଭିତରେ ବିବାହକୁ ପୂର୍ଣ୍ଣ ନିଷେଧ କରାଯାଇଥିଲା ।(୬୩) ଋଗ୍‌ବେଦର ୨/୨୯/୧ ରେ 'ରହୁସଃ' ଶବ୍ଦର ବ୍ୟବହାର ହୋଇଛି, ଯାହାର ଅର୍ଥ ହେଲା ଗୋପନରେ ପିଲା ଜନ୍ମ କରିବା । ଏଥିରୁ ଅନୁମିତ ହୁଏ ସେତେବେଳେ ଜାରଜ ସନ୍ତାନମାନଙ୍କର ସମସ୍ୟା ରହିଥିଲା । ସେମାନଙ୍କର ଭରଣ ପୋଷଣ ଲାଗି ସେଭଳି କିଛି ବ୍ୟବସ୍ଥା ଥିବାର ଲକ୍ଷ୍ୟ କରାଯାଇନାହିଁ । ହେଲେ ଏ ସମସ୍ୟା ଏତେ ଗୁରୁତର ନଥିଲା । କାରଣ ଏ ସମସ୍ତ କ୍ଷେତ୍ରରେ ପ୍ରାକ୍ ବୈବାହିକ ପ୍ରେମ ବିବାହରେ ପରିଣତ ହେଉଥିଲା ।

ବୈଦିକ କାଳରେ ବାଲ୍ୟ ବିବାହ ପ୍ରଥା ଆଦୌ ନଥିଲା । ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବିବାହ ଅନୁଷ୍ଠିତ ହେଉଥିବାରୁ ବର କନ୍ୟା ଉଭୟ ଯୌବନ ପ୍ରାପ୍ତି ପରେ ବିବାହ କରୁଥିଲେ । ଋତୁମତୀ ହେବାର ବହୁ ବର୍ଷ ପର୍ଯ୍ୟନ୍ତ କନ୍ୟାକୁ ସୁଯୋଗ୍ୟ ପତି ଲାଗି ଅପେକ୍ଷା କରିବାକୁ ହେଉଥିଲା ବୋଲି ବେଦରେ ବର୍ଣ୍ଣିତ ଅଛି । ଋଗ୍‌ବେଦର 'ଋଷିକା ଘୋଷା' ହେଉଛନ୍ତି ଏହାର ଜ୍ୱଳନ୍ତ ନିଦର୍ଶନ । ଯାହାଙ୍କୁ କି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ପତି ପ୍ରାପ୍ତି ଲାଗି ଅପେକ୍ଷା କରିବାକୁ ପଡିଥିଲା । ଏଥିରୁ ଅନୁମିତ ହୁଏ ଯେ ଯୋଗ୍ୟ ପତିଟିଏ ପାଇବା ପର୍ଯ୍ୟନ୍ତ କନ୍ୟା ଅପେକ୍ଷା କରି ରହୁଥିଲା । ପ୍ରେମ ବିବାହର ପ୍ରାଧାନ୍ୟ ବୈଦିକ କାଳରେ ରହିଥିଲା । (୬୪) କନ୍ୟା ଯାହାଙ୍କୁ ପ୍ରେମ କରୁଥିଲା, ତାଙ୍କୁ ହିଁ ବିବାହ କରିବାକୁ ପିତାମାତା, ସମାଜ ଉତ୍ସାହ ଦେଉଥିଲା । ଫଳରେ ଝିଅର ମନ କଥା କାର୍ଯ୍ୟକାରୀ ହେଉଥିଲା । ଆବଶ୍ୟକ ସ୍ଥଳେ ପ୍ରେମିକାକୁ ବଳପୂର୍ବକ ନିଆ ହେଉଥିଲା । ଋଗ୍‌ବେଦରେ 'ବିମଦ' ତାଙ୍କ ପ୍ରେମିକା 'ପୁରୁମିତ୍ର'ଙ୍କ ଝିଅଙ୍କୁ ବଳ ପ୍ରୟୋଗ କରି ପିତୃଗୃହରୁ ନେଇ ଯାଇଥିଲେ । (୬୫) ଏ ପ୍ରକାର ବିବାହରେ ଗାନ୍ଧର୍ବ ପଦ୍ଧତି ଓ ରାକ୍ଷସ ପଦ୍ଧତି ମିଶିକରି ଥିଲା । ଅବଶ୍ୟ ଏ ପ୍ରେମ ସାମାଜିକ ଭ୍ରଷ୍ଟାଗ୍ରର ସୃଷ୍ଟି କରି ନଥିଲା । ବୈଦିକକାଳୀନ ବିବାହ ପଦ୍ଧତି ଗୁଡିକ ନିମ୍ନୋକ୍ତ ମତେ ସମାହିତ ହେଉଥିଲା । ସ୍ଥୂଳତ ଏହି ପଦ୍ଧତି ସଂପର୍କରେ ସୁରେନ୍ଦ୍ର ନାଥ ଶତପଥୀ ତାଙ୍କ ଭାରତୀୟ ସଂସ୍କୃତିର ବୈଦିକ ପର୍ବ ଦ୍ୱିତୀୟ ଭାଗରେ ନିମ୍ନୋକ୍ତ ମତେ ବର୍ଣ୍ଣନା କରିଅଛନ୍ତି ।

(କ) ବରକୁ ସଦଳବଳେ କନ୍ୟା ଘରକୁ ବିବାହ ଲାଗି ଯିବାକୁ ପଡୁଥିଲା । (ଋଗ୍‌ବେଦ ୧୦/୧୭/୧)

(ଖ) ପିତୃ ଗୃହରେ ଭଲ ପୋଷାକ ପତ୍ର ଓ ଅଳଙ୍କାର ପିନ୍ଧି କନ୍ୟାକୁ ବିବାହ ଅନୁଷ୍ଠାନରେ ଯୋଗ ଦେବାପାଇଁ ଅପେକ୍ଷା କରିବାକୁ ପଡୁଥିଲା । ( ଋଗ୍‌ବେଦ - ୪/୫୮/୯)

(ଗ) ଅତିଥିମାନଙ୍କୁ ଅନ୍ୟାନ୍ୟ ଜିନିଷ ମଧ୍ୟରେ ଗୋ ମାଂସ ଦ୍ୱାରା ସତ୍କାର କରାଯାଉଥିଲା । ଗୋ ମାଂସ ନଥିଲେ କୌଣସି ବିବାହ ଭୋଜି ଭଲ ବୋଲି ଗଣାଯାଉ ନଥିଲା । ( ଋଗ୍‌ବେଦ -୧୦/୮୫/୧୩ )

(ଘ) ବର କନ୍ୟାର ହାତ ଧରି ଅଗ୍ନି ଦେବତାଙ୍କ ଚାରି ପଟେ ସାତ ପାଦ ଚାଲି ଆସୁଥିଲା । ଏତେବେଳ ଯେଉଁ ମନ୍ତ୍ର ବୋଲାଯାଉଥିଲା ତାହା ସପ୍ତପଦୀ ମନ୍ତ୍ର ନାମରେ ଖ୍ୟାତ ଥିଲା । ଏହି ସପ୍ତପଦୀ କର୍ମ ବିଧାନ ନ ସରିବା ପର୍ଯ୍ୟନ୍ତ ବିବାହ ସଂପୂର୍ଣ୍ଣ ହେଉ ନଥିଲା । ( ଋଗ୍‌ବେଦ ୧୦/୮୫/୩୬ )

(ଙ) ସ୍ୱାମୀ ସେତେବେଳେ ସ୍ତ୍ରୀ ର ହାତ ଧରିବାକୁ ଅଧିକାର ପାଉଥିଲେ । ଏ ପ୍ରକାର ହାତ ଧରିବାକୁ କୁହାଯାଉଥିଲା 'ହସ୍ତଗ୍ରାଭ' - (ଋଗ୍‌ବେଦ ୧୦/୧୮/୮)

(ଚ) ବର ରଥରେ କନ୍ୟାକୁ ଧରି ସଦଳବଳେ ନିଜ ଘରକୁ ଫେରି ଯାଉଥିଲା । ( ଋଗ୍‌ବେଦ ୧୦/୮୫/୭, ୧୦/୮୫/ ୮)

(ଛ) ତତ୍ପରେ ବିବାହର ଚତୁର୍ଥୀ ରାତ୍ରିରେ କନ୍ୟାର ପୋଷାକ ପତ୍ରକୁ ଶୁଦ୍ଧ କରାଯାଉଥିଲା ଏବଂ ସ୍ୱାମୀ ସ୍ତ୍ରୀଙ୍କର ମିଳନ ସଂଘଟିତ ହେଉଥିଲା । (ଋଗ୍‌ବେଦ ୧୦/୮୫/୨୮)

(ଜ) ଦୀର୍ଘ ଜୀବନ ଓ ଅବିଚ୍ଛିନ୍ନ ଦାମ୍ପତ୍ୟ ସୁଖ କିପରି ମିଳିବ ସେଥିପାଇଁ କାମନା କରାଯାଉଥିଲା । ଆଉ ମଧ୍ୟ ପୁଅ, ଝିଅ, ନାତି, ନାତୁଣୀ ହେବା ଲାଗି କାମନା କରାଯାଉଥିଲା । (ଋଗ୍‌ବେଦ ୮/୩୧/୫-୯, ୧୦/୩୪/୧୧)

କାଳକ୍ରମେ ଏହା ଜଟିଳ ହୋଇ ପଡିଲା । ଋଗ୍‌ବେଦ କାଳରେ ଯେଉଁ ପଦ୍ଧତି ଥିଲା ତାହାର ପରିବର୍ତ୍ତନ ଘଟିଲା ଅଥର୍ବବେଦ କାଳୀନ ସମାଜରେ । (୬୬) ଅଥର୍ବ କାଳୀନ ସମାଜରେ ବିବାହ ପଦ୍ଧତିରେ ଯେଉଁ କେତେକ ପରିବର୍ତ୍ତନ ଘଟିଲା ତାହା ନିମ୍ନରେ ପ୍ରଦତ୍ତ ହେଲା —

(କ) ପିତା କନ୍ୟାଦାନ କରିବାକୁ ଅଧିକାରୀ ବୋଲି ସ୍ୱୀକାର କରାଗଲା ।

(ଖ) ବରକନ୍ୟାଙ୍କୁ କିଭଳି ଦୀର୍ଘ ଜୀବନ ମିଳିବ ଏବଂ ସେମାନଙ୍କର ସନ୍ତାନ ସନ୍ତତି ହେବେ, ତାହା କାମନା କରି ସେମାନଙ୍କ ଉଦ୍ଦେଶ୍ୟରେ ଗାଈ, କମ୍ବଳ ଇତ୍ୟାଦି ଦାନ ଦେବାର ବ୍ୟବସ୍ଥା ଖଞ୍ଜାଗଲା ।

(ଗ) ବିବାହ ପରେ ଚତୁର୍ଥୀ ରାତ୍ରିରେ ବର କନ୍ୟାଙ୍କ ମିଳନ ଲାଗି ସ୍ୱତନ୍ତ୍ର ମନ୍ତ୍ର ଖଞ୍ଜା ହେଲା ।

(ଘ) ଅଥର୍ବ ବେଦରେ ଥିବା ତନ୍ତ୍ର ନିଷ୍ଠ ମନ୍ତ୍ରରାଶି ଲୋକମାନଙ୍କ ଦୁଃଖ କଷ୍ଟ ଦୂର କରିବା ପାଇଁ ଉଦ୍ଦିଷ୍ଟ ଥିବାରୁ ସେଗୁଡିକର ଉଚ୍ଚାରଣ ଲୋକମାନଙ୍କ ଲାଗି ଖୁବ୍ ସ୍ୱାଦ୍ୟ ଓ ହୃଦ୍ୟ ଥିଲା । ତେଣୁ ସେଗୁଡିକର ଉଚ୍ଚାରଣ ଧୀରେ ଧୀରେ ବିବାହ ମନ୍ତ୍ରରେ ପ୍ରବେଶ କଲା ।

(୯)    ବ୍ରାହ୍ମଣ ମାନଙ୍କୁ ଯେତେବେଳେ ରାଜାମାନେ କେତେକ କ୍ଷେତ୍ରରେ ହଇରାଣ କରୁଥିବାର ମନେ ହୁଏ । ଏଣୁ ବରକନ୍ୟା ଓ ଉପସ୍ଥିତ ଜନସମାଜକୁ ସେଥିପ୍ରତି ସାବଧାନ କରି ଦିଆ ଯାଉଥିଲା । ତେଣୁ କୁହାଗଲା ଯେଉଁ ରାଜ୍ୟରେ ବ୍ରାହ୍ମଣମାନେ ଅତ୍ୟାଚରିତ ସେହି ରାଜ୍ୟର ଉନ୍ନତି ଅସମ୍ଭବ । (ଅଥର୍ବ ବେଦ. ୫/୧୯/. ୫/୮୦ )

(ଏହା ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତିର ଦ୍ୱିତୀୟ ଭାଗ ୨୬୭ ପୃଷ୍ଠାରୁ ଉଦ୍ଧୃତ )

ସମୟେ ସମୟେ ଅନୁପଯୁକ୍ତ ବରପାତ୍ରକୁ କନ୍ୟା ଗ୍ରହଣରେ କନ୍ୟା ଦାମ୍ (କନ୍ୟା ସୁନା) ଦେବାକୁ ହେଉଥିଲା । କନ୍ୟା ଅସୁନ୍ଦରୀ ଥିଲେ କିମ୍ବା କନ୍ୟାର କୌଣସି ଅଙ୍ଗ ବିକୃତ ଥିଲେ କନ୍ୟା ପିତା ବରକୁ ଯୌତୁକ ଦେଉଥିଲେ । ଏ ସମୟରେ କନ୍ୟା ବିକ୍ରୟ ପ୍ରଥା ପ୍ରଚଳିତ ଥିଲା । କିନ୍ତୁ ତାହା ଥିଲା ନିନ୍ଦନୀୟ । ଯୌତୁକ ପ୍ରଥା ଏ ସମୟରେ ରହିଥିଲା । କନ୍ୟା ସନ୍ତାନର ଜନ୍ମକୁ ଯେତେବେଳେ ସ୍ୱାଗତ କରା ଯାଉନଥିଲା । କନ୍ୟାର ଅନ୍ୟ ନାମ ଥିଲା 'ଦୁହିତା' । ଦୁହିତାର ଅର୍ଥ ଯେ 'ଦୁହେଁ' । ଏଠାରେ ଗାଈ 'ଦୁହିଁବାର' ଅର୍ଥ ହୁଏତ ପ୍ରକଟିତ ହୋଇପାରେ ମାତ୍ର ଏହାର ଅନ୍ୟ ଏକ ଅର୍ଥ ବାପଘରୁ ଧନ ଦୁହିଁବା ଅର୍ଥରେ ପ୍ରଯୁକ୍ତ ହୋଇଥାଏ । ଝିଅଟିଏ ବାହାଦେଲେ ବାପାକୁ ବହୁତ ଯାନି ଯୌତୁକ ଦେବାକୁ ହେଉଥିଲା ।

ଋଗ୍‌ବେଦ କାଳୀନ ବିବାହ ପଦ୍ଧତିରେ କେତେକ ପରିବର୍ତ୍ତନ ଦେଖାଦେଲା । ଆର୍ଯ୍ୟୋତ୍ତର ଦାସ, ଦସ୍ୟୁମାନଙ୍କର ପ୍ରଭାବ କ୍ରମେ ଆର୍ଯ୍ୟ ସମାଜ ଉପରେ ପଡିଲା । ଆର୍ଯ୍ୟୋତ୍ତର ସମାଜରେ ବିବାହ ବର କନ୍ୟାଙ୍କ ଇଛାନୁସାରେ ସଂଘଠିତ ହେଉଥିଲେ ହେଁ ଅନେକ ସମୟରେ ବଳ ପ୍ରୟୋଗ କରିବାକୁ ପଡୁଥିଲା । ଏହା ପିତାମାତାଙ୍କ ଇଛା ବିରୁଦ୍ଧ ଥିଲା । ପ୍ରାଥମିକ କାଳରେ ଏହାକୁ ରାକ୍ଷସ ବିବାହ ବୋଲି କୁହାଯାଇ ନିନ୍ଦା କରାଯାଉଥିଲା । ମାତ୍ର କାଳକ୍ରମେ ଆର୍ଯ୍ୟମାନେ ଏହାର ଶରବ୍ୟ ହୋଇଗଲେ । ବୈଦିକ ଯୁଗରୁ ମହାକାବ୍ୟ ଯୁଗ ପର୍ଯ୍ୟନ୍ତ ଆଠପ୍ରକାର ବିବାହ ପଦ୍ଧତି ପ୍ରଚଳିତ ଥିଲା । ଯାହା 'ମନୁସ୍ମୃତି'ରେ ମଧ୍ୟ ଉଲ୍ଲିଖିତ ହୋଇଅଛି । ଏଗୁଡିକ ହେଲା (୧) ବ୍ରାହ୍ମ ବିବାହ, (୨) ଦୈବ୍ୟ ବିବାହ, (୩) ଆର୍ଷ ବିବାହ, (୪) ପ୍ରାଜପତ୍ୟ , (୫) ଗାନ୍ଧର୍ବ, (୬) ଆସୁର, (୭) ରାକ୍ଷସ, (୮) ପୈଶାଚ । ବ୍ରାହ୍ମ ବିବାହ ପଦ୍ଧତିରେ ସ୍ୱ କନ୍ୟାକୁ ଉପଯୁକ୍ତ ଯାନି ଯୌତୁକ ଦେଇ ପିତାଙ୍କ ନିଜ ବର୍ଣ୍ଣର ଜଣେ ଯୁବକ ସହ ବିବାହ କରାଯାଇଥାଏ । ଦୈବ ବିବାହରେ ଗୃହସ୍ଥଙ୍କ ଯାଜ୍ଞିକ ପୁରୋହିତଙ୍କୁ କନ୍ୟାକୁ ଦକ୍ଷିଣା ସ୍ୱରୂପ ବିବାହ ଦିଆ ଯାଇଥାଏ । ଆର୍ଷ ବିବାହ ଋଷିମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ଏଥିରେ ଯାନି ଯୌତୁକ ଦିଆ ଯାଉ ନଥିଲା । କନ୍ୟା ପଣ ସ୍ୱରୂପ ଗୋଟିଏ ଷଣ୍ଢ ଓ ଗୋଟିଏ ଗାଈ ଦିଆଯାଇଥାଏ । ପ୍ରାଜପତ୍ୟ ବିବାହରେ କନ୍ୟା ପିତା କିମ୍ବା ବରପିତାଙ୍କୁ ଯଥାକ୍ରମେ ଯାନି ଯୌତୁକ କିମ୍ବା କନ୍ୟାପଣ ଦେବାକୁ ହୋଇ ନଥାଏ । ଗାନ୍ଧର୍ବ ବିବାହ  ଯୁବକ ଯୁବତୀଙ୍କ ସମ୍ମତି କ୍ରମେ ସଂଗଠିତ ହୋଇଥାଏ ।(ବ୍ରାହ୍ମଣମାନଙ୍କ ମଧ୍ୟରେ ଏହି ଗାନ୍ଧର୍ବ ବିବାହ ପ୍ରଚଳିତ ଥିଲା କି ନାହିଁ ତାହା ସନ୍ଦେହ ଯୁକ୍ତ) ।

ଏଥିରେ ପିତା ମାତାଙ୍କ ସମ୍ମତିର ଆବଶ୍ୟକତା ପଡିନଥାଏ । ପୂର୍ବରୁ ଯୁବକ ଯୁବତୀ ଉଭୟଙ୍କୁ ଭଲ ପାଇଥାନ୍ତି । ଭଲ ପାଇବାର 'ଫଳଶ୍ରୁତି' ବିବାହରେ ପରିଣତ ହୋଇଥାଏ । ଆସୁର ବିବାହରେ ପିତା ମାତାଙ୍କ ଠାରୁ କନ୍ୟାକୁ କିଣା ଯାଏ । ରାକ୍ଷସ ବିବାହରେ ବଳ ପ୍ରୟୋଗ ଦ୍ୱାରା କନ୍ୟାକୁ ପିତୃ ଗୃହରୁ ଅପରହରଣ କରାଯାଇଥାଏ । ପୈଶାଚିକ ବିବାହରେ କନ୍ୟା ଶୋଇଥିବା ବେଳେ ବା ମଦ ନିଶାରେ ଅଚେତ ଥିବାବେଳେ ବା ମାନସିକ ଭାରସାମ୍ୟ ହରାଇଥିବା ବେଳେ ବଳ ପ୍ରୟୋଗ କରି ତାହା ସହିତ ବିବାହ କରିବାକୁ ହୋଇଥାଏ । ଏହି ଆଠ ପ୍ରକାର ବିବାହ ପଦ୍ଧତିରୁ ପ୍ରଥମ ଚାରିଟି ବ୍ରାହ୍ମଣମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏଗୁଡିକ ପବିତ୍ର ଏବଂ ଅବିଚ୍ଛେଦ୍ୟ ବୋଲି କଳ୍ପନା କରାଯାଉଥିଲା । ଗାନ୍ଧର୍ବ ବିବାହ ବ୍ରାହ୍ମଣ ଘରେ ଚଳୁ ନଥିଲା ମାତ୍ର କ୍ଷତ୍ରୀୟ କୁଳରେ ଏହା ନିଶ୍ଚିତ ଭାବରେ ରହିଥିଲା । ଏହି ଗାନ୍ଧର୍ବ ବିବାହକୁ ନେଇ ବହୁ ପ୍ରଣୟ କାହାଣୀ ସୃଷ୍ଟି ହୋଇଅଛି । ବେଦ ପରବର୍ତ୍ତୀ କାଳରେ ଏହାର ପ୍ରଚଳନ ଅଧିକ ପ୍ରକାଶିତ ହୋଇଥିଲା । ଆସୁର, ରାକ୍ଷସ ଓ ପୈଶାଚ ପଦ୍ଧତି ଅତି ଅମାନୁଷିକ ଥିଲା । ଏହା ବୈଦିକ ଆର୍ଯ୍ୟଙ୍କର ମୌଳିକ ନୀତିକୁ ଅନୁସରଣ କରୁନଥିଲା । ଅନ୍ୟ ପକ୍ଷରେ ଏହା ଆର୍ଯ୍ୟ ନୀତିର ପରିପନ୍ଥୀ ଥିଲା । ଏଗୁଡିକ ଆର୍ଯ୍ୟୋତ୍ତର ଗୋଷ୍ଠୀର ସାମଜିକ ପ୍ରଥାର ପ୍ରଭାବରେ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରବେଶ କରିଥିଲା । ଗାନ୍ଧର୍ବ ବିବାହର ଆଉ ଗୋଟିଏ ରୂପ ଥିଲା ସ୍ୱୟମ୍ବର । ଏଥିରେ କନ୍ୟା ତା ନିଜ ଇଚ୍ଛାରେ ବରକୁ ବରଣ କରୁଥିଲା । ବୈଦିକ ଓ ବେଦୋତ୍ତର ଗ୍ରନ୍ଥମାନଙ୍କରେ ରାଜା ମହାରାଜା ସେମାନଙ୍କୁ ଏହି ସ୍ୱୟମ୍ବର ପ୍ରଥାରେ ବିବାହ କରିବା କଥା ବର୍ଣ୍ଣିତ ହୋଇଅଛି । ଅବଶ୍ୟ ବୈଦିକ ଯୁଗରେ ସ୍ତ୍ରୀର ଯେଉଁ ସ୍ୱାଧୀନତା ଥିଲା ତାହା କ୍ରମେ ଲୋପ ପାଇଗଲା । ତେଣୁ 'ବୌଧାୟନଧର୍ମ ସୂତ୍ର'ରେ କୁହାଯାଇଛି "ସ୍ତ୍ରୀକୁ ବାପା କୁମାରୀ ଥିବା ଅବସ୍ଥାରେ ରକ୍ଷା କରିବେ । ସ୍ୱାମୀ ଯୌବନରେ ରକ୍ଷା କରିବେ ଏବଂ ପୁଅ ବାର୍ଦ୍ଧକ୍ୟରେ ରକ୍ଷା କରିବେ । ସ୍ତ୍ରୀ ମାନଙ୍କର ସ୍ୱାତନ୍ତ୍ର୍ୟ ବୋଲି କିଛି ନାହିଁ । ଏହାର ଏକମାତ୍ର କାରଣ ହେଲା ପୁରୁଷ ପ୍ରଧାନ ସମାଜ ସ୍ତ୍ରୀକୁ ଏକ ସଂପତ୍ତି ଭାବରେ ଗ୍ରହଣ କଲା ।" (୬୭) ବୈଦିକ ସମାଜବିତ୍‌ମାନେ ବିବାହ ବନ୍ଧନଟି ପ୍ରେମର ସ୍ୱର୍ଗୀୟ ଅବଦାନ ବୋଲି କହିଥାନ୍ତି । ଏହାକୁ ଚିରନ୍ତନ ଓ ଅବିଭାଜ୍ୟ ବୋଲି ଆଖ୍ୟା ଦେଇଥିବାରୁ ଦାମ୍ପତ୍ୟ ପ୍ରେମ ଦୃଢତର ହୋଇଥିଲା । ଫଳରେ ଉଭୟେ ସ୍ୱାମୀ ଓ ସ୍ତ୍ରୀ ପ୍ରେମର ଆସ୍ୱାଦ ଦେବା ପାଇଁ ଉଦ୍ୟମଶୀଳ ହେଉଥିଲେ ।

ବୈଦିକ ବିବାହର ଦୁଇଟି ଲକ୍ଷ୍ୟ ଥିଲା । ପ୍ରଥମଟି ହେଲା ସନ୍ତାନ ଉତ୍ପାଦନ କରିବା, ଅନ୍ୟଟି ହେଲା 'ସୁରତ' ବା ଦାମ୍ପତ୍ୟ ସୁଖ ଉପଲବ୍ଧ କରିବା । ବଂଶ ରକ୍ଷା ଲାଗି ସନ୍ତାନ ଉତ୍ପାଦନ ଥିଲା ମୁଖ୍ୟ ଲକ୍ଷ୍ୟ । ଏଥିରେ ଯୌନ ସୁଖ ଥିଲା ଗୌଣ । ମନୁ ଯଥାର୍ଥରେ କହିଛନ୍ତି "ପୁତ୍ର ପାଇଁ ଭାର୍ଯ୍ୟାକୁ ଅଣାଯାଇଥାଏ ଏବଂ ପୁତ୍ରର ଆବଶ୍ୟକତା ଥାଏ ପିଣ୍ଡ ଦେବାରେ"(୬୮) ଏହି ବିବାହ ବୈଦିକ ଆର୍ଯ୍ୟ ସମାଜରେ ଏଭଳି ଆଚ୍ଛନ୍ନ ଥିଲା ଯେ ମୁନି ଋଷିମାନେ ପରିଣତ ବୟସରେ ବିବାହ କରୁଥିଲେ । ବୃଦ୍ଧାବସ୍ଥାରେ 'ଅଗସ୍ତ୍ୟ' ପିତୃ ପୁରୁଷଙ୍କୁ ନର୍କରୁ ଉଦ୍ଧାର କରିବା ପାଇଁ ବିଦର୍ଭ ରାଜକନ୍ୟା 'ଲୋପାମୁଦ୍ରା'ଙ୍କୁ ବିବାହ କରିଥିଲେ । 'ଚ୍ୟବନ' ମଧ୍ୟ ରାଜା 'ଶର୍ଯ୍ୟାତି'ଙ୍କ କନ୍ୟା ସୁକନ୍ୟାକୁ ବିବାହ କରିଥିଲେ । ଋଷିକା ଘୋଷା ମଧ୍ୟ ବୃଦ୍ଧାବସ୍ଥାରେ ବିବାହ କରିଥିଲେ । ପୁତ୍ରହୀନତାକୁ ଋଗ୍‌ବେଦରେ ଦାରିଦ୍ର୍ୟ ହିସାବରେ ଗଣାଯାଇଛି ।(୬୯)

କନ୍ୟା ସନ୍ତାନର ଜନ୍ମକୁ ସବୁବେଳେ ଗ୍ରହଣ କରାଯାଉ ନଥିଲା । ଦୁହିତାର ଅର୍ଥ 'ଦୁହିଁବା' ଅର୍ଥରେ ଗ୍ରହଣ କରାଯାଇଛି । ଝିଅଟିଏ ବହା ଦେଲେ ବହୁ ଧାନି ଯୌତୁକ ଦେବାକୁ ହେଉଥିଲା । ବୈଦିକ ଆର୍ଯ୍ୟମାନେ ଅଧିକ ପୁତ୍ର ସନ୍ତାନ ପାଇଁ ଆଗ୍ରହୀ ଥିବାର ଅନ୍ୟ ଏକ କାରଣ ଥିଲା । ତା ହେଉଛି ଦାସ, ଦସ୍ୟୁ ଏବଂ ଅସୁରମାନଙ୍କ ସହିତ ଅଧିକାଂଶ ସମୟ ଯୁଦ୍ଧରେ ଆର୍ଯ୍ୟମାନେ ବ୍ୟାପୃତ ଥିଲେ । ସାଧାରଣତଃ ପୁରୁଷମାନେ ଲଢେଇକୁ ଯାଉଥିଲେ । ସେଥିପାଇଁ ସ୍ତ୍ରୀ ଅନ୍ତତଃ ପକ୍ଷେ ଦଶଗୋଟି ସନ୍ତାନର ମା' ହେବା ଆର୍ଯ୍ୟ ସମାଜର ଲକ୍ଷ୍ୟଥିଲା । ସେଥିପାଇଁ ବିବାହ ବେଦୀରେ ଇନ୍ଦ୍ରଙ୍କ ଆଶୀର୍ବାଦ କାମନା କରି କୁହାଯାଇଥିଲା ହେ ଇନ୍ଦ୍ର ! ଏହି କନ୍ୟାଠାରେ ଦଶଟି ପୁଅ ଆଣି ଦିଅ । (ଦଶ ଅସ୍ୟାଂ ପୁତ୍ରାନ୍ ଆଧେହି )

ବୈଦିକ ସମାଜରେ ସ୍ତ୍ରୀକୁ ଅର୍ଦ୍ଧାଙ୍ଗିନୀ ଭାବରେ ଗ୍ରହଣ କରାଯାଉଥିଲା । ସେ ଜୀବନର ଅର୍ଦ୍ଧେକ ବୋଲି ତାଙ୍କୁ 'ଜାୟା' କୁହାଯାଉଥିଲା । ଗୋଟିଏ ବିବାହ ମନ୍ତ୍ରରେ ସ୍ୱାମୀ ସ୍ତ୍ରୀଙ୍କୁ କହୁଛନ୍ତି "ମୁଁ ପ୍ରାଣ ହେଲେ ତୁମେ ହେଉଛ ସେହି ସ୍ତ୍ରୀ । ମୁଁ ସାମ ମନ୍ତ୍ର ହେଲେ ତୁମେ ହେଉଛ ଋକ ମନ୍ତ୍ର । ମୁଁ ଆକାଶ ହେଲେ ତୁମେ ହେଉଛ ଧରଣୀ" । (୭୦) ସ୍ୱାମୀ ହେଉଛନ୍ତି ସ୍ତ୍ରୀଙ୍କ ପ୍ରାଣ, ସ୍ତ୍ରୀଙ୍କୁ 'ବାକ୍' ଭାବରେ ଗ୍ରହଣ କରାଯାଇଛି । ସ୍ୱାମୀ ସ୍ତ୍ରୀର ସଂପର୍କ ଚିରନ୍ତନ । ଏହା ରୁରୁପ୍ରମୋଦ ବରାଙ୍କ ବୈଦିକ ଆଖ୍ୟାନରେ ଅତ୍ୟନ୍ତ ସ୍ପଷ୍ଟ ହୋଇଅଛି ।

ଏହି ଗଳ୍ପଟିରୁ ବୈଦିକ କାଳରେ ସ୍ୱାମୀ ସ୍ତ୍ରୀଙ୍କର ସଂପର୍କ କିପରି ଚିରନ୍ତନ ଓ ଅବିଚ୍ଛେଦ୍ୟ ବୋଲି କୁହାଯାଇଛି । ସ୍ୱାମୀ ସ୍ତ୍ରୀଙ୍କର ସଂପର୍କ କେବଳ ସନ୍ତାନ ଉତ୍ପାଦନ ପାଇଁ ନଥିଲା । ଏହାକୁ ଏକ ଦିବ୍ୟ ସଂପର୍କ ଭାବରେ ଗ୍ରହଣ କରାଯାଇଛି । ଏହା ସଂସ୍କୃତି ଓ ସୃଷ୍ଟିର ବିକାଶ ପାଇଁ ଉପଯୁକ୍ତ ସାଧନ ଥିଲା । ପାଣିନିଙ୍କ ମତରେ "ଯଜ୍ଞ କାର୍ଯ୍ୟରେ ସ୍ୱାମୀକୁ ସାହାଯ୍ୟ କରୁଥିବାରୁ ସ୍ତ୍ରୀଙ୍କ ନାମଥିଲା ପତ୍ନୀ ।" ଯଜ୍ଞରେ କେଉଁ କାମ ସ୍ୱାମୀ କରିବେ ଏବଂ କେଉଁ କାମ ସ୍ତ୍ରୀ କରିବେ ତାହା ସୁ ନିର୍ଦ୍ଦିଷ୍ଟ ହୋଇଥିଲା । ପୂର୍ବରୁ ସ୍ତ୍ରୀ ମାନଙ୍କୁ କୁଶ ଓ ସୋମଲତା ସଂଗ୍ରହ କରିବାକୁ ପଡୁଥିଲା । ଏହା 'ମୁଞ୍ଜଘାସ' ଥିଲା । କେବଳ ଯଜ୍ଞ କର୍ମରେ ନୁହେଁ ସକଳ କର୍ମରେ ସେ ସମଭାଗିନୀ ଓ ସହଯାତ୍ରିଣୀ ଥିଲେ । ସେ ମଧ୍ୟ ଯୁଦ୍ଧ ଭୂମିକୁ ସ୍ୱାମୀ ସଂଗରେ ଯାଉଥିଲେ । ଏହା ଋଗ୍‌ବେଦରେ ଏକ ଆଖ୍ୟାନରେ ବର୍ଣ୍ଣିତ ହୋଇଅଛି ।(୭୧) ରାଜା 'ଖେଲ' ଓ ରାଣୀ 'ବିଷପଲା' ବିଷୟରେ ଏହା ରଚିତ । ଖେଳ ନିହତ ହେବା ପରେ 'ବିଷପଲା' ଯୁଦ୍ଧ ଚଳାଇ ତାଙ୍କର ଗୋଟିଏ ଗୋଡ ହରାଇ ଥିଲେ । ଅଶ୍ୱିନୀ କୁମାର ତାଙ୍କ କଟା ଜାଗାରେ 'ଆୟସୀ' ବା ଲୁହାର ଗୋଡ ଲଗାଇଥିଲେ । ପୁରୁଷଙ୍କ ତୁଲ୍ୟ ନାରୀମାନେ କଠିନ କାମ କରି ପାରୁଥିଲେ ।

ବିଦ୍ୟା କ୍ଷେତ୍ରରେ ବୈଦିକ ସ୍ତ୍ରୀମାନେ ପୁରୁଷ ଠାରୁ କୌଣସି ମାତ୍ରାରେ କମ୍ ନଥିଲେ । 'ଅପାଳା, ବିଶ୍ୱବାରା, ଘୋଷା' ଆଦି ଅନେକ ଋଷିକା ଥିଲେ ଯେଉଁମାନେ କି ଅସଂଖ୍ୟ ବେଦ ମନ୍ତ୍ର ସୃଷ୍ଟି କରିଅଛନ୍ତି । ଅନେକ ସ୍ତ୍ରୀ ମଧ୍ୟ ପିଲାମାନଙ୍କୁ ପାଠ ପଢାଇବାର ଯୋଗ୍ୟତା ହାସଲ କରିଥିଲେ । ସେମାନଙ୍କୁ ଉପାଧ୍ୟାୟୀ ବୋଲି କୁହାଯାଉଥିଲା । ଏଥିରୁ ଅନୁମିତ ହୁଏ ସ୍ତ୍ରୀମାନେ ମଧ୍ୟ ଗୁରୁକୁଳ ଚଳାଇ ଆଚାର୍ଯ୍ୟଙ୍କ ଭଳି ଶିକ୍ଷା ଦାନ କରୁଥିଲେ । ଉପନିଷଦ ଯୁଗରେ 'ମୈତ୍ରେୟୀ ଓ ଗାର୍ଗୀ'ଙ୍କ ଭଳି ରମଣୀ ଆଧ୍ୟାତ୍ମିକତା କ୍ଷେତ୍ରରେ ପୁରୁଷମାନଙ୍କର ସମକକ୍ଷ ଥିଲେ । ଋଷିପୁଙ୍ଗ 'ଯାଜ୍ଞବଲ୍କ' ଙ୍କ

ସହିତ ଗାର୍ଗୀଙ୍କର ଯୁକ୍ତିତର୍କ ଏହାର ଏକ ଦୃଷ୍ଟାନ୍ତ । ଏ କ୍ଷେତ୍ରରେ 'ଯାଜ୍ଞବଳକ୍' ଓ ତାଙ୍କ ସ୍ତ୍ରୀ 'ମୈତ୍ରୟୀ'ଙ୍କ ମଧ୍ୟରେ ବ୍ରହ୍ମ ବିଦ୍ୟା ସଂପର୍କୀୟ ଯୁକ୍ତି ତର୍କ ବେଶ୍ ଅନୁଧ୍ୟାନର ବିଷୟ । ଏଥିରୁ ଜଣାଯାଉଛି ବୈଦିକ କାଳରେ ସ୍ତ୍ରୀମାନେ ଅତି ଗୁଢ ଜ୍ଞାନ ସଂବଳିତ ବ୍ରହ୍ମ ବିଦ୍ୟାରେ ମଧ୍ୟ ପ୍ରବୀଣା ଥିଲେ ।

ବୈଦିକ ନାରୀମାନଙ୍କର ଦୈନନ୍ଦିନ ଦାମ୍ପତ୍ୟ ଜୀବନ ନିମ୍ନ ଲିଖିତ ନିୟମ ଗୁଡିକର ଅନୁବର୍ତ୍ତୀ ଥିଲା । :-

(କ) ସ୍ତ୍ରୀ ସ୍ୱାମୀଙ୍କ ଆଗରୁ ଖାଦ୍ୟ ଖାଉ ନଥିଲେ । (ଶତପଥ ବ୍ରାହ୍ମଣ ୧/୯/୨/୧୨)

(ଖ) ସ୍ୱାମୀଙ୍କୁ ସ୍ତ୍ରୀ ଆଗରେ ଖାଇବାକୁ ପଡୁଥିଲା ଏବଂ ସେ ଖାଇ ସାରିବା ପରେ ସ୍ତ୍ରୀ ପାଇଁ ଖାଦ୍ୟ ବାଢି ଦେଉଥିଲେ । ଏହା ଥିଲା ସାଧାରଣ ନିୟମ, ମାତ୍ର ଯେଉଁ ସ୍ତ୍ରୀ ବୀରସନ୍ତାନର ମା'ହେବାକୁ ଚାହୁଁ ଥିଲେ ସ୍ୱାମୀ ସ୍ତ୍ରୀ ଆଗରୁ ଖାଉ ନଥିଲେ ।(ଶତପଥ ବ୍ରାହ୍ମଣ ୧୦/୫/୨/୯)

(ଗ) ସ୍ୱାମୀ ସ୍ତ୍ରୀ ପରସ୍ପର ଭେଟିବାକୁ ଗଲାବେଳେ ସୁଗନ୍ଧ ଦ୍ରବ୍ୟ ଲଗାଇ କରି ଯାଉଥିଲେ । (ଶତପଥ ବ୍ରାହ୍ମଣ ୯/୪/୧/୪)

(ଘ) ସ୍ତ୍ରୀକୁ ସ୍ୱାମୀଙ୍କ ବାମପଟେ ଶୋଇବାକୁ ପଡୁଥିଲା । ସବୁଥିରେ ସ୍ୱାମୀଙ୍କର ବାମରେ ରହୁଥିଲେ । ତେଣୁ ତାଙ୍କୁ ବାମା ବୋଲି କୁହାଯାଉଥିଲା । ମାତ୍ର ଯୁଦ୍ଧ କ୍ଷେତ୍ରରେ ସ୍ତ୍ରୀ ପୁରଷଙ୍କ ଭଳି ଦକ୍ଷିଣ ହସ୍ତ ଚାଳନା କରୁଥିଲା । (ଶତପଥ ବ୍ରାହ୍ମଣ ୭/୫/୧/୬)

(ଙ) ବୋହୂ ଶଶୁରଙ୍କ ପାଖରେ ଖୁବ୍ ନମ୍ରତା ଦେଖାଉଥିଲା । ଲାଜ କରି ତାଙ୍କ ଆଗରେ ଓଢଣା ଟାଣି ଯାଉଥିଲା । (ଐତରେୟ ବ୍ରାହ୍ମଣ ୩/୧୨/୧)

(ଚ) ଅବିବାହିତା ନଣନ୍ଦମାନେ ଭାଇଙ୍କ ଉପରେ ନିର୍ଭରଶୀଳ ଥିବାରୁ ଭାଉଜଙ୍କୁ ନଣନ୍ଦମାନଙ୍କର ଯତ୍ନ ନେବାକୁ ପଡୁଥିଲା । (ଐତରେୟ ବ୍ରାହ୍ମଣ - ୩/୧୩/୩ )

(ଛ) ସ୍ୱାମୀ ସ୍ତ୍ରୀ ଏକତ୍ର ସୋମ ରସ ପିଇ ଯଜ୍ଞ କରୁଥିଲେ । ଏହା ଫଳରେ ଯୋଗ୍ୟ ପୁତ୍ରମାନଙ୍କର ଜନକ ଜନନୀ ହୋଇ ପାରୁଥିଲେ ।(ଋଗ୍‌ବେଦ ୮/୩୨/୮)

(ଜ) ସଂଧ୍ୟାବେଳର ଯଜ୍ଞଟି କରିବା ଦାୟିତ୍ୱ ସାଧାରଣତଃ ସ୍ତ୍ରୀ ଉପରେ ନ୍ୟସ୍ତ କରାଯାଉଥିଲା ।

(ଝ) ଖରାପ ମତଲବ ରଖି କୌଣସି ପୁରୁଷ ଡାକିଲେ ସତୀ ସ୍ତ୍ରୀ ତାହାକୁ ଘୃଣା ଚକ୍ଷୁରେ ଦେଖୁଥିଲା । (ଶତପଥ ବ୍ରାହ୍ମଣ - ୩/୨/୧/୧୯) ( ଏହା ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ବୈଦିକ ପର୍ବ ଦ୍ୱିତୀୟ ଭାଗ ପୃଷ୍ଠା ୨୮୩ରୁ ଉଦ୍ଧୃତ ) ଏହି କର୍ତ୍ତବ୍ୟ ଗୁଡିକ ଜୀବନରେ ନିଃଶ୍ରେୟର ସାଧନ ବୋଲି ଗ୍ରହଣ କରାଯାଉଥିଲା । ଏହାଦ୍ୱାରା ପରିବାରରେ ଶାନ୍ତି ଶୃଙ୍ଖଳା ବିଦ୍ୟମାନ ରହୁଥିଲା ।

'ଆପ୍ତେ' ବୈଦିକ କାଳରେ ସ୍ତ୍ରୀମାନଙ୍କର ବହୁ ପତି ଗ୍ରହଣ ଆଦୌ ନଥିଲା ବୋଲି ମତ ବ୍ୟକ୍ତ କରିଅଛନ୍ତି ।(୭୨) 'ବ୍ରାହ୍ମଣ ଯୁଗ'ରେ ଜଣେ ସ୍ତ୍ରୀ ବହୁ ପତି ଗ୍ରହଣ କରିବାକୁ ବାରଣ କରାଯାଇଛି । ଅନ୍ୟ ପକ୍ଷରେ ଜଣେ ପୁରୁଷ ବହୁ ସ୍ତ୍ରୀ ଗ୍ରହଣ କରିବା କଥା କୁହାଯାଇଛି । ଏଥିରେ କୁହାଯାଇଛି ଜଣେ ସ୍ୱାମୀଙ୍କର ବହୁ ସ୍ତ୍ରୀ ହୋଇପାରନ୍ତି, କିନ୍ତୁ ଜଣେ ସ୍ତ୍ରୀର ବହୁ ସ୍ୱାମୀ ହୋଇପାରନ୍ତି ନାହିଁ ।(୭୩) 'ଶତପଥ

ବ୍ରାହ୍ମଣ' (୯/୪/୧/୬) ମଧ୍ୟ ଠିକ୍ ଅନୁରୂପ ସ୍ୱର ଉତ୍ତୋଳନ କରିଥାଏ । (ଏକସ୍ୟ ଫ୍ଲସୋ ବହ୍ୱୋ ଜୟାଃ ଭବନ୍ତି )

"ଋଗ୍‌ବେଦ କାଳରେ କେତେକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ବିଧବା ବିବାହ ପ୍ରଚଳିତ ଥିଲା । ଯଦି କୌଣସି ନାରୀ ସନ୍ତାନର ଉତ୍ପତ୍ତି ପୂର୍ବରୁ ବିଧବା ହେଉଥିଲା, ସେ ନିଜ ପତିର ସାନ ଭାଇ ଅର୍ଥାତ୍ ଦିଅରକୁ ସନ୍ତାନ ଉତ୍ପତ୍ତି ପର୍ଯ୍ୟନ୍ତ ବିବାହ କରିପାରୁଥିଲା"। (୭୪) ଋଗ୍‌ବେଦରେ ୧/୭/୧୧ ( ଜନୀରିବ ପତିରେକ ସମାନଃ ) ଏବଂ ୭/୨/୩ରେ ବହୁପତ୍ନୀ ଗ୍ରହଣ କଥା ଉଲ୍ଲେଖ କରାଯାଇଛି । ଏହି ବହୁପତ୍ନୀ ପ୍ରଥା ରାଜନ୍ୟଙ୍କ ମଧ୍ୟରେ ଥିଲା । ବ୍ରାହ୍ମଣ ମଧ୍ୟ ବହୁ ପତ୍ନୀ ଗ୍ରହଣ କରୁଥିଲେ । 'ଚ୍ୟବନ' ଋଷିଙ୍କର ବହୁ ପତ୍ନୀ ଥିବାର ଋଗ୍‌ବେଦରେ ଦେଖିବାକୁ ମିଳିଥାଏ । 'ସୋଭରି' ଋଷି ରାଜା 'ତ୍ର୍ୟସଦସ୍ୟୁ'ଙ୍କର ପଚାଶ କନ୍ୟାଙ୍କୁ ବିବାହ କରିଥିଲେ ।(୭୫) ମହର୍ଷି ଯାଜ୍ଞବଲ୍କଙ୍କର 'କାତ୍ୟାୟନୀ ଓ ମୈତ୍ରେୟୀ' ନାମରେ ଦୁଇଟି ପତ୍ନୀ ଥିବା କଥା ବୃହଦାରଣ୍ୟକ ଉପନିଷଦ୍‌ରେ ବର୍ଣ୍ଣିତ ହୋଇଅଛି । ଋଗ୍‌ବେଦ ୧୦ମ ମଣ୍ଡଳର ୮୫.୩୭.୩୮ ମନ୍ତ୍ରରେ ଗୋଟିଏ ସ୍ତ୍ରୀର ବହୁ ପତି ଥିବା କୁହାଯାଇଛି । (ବୈଦିକ ସାହିତ୍ୟ ଓ ସଂସ୍କୃତି - ଅଭିନ୍ନ ଚନ୍ଦ୍ର ଦାଶ ପୃଷ୍ଠା ୧୧୪ରୁ ଉଦ୍ଧୃତ)

ଏହିପରି ଆଉ ଗୋଟିଏ ବିବଦମାନ ବିଷୟ ହେଉଛି ଯମଯମୀ ଉପାଖ୍ୟାନ । ଭାଇ ଭଉଣୀ ମଧ୍ୟରେ ଥିବା ଅବୈଧ ପ୍ରେମ । (ଋଗ୍ ୧୦/୧୦) ସେହିଭଳି ପ୍ରଜାପତି ଉପାଖ୍ୟାନର ପିତା କନ୍ୟା ଭିତରେ ପ୍ରେମାଳାପ । (ଋଗ୍‌ବେଦ ୧୦/୬୧-୫-୭) ଏହା କେତେଦୂର ସତ୍ୟ ତତ୍ତ୍ୱବିଦ୍‌ମାନେ ସନ୍ଦେହ ପ୍ରକାଶ କରିଛନ୍ତି । ଯମୀ ତାଙ୍କ ଯାଆଁଳା ଭାଇ ଯମକୁ ଯେତେବେଳେ କାମାତୁରା ହୋଇ ପ୍ରେମ ନିବେଦନ କରିଛନ୍ତି ସେତେବେଳେ ଯମ ତାଙ୍କ ଋତ ବା ଶାଶ୍ୱତ ନିୟମ କଥା ଚେତାଇ ଦେଇଛନ୍ତି ଏବଂ ଏ ପ୍ରକାର ପାପ କର୍ମରୁ ବିରତ ହେବା ପାଇଁ ଉପଦେଶ ଦେଇଅଛନ୍ତି ।(୭୬) ପ୍ରଜାପତି ଉପାଖ୍ୟାନର ପିତା କନ୍ୟା ଭିତରେ ପ୍ରେମାଳାପାକୁ ପୌରାଣିକ ଦୃଷ୍ଟି କୋଣରୁ ଭିନ୍ନ ରୂପେ ଗ୍ରହଣ କରାଯାଇ ପାରେ ବୋଲି ଅଭିନ୍ନଚନ୍ଦ୍ର ଦାଶ ତାଙ୍କ 'ବୈଦିକ ସାହିତ୍ୟ ଓ ସଂସ୍କୃତି' ପୃଷ୍ଠା ୧୧୪ରେ ଉଲ୍ଲେଖ କରିଅଛନ୍ତି ।

ଏକଥା ଅସ୍ୱୀକାର କରା ଯାଇନପାରେ କେତେକ ମାତୃହୀନ, ଏକାକିନୀ, ଅରକ୍ଷିତା କନ୍ୟା ସେ କାଳରେ ଗଣିକାବୃତ୍ତି ଗ୍ରହଣ କରୁଥିଲେ । 'ଇଣ୍ଟରନିଜ' ମତରେ ଋଗ୍‌ବେଦରେ ସୂକ୍ତ ଭିତରେ ଅଭିଗ୍ରର, ଅଗମ୍ୟାଗମନ, ସତୀତ୍ୱ ନାଶ, ବୈବାହିକ ଅବିଶ୍ୱାସ, ଗର୍ଭପାତ କରାଇବାର ପ୍ରବୃତ୍ତି, ଛଳନା, ଠକାମି, ଚୋରୀ, ଡକାୟତି ଇତ୍ୟାଦିର ପ୍ରମାଣ ମିଳୁଅଛି ।(୭୭)

ଏସବୁ ସତ୍ତ୍ୱେ ଯଜୁଃ, ସାମ, ଅଥର୍ବ ଓ ବ୍ରାହ୍ମଣ କାଳରେ ଯୁବକ ଯୁବତୀ ପ୍ରାପ୍ତବୟସରେ ବିବାହ କରୁଥିଲେ । ମାତୃକୁଳ ଓ ପିତୃକୁଳ ସଂପର୍କୀୟ ବ୍ୟକ୍ତିମାନଙ୍କ ଭିତରେ ବିବାହକୁ ନିଷିଦ୍ଧ କରାଯାଇଥିଲା । ସଗୋତ୍ର ବିବାହ ସଂପୂର୍ଣ୍ଣ ନିଷେଧ କରାଯାଇନଥିଲେ ମଧ୍ୟ ଅନ୍ୟ ଗୋତ୍ରରେ ବିବାହ ବିଶେଷ ଭାବେ ପ୍ରଚଳିତ ଥିଲା । ବଡଭାଇ, ବଡ଼ ଭଉଣୀ ଅବିବାହିତା ଥିଲେ ସାନମାନେ ବିବାହ କରୁନଥିଲେ । ବହୁ ପତ୍ନୀ ବିବାହ ପ୍ରଥାରେ ରାଜାମାନଙ୍କର ଚାରି ଶ୍ରେଣୀର ସ୍ତ୍ରୀ ଥିଲେ । (କ) ମହିଷୀ, କ୍ଷତ୍ରିୟ ରମଣୀ ହେତୁ ପାଟରାଣୀ, (ଖ)ପରିବୃକ୍ତି—ପିତୃହୀନା ପତ୍ନୀ, (ଗ) ବାବତା- ଏ ଥିଲା ରାଜାଙ୍କର ପ୍ରିୟତମା ପତ୍ନୀ, (ଘ) ପାଲଗଲୀ ଏଥିଲା ରାଜ ଦରବାରରେ କୌଣସି କର୍ମଚାରୀ କନ୍ୟା, ଯାହାକୁ ରାଜା

କୌଣସି ରାଜନୈତିକ ଉଦ୍ଦେଶ୍ୟରେ ବିବାହ କରିଥିଲେ ।(୭୮) ଗୋଟିଏ ଯୁବତୀର ଏକାଧିକପତି ଥିବା କଥା ମଧ୍ୟ ଅଥର୍ବ ବେଦରେ ରହିଅଛି । ଦାମ୍ପତ୍ୟ ଜୀବନରେ ନୈତିକତା ଖୁବ୍ ଉଚ୍ଚସ୍ତରରେ ଥିଲା । ତଥାପି ସ୍ତ୍ରୀର ଚରିତ୍ରକୁ ସନ୍ଦେହ ଚକ୍ଷୁରେ ଦେଖାଯାଇ ନାହିଁ ବୋଲି କହିହେବ ନାହିଁ । ବରୁଣ ପ୍ରବାସ ଯଜ୍ଞରେ (ମୈତ୍ରାୟଣୀ ସଂହିତା, ଶତପଥ ଏବଂ ତୈତ୍ତିରୀୟ ବ୍ରାହ୍ମଣ) ଯଜମାନର ସ୍ତ୍ରୀକୁ ତାର ମାନସିକ ତଥା ବାସ୍ତବିକ ଉପପତିକଥା ଅର୍ଥାତ ତା'ର ଚରିତ୍ର ପବିତ୍ରତା ସଂପର୍କରେ ପ୍ରଶ୍ନ କରାଯାଇଛି । 'ବାଜ ସନେୟୀ ସଂହିତା'ରେ କୁମାରୀ ପୁତ୍ରର ଉଲ୍ଲେଖ ମିଳେ । ସେ ଉଲ୍ଲେଖରୁ ଆର୍ଯ୍ୟ ଓ ଶୂଦ୍ର ଜାତିର ପୁରୁଷ ଓ ସ୍ତ୍ରୀଙ୍କର ଅବୈଧ ପ୍ରଣୟ ବ୍ୟାପାର ସ୍ପଷ୍ଟ ସୂଚିତ ହେଉଛି । ଅବଶ୍ୟ ଏହି କେତେକ ଦୃଷ୍ଟାନ୍ତରୁ ତତ୍କାଳୀନ ଆର୍ଯ୍ୟମାନଙ୍କର ବିମଳ ଚରିତ୍ର ନଥିଲା ବୋଲି କୁହାଯାଇ ପାରିବ ନାହିଁ । (ବୈଦିକ ସାହିତ୍ୟ ସଂସ୍କୃତି – ପୃଷ୍ଠା ୧୧୫ ଅଭିନ୍ନ ଚନ୍ଦ୍ର ଦାଶଙ୍କ ପୁସ୍ତକରୁ ଉଦ୍ଧୃତ ) ଏ ସମୟରେ କନ୍ୟା ବିକ୍ରୟ କଥା ପ୍ରଚଳିତ ଥିଲା । ମାତ୍ର ଏହା ନିନ୍ଦନୀୟ ଥିଲା । ଋକ୍‌ବେଦ କାଳୀନ ବିବାହ ପଦ୍ଧତି ଅଥର୍ବ ବେଦରେ ସମାନ ଥିଲା । ନାରୀର ସ୍ଥାନ ଏ ସମୟରେ ଉଚ୍ଚରେ ଥିଲା । ବ୍ରାହ୍ମଣ ଗ୍ରନ୍ଥରେ ପତ୍ନୀ ଶବ୍ଦର ବହୁଳ ପ୍ରୟୋଗ ରହିଅଛି । ପତ୍ନୀ ତାର ପତି ସହିତ ସାମାଜିକ ତଥା ଧାର୍ମିକ ଜୀବନରେ ସମାନ ଅଂଶ ଗ୍ରହଣ କରୁଥିଲା । ପରବର୍ତ୍ତୀ ସମୟରେ ନାରୀର ସ୍ଥାନ କ୍ରମେ ତଳକୁ ଖସି ଆସିଲା । ଧାର୍ମିକ କର୍ମ କର୍ମାଣୀରେ ପୁରୋହିତ ନିଯୁକ୍ତ ହେଲେ । ନାରୀର ପ୍ରତିଷ୍ଠା ଓ ମହତ୍ୱ ଏତେ ପରିମାଣରେ କମି ଗଲା ଯେ ଶେଷରେ ନାରୀକୁ ଦ୍ୟୂତକ୍ରୀଡ଼ା ଓ ମଦ୍ୟ ସହିତ ତୁଳନା କରାଗଲା । (୭୯) ପୁତ୍ର ପ୍ରାପ୍ତି ଲାଳସା ଏ ଯୁଗରେ ଥିଲା । କନ୍ୟାର ଜନ୍ମ ଦୁଃଖ ଦାୟକ ଏବଂ ପୁତ୍ର ବଂଶ ରକ୍ଷାକାରୀ ଏକଥା ସମାଜର ଦୃଢ଼ ବିଶ୍ୱାସ ଥିଲା ।(୮୦)

ଆଉ ଗୋଟିଏ ପ୍ରଧାନ ବୈଦିକ ପ୍ରଥା ଥିଲା ନିୟୋଗ । ବୌଦ୍ଧ ଜାତକ ଏବଂ କୌଟିଲ୍ୟଙ୍କ ଅର୍ଥ ଶାସ୍ତ୍ରରେ ନିୟୋଗ ସଂପର୍କରେ ବର୍ଣ୍ଣନା ରହିଅଛି । ମହାକାବ୍ୟ ମାନଙ୍କରେ ଏହାର ଭୂରି ଭୂରି ଦୃଷ୍ଟାନ୍ତ ରହିଅଛି । ମହର୍ଷି ବ୍ୟାସଙ୍କୁ ନିୟୋଗ ରୂପେରେ ବ୍ୟବହାର କରିବା ଫଳରେ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଜନ୍ମ ହୋଇଥିଲେ । ଏହି ନିୟୋଗ ପ୍ରଥା ପତି ପୁତ୍ର ସନ୍ତାନ ଛାଡି ନପାଇ ମୃତ ହେଲେ କିମ୍ବା କୌଣସି କାରଣରୁ ପ୍ରଜନନ କ୍ଷମତା ହରାଇ ବସିଲେ ପତ୍ନୀକୁ ନିୟୋଗ ବିଧି ଦ୍ୱାରା ପୁତ୍ର ସନ୍ତାନ ଲାଭ କରିବାକୁ ହେଉଥିଲା । ଏହାକୁ ପାପାଶ୍ରୟ ବୋଲି କୁହାଯାଉନଥିଲା । ବିବାହ ଭଳି ଏହା ଏକ ପବିତ୍ର ବିଧି ଭାବରେ ଗୃହୀତ ହୋଇଥିଲା ।

ଯାସ୍କ କହିଛନ୍ତି ଦ୍ୱିତୀୟ ବର ହୋଇଥିବାରୁ 'ଦେବର' କୁହାଯାଏ । ଦିଅର (ଭାଉଜ)ଙ୍କ ସହିତ ବିବାହରେ ମିଳିତ ହେଉଥିଲେ ।(୮୧) ଦିଅର ଭାଉଜଙ୍କ ସଂପର୍କରେ ଅନେକ୍ ମନ୍ତ୍ର ରହିଅଛି । ଗୋଟିଏ ମନ୍ତ୍ରରେ ଅଶ୍ୱିନୀ କୁମାର ଯୁଗଳକୁ ଲକ୍ଷ୍ୟ କରି କୁହାଯାଇଛି । "ହେ ଅଶ୍ୱିନୀ କୁମାର ଦ୍ୱୟ, ଯେପରି ବିଧବା ସ୍ତ୍ରୀ ଆପଣା ଦେବର ସହିତ ଏବଂ ବିବାହିତା ସ୍ତ୍ରୀ ଆପଣା ପତି ସହିତ ଏକତ୍ର ରହି ସମାନ ଶଯ୍ୟାରେ ଶୟନ କରି ସନ୍ତାନ ଉତ୍ପନ୍ନ କରିଥାନ୍ତି ଠିକ୍ ସେହିପରି ତୁମେ ଦୁହେଁ କେଉଁଠାରେ ରାତିରେ ଏବଂ କେଉଁଠାରେ ଦିନରେ ରହୁଛ ? ତୁମର ପ୍ରୟୋଜନୀୟ ଜିନିଷ କେଉଁଠାରୁ ପାଉଛ ? କେଉଁ ସମୟରେ କେଉଁ ସ୍ଥାନରେ ରହୁଛ ? କେଉଁ ସ୍ଥାନରେ ଶୋଉଛ ? ପୁଣି କେଉଁ ଦେଶରେ ନିବାସ

କରୁଛ ?''(୮୨) ( ଉକ୍ତ ଓଡ଼ିଆ ଉଦ୍ଧୃତିଟି ସୁରେନ୍ଦ୍ର ଶତପଥିଙ୍କ ଭାରତୀୟ ସଂସ୍କୃତି ଦ୍ୱିତୀୟ ଭାଗ ପୃ ୨୮୭ ଠାରୁ ଗୃହୀତ ) ପତି ପତ୍ନୀଙ୍କ ଏକତ୍ର ବାସରେ ସନ୍ତାନ ଉତ୍ପାଦନ ଭଳି ଦିଅର ଭାଉଜଙ୍କ ଏକ ବାସରେ ସନ୍ତାନ ଉତ୍ପାଦନ ପବିତ୍ର ବୋଲି ଆର୍ଯ୍ୟ ଋଷିମାନେ କହିଅଛନ୍ତି । ମାତ୍ର ଭାଉଜ ସ୍ୱେଚ୍ଛାଚାରିଣୀ ହେଉ ନଥିଲା । କେବଳ ପୁତ୍ର ସନ୍ତାନ ଲାଭ ଭାଉଜର ଏକମାତ୍ର ଉଦ୍ଦେଶ୍ୟ ଥିଲା । ଯଦି ତାଙ୍କର ଦିଅର ନଥାନ୍ତି ତାହେଲେ ସମକୁଳ ଜାତ କିମ୍ବା ଉପକୁଳ ଜାତ ପୁରୁଷଙ୍କ ସହିତ ତାଙ୍କୁ ନିୟୋଗ ବିଧିରେ ମିଳିତ ହେବାକୁ ପଡୁଥିଲା । ଏ ସମୟରେ ସର୍ବାଧିକ ଦଶଟି ପୁଅ ଜନ୍ମ କରିବାର ବିଧି ଥିଲା । ସେଥିପାଇଁ ବିବାହ ସମୟରେ କନ୍ୟା ଲାଗି ଇନ୍ଦ୍ରଙ୍କ ଆଶୀର୍ବାଦ ଭିକ୍ଷା କରି ଦଶଟି ପୁଅ ଆଣି ଦେବାକୁ ପ୍ରାର୍ଥନା କରାଯାଉଥିଲା ।(୮୩) ଦଶଟି ପୁଅ ହେବା ପରେ ପତ୍ନୀ ପତିକୁ ଏକାଦଶ ପୁତ୍ର ଭାବରେ ଗ୍ରହଣ କରିଥାଏ । ଜଣେ ବିଧବା ସ୍ତ୍ରୀ ନିଜ ପାଇଁ ଦୁଇ ଏବଂ ଦୁଇ ଲେଖାଏଁ ଚାରିଜଣ ପତିଙ୍କ ଆଠ. ଏହିପରି ସର୍ବମୋଟ ଦଶଟି ସନ୍ତାନ ଉତ୍ପାଦନ କରିପାରିବେ । ମୃତଦାର ପୁରୁଷଙ୍କ ପାଇଁ ମଧ୍ୟ ଏହି ନିୟମ ସମଧିକ ପ୍ରଯୁଜ୍ୟ । ସେ ନିଜ ପାଇଁକି ଦୁଇ ଏବଂ ଚାରିଜଣ ବିଧବାଙ୍କ ପାଇଁ ଦୁଇ ଲେଖାଏଁ ଆଠ ଗୋଟି ସନ୍ତାନ ଉତ୍ପାଦନ କରି ପାରିବେ ।(୮୪) ଯଦି କୌଣସି ବିଧବା ସ୍ତ୍ରୀ ନି[illegible] ସହବାସ ଆଚରଣ କରୁଥିଲା ତେବେ ପୁତ୍ର ସନ୍ତାନ ସେହି ପୁରୁଷଙ୍କ ଗୋତ୍ର ନେଇ ତାଙ୍କ ସମ୍ପତ୍ତିର ଅଧିକାରୀ ହୋଇ ପାରୁଥିଲା । ଋଗ୍‌ବେଦରେ ଏକ ମନ୍ତ୍ରରେ କୁହାଯାଉଛି "ହେ ବିଧବା ନାରୀ ତୁମେ ଏହି ମୃତ ପତିଙ୍କ ଆଶା ଛାଡି ଜୀବିତ ଲୋକମାନଙ୍କ ମଧ୍ୟରୁ ଅନ୍ୟ ପତି ଗ୍ରହଣ କର । ତୁମେ [illegible] ପ୍ରୟୋଜନ ସକାଶେ ତାଙ୍କ ସହିତ ନିୟୋଗ କରିବ ତେବେ ଜନ୍ମ ହେବା ବାଳକ ତାଙ୍କ ହେବ । ତୁମେ ଯଦି ନିଜର ସନ୍ତାନ ଉଦ୍ଦେଶ୍ୟରେ ନିୟୋଗ କରିବ ତେବେ ସେ ବାଳକ ତୁମର ହେବ । ଏହି ନିୟମ ନିଷ୍ଚୟ ବୁଝି ରଖିବ । ତୁମ ପତି ମଧ୍ୟ ଏହି ନିୟୋଗ ପାଳନ କରିବେ''।(୮୫)

କେବଳ ପତିଙ୍କ ମୃତ୍ୟୁ ପରେ ନିୟୋଗ ବିଧିପାଳିତ ହେଉ ନଥିଲା । ପତଙ୍କ ବର୍ତ୍ତମାନତାରେ ମଧ୍ୟ ଏହା ପାଳିତ ହେଉଥିଲା । ପତି କୌଣସି କାରଣରୁ ପ୍ରଜନନ କ୍ଷମତା ହରାଇ ବସିଲେ ତାଙ୍କ ଇଚ୍ଛାରେ ପୁତ୍ର ସନ୍ତାନ ପାଇବା ପାଇଁ ପତ୍ନୀଙ୍କୁ ନିୟୋଗର ଆଶ୍ରୟ ନେବାକୁ ହେଉଥିଲା । ପତି ପତ୍ନୀକୁ କହୁଥିଲା "ଏ ସୁଭଗେ ତୁମେ ଅନ୍ୟ ପତିଟିଏ ଖୋଜ ।''(୮୬) ଏହି ସନ୍ତାନ କୁଳୋଚିତ ଆସନ ଏବଂ ମର୍ଯ୍ୟାଦା ଲାଭ କରୁଥିଲା ।

ବିଧବା ବିବାହ ସଂପର୍କରେ ପୂର୍ବରୁ ଆଲୋଚନା ହୋଇଅଛି । ମାତ୍ର ଶ୍ମଶାନ ଭୂମିରୁ ବିଧବା ସ୍ତ୍ରୀ ମାନଙ୍କର ଗୃହକୁ ପ୍ରତ୍ୟାବର୍ତ୍ତନକୁ ଲକ୍ଷ୍ୟ କରି ଋଗ୍‌ବେଦର ଗୋଟିଏ ମନ୍ତ୍ରରେ କୁହାଯାଇଛି "ଏହି ସ୍ତ୍ରୀମାନେ ଲୁହ ନ ଗଡାଇ ଅବିଧବା ଅବସ୍ଥାରେ ସୁନ୍ଦର ବେଶଭୂଷା ପିନ୍ଧି (ଶ୍ମଶାନରୁ ) ସମସ୍ତଙ୍କ ଆଗେ ଆଗେ ଚାଲି ନିଜ ଘରେ ପ୍ରବେଶ କରନ୍ତୁ ''।(୮୭-୮୮-୮୯) ଏଥିରୁ ଅନୁମିତ ହୁଏ ଯେ ବୈଦିକ କାଳରେ ବିଧବା ବିବାହ ପ୍ରଚଳିତ ଥିଲା । ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ବେଦର କୌଣସି ଠାରେ ସିଧା ସଳଖ ଭାବରେ ବିଧବା ବିବାହ କଥା କୁହାଯାଇନାହିଁ । ବୈଦିକ ଯୁଗ ପରେ 'ସୂତ୍ର ଯୁଗ'ରେ ବିଧବା ବିବାହ ପ୍ରଚଳନ ଥିଲା । "ବଶିଷ୍ଠ ଧର୍ମ ସୂତ୍ର''ରେ କେତେକ ପରିସ୍ଥିତିରେ ବିଧବା ବିବାହ ହୋଇପାରିବ ବୋଲି କୁହାଯାଇଛି । 'ଧର୍ମ ସୂତ୍ର'ରେ ଯେଉଁ ବାର ପ୍ରକାର ପୁତ୍ରଙ୍କର ନାମ ଅଛି ପୁନର୍ବିବାହ କରିଥିବା

ବିଧବା ପୁତ୍ର ସେମାନଙ୍କ ମଧ୍ୟରୁ ଜଣେ । ପରବର୍ତ୍ତୀ କାଳରେ ଏହି ବିଧବା ବିବାହ ବନ୍ଦ ହୋଇ ଯାଇଥିଲା । ସ୍ତ୍ରୀକୁ ଏକ ସାଧାରଣ ସଂପତ୍ତି ହିସାବରେ ଗ୍ରହଣ କରାଯାଇଥିଲା । 'ମନୁ'ଙ୍କ ସମୟକୁ ନାରୀକୁ ଶୂଦ୍ର ସହିତ ସମାନ କରି ଦିଆଗଲା ଏବଂ ସ୍ତ୍ରୀମାନଙ୍କର ସାମଜିକ ଅଧଃପତନ ଆରମ୍ଭ ହୋଇ ଯାଇଥିଲା ।

ବେଦରେ କୌଣସି ସ୍ଥାନରେ ସତୀଦାହ ପ୍ରଥା ଉଲ୍ଲେଖ ନାହିଁ । ଅବଶ୍ୟ ମହାଭାରତ ରଚନା କାଳରୁ ସମାଜରେ ସତୀଦାହ ପ୍ରଥାର ପ୍ରଚଳନ ହୋଇ ଯାଇଥିଲା । ମହାଭାରତରେ 'ମାଦ୍ରି' ତାଙ୍କ ସ୍ୱାମୀ 'ପଣ୍ଡୁ'ଙ୍କ ଚିତାଗ୍ନିରେ ଝାସ ଦେଇଥିଲେ । ମାତ୍ର ବେଦର ବହୁ ବର୍ଷ ପରେ ମହାଭାରତ ରଚନା କରାଯାଇଅଛି । ବୈଦିକ ଯୁଗରେ ସତୀଦାହ ପ୍ରଥା ନଥିଲା ବୋଲି 'ପଣ୍ଡିତ ନେହରୁ ଏବଂ ରାଧାକୃଷ୍ଣନ୍' ସ୍ପଷ୍ଟ ମତ ବ୍ୟକ୍ତ କରିଅଛନ୍ତି ।

ବୈଦିକ ସମାଜ ପୁରୁଷ ପ୍ରଧାନ ଥିଲା । ବାପା, ମା' ମାନେ କୁଳରକ୍ଷା କରିବାକୁ ପୁତ୍ର ସନ୍ତାନ ଗ୍ଚହୁଁ ଥିଲେ । ଝିଅ ଜନ୍ମକୁ ସେମାନେ ପସନ୍ଦ କରୁ ନଥିଲେ । ଝିଅ ଜନ୍ମ ପରଘରକୁ । ତେଣୁ ବାପା ସମ୍ପତ୍ତିରେ ଝିଅର ଅଧିକାର ନଥିଲା । ଯିଏ ଆଜୀବନ କୁମାରୀ ହୋଇ ରହୁଥିଲା ସେ ଭାଇଙ୍କ ପାଖରେ ରହୁଥିଲା । ବାପାଙ୍କ ସମ୍ପତ୍ତିରୁ ଭରଣ ପୋଷଣ ହୋଇ ପାରିବାର ଅଧିକାର ସେ ଝିଅର ଥିଲା । ବିଭିନ୍ନ ବୈଦିକ ସୂତ୍ରରେ ଏହି ସଂପର୍କରେ ଭିନ୍ନ ମତ ଦେଖିବାକୁ ମିଳେ ।

(କ) ସ୍ତ୍ରୀ ମାନେ ପୈତୃକ ସଂପତ୍ତିର ଉତ୍ତରାଧିକାରିଣୀ ନଥିଲେ ।
(ଖ) ପିତୃ ଗୃହରେ ଥିବା ପର୍ଯ୍ୟନ୍ତ ସେମାନେ ଏହି ସଂପତ୍ତିକୁ ଭୋଗ ଦଖଲ କରୁଥିଲେ ।
(ଗ) ଏହି ସମ୍ପତ୍ତି ଉପରେ ସେମାନଙ୍କର କେବଳ ଭରଣ ପୋଷଣର ଅଧିକାର ଥିଲା ।

ବୈଦିକ ସମାଜରେ ମା'ଙ୍କ ସ୍ଥାନ ଉଚ୍ଚରେ ଥିଲା । ପତ୍ନୀତ୍ୱର ଚରମ ବିକାଶ ଘଟୁଥିଲା । ସନ୍ତାନ ହୀନା ସ୍ତ୍ରୀ ସମାଜରେ ଏବଂ ପରିବାରରେ ନିନ୍ଦିତା ହେଉଥିଲା । ପରିବାର ସଭ୍ୟମାନଙ୍କର ପ୍ରାଥମିକ ଆବଶ୍ୟକତା ଖାଦ୍ୟ, ବସ୍ତ୍ର ଇତ୍ୟାଦିର ବଣ୍ଟନ ଦାୟିତ୍ୱ ମା' ଉପରେ ଥିଲା । ସନ୍ତାନକୁ ରକ୍ଷା କରିବା ତାର ମୁଖ୍ୟ କର୍ତ୍ତବ୍ୟ ଥିଲା । ବୈଦିକ ସନ୍ତାନମାନେ ମାତା ପିତାଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦାନ କରୁଥିଲେ । ଗୁରୁ ଶିଷ୍ୟଙ୍କୁ "ମାତୃଦେବୋ ଭବ, ପିତୃ ଦେବୋ ଭବ" ଶିକ୍ଷା ଦେଉଥିଲେ । ବୈଦିକ ସମାଜରେ ନାରୀ ମାନଙ୍କର ସ୍ଥାନ ଉଚ୍ଚରେ ଥିଲା । ସେମାନେ ପୁରୁଷଙ୍କ ଭଳି ଉପନୟନ ଦେଇ ଗତି କରୁଥିଲେ । ବେଦ ପଢୁ ଥିଲେ । ପୁରୁଷଙ୍କ ସମକକ୍ଷ ଥିଲେ ।

ବୈଦିକ ଏବଂ ଆର୍ଯ୍ୟେତର ସଂସ୍କୃତିର ସମନ୍ୱୟ ଯେତେବେଳେ ଘଟିଲା ; ଦାସ, ଦସ୍ୟୁ ସଂପ୍ରଦାୟରୁ ନାରୀ ଗ୍ରହଣ କରିବା ଯୋଗୁ ଦାସରମଣୀମାନେ ଯଜ୍ଞରେ ଆହୁତି ଦେବାକୁ ସମର୍ଥ ହେଲେ ନାହିଁ । ସମାଜରେ ବିଭ୍ରାଟ ସୃଷ୍ଟି ହେଲା । ଦାସ ରମଣୀମାନଙ୍କ ସହିତ ସମାନ ହେବାକୁ ଯାଇ ଆର୍ଯ୍ୟ ରମଣୀମାନେ ବେଦ ଅଧ୍ୟୟନରୁ ବଞ୍ଚିତହେଲେ । ପରବର୍ତ୍ତୀ ସମୟରେ ଝିଅମାନଙ୍କର ବିବାହ ବୟସ ୧୨/୧୩କୁ ଖସି ଆସିଲା । ଫଳରେ ସେମାନେ ବେଦ ଅଧୟନ କରିପାରିଲେ ନାହିଁ । କେବଳ ବିଧି ରକ୍ଷା କରି ସେମାନେ ଉପନୟନ ଦେଇ ଗତି କରିଥିଲେ । ଫଳରେ କେତେକାଂଶରେ ନାରୀର ସ୍ଥାନ ନୀଚକୁ ଖସି ଆସିଲା ।

## ଉପନିଷଦ୍ ଏବଂ ସୂତ୍ର କାଳରେ ବୈବାହିକ ପ୍ରଥା –

ଉପନିଷଦ୍ ଏବଂ ସୂତ୍ର କାଳରେ ଅନୁଲୋମ ବିବାହ ପ୍ରଚଳନ ନଥିଲା । (ଉଚ୍ଚ ଜାତିର ପୁରୁଷ ସହିତ ନୀଚ ଜାତିର ସ୍ତ୍ରୀ ବିବାହ କରିପାରୁ ନଥିଲା । ) ଯଜମାନଙ୍କୁ ଶୂଦ୍ର ସହିତ ବସବାସ କରିବାକୁ ଅନୁମତି ଦିଆଯାଉ ନଥିଲା । ସମାଜରୁ ସ୍ତ୍ରୀର ପ୍ରତିଷ୍ଠା ଆସ୍ତେ ଆସ୍ତେ କମିବାକୁ ଲାଗିଲା । ଆଠ ପ୍ରକାର ବିବାହ ମଧ୍ୟରୁ ପ୍ରଥମ ଚାରି ପ୍ରକାର ପ୍ରଶସ୍ତ ଥିଲା ବେଳେ ଦ୍ୱିତୀୟ ଚାରିପ୍ରକାର ବିବାହକୁ ବୈଧାନିକ ସ୍ୱୀକୃତି ପ୍ରଦାନ କରାଯାଇଥିଲା । 'ଗୃହ୍ୟ ସୂତ୍ର'ରେ ବିବାହର ପ୍ରକୃତ ସମୟ, ବର ଓ କନ୍ୟାର ଯୋଗ୍ୟତା ଏବଂ ବିବାହ କ୍ରିୟାର ବିଭିନ୍ନ କର୍ମ ବର୍ଣ୍ଣିତ ହୋଇଅଛି । 'ସପିଣ୍ଡ ଓ ସଗୋତ୍ର' ବିବାହକୁ ବାରଣ କରାଯାଇଥିଲା । ବରକୁ ଯୁବକ, ସ୍ୱାସ୍ଥ୍ୟବାନ, ବୁଦ୍ଧିମାନ ଓ ବଂଶ ମର୍ଯ୍ୟଦାରେ ବିଭୂଷିତ ହେବା କଥା କୁହାଯାଇଛି ।

ଏ କାଳରେ ବିବାହ କ୍ରମେ ନିମ୍ନୋକ୍ତମତେ ନିର୍ଦ୍ଧାରିତ ହୋଇଥିଲା । (କ) ବର ଓ ଯାତ୍ରୀ କନ୍ୟା ଘରକୁ ଯାଉଥିଲେ । (ଖ) କନ୍ୟାପିତା ଅନୁମତି ପ୍ରଦାନ କରିବା ପରେ ବର ଯଜ୍ଞ ଆରମ୍ଭ କରୁଥିଲା । (ଗ) ବିବାହ ଦିନ ଖୁବ୍ ସକାଳୁ କନ୍ୟା ସ୍ନାନ କରୁଥିଲା । (ଘ) ଏହା ପରେ ଗୃହର ଶ୍ରେଷ୍ଠ ପୁରୋହିତ କର୍ମ ଆରମ୍ଭ କରୁଥିଲେ । ଚାରିଜଣ କିମ୍ବା ଆଠଜଣ ସଧବା ସ୍ତ୍ରୀ ଇନ୍ଦ୍ରାଣି କର୍ମ ଅବସରରେ ନାଚୁ ଥିଲେ । (ଙ) ତାହାପରେ ବର କନ୍ୟା ନିକଟକୁ ଯାଇ ଲୁଗା, ଅଙ୍ଗରାଗ ଏବଂ ଦର୍ପଣ ଉପହାର ଦେଉଥିଲା । (ଚ)ଏହାପରେ କନ୍ୟା ପ୍ରଦାନ କର୍ମ ଆରମ୍ଭ ହେଉଥିଲା । (ଛ) ଏହା ପରେ ବରକନ୍ୟାଙ୍କର ହାତ ଗଣ୍ଠି ପଡୁଥିଲା । (ଜ) ବରକନ୍ୟା ଶିଳା ଖଣ୍ଡରେ ଚାଲୁଥିଲେ । (ଝ) ଏହାପରେ ବର କନ୍ୟା ଅଗ୍ନିକୁ ପ୍ରଦକ୍ଷିଣ କରୁଥିଲେ । (ଞ) ବର କନ୍ୟା ଅଗ୍ନି ରେ ଖଇ ଭଜ୍ୟ ବା ଶସ୍ୟ ଅର୍ପଣ କରୁଥିଲେ । ତା ପରେ ସପ୍ତପଦୀ କର୍ମ ଆରମ୍ଭ ହୋଇ ବର ଓ କନ୍ୟା ସାତ ପାଦ ସାଙ୍ଗ ହୋଇ ଚାଲୁଥିଲେ । ଶେଷରେ ଆଡମ୍ବର ସହିତ ବର କନ୍ୟାକୁ ନିଜ ଘରକୁ ଆଣୁଥିଲେ ।

କନ୍ୟାର ବୟସ 'ଗୃହ୍ୟ ସୂତ୍ର'ରେ ପାର୍ଥକ୍ୟ ଥିବାର ପରିଲକ୍ଷିତ ହୁଏ । ତଥାପି ପ୍ରାପ୍ତ ବୟସରେ କନ୍ୟା ବିବାହ କରୁଥିଲେ । ବର ଓ କନ୍ୟା ଚତୁର୍ଥ ରାତିରେ ମିଳିତ ହେଉଥିଲେ । 'ଗୃହ୍ୟ ସୂତ୍ର ତଥା ଧର୍ମ ସୂତ୍ର' କାଳରେ ବିବାହ ଯୋଗ୍ୟ। କନ୍ୟା 'ନଗ୍ନିକା' ହେବା ଆବଶ୍ୟକ ବୋଲି କୁହାଯାଇଛି ଅର୍ଥାତ୍ ତାହାର ବକ୍ଷର ବିକାଶ ଓ ମାସିକ ଋତୁ ହୋଇ ନଥିବ । ଏଥିରୁ ଅନୁମିତ ହୁଏ ବାଲ୍ୟ ବିବାହ ପ୍ରଚଳିତ ଥିଲା । 'ବ୍ରାହ୍ମ ଏବଂ ଦୈବ୍ୟ ବିବାହ' ପଦ୍ଧତିରେ ପିତା ତାର କନ୍ୟାକୁ ଅଳଙ୍କାରରେ ସୁ ସଜ୍ଜିତ କରିପାରୁଥିଲା । ଆସ୍ତାର ବିବାହ ପଦ୍ଧତିରେ କନ୍ୟା ପିତାକୁ ଧନ ଦ୍ୱାରା ଖୁସି କରାଇବାକୁ ହେଉଥିଲା । ଏଥିରୁ ସେ କାଳରେ ଯୌତୁକ ଦାନ ପ୍ରଥା ସୂଚିତ ହୋଇଅଛି । ଦାମ୍ପତ୍ୟ ଜୀବନରେ ପୁତ୍ର କାମନା କରାଯାଉଥିଲା । କନ୍ୟାର ଆନନ୍ଦ ଅନୁଭବ କରାଯାଉ ନଥିଲା । ବିବାହ ବ୍ୟତୀତ ଅନ୍ୟାନ୍ୟ ବିଧି ବିଧାନରେ ବୈଦିକ ମନ୍ତ୍ର ପାଠ କରାଯାଉ ନଥିଲା । ମୃତ ପତିର ସମ୍ପତ୍ତି ଉପରେ ବିଧବାର ଅଧିକାର ସାବ୍ୟସ୍ତ ହେଉଥିଲା । 'ବଶିଷ୍ଠ ଧର୍ମ ସୂତ୍ର' କେତେକ ପରିସ୍ଥିତିରେ ବିଧବାର ପୁନ ର୍ବିବାହକୁ ଅନୁମୋଦନ କରିଅଛି । 'ବୌଧାୟନ ଧର୍ମ ସୂତ୍ର'ରେ ମାମୁ ଝିଅ ଭଉଣୀ ସହିତ ବିବାହ ପ୍ରଥା ଦକ୍ଷିଣ ଦେଶରେ ପ୍ରଚଳିତ ଥିଲା ।

ବୌଧାୟନ ଧର୍ମସୂତ୍ର (୮୮) ମନୁସ୍ମୃତି (୮୯) ରେ କୁହାଯାଇଛି ବନ୍ଧ୍ୟା ସ୍ତ୍ରୀକୁ ବିବାହର ଦଶବର୍ଷ ପରେ ପରିତ୍ୟାଗ କରିବା ବିଧେୟ । ଯେଉଁ ସ୍ତ୍ରୀ ଗୋଟିଏ ସନ୍ତାନ ଦେଇଛି ତାକୁ ୧୨ ବର୍ଷ ପରେ, ଯେଉଁ ସ୍ତ୍ରୀର ପ୍ରତ୍ୟେକ ସନ୍ତାନ ମୃତ୍ୟୁ ମୁଖରେ ପଡୁଥାନ୍ତି ତାକୁ ୧୫ ବର୍ଷ ପରେ ଏବଂ ଯେଉଁ ସ୍ତ୍ରୀ କଳହପ୍ରିୟ ତାକୁ ଅବିଲମ୍ବେ ପରିତ୍ୟାଗ କରିବାକୁ ହେବ । ମାତ୍ର 'ବଶିଷ୍ଠ ଧର୍ମ ସୂତ୍ର'ରେ ପତ୍ନୀ କୌଣସି ପ୍ରକାରେ ବର୍ଜ୍ଜନୀୟ ନୁହେଁ ବୋଲି କୁହାଯାଇଛି ।(୯୦) 'ବଶିଷ୍ଠ ଧର୍ମ ସୂତ୍ର'ରେ ବିନା କାରଣରେ ପତ୍ନୀ ବର୍ଜନ ନିଷେଧ ଥିଲା । 'ଆପସ୍ତମ୍ବ ଧର୍ମ ସୂତ୍ର'ରେ (୧/୧୦,୨୮,୨୯) ରେ ପତ୍ନୀ ସେହି ପରିମାଣରେ ଅପରାଧ କରିଥିଲେ ତପସ୍ୟାର ବିଧାନ କରାଯାଇଛି । 'ବୌଧାୟନ ଧର୍ମ ସୂତ୍ର' (୪/୧/୧୫/୧) ରେ ଉଲ୍ଲିଖିତ ହୋଇଛି ଯଦି କୌଣସି ଯୁବତୀ ବିବାହ ପୂର୍ବରୁ ବଳପୂର୍ବକ ଅପହୃତ ହୋଇଥାଏ ତାହେଲେ ତାହାକୁ ବୈଦିକ ରୀତିରେ ଅନ୍ୟ ପୁରୁଷଙ୍କ ସହିତ ବିବାହ କରାଯାଇ ପାରିବ । ବୟଃପ୍ରାପ୍ତ କନ୍ୟାକୁ ଯଦି ପିତା ତିନିବର୍ଷ ମଧ୍ୟରେ ବିବାହ ନ କରାଏ ତାହେଲେ ସେ କନ୍ୟା ନିଜ ଇଚ୍ଛା ଅନୁସାରେ ପତି ବରଣ କରିପାରିବ । ଦୁହିତା, ପତ୍ନୀ ତଥା ମାତା ରୂପରେ ସେହି ସମ୍ମାନର ଅଧିକାରିଣୀ ଥିଲା । ନୃତ୍ୟ, ଗୀତରେ ଅଂଶ ଗ୍ରହଣ କରୁଥିଲା । ପୁରୁଷ ସହିତ ନାରୀ ଧାର୍ମିକ ଅନୁଷ୍ଠାନରେ ଭାଗ ନେଉଥିଲା । କନ୍ୟାକୁ ସୁଯୋଗ୍ୟ ବଧୂ ଭାବରେ ପରିଣତ କରାଇ ତାକୁ ଲଳିତ କଳା, କାବ୍ୟ କଳା, ସଙ୍ଗୀତ, ନୃତ୍ୟ ଆଦି ଶିକ୍ଷା ଦିଆ ଯାଉଥିଲା । (ଉପନିଷଦ୍ ଓ ସୂତ୍ରକାଳର ବିବାହ ପ୍ରଥା—ବୈଦିକ ସାହିତ୍ୟ ଓ ସଂସ୍କୃତି--ଅଭିନ୍ନ ଦାଶଙ୍କ ଅନୁସରଣରେ ଲିଖିତ)।

## (ଞ) ବୈଦିକ ଆଗ୍ରହ –

ବୈଦିକ ଆର୍ଯ୍ୟମାନେ ଷୋଳଗୋଟି ସଂସ୍କାର ବା ଶୁଦ୍ଧକର୍ମ ଦେଇ ଗତି କରି ଦେହ ଓ ମନର ଶୁଦ୍ଧତା ଆଣୁ ଥିଲେ । ଏହି ଶୁଦ୍ଧତା ଆଣିବା ଆର୍ଯ୍ୟମାନଙ୍କର ମୂଳ ଲକ୍ଷ୍ୟ ଥିଲା । ଏହି ମୂଳ ଲକ୍ଷ୍ୟ ହାସଲ କରିବା ନିମିତ୍ତ ବୈଦିକ ଆର୍ଯ୍ୟମାନଙ୍କୁ କେତେଗୁଡ଼ିଏ ଆଗ୍ରହ ପାଳିବାକୁ ହେଉଥିଲା । ଏହି ଆଗ୍ରହ ଗୁଡିକ ବ୍ୟକ୍ତିଗତ ଜୀବନ, ପାରିବାରିକ ଜୀବନ ଓ ସାମଜିକ ଜୀବନ ଭେଦରେ ନିର୍ଦ୍ଦିଷ୍ଟ ଥିଲା । ଶାସ୍ତ୍ରର ବିଭିନ୍ନ ଉପଦେଶଗୁଡ଼ିକ କାର୍ଯ୍ୟକ୍ଷେତ୍ରରେ ପାଳନ କରିବା ଉପରେ ଗୁରୁତ୍ୱ ଦିଆଯାଉଥିଲା । 'ମନୁ' ଆଗ୍ରହ ଉପରେ ଗୁରୁତ୍ୱ ଆରୋପ କରି କହିଅଛନ୍ତି 'ଧର୍ମ ଆଗ୍ରହରୁ ହିଁ ଉତ୍ପନ୍ନ ହୋଇଥାଏ'। (୯୦କ) ଏହାର ତାତ୍ପର୍ଯ୍ୟ ହେଲା ବ୍ୟକ୍ତିର ଧର୍ମନିଷ୍ଠା ତାହା ତାହାର ଆଗ୍ରହରୁ ହିଁ ଜଣା ପଡ଼ିଥାଏ ।

ବେଦର ଛତ୍ରେ ଛତ୍ରେ 'ଋତ୍' ବା ଚିରନ୍ତନ ସତ୍ୟ କଥା କୁହାଯାଇଅଛି । ବୈଦିକ ଋଷିମାନେ ଏହି 'ଋତ୍'ର ବଶବର୍ତ୍ତୀ ହୋଇ ଚଳିବା ପାଇଁ କହି ଅଛନ୍ତି । ଏହାର ବିପରୀତ ହେଲା 'ଅଋତ'। ଏହାଠାରୁ ଦୂରରେ ରହିବା ବୈଦିକ ଆର୍ଯ୍ୟମାନଙ୍କର କର୍ତ୍ତବ୍ୟ ଥିଲା ।(୯୦ଖ) 'ସତ୍' କର୍ମର ସୁଫଳ ଓ ଅସତ୍ କର୍ମର କୁଫଳ ମିଳିବ ବୋଲି ସେମାନଙ୍କର ଧାରଣା ଥିଲା । ଖାଲି ସେତିକି ନୁହେଁ ମନୁଷ୍ୟର ଯେ ଅନ୍ୟ ମନୁଷ୍ୟ ତଥା ଜୀବମାନଙ୍କ ପାଇଁ କିଛି କର୍ତ୍ତବ୍ୟ ରହିଅଛି ସେକଥା ମଧ୍ୟ ଋଗ୍‌ବେଦରେ ସ୍ୱୀକାର କରାଯାଏ ।(୯୦ଗ) ଅସତ୍ୟ ଠାରୁ ଦୂରରେ ରହିବା ପାଇଁ ଆର୍ଯ୍ୟମାନଙ୍କ ଠାରେ ଗଭୀର ଅଭିପ୍ସାଥିଲା । ଯାହା ଯଜୁର୍ବେଦରେ ଉଲ୍ଲିଖିତ ହୋଇଅଛି । (୯୦ଘ) ଏହି ମନ୍ତ୍ରରେ କୁହାଯାଇଛି "ମୁଁ ଅସତ୍ୟରୁ ସତ୍ୟ ଦିଗକୁ ଗ୍ଭଲିଛି" । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ କୁହାଯାଇଛି ଆର୍ଯ୍ୟଋଷି ଅଗ୍ନିଦେବଙ୍କୁ

ପ୍ରାର୍ଥନା କରି କହୁଅଛନ୍ତି "ହେ ଅଗ୍ନି ! ମତେ ଏଭଳି ପୁତ୍ର ମିଳୁ ଯେ କି ସତ୍ୟ ପାଳୁଥିବ । ଶତ୍ରୁମାନଙ୍କୁ ପରାଜିତ କରୁଥିବ ଏବଂ ନିଜ ବଂଶର ଯଶକୁ ବଢାଉଥିବ" । (୯୦ଙ) 'ଋତ୍'ର କ୍ଷମତା ବିଷୟରେ 'ତାଣ୍ଡ୍ୟ ବ୍ରାହ୍ମଣ'ରେ ଗୋଟିଏ ସ୍ଥାନରେ ବର୍ଣ୍ଣନା ହୋଇଛି । 'ଋତ୍' ସାହାଯ୍ୟରେ ମଣିଷ ସ୍ୱର୍ଗ ଲୋକକୁ ଯାଇପାରେ ।"(୯୦ଚ) ଉତ୍ତମ ଚରିତ୍ର ଗଠନ ଥିଲା ଆର୍ଯ୍ୟମାନଙ୍କର ମହାନ ଆଗ୍ରହ । ଏହି ଆଗ୍ରହ ସିଦ୍ଧି ଲାଗି ସତ୍ୟର ସେବା ଉପରେ ସେମାନେ ଗୁରୁତ୍ୱ ଦେଉଥିଲେ । 'ଋତ୍ ଓ ସତ୍ୟ' ସେବା କରିବା ସେମାନଙ୍କର ପରମ ଧର୍ମ ଓ କର୍ତ୍ତବ୍ୟ ଥିଲା । ଏହି ଭାବଧାରା ସେମାନଙ୍କ କ୍ରିୟା କଳାପ ଓ ସାମାଜିକ ସ୍ଥିତିକୁ ନିୟନ୍ତ୍ରିତ କରୁଥିଲା ।

ଋଗ୍ ବେଦରେ ସାତଗୋଟି ମର୍ଯ୍ୟାଦା ବା ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦିଆଯାଇଛି । ବୈଦିକ ସମାଜରେ ଏହା ପ୍ରତି ଯଥେଷ୍ଟ ସମ୍ମାନ ଦିଆଯାଉଥିଲା । ଏହି ସପ୍ତଗୋଟି କାର୍ଯ୍ୟରୁ ବିରିତି ହେଉଛି ଏହି ସପ୍ତ ମର୍ଯ୍ୟାଦାର ଅନ୍ତର୍ଭୁକ୍ତ ।

(କ) ହିଂସା, (ଖ) ଚୋରୀ, (ଗ) ବ୍ୟଭିଚାର, (ଘ) ଜୁଆଖେଳ, (ଙ) ମଦ୍ୟପାନ, (ଚ) ଅସତ୍ୟ ଭାଷଣ, (ଛ) ଏହି ପାପ କରୁଥିବା ଲୋକଙ୍କ ମଧ୍ୟରେ ରହିବା । (ଋଗ୍‌ବେଦ ୧୦/୫/୬) ଏହି ସପ୍ତମର୍ଯ୍ୟାଦା ଭାରତୀୟ ସଂସ୍କୃତିର ଦୀପ୍ତି ସ୍ତମ୍ଭ ସ୍ୱରୂପ ଯୁଗେ ଯୁଗେ ରହିଆସିଛି । ଏହି ମର୍ଯ୍ୟାଦା ଗୁଡିକ ସକଳ ବ୍ୟକ୍ତିଙ୍କ ଲାଗି ଆଦର୍ଶ ଥିଲା । ଏହିପରି ଭାବରେ ବେଦରେ ଶୀଳ, ନୈତିକତା, ସଦାଚାର ଆଦି ସଦ୍‌ଗୁଣ ଉପରେ ଗୁରୁତ୍ୱ ଦିଆଯାଇଛି । ଏହା ମନୁଷ୍ୟର ସାବିକ ଅଭ୍ୟୁଦୟ ଲାଗି ଉପଯୁକ୍ତ ସାଧନ ବୋଲି ଆର୍ଯ୍ୟ ମୁନିଋଷିମାନେ କହିଅଛନ୍ତି ।

## (ଟ) ବୈଦିକ ଖାଦ୍ୟ, ପାନୀୟ, ବସନ ଭୂଷଣ ଓ ଆମୋଦ ପ୍ରମୋଦ ।

**(୧) ଖାଦ୍ୟ** – ବୈଦିକ ଆର୍ଯ୍ୟର ଖାଦ୍ୟଥିଲା ମୁଖ୍ୟତଃ ସାତ୍ତ୍ୱିକ ଏବଂ ସ୍ୱାସ୍ଥ୍ୟବର୍ଦ୍ଧକ । ସ୍ଥଳ ବିଶେଷରେ ମାଂସାହାର ମଧ୍ୟ କେତେକ ବର୍ଣ୍ଣଲୋକ କରିଥାନ୍ତି । ତାହାର ସ୍ୱତନ୍ତ୍ର ବର୍ଣ୍ଣନା ନିମ୍ନରେ ଦିଆଗଲା । ମୁଖ୍ୟତଃ ଖାଦ୍ୟକୁ ଅନ୍ନ କୁହାଯାଉଥିଲା । ଅନ୍ନର ମାହାତ୍ମ୍ୟ ଋଗ୍‌ବେଦରେ ଦିଆଯାଇଛି । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ଅନ୍ନକୁ ମାନ୍ୟତା ଦିଆଯାଇ କୁହାଯାଇଛି "ହେ ଅନ୍ନ ! ତୁମ ଠାରେ ବଡ଼ ବଡ଼ ଦେବତାମାନଙ୍କ ମନ ନିହିତ । ତୁମରି ପତକା ତଳେ ସୁନ୍ଦର ସୁନ୍ଦର କାର୍ଯ୍ୟମାନ ସମାହିତ କରାଯାଇଥାଏ । ତୁମରି ସାହାଯ୍ୟରେ ସେ (ଦେବରାଜ ଇନ୍ଦ୍ର) ସାପକୁ (ସାପରୂପ ଧରିବା ବୃତାସୁରକୁ) ମାରିଥିଲେ" ।(୯୧) ଏହା କହିବାର ଉଦ୍ଦେଶ୍ୟ ହେଲା ଅନ୍ନ ହେଉଛି ମନୁଷ୍ୟ ଓ ଦେବତା ସମସ୍ତଙ୍କର ଉପଯୋଗୀ । ସେଥିପାଇଁ ଅଗ୍ନିଦେବଙ୍କ ମାଧ୍ୟମରେ ଯଜ୍ଞ ବେଦୀରେ ବିଭିନ୍ନ ଖାଦ୍ୟ ଓ ପାନୀୟ ଦେବତାମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଇଥାଏ । ଆର୍ଯ୍ୟମାନେ ଯାହା ଶରୀର ନିମିତ୍ତ ସ୍ୱାସ୍ଥ୍ୟକର ଓ ବଳବର୍ଦ୍ଧକ ତାହା ଖାଉଥିଲେ ଏବଂ ଯାହା ଶରୀର ପ୍ରତି ଅସ୍ୱାସ୍ଥ୍ୟକର ତାହା ଖାଉ ନଥିଲେ ।

ଦୁଗ୍ଧ, ଘୃତ ଓ ଦୁଗ୍ଧଜାତ ଦ୍ରବ୍ୟ ଥିଲା ସେ ସମୟର ପ୍ରଧାନ ଖାଦ୍ୟ । ଏହା ସହିତ ରୁଟି ଓ ଭାତ ମଧ୍ୟ ଖିଆ ଯାଉଥିଲା । ଯବକୁ ଅଟାରେ ପରିଣତ କରି ଦୁଗ୍ଧ କିଂବା ଲହୁଣୀରେ ଗୋଳାଇ ପିଠା ତିଆରି କରି ଖାଉଥିଲେ । 'ବ୍ରୀହି' ଶବ୍ଦ ଯଜୁର୍ବେଦ ଆଦି ସଂହିତାରେ ଦେଖିବାକୁ ମିଳିଥାଏ । ଋଗ୍‌ବେଦରେ

ଧାନର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ମାତ୍ର ଯଜୁର୍ବେଦରେ ଏହାର ବହୁଳ ଉଲ୍ଲେଖ ରହିଅଛି । ଏଥିରୁ ଜଣାପଡେ ଯଜୁର୍ବେଦର ସୃଷ୍ଟି ବେଳକୁ ବୈଦିକ ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳ ପରିତ୍ୟାଗ କରି ଦକ୍ଷିଣକୁ ଗତି କରି ସାରିଲେଣି । 'ତିଳ' ସହିତ 'ଯବ ତଣ୍ଡୁଳ'ର ଦାନ ଯଜ୍ଞ ବେଦୀରେ ଦିଆଯାଉଥିଲା । ଧାନ ଓ ଗହମର ଉତ୍ପନ୍ନ ଯୋଗୁ ଭାତ ଓ ଅଟାର ବ୍ୟବହାର ଦେଖିବାକୁ ମିଳିଲା । ଅଟା ଓ ଦୁଗ୍ଧ ଦ୍ୱାରା ପ୍ରସ୍ତୁତ 'ଅପୂପ' ଏ ସମୟରେ ଖାଦ୍ୟ ରୂପେ ବ୍ୟବହୃତ ହେଉଥିଲା । 'ଯଅ ଓ ଚାଉଳକୁ ମିଶାଇ ବିଭିନ୍ନ ଖାଦ୍ୟ ତିଆରି କରାଯାଉଥିବାର 'ଐତରେୟ ବ୍ରାହ୍ମଣ'ରେ ଉଲ୍ଲେଖ ଅଛି । ସେ ଖାଦ୍ୟ ଗୁଡିକର ନାମ ହେଲା ଧାନ, କରମ୍ଭ, ପରିବାପ ଓ ପୁରୋଡ଼ାସ(୯୨) ଯଅକୁ ଘିଅରେ ଭାଜି ଦେଇ ଯେଉଁ ଖାଦ୍ୟ ତିଆରି ହେଉଥିଲା ତାହାର ନାମ ଥିଲା 'ଧାନା' । ପୁଣି ସେ ଧାନା ର 'ଚୂନାକୁ' ଘିଅରେ ଭାଜି ଦେଲେ ତାହାକୁ 'କରମ୍ଭ' କୁହା ଯାଉଥିଲା । ଚାଉଳକୁ ଘିଅରେ ଭାଜି ଦେଇ ଯେଉଁ ଖାଦ୍ୟ ତିଆରି ହୁଏ ତାହାକୁ 'ପରିବାପ' ବୋଲି କୁହା ଯାଉଥିଲା । ଚାଉଳର ପିଠାକୁ 'ପୁରୋଡ଼ାସ' ବୋଲି କୁହା ଯାଉଥିଲା । ଚାଉଳକୁ ବାଟି ଏହାର ପିଠଉରେ 'ପୁରୋଡ଼ାସ' ତିଆରି କରାଯାଉଥିଲା । ଯଜ୍ଞରେ ବିଭିନ୍ନ ମାଟି ପାତ୍ରରେ 'ପୁରୋଡ଼ାସ' ଦେବତାମାନଙ୍କୁ ଅର୍ପଣ କରାଯାଉଥିଲା । ଆଜି କାଲି ନୂଆ ହାଣ୍ଡି ଭାଙ୍ଗି 'ପୁରୋଡାସ' ଦିଆ ଯାଉଅଛି । ଏହାର ପ୍ରମାଣ ସିନ୍ଧୁ ସଂସ୍କୃତିର ଅବଶେଷରୁ ମିଳୁଅଛି । ଦଧି ଓ ଦୁଧକୁ ମିଶାଇ 'ପୟସ୍ୟା' ତିଆରି କରାଯାଉଥିଲା । ଦୁଗ୍ଧ ସହିତ ଭାତକୁ ରାନ୍ଧି 'କ୍ଷୀରୋଦନ' ତିଆରିହୋଇ ଦେବତାଙ୍କୁ ଅର୍ପଣ କରାଯାଉଥିଲା । ଦହି ଦ୍ୱାରା ଭାତ ମଧ୍ୟ ରନ୍ଧା ହେଉଥିଲା । ତାହାକୁ ଦଧ୍ୟୋଦନ ବୋଲି କୁହା ଯାଉଥିଲା । ମୁଗ ସହିତ ଭାତ ରନ୍ଧା ହେଉଥିଲା । ତାହାକୁ କହୁଥିଲେ 'ମୁଦ୍‌ଗୌଦନ', ଏହା ଅତ୍ୟନ୍ତ ସ୍ୱାସ୍ଥ୍ୟକର ଓ ରୁଚିକର ଖାଦ୍ୟଥିଲା ।

ତୈତ୍ତିରୀୟ ବ୍ରାହ୍ମଣରେ 'ପୃଥୁକା, ସକ୍ତୁ, ଲାଜ ଓ ମସୂସ୍ୟ' ନାମର ଖାଦ୍ୟର ବ୍ୟବହାର ଥିଲା ବୋଲି ଉଲ୍ଲେଖ ଅଛି ।(୯୩) ଏହା ସବୁ ଚାଉଳରୁ ତିଆରି । ପୃଥୁକାର ଗୋଟିଏ ନାମ ହେଉଛି 'ଚିପିଟକ' । ଆଜି ଏହାକୁ ଚୂଡା ବୋଲି କୁହାଯାଏ । ଧାନକୁ କୁଟି ଚାଉଳକୁ ଚେପା କରି ଏହା ତିଆରି କରାଯାଏ । 'ଲାଜ' ହେଉଛି ଆଜି କାଲିକାର 'ଖଇ' ; ଧାନକୁ ଭାଜି ଏହାକୁ ତିଆରି କରାଯାଇଥାଏ । ସାୟଣାଚାର୍ଯ୍ୟ କହିଛନ୍ତି ଖଇ ଗୁଡିକ ଚାଉଳ (ଧାନ) ରେ ତିଆରି ଏବଂ ଏହା ଫୁଲ ଭଳି ବିଛାଡି ହୋଇ ଯାଇଥାନ୍ତି । (ଲାଜାବ୍ରୀହି ପ୍ରଭବାଃ ପୁଷ୍ପବଦ୍ ବିକଶିତାଃ) ଏଥିରେ ଗୁଡ ଦେଇ ମୋଦକ ବା ମିଠାଇ ତିଆରି କରା ଯାଉଥିଲା । 'ମସୂସ୍ୟ' ଏକ ପ୍ରକାର ଧାନର ନାଁ । ଯାହାର ଚାଉଳ ସୁଗନ୍ଧ ଯୁକ୍ତ । ତୈତ୍ତିରୀୟ ବ୍ରାହ୍ମଣରେ 'ପ୍ରିୟଙ୍ଗୁ ତଣ୍ଡୁଳ'ର ନାମ ଉଲ୍ଲିଖିତ । ହଳଦିଆ ରଙ୍ଗର ଏକ ପ୍ରକାର ଧାନରୁ ଏହି ଚାଉଳ ତିଆରି ହୋଇଥାଏ । ପରବର୍ତ୍ତୀ କାଳରେ 'ଗୋଧୂମ' ବା 'ଗହମ' ଆର୍ଯ୍ୟମାନଙ୍କର ଖାଦ୍ୟ ତାଲିକାରେ ସ୍ଥାନ ପାଇଥିଲା ।

ବୈଦିକ କାଳରେ ବିଭିନ୍ନ ପ୍ରକାର ଡାଲିର ଉଲ୍ଲେଖ ମିଳେ । ସେଗୁଡିକ ହେଲା — ମୁଦ୍‌ଗ (ମୁଗ) , ମାଂସ (ବିରି) ମସୁର (ମସୁର) ଗୋଧୂମ (ଗହମ) ଇତ୍ୟାଦି । ଋଗ୍‌ବେଦ, ବାଜସନେୟୀ ସଂହିତା, ତୈତ୍ତିରୀୟ ବ୍ରାହ୍ମଣ ଓ ଶତପଥ ବ୍ରାହ୍ମଣ ଗ୍ରନ୍ଥରେ 'ଗୋଧୂମ' ଶବ୍ଦ ପ୍ରଯୁକ୍ତ ହୋଇଅଛି । ଚୂର୍ଣ୍ଣ କରି ରନ୍ଧନ ପ୍ରକ୍ରିୟା 'ଉପନିଷଦ୍ ଓ ସୂତ୍ର' କାଳର ଲୋକଙ୍କୁ ବେଶ୍ ଜଣାଥିଲା । ଶସ୍ୟକୁ ଭାଜି ଖାଦ୍ୟ ପଦାର୍ଥ ରୂପେ ବ୍ୟବହୃତ ହେଉଥିଲା । ଖଇ, ଛତୁ ଆଦି ଖାଦ୍ୟ ରୂପେ ବ୍ୟବହୃତ ହେଉଥିଲା ।

ଶତପଥ ବ୍ରାହ୍ମଣରେ ଗୋଟିଏ ସ୍ଥାନରେ ଦୁଗ୍ଧ ଓ ଦୁଗ୍ଧ ଜାତ ଦ୍ରବ୍ୟର ଗୋଟିଏ ତାଲିକା ଥିବାର ଦେଖାଯାଏ । ସେଗୁଡିକ ହେଲା ଦୁଗ୍ଧ-(ଦୁଧ) ପୟଃ (ଦୁଧ) ଆଜ୍ୟା (ଘିଅ) ଆମିକ୍ଷା (ଘୋଳଦହି) ଦଧି (ବସାଦହି) କରମ୍ଭ (ଯଅ ଚୂନାକୁ ଘିଅରେ ଭାଜି ତିଆରି ହେଉଥିବା ଏକ ପ୍ରକାର ଖାଦ୍ୟ ) ଘୃତ ( ତରଳା ହୋଇଥିବା ଲହୁଣୀ) ନବନୀତ (ତଟକା ଲହୁଣୀ) ପାନ୍ନାୟ (ଦଧି ଓ ଦୁଧରେ ତିଆରି ଏକ ପ୍ରକାର ଖାଦ୍ୟ) ଗ୍ରୁଲ୍ଲ (ଦୁଧ, ଦହି, ଲହୁଣୀ ଓ ମଧୁ ମିଶି ତିଆରି ଏକ ପ୍ରକାର ଖାଦ୍ୟ) ଶ୍ରୀତ (ସିଝା ଦୁଧ) ସର ( ସିଝା ଦୁଧ ଉପରେ ପଡୁଥିବା ମୋଟା ଆବରଣ ଯାହାକି ଏବେ ମଧ୍ୟ 'ସର' ନାମରେ ଖ୍ୟାତ ) ଦୁଗ୍ଧାଶୀର- (ଦୁଧ ଓ ସୋମରସର ଏକ ମିଶ୍ରଣ) ।(୯୪)

ବୈଦିକ କାଳରେ ଘିଅର ବ୍ୟବହାର ଅଧିକ ଥିଲା । 'ବ୍ରାହ୍ମଣ ଗ୍ରନ୍ଥ'ରେ ଏହାର ବର୍ଣ୍ଣନା ଅଧିକ ହୋଇଅଛି । ଦହିରୁ ସଦ୍ୟ ବାହାରି ଥିବା ଘିଅକୁ 'ନବନୀତ', ଅଳ୍ପ ହଳଦିଆ ଦିଶୁଥିବା ଘିଅକୁ 'ଆୟୁତ', ପୂର୍ଣ୍ଣ ହଳଦିଆ ଘିଅକୁ 'ଆଜ୍ୟ' ଓ ଘନୀଭୂତ ହୋଇଥିବା ଘିଅକୁ 'ଘୃତ' କୁହାଯାଉଥିଲା । ଐତେରେୟ ବ୍ରାହ୍ମଣ ଅନୁସାରେ 'ଆଜ୍ୟ' ଦେବତାମାନଙ୍କ ପ୍ରିୟ । ଘୃତ ମନୁଷ୍ୟ ମାନଙ୍କର, ଆୟୁତ ପିତୃ ପୁରୁଷଙ୍କର ଏବଂ ନବନୀତ ଗର୍ଭିଣୀମାନଙ୍କ ପାଇଁ ପ୍ରିୟ ଖାଦ୍ୟ ଥିଲା ।(୯୫)

ଏହା ବ୍ୟତୀତ ସୋମ ରସକୁ ଦୁଗ୍ଧ କିମ୍ବା ବିଭିନ୍ନ ଦୁଗ୍ଧଜାତ ଦ୍ରବ୍ୟରେ ମିଶାଇ ଖିଆ ଯାଉଥିଲା । ଏହାକୁ ଦୁଗ୍ଧ ସହିତ ମିଶାଇଲେ 'ଦୁଗ୍ଧାଶୀର', ଦହି ସହିତ ମିଶାଇଲେ 'ଦଧ୍ୟାଶୀର' ପ୍ରସ୍ତୁତ କରା ଯାଉଥିଲା । ସେହିପରି ଏହାକୁ ଘୃତ ସହିତ ମିଶାଇ 'ଘୃତାଶୀର' ପ୍ରସ୍ତୁତ କରାଯାଉଥିଲା । ଏଥିରୁ ଅନୁମିତ ହେଉଛି ସୋମରସ ଏକ ମାଦକ ଦ୍ରବ୍ୟ ନଥିଲା । ଲତାର ରସରୁ ଏହା ତିଆରି ହେଉଥିଲା । ଏହା ଦେବତା ମାନଙ୍କର ପ୍ରିୟଥିଲା । ଯଜ୍ଞ କର୍ମ କରୁଥିବା ପୁରୋହିତମାନେ ମଧ୍ୟ ଏହାକୁ ପିଉଥିଲେ । ଯଜମାନ ଏବଂ ଯଜମାନର ପରିବାରର ଲୋକମାନେ ମଧ୍ୟ ଏହାକୁ ପ୍ରସାଦ ସ୍ଥାନରେ ପାନ କରୁଥିଲେ ।

ବୈଦିକ ଆର୍ଯ୍ୟମାନଙ୍କର ଲାଗି ମାଂସ ଭୋଜନ କରିବାର ଉପଯୁକ୍ତ ବାତାବରଣ ଥିଲା । ପ୍ରଥମତଃ ଦେଶରେ ପ୍ରଚୁର ଅରଣ୍ୟ ସଂପଦ ଥିଲା ଏବଂ ବହୁ ସଂଖ୍ୟାରେ ବନ୍ୟଜନ୍ତୁ ମିଳୁଥିଲେ । ଦ୍ୱିତୀୟରେ ବିସ୍ତୀର୍ଣ୍ଣ ଗୋଚ୍ଚରଣ ଭୂମି ଥିବାରୁ ବହୁ ସଂଖ୍ୟାରେ ଗୋରୁ ଗାଇ, ମଇଁଷି, ଘୋଡା,ଛେଳି, ମେଣ୍ଢା ଆଦି ଥିଲେ ଏବଂ ବୈଦିକ ଆର୍ଯ୍ୟମାନେ ସେମାନଙ୍କୁ ଗୃହରେ ପାଳିବା ଶିଖିଥିଲେ । ତୃତୀୟରେ ଯଜ୍ଞମାନଙ୍କରେ ବହୁ ସଂଖ୍ୟାରେ ଯଜ୍ଞରେ ପଶୁବଧ କରାଯାଉଥିଲା ଏବଂ ଏହି ପଶୁମାନଙ୍କର ମାଂସ ପାଇବା ଆର୍ଯ୍ୟମାନଙ୍କ ପାଇଁ ସୁଲଭ ଥିଲା । ଋଗ୍‌ବେଦରେ ବର୍ଷ ଅର୍ଥରେ ଅନେକ ମନ୍ତ୍ରରେ 'ହିମ' ଶବ୍ଦଟି ପ୍ରୟୋଗ ହୋଇଅଛି । ମନେହୁଏ ଏହି ସମୟରେ ଆର୍ଯ୍ୟମାନେ ହିମ ପ୍ରଧାନ ସ୍ଥାନରେ ବାସ କରୁଥିଲେ । ତେଣୁ ଏ ପ୍ରକାର ଥଣ୍ଡା ବାତାବରଣରେ ଆର୍ଯ୍ୟମାନେ ମାଂସ ଖାଇବାର ଆବଶ୍ୟକତା ଅନୁଭବ କରିଥିବେ ।(୯୬) ବୈଦିକ ଆର୍ଯ୍ୟମାନେ ଗୋରୁ, ମେଣ୍ଢା, ଛେଳି ମାଂସକୁ ରାନ୍ଧି କରି ଭୋଜନ କରୁଥିଲେ । ଗାଈକୁ ଋଗ୍ ବେଦରେ ଅଘ୍ନ୍ୟା ( ଅବଧ୍ୟ) ଏବଂ ପ୍ରତ୍ୟେକ ଗୃହସ୍ଥର ଅତୁଳନୀୟ ସଂପତ୍ତି ରୂପେ ଗ୍ରହଣ କରାଯାଉଥିଲା । ବୈଦିକ ଆର୍ଯ୍ୟମାନଙ୍କ ଗୋମାଂସ ଭକ୍ଷଣ ବିଷୟରେ ଯୋଗୀରାଜ ବସୁଙ୍କ ମତାମତ ଉଲ୍ଲେଖନୀୟ ।(୯୭) ତାଙ୍କ ମତରେ ଶ୍ରାଦ୍ଧକର୍ମର 'ମାଂସାଷ୍ଟକା' ହେଉଛି ଏକ ବିଶିଷ୍ଟ ଅଂଶ । ଯାହାକି ଗୋମାଂସ ବିନା ସମାହିତ ହୋଇ ପାରୁନଥିଲା । ରାଜା କିଂବା ବ୍ରାହ୍ମଣ

ଆସିଲେ ତାଙ୍କ ପାଇଁ ବଡ଼ ବଳଦଟିଏ କିମ୍ବା ଅଣ୍ଡିରା ଛେଳିଟିଏ ମାରିବାର ଅତି ପ୍ରାଚୀନ ବିଧି ଥିଲା ବୋଲି 'ଶତପଥ ବ୍ରାହ୍ମଣ'ରେ ଉଲ୍ଲଖ କରାଯାଇଅଛି ।(୯୮) ଶତପଥ ବ୍ରାହ୍ମଣର ଏହି ବର୍ଣ୍ଣନାକୁ ବ୍ରାହ୍ମଣ ଯୁଗର ଏକ ଚଳଣି ଭାବରେ ଗ୍ରହଣ କରାଯାଇପାରେ ମାତ୍ର ଏହି ଚଳଣି ଯେ ହଠାତ୍ ସୃଷ୍ଟି ହୋଇଛି ତାହା ନୁହେଁ ଏହା ବୈଦିକ ଯୁଗରୁ ଚଳି ଆସିଥିବ । ଗୋମାଂସ ଭକ୍ଷଣର ଆଉ ଏକ ପ୍ରମାଣ 'ଶତପଥ ବ୍ରାହ୍ମଣ'ରୁ ମିଳିଥାଏ । ଯାଜ୍ଞବଲକ୍ୟଙ୍କୁ ଗୋମାଂସ ଅର୍ପଣ କରାଯାଉଥିବା ବେଳେ ସେ କହିଥିଲେ "ଏହି ମାଂସ ଯଦି କଅଁଳିଆ ହୋଇଥାଏ ମୁଁ ତାହା ଖାଇବି ।(୯୯) ଏଥିରୁ ଅନୁମାନ କରାଯାଉଛି କୋମଳ ଗୋମାଂସ ଥିଲା ଆର୍ଯ୍ୟମାନଙ୍କର ଖାଦ୍ୟ । ଅଥର୍ବ ବେଦରେ ବଳଦ ମାଂସ ଖାଇବା କଥା ସ୍ପଷ୍ଟ ଉଲ୍ଲେଖ ରହିଅଛି ।(୧୦୦) ଋଗ୍ ବେଦରେ ଅନ୍ୟ ଏକ ସ୍ଥାନରେ 'ଅତିଥିନିର୍ଗାଃବା'। ଅତିଥିଙ୍କ ପାଇଁ ଉଦ୍ଦିଷ୍ଟ ଗାଇମାନଙ୍କର ଉଲ୍ଲେଖ ରହିଅଛି । ଏଗୁଡିକ ହେଉଛନ୍ତି ବାଂଝ ଗାଇ । ବାଂଝ ଗାଇ ମାଂସ ଅଗ୍ନି ଖାଆନ୍ତି ବୋଲି ତାଙ୍କୁ କୁହାଯାଇଛି 'ବସାନ୍ନ' ।(୧୦୧) ଏଥିରୁ ଅନୁମାନ କରାଯାଉଛି କେବଳ ଦେବତାମାନଙ୍କୁ ଏବଂ ଦେବମନ୍ୟ ଅତିଥିମାନଙ୍କୁ ବାଂଝ. ଗାଇର ମାଂସ ଅର୍ପଣ କରାଯାଉଥିଲା । ଦୁହାଁଳିଆଗାଇକୁ ମରା ଯାଉନଥିଲା । ଭରତମାନଙ୍କର ରାଜା 'ଦିବୋଦାସ' ଅତିଥିମାନଙ୍କୁ ଭଲ ଗୋମାଂସର ରାନ୍ଧଣା ଦେଇଥିଲେ ବୋଲି ତାଙ୍କୁ 'ଅତିଥିଗ୍ନଃ' ବୋଲି ପ୍ରଶଂସା କରାଯାଇଛି । ଯେତେବେଳେ ବଳଦ ମାଂସର ଭକ୍ଷଣ ଥିଲାବେଳେ ଗାଇ ମାଂସ (ବସାନ୍ନ) ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପିତ ହେଉଥିଲା ।

'ଶତପଥ ବ୍ରାହ୍ମଣ' ଗ୍ରନ୍ଥରେ ଅତିଥି ସତ୍କାର ନିମିତ୍ତ ବଳଦ କିଂବା ଛେଳି ମାଂସ ଅର୍ପଣ କରାଯାଉଥିଲା । ମାତ୍ର ବ୍ରତପାଳନରେ ମାଂସ ଭକ୍ଷଣକୁ ନିଷେଧ କରାଯାଉଥିଲା । ଏଥିରୁ ଅନୁମିତ ହୁଏ କ୍ରମେ ଗାଇ ବଧ କମି ଆସିଲା ଏବଂ କେବଳ ଛେଳି, ମେଣ୍ଢା, ବଳଦ ମାଂସ ଲୋକେ ଖାଉଥିଲେ ଏବଂ ଦେବତାମାନଙ୍କୁ ଅର୍ପଣ କରୁଥିଲେ । 'ଉପନିଷଦ୍‌ସୂତ୍ର'କାଳରେ ଗୋମାଂସ ଭକ୍ଷଣର ପ୍ରଚଳନ ଥିଲା । ଶ୍ରାଦ୍ଧ ନିମନ୍ତ୍ରଣରେ ବ୍ରାହ୍ମଣମାନଙ୍କୁ ମାଂସ ଭୋଜନ ଦିଆ ଯାଉଥିଲା । ମାଂସ ନମିଳିଲେ ତା ପରିବର୍ତ୍ତେ ଫଳମୂଳ ଦିଆ ଯାଉଥିଲା । ଶିଶୁର ଅନ୍ନପ୍ରାଶନ ଉତ୍ସବରେ ଖାଦ୍ୟ ମଧ୍ୟରେ ଛେଳିମାଂସ, ପକ୍ଷୀମାଂସ ଓ ମାଛ ପ୍ରଥମ ସ୍ଥାନ ଅଧିକାର କରୁଥିଲାବେଳେ 'ଘୃତାନ୍ନ' ଶେଷ ସ୍ଥାନ ଅଧିକାର କରୁଥିଲା । ଛାତ୍ରମାନଙ୍କୁ ମାଂସ ଭକ୍ଷଣରୁ ବାରଣ କରାଯାଉଥିଲା ।

ଋଗ୍‌ବେଦରେ ଲୁଣର ଆଦୌ ଉଲ୍ଲେଖ ନାହିଁ । ଅଥର୍ବ ବେଦ, ଶତପଥ ବ୍ରାହ୍ମଣ, ଛାନ୍ଦୋଗ୍ୟ ଉପନିଷଦ୍ ତଥା ବୃହଦାରଣ୍ୟକରେ ଏହାର ବହୁଳ ପ୍ରୟୋଗ ରହିଅଛି ।(୧୦୨) ମାତ୍ର ଋଗ୍‌ବେଦରେ ଚତୁଃ ସମୁଦ୍ରର ଉଲ୍ଲେଖ ଥିବାରୁ ବୈଦିକ ଆର୍ଯ୍ୟମାନେ ଲୁଣର ବ୍ୟବହାର ଜାଣି ଥିବେ ମନେହୁଏ ।

ଫଳ ଭୋଜନ କରିବା ବୈଦିକ ଆର୍ଯ୍ୟମାନଙ୍କର ପ୍ରିୟ ଥିଲା । ସେ ସମୟରେ ପ୍ରଚୁର ପରିମାଣରେ ପନିପରିବା ଖାଉଥିଲେ । ଖାଦ୍ୟକୁ ସୁସ୍ୱାଦୁ କରିବା ପାଇଁ ମଧୁ ବ୍ୟବହାର ହେଉଥିଲା । ଦେବତାମାନଙ୍କୁ ମଧ୍ୟ ମଧୁ ଅର୍ପିତ ହେଉଥିଲା । ଇକ୍ଷୁ (ଆଖୁ) ଋଗ୍‌ବେଦ, ଅଥର୍ବବେଦ, ମୈତ୍ରାୟଣୀ ସଂହିତାରେ ଉଲ୍ଲେଖିତ ହୋଇଛି ।(୧୦୩) ମାତ୍ର ଶର୍କରା (ଚିନି) ଶବ୍ଦର ଉଲ୍ଲେଖ ମିଳେ ନାହିଁ । ଶତପଥ ବ୍ରାହ୍ମଣରେ 'ଉଦୁମ୍ବର, ବରକୋଳି' ବିଷୟରେ ବର୍ଣ୍ଣନା ରହିଅଛି । ଏଥିରେ ମଧ୍ୟ କେନ୍ଦୁ ବିଷୟରେ ଉଲ୍ଲେଖ ଅଛି ।(୧୦୪) 'ଐତରେୟ ବ୍ରାହ୍ମଣ'ରେ 'ବର ଓ ଅଶ୍ୱତଥ ଗଛର ଅତି କଅଁଳିଆ ଡାଳ ଏବଂ

ଉଦୁମ୍ବର ଫଳ’ କ୍ଷତ୍ରିୟମାନଙ୍କ ପାଇଁ ଖୁବ୍ ଉପଯୋଗୀ ଥିଲା । ଏହା ବଳବର୍ଦ୍ଧକ ବୋଲି କୁହାଯାଇଛି ।(୧୦୫) ଋଗ୍‌ବେଦରେ ଗୋଟିଏ ସ୍ଥାନରେ ଆର୍ଯ୍ୟମାନେ ‘ଅଶ୍ୱଥ୍ ଫଳ’ ଖାଉଥିବା ବର୍ଣ୍ଣନା ଅଛି ।(୧୦୬) ଏଥିରୁ ଅନୁମାନ କରାଯାଏ ଆର୍ଯ୍ୟମାନେ ଫଳାହାରୀ ଥିଲେ ଏବଂ ଜଙ୍ଗଲରୁ ଫଳ ସବୁ ସଂଗ୍ରହ କରୁଥିଲେ । ଏଥିପାଇଁ ସ୍ୱତନ୍ତ୍ର ଭାବରେ ବଗିଚ୍ଚା ନଥିଲା । ଗରିବ ଲୋକମାନେ ମାଂସ ଭକ୍ଷଣ କରିବାକୁ ସବୁବେଳେ ସୁଯୋଗ ପାଉନଥିବାରୁ ସେମାନଙ୍କୁ ମାଂସ ସ୍ଥାନରେ ଶାକ ବା ଶାଗ ଖାଇବା ପାଇଁ ପରାମର୍ଶ ଦିଆଯାଉଥିଲା । ତେଣୁ ‘ଆପ୍ତେ’ କହିଅଛନ୍ତି ମାଂସ ଅଭାବରେ ଫଳାହାର କିଂବା ଶାକାହାର କରିବା ସେତେବେଳେ ସମାଜରେ ପ୍ରଚଳନ ଥିଲା ।(୧୦୭)

**(୨) ପାନୀୟ** – ମଧୁ, କ୍ଷୀର, ଓ ସୋମରସ ସୁମିଷ୍ଟ ପାନୀୟ ଓ ସୁସ୍ୱାଦୁ ଅର୍ଥରେ ପ୍ରଯୁକ୍ତ ହୋଇଛି । ବୈଦିକ ଆର୍ଯ୍ୟମାନଙ୍କର ପ୍ରଧାନ ପାନୀୟ ଥିଲା ସୋମରସ । ବେଦରେ ଯଜ୍ଞ ଅବସରରେ ଦେବତାଙ୍କୁ ଏହା ଅର୍ପିତ ହେଉଥିଲା । ଋଷି, ବ୍ରାହ୍ମଣମାନେ ମଧ୍ୟ ଏହାକୁ ପାନ କରୁଥିଲେ । ଏହି ସୋମ ରସ କିନ୍ତୁ ସୁରା ନଥିଲା । ଏହା ଦେହ ଓ ମନକୁ ଉତ୍‌ଫୁଲ୍ଲ କରୁଥିଲା । ଏହି ସୋମରସର ପବିତ୍ରତା ଅନେକ ବୈଦିକ ସୂକ୍ତରେ ରହିଅଛି । ଋଗ୍‌ବେଦର ନବମ ମଣ୍ଡଳ ଏହି ଉଦ୍ଦେଶ୍ୟରେ ସୃଷ୍ଟ ଏବଂ ଏହାକୁ ‘ପବମାନ’ ମଣ୍ଡଳ ବୋଲି କୁହାଯାଏ । ସାମବେଦରେ ମଧ୍ୟ ଏକ କାଣ୍ଡ ଅଛି ଯାହାକୁ ‘ପବମାନ’ କାଣ୍ଡ ବୋଲି କୁହାଯାଇଥାଏ । ଏହି ସବୁ ସ୍ଥାନରେ ସୋମ ଦେବତା ସ୍ତୁତ ସୋମରସର ପ୍ରାଧାନ୍ୟ ପ୍ରତିପାଦିତ କରିବାକୁ ଯାଇ ‘ଐତରେୟ ବ୍ରାହ୍ମଣ’ କୁହେ “ବ୍ରାହ୍ମଣମାନଙ୍କର ପାନୀୟ ହେଲା ସୋମ, ବୈଶ୍ୟମାନଙ୍କର ପାନୀୟ ହେଲା ଦଧି ଏବଂ ଶୁଦ୍ରମାନଙ୍କର ପାନୀୟ ହେଲା ଜଳ” ।(୧୦୮)

ସୋମ ରସ ପାନ କରି ଇନ୍ଦ୍ର ପ୍ରବଳତମ ଶତ୍ରୁ ‘ବୃତ୍ରାସୁର’କୁ ନିଧନ କରିଥିଲେ । ବୃତ୍ରାସୁରର ନିଧନ ପରେ ଇନ୍ଦ୍ର ଦେଢସେର ସୋମରସ ପାନ କରିଥିଲେ । ଆଉ ଥରେ ଇନ୍ଦ୍ର ଏକା ଢୋକରେ ୧୫ ସେର ସୋମ ରସ ପିଇଥିଲେ ।(୧୦୯) ଯୁଦ୍ଧ ପୂର୍ବରୁ ଓ ଯୁଦ୍ଧ ପରେ ଇନ୍ଦ୍ର ସୋମରସ ପାନ କରିବାର ପର୍ଯ୍ୟାପ୍ତ ବର୍ଣ୍ଣନା ବେଦରେ ରହିଅଛି । ‘ପ୍ରପାଥ କାଣ୍ୱ’ ଋଷି ଆନନ୍ଦରେ ବିଭୋର ହୋଇ କହିଛନ୍ତି -- “ଆମେ ସୋମ ପାନ କରିଅଛୁ । ତେଣୁ ଅମରତ୍ୱ ଲାଭ କରିଛୁ । ଜ୍ୟୋତିର୍ମୟ ସ୍ୱର୍ଗ ଲାଭ କରିଛୁ ଓ ଦେବତା ମାନଙ୍କୁ ଜାଣିପାରିଛୁ”।(୧୧୦)

ସୋମ ବିଶେଷତଃ ‘ମୁଜବତ୍’ ପର୍ବତ ଉପରେ ମିଳୁଥିଲା । ସେଠାରୁ ସୋମକୁ ଆଣି ପଥରରେ ଛେଚି ରସ ବାହାର କରାଯାଉଥିଲା । ସୋମ ରସରେ ପାଣି ମିଶାଇ ମେଣ୍ଢା ଲୋମଦ୍ୱାରା ନିର୍ମିତ ‘ପବିତ୍ର’ରେ ଛଣା ଯାଉଥିଲା । ସୋମ ରସକୁ ସୁସ୍ୱାଦୁ କରିବା ପାଇଁ ଦୁଗ୍ଧ ମିଶାଇ ତାକୁ ‘ଗବାଶୀର’, ଦହିମିଶାଇ ‘ଦଧ୍ୟାଶୀର’ ଆଉ କେତେବେଳେ ଯବର ଛତୁ ମିଶାଇ ତାକୁ ‘ଯବାଶୀର’ ବୋଲି କହୁଥିଲେ ଓ ଦେବତାଙ୍କୁ ଅର୍ପଣ କରୁଥିଲେ । ଆର୍ଯ୍ୟମାନଙ୍କ ଲାଗି ଗରୁଡ଼ ପ୍ରଥମେ ସୋମ ରସ ଆଣି ଦେଇଥିଲେ ବୋଲି ଋଗ୍‌ବେଦରେ ବର୍ଣ୍ଣନା କରାଯାଇଛି । ଏହା ଥଣ୍ଡା ଜଳବାୟୁରେ ହେଉଥିଲା । ସୋମ ରସର ରଂଗ ଲାଲଥିଲା । ଏହା ଦୁଗ୍ଧ ଭଳି ଏକ ସାତ୍ତ୍ୱିକ ପାନୀୟ ଥିଲା ।

ସୁରା ଥିଲା ଏକ ଅସାତ୍ତ୍ୱିକ ପାନୀୟ । ଋଷି ବ୍ରାହ୍ମଣମାନେ ଏହାକୁ ସ୍ପର୍ଶ କରୁ ନଥିଲେ । ସୁରା ସାମୟିକ ଉତ୍ତେଜନା ଆଣିଥାଏ । ଯେ ଏହାକୁ ପାନ କରେ ସେ ‘ମନ୍ୟୁ’ (କ୍ରୋଧ) ବିରୀଦକ

(ଜୁଆ) ଅଚିତ୍ତି (ଅଜ୍ଞାନ) ର ଶିକାର ହୋଇଥାଏ । ସେଥିପାଇଁ ଋଗ୍ ବେଦରେ ଏହାକୁ ନିନ୍ଦା କରାଯାଇଛି ।(୧୧୧) ବ୍ରାହ୍ମଣଙ୍କ ଲାଗି ସୁରା ପାନ ଶତପଥ ବ୍ରାହ୍ମଣରେ ପୂରାପୂରି ନିଷିଦ୍ଧ କରାଯାଇଛି ।(୧୧୨) ବ୍ରାହ୍ମଣଙ୍କ ପକ୍ଷେ ସୁରା ପାନ ଅମଙ୍ଗଳ ପ୍ରଦ । ସୁରାପାନ କଲେ ଲୋକ ଖୁବ୍ ରାଗିଯାଏ ବୋଲି ଶତପଥ ବ୍ରାହ୍ମଣରେ 'ସୁରାଂପୀତ୍ୱା ରୌଦ୍ରମନା' ବୋଲି କୁହାଯାଇଛି । ସୁରା ନ ପିଇବାକୁ କୁହାଯାଇଛି ।(୧୧୩) ତୈତ୍ତିରୀୟ ବ୍ରାହ୍ମଣରେ ସୋମ ରସକୁ ସୁରା ସହିତ ତୁଳନା କରାଯାଇ ସୋମ ରସକୁ ଉଚ୍ଚ ସ୍ଥାନରେ ରଖାଯାଇଅଛି । ସେଠାରେ ସୋମ ରସକୁ ପୁରୁଷ ହେଲେ 'ସୁରା ସ୍ତ୍ରୀ' ବୋଲି କୁହାଯାଇଛି ।(ପୁମାନଃ ବୈସୋମଃ ସ୍ତ୍ରୀ ସୁରା) କିନ୍ତୁ ବୈଦିକ କାଳରେ ଏହାର ପ୍ରସ୍ତୁତିରେ କୌଣସି ବୈଚିତ୍ର୍ୟ ନଥିଲା । ଚେରମୂଳିକି ପାଣି ସହିତ ମିଶାଇ ଯେଉଁ ରସକୁ ତିଆରି କରାଯାଏ ତାହାକୁ ସୁରା କୁହାଯାଉଥିଲା ।(୧୧୪) ମାତ୍ର କାଳ କ୍ରମେ ସୁରା ଅଧିକ ଲୋକପ୍ରିୟ ହୋଇ ଉଠିଲା । ସମସ୍ତ ଶାସ୍ତ୍ର ବାରଣ ସତ୍ତ୍ୱେ ଏଥିରୁ ଅନୁମାନ କରାଯାଏ ବୈଦିକ ସମାଜରେ ଅପେକ୍ଷାକୃତ କମ୍ ସୁରାହୀନ ଜୀବନ ଯାପନ କରୁଥିଲେ ଏବଂ ବୈଦିକ ସମାଜରେ ଏହା ନିନ୍ଦନୀୟ ଥିଲା ।

**(୩) ବସନ ଭୂଷଣ –** ବୈଦିକ କାଳରେ ବସନ ଭୂଷଣ ଖୁବ୍ ସରଳ ଥିଲା । ଆଜିକାଲି ଭଳି ମୁଖ୍ୟତଃ ଅନ୍ତର୍ବାସ ଓ ବହିର୍ବାସ ଉଭୟ ପୁରୁଷ ଓ ସ୍ତ୍ରୀ ପିନ୍ଧୁଥିଲେ । ଅନ୍ତର୍ବାସକୁ କୁହାଯାଉଥିଲା ଅନ୍ତରୀୟ ଏବଂ ବହିର୍ବାସକୁ କୁହାଯାଉଥିଲା ଉତ୍ତରୀୟ । ଶୀତଦିନେ ଗୁଦର ଭଳି ଗୋଟିଏ ଜିନିଷ ସେମାନେ ବ୍ୟବହାର କରୁଥିଲେ । ଯାହାର ନାମ ଥିଲା 'ପ୍ରାବାର' ।(୧୧୫) ଅନ୍ତରୀୟ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ତଳେ ଯେଉଁ କ୍ଷୁଦ୍ର ବାସଟି ପିନ୍ଧା ଯାଉଥିଲା ତାହାକୁ କୁହାଯାଉଥିଲା 'ନୀବି' ଓ ଅପର ଅଂଶଟିକୁ କୁହାଯାଉଥିଲା 'ବାସ', 'ବହିର୍ବାସ'ର ନାମାନ୍ତର ଥିଲା ଅଧିବାସ ବା ଉତ୍ତରୀୟ । 'ନୀବି'ର ଆକାର ଖୁବ୍ ଛୋଟ ଥିଲା । ଯାହାଦ୍ୱାରା ଆଣ୍ଠୁ ଲୁଚୁ ନଥିଲା । ଧନୀ ଲୋକଙ୍କ କ୍ଷେତ୍ରରେ ଏହା ପାଦକୁ ଛୁଉଁ ଥିଲା ।(୧୧୬) (ଏହା ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ତୃତୀୟ ଭାଗରୁ ଉଦ୍ଧୃତ)

ଉପନୟନ ସମୟରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନଙ୍କ ଲାଗି ଭିନ୍ନ ଭିନ୍ନ ରଙ୍ଗର ପରିଧାନ ପିନ୍ଧିବାର ବିଧାନ ଥିଲା । ବ୍ରାହ୍ମଣ ପିଲାଙ୍କ ଲୁଗାର ରଂଗ ଥିଲା ଲାଲ ଓ ହଳଦିଆ । କ୍ଷତ୍ରିୟ ପିଲାଙ୍କ ଲୁଗାର ରଂଗ ସାମାନ୍ୟ ଲାଲ ଏବଂ ବୈଶ୍ୟ ପିଲାଙ୍କ ପାଇଁ ଲୁଗାର ରଙ୍ଗ ଥିଲା ହଳଦିଆ । ବୈଦିକ କାଳରେ ସାଧାରଣତଃ ସୂତା ଓ ରେଶମ ଲୁଗା ବ୍ୟବହାର କରୁଥିଲେ । 'ଅଜିନ୍' ମୃଗଚର୍ମ ଓ କୁଶ ନିର୍ମିତ ବସ୍ତ୍ରର ଉଲ୍ଲେଖ ବେଦରେ ଦେଖିବାକୁ ମିଳିଥାଏ । ମାତ୍ର ଏହା ସାଧାରଣ ପରିଧାନ ଉଦ୍ଦେଶ୍ୟରେ ନିର୍ମିତ ହୋଇ ନଥିଲା । ନିର୍ଦ୍ଦିଷ୍ଟ କର୍ମ ବିଧି ଉଦ୍ଦେଶ୍ୟରେ ଏହା ବ୍ୟବହୃତ ହେଉଥିଲା । ଶତପଥ ବ୍ରାହ୍ମଣର ଗୋଟିଏ ପଂକ୍ତିରେ ବର୍ଣ୍ଣିତ ହୋଇଅଛି ଯେ "ଯାଜ୍ଞିକଙ୍କ ସ୍ତ୍ରୀଙ୍କୁ କୁଶ ନିର୍ମିତ ଲୁଗାଟିଏ ପିନ୍ଧି ଯଜ୍ଞ ସମ୍ମୁଖରେ ଠିଆ ହେବାକୁ ପଡ଼ିଥିଲା "।(୧୧୭) ମୃଗ ଛାଲ ସବୁବେଳେ ମିଳୁ ନଥିବାରୁ ତା ସ୍ଥାନରେ ଛେଳି ଛାଲ ପିନ୍ଧା ଯାଇପାରେ ବୋଲି ଶତପଥ ବ୍ରାହ୍ମଣରେ କୁହାଯାଇଛି ।(୧୧୮) ଅଥର୍ବ ବେଦରେ ଏହା ଦେବତାମାନଙ୍କର ପରିଧେୟ ବୋଲି କଳ୍ପନା କରାଯାଇଛି ଏବଂ ଏହା ଅତି ପବିତ୍ର ଥିଲା ।(୧୧୯) ଋଗ୍‌ବେଦରେ 'ମରୁଦଗଣ' ମୃଗ ଛାଲ ପିନ୍ଧିଥାନ୍ତି ବୋଲି ଉଲ୍ଲେଖିତ ।(୧୨୦) ମୁନିମାନେ ପ୍ରାୟ 'ମୃଗାଜିନ୍' ବ୍ୟବହାର କରୁଥିଲେ । ଶତପଥ ବ୍ରାହ୍ମଣରେ 'ଅଜିନ' ପରିଧାନ କରିଥିବା ବ୍ୟକ୍ତିର

ଉଲ୍ଲେଖ ମିଳେ । ଦୀକ୍ଷା ଗ୍ରହଣ କରିବା ସମୟରେ 'ମୃଗଚର୍ମ' ପରିଧାନ କରିବାକୁ ହେଉଥିଲା ।(୧୨୧) ଯଜମାନର ସ୍ତ୍ରୀ ମଧ୍ୟ ଯଜ୍ଞ ସମୟରେ 'ଅଧୋବସ୍ତ୍ର' ଉପରେ 'କୁଶବସ୍ତ୍ର' (୧୨୨) ପରିଧାନ କରିବାର ବିଧି ଥିଲା । ସୂତା ଓ ରେଶମ ଲୁଗା ସାଧାରଣତଃ ବ୍ୟବହୃତ ହେଉଥିବାର ଉଦାହରଣ ମିଳେ । ସିନ୍ଧୁ ନଦୀକୁ ଅନେକ ସ୍ଥାନରେ 'ସୁବାସା' ଏବଂ ଉର୍ଣ୍ଣାବତୀ (ସୁନ୍ଦର ବସନା ଓ ରେଶମ ବସନା) ବିଶେଷଣରେ ବିଭୂଷିତ କରାଯାଇଛି । ସିନ୍ଧୁ ନଦୀର କୂଳେ କୂଳେ ଅସଂଖ୍ୟ ମେଣ୍ଢା ପାଳିତ ହେଉଥିଲେ ଏବଂ ସେମାନଙ୍କ ଠାରୁ ଖୁବ୍ ସୁନ୍ଦର ପଶମ ଉତ୍ପନ୍ନ ହେଉଥିଲା । ଏହାକୁ 'ସୁବାସ'ଭାବରେ ଗ୍ରହଣ କରାଯାଇଛି । ଏ ପଶମ ବସ୍ତ୍ର ଗୁଡିକୁ କୁହାଯାଉଥିଲା 'ଶୁନ୍ଧ୍ୟବଃ' । ଏହାର ବର୍ଣ୍ଣନା ଋଗ୍‌ବେଦରେ ମିଳିଥାଏ । ଏହି ବର୍ଣ୍ଣନା ଅନୁସାରେ 'ପୁରଷ୍ଣୀ' (ଆଧୁନିକ ରାଭି) ନଦୀକୂଳରେ ସେତେବେଳେ ରଂଗୀନ ପଶମର ବସ୍ତ୍ର ମିଳୁଥିଲା । ମରୁଦ୍‌ଗଣ ଏହି ଅଞ୍ଚଳରୁ ରଂଗୀନ ପଶମ ଲୁଗା ନେଇ ପିନ୍ଧିଥିଲେ ବୋଲି ଋଗ୍‌ବେଦୀୟ ଗୋଟିଏ ପଂକ୍ତିରେ ବର୍ଣ୍ଣିତ ।(୧୨୩) ଋଗ୍‌ବେଦରେ ଅନ୍ୟତ୍ର ଏହି ରଂଗୀନ ପଶମବସ୍ତ୍ରର ଉଲ୍ଲେଖ ଅଛି ।(୧୨୪) ପଶମ ଦୁଇ ପ୍ରକାର ଥିଲା । ଗୋଟିକର ନାମ ଥିଲା 'ଉର୍ଣ୍ଣା' (ମେଣ୍ଢାବାଳରୁ ଯେଉଁ ପଶମ ଉତ୍ପନ୍ନ ହେଉଥିଲା) ଅନ୍ୟଟିର ନାମ ଥିଲା 'ଆବିକ' । ମାଈ ମେଣ୍ଢାର ନାମ ଥିଲା ଉର୍ଣ୍ଣା, ଛେଳି ଲୋମରୁ ତିଆରି ହେଉଥିବା ପଶମକୁ କୁହାଯାଉଥିଲା 'ଆବିକ' ।(ଅବି—ଛେଳି) 'ବୃହଦାରଣ୍ୟକ ଉପନିଷଦ' ରଚନା ବେଳକୁ 'ଉର୍ଣ୍ଣା ଓ ଆବିକ' ଏ ଦୁଇ ପ୍ରକାର ପଶମର ପରିଧାନ ପ୍ରଚଳିତ ଥିଲା ବୋଲି ଏଥିରୁ ପ୍ରମାଣ ମିଳିଥାଏ (୧୨୫) । ଅପେକ୍ଷାକୃତ କମ୍ ଥଣ୍ଡା ପଡୁଥିବା ଅଞ୍ଚଳରେ କପାସୂତାର ପୋଷାକ ପତ୍ର ବ୍ୟବହାର କରାଯାଉଥିଲା ।

ଅଥର୍ବବେଦର ରଚନା ବେଳକୁ ଆର୍ଯ୍ୟ ଓ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ସାମଜିକ, ସାଂସ୍କୃତିକ ଓ ଭାଗବତ ସମନ୍ୱୟ ବହୁ ପରିମାଣରେ ସ୍ଥାପିତ ହୋଇ ସାରିଥିଲା । ସେମାନଙ୍କର ନୃତ୍ୟ ଗୀତ ଆଦି ସମାରୋହରେ ଆର୍ଯ୍ୟମାନେ ଯାଇ ଯୋଗଦେଉଥିଲେ । ଏଠାରେ ଆର୍ଯ୍ୟେତର ଗୋଷ୍ଠୀର ଲୋକମାନେ 'ଅଜିନ୍' (ମୃଗ ଛାଲ) ଓ 'ବୃତ୍ତି' (ହାତୀ ଛାଲ) ପିନ୍ଧି ନୃତ୍ୟ କରିବା କଥା କୁହାଯାଇଛି । ସେମାନେ ମଧ୍ୟ 'ଦୁର୍ଷ' ଦେହରେ ପକାଉଥିଲେ ବୋଲି କୁହାଯାଇଛି ।(୧୨୬) ଓଡିଆ 'ଦୋସତା' ଶବ୍ଦଟି ଏଥିରୁ ରୂପାନ୍ତରିତ ହେବାର ଅନୁମାନ କରାଯାଏ । ଅଥର୍ବବେଦ ଅନୁସାରେ ମୃତ ବ୍ୟକ୍ତିକୁ 'ତାର୍ପ୍ୟ'ବସ୍ତ୍ର ପିନ୍ଧାଇ ଦେଉଥିଲେ । ଶତପଥ ଦୀକ୍ଷା ଗ୍ରହଣ ଉତ୍ସବରେ ଦୀକ୍ଷିତ ବ୍ୟକ୍ତି 'ତାର୍ପ୍ୟ'ବସ୍ତ୍ର ପିନ୍ଧିବାର ବିଧିଥିଲା । ସାୟଣଭାଷ୍ୟରୁ ଜଣାପଡେ 'ତୃଣ ବା ତ୍ରିପର୍ଯ୍ୟ' ନାମକ ଲତାର ତନ୍ତୁରୁ ସୂକ୍ଷ୍ମ 'ତାର୍ପ୍ୟ' ବସ୍ତ୍ର ନିର୍ମିତ ହେଉଥିଲା । 'କ୍ଷମା' ରୁ ପ୍ରସ୍ତୁତ ହେଉଥିବା 'କ୍ଷୌମ' ଏକ ପ୍ରକାର ରେଶମୀ ବସ୍ତ୍ରର ପ୍ରଚଳନ ମଧ୍ୟ ସେ ସମୟରେ ଥିଲା । ଲାଲ ରଂଗର ରେଶମୀ ବସ୍ତ୍ରକୁ 'କୌସୁମ୍ଭ' କହୁଥିଲେ । ଏହି 'କୌସୁମ୍ଭ' ଥିଲା ସବୁ ଠାରୁ ପବିତ୍ର ବସ୍ତ୍ର ।(୧୨୭)

ଋଗ୍ ବେଦରେ ଅନେକତ୍ର ଲୁଗାକୁ 'ବାସସ୍' ବୋଲି କୁହାଯାଇଛି । ଏହି ଋଗ୍‌ବେଦରେ 'ପୁଷନ୍' ଦେବତାକୁ 'ବାସବାୟ' ବୋଲି କୁହାଯାଇଛି ।(୧୨୯) ଅଧିକ ଗୃହ ପାଳିତ ପଶୁ ଉତ୍ପାଦନ ଲାଗି ଆର୍ଯ୍ୟମାନେ ପୋଷଣ କର୍ତ୍ତା 'ପୁଷନ୍' ଦେବତାଙ୍କୁ ପୂଜା କରୁଥିଲେ । ତାଙ୍କରି ଆଶୀର୍ବାଦରୁ

ସେମାନେ ପଶମ ବୁଣିବାର ପଦ୍ଧତିଟି ବାହାର କରି ପାରିଥିଲେ । ତେଣୁ ସେମାନେ 'ପୁଷନ୍'ଙ୍କ ନାମ ଦେଇଥିଲେ 'ବାସବାୟ' । 'ତାର୍ପ୍ୟ' ହେଉଛି 'ତ୍ରିପର୍ଯ୍ୟ'ଲତାର ତନ୍ତୁରେ ତିଆରି ସୂକ୍ଷ୍ମ ବସ୍ତ୍ର । ବୈଦିକ ସାହିତ୍ୟରେ ସୂତା ବସ୍ତ୍ରର ବୟନ ବିଷୟରେ ବହୁ ସ୍ଥାନରେ ବର୍ଣ୍ଣନା ଅଛି । ପତଳା ଶାଢୀ ଓ ଲୁଗା ବୁଣିବାର ଦକ୍ଷତା ସେମାନଙ୍କ ଠାରେ ଥିଲା । ଶାଢୀର ସୁନ୍ଦର ସୁନ୍ଦର ଝାଲର ତିଆରି କରୁଥିଲେ । ଯଜ୍ଞ କର୍ମ ତଥା ଧାର୍ମିକ କର୍ମାଣିରେ ନୂଆ ଲୁଗା ପିନ୍ଧୁଥିଲେ । ସୁନ୍ଦରୀ ଯୁବତୀମାନେ ରଙ୍ଗୀନ ଶାଢୀ ବ୍ୟବହାର କରିବାର କଥା 'ପୁରାଣବତୀ' ଉଷାର ବର୍ଣ୍ଣନାରୁ ପ୍ରମାଣିତ ହୁଏ । ଲୁଗା ଧଡ଼ିରେ ସୁନାର ବିଭିନ୍ନ ଜରି କାମ କଥା ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି ।(୧୩୦) ଏହାକୁ 'ପେଶସ୍' କୁହାଯାଉଥିଲା । ଏଥିରୁ ମନେ ହୁଏ ବୈଦିକ ଆର୍ଯ୍ୟମାନଙ୍କୁ ସିଲେଇ କାମ ଜଣାଥିଲା । ସ୍ତ୍ରୀମାନେ ବିଚିତ୍ର ଲୁଗା ପିନ୍ଧି ପୁରୁଷମାନଙ୍କ ମନକୁ ଆକର୍ଷଣ କରିବା କଥା ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି ।(୧୩୧) ଅନେକ ଲୋକ ଧଡିରେ ଭରି ଦିଆ ଲୁଗା ପିନ୍ଧୁଥିଲେ । ଏହାକୁ 'ଆରୋକ' ବୋଲି ଶତପଥ ବ୍ରାହ୍ମଣରେ କୁହାଯାଇଛି ।(୧୩୨) ଯେଉଁ ପୋଷାକ ଦେହକୁ ଭଲ ମାନୁ ଥିଲା ତାହାକୁ 'ସୁରଭି' କୁହାଯାଉଥିଲା ।(୧୩୩) ଆଉ ଗୋଟିଏ ପୋଷାକର ନାମଥିଲା 'ପାଣ୍ଡୁ' । 'ଶତପଥ ବ୍ରାହ୍ମଣ' ଅନୁସାରେ ରାଜାମାନେ ଯଜ୍ଞ କଲାବେଳେ ଏହା ପିନ୍ଧୁଥିଲେ ।(୧୩୪) ଝେଲମ୍ ଓ ରାଭି ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳକୁ 'ପାଣ୍ଡ୍ୟ' କୁହାଯାଏ । ଏହି ଅଂଚଳରେ 'ପାଣ୍ଡୁବସ୍ତ୍ର' ଉତ୍ପାଦନ ହୋଇଥିବା କଥା ତତ୍ତ୍ୱବିତ୍‌ମାନେ କୁହନ୍ତି । 'ଅତକ୍' ଅନ୍ୟ ଏକ ଧରଣର ପୋଷାକ ଥିଲା । ଏହା ଆଣ୍ଠୁ ତଳକୁ ଲମ୍ବି ଥିଲା । ଋଗ୍‌ବେଦରେ ଉଲ୍ଲେଖ ଅଛି 'ମରୁଦ୍‌ଗଣ' 'ହିରଣ୍ମୟାନ୍ ଅତ୍କାନ' ବା ସୁନାର 'ଅତକ' ପିନ୍ଧୁ ଥିଲେ ।(୧୩୫) 'ଅତକ୍' ସାଧାରଣତଃ ଧନୀଲୋକମାନେ ପିନ୍ଧୁଥିଲେ ଏବଂ ଏହାକୁ ସୁନା ଜରି ଦେଇଇ ସିଲାଇ କରାଯାଉଥିଲା । ଅନେକ ସ୍ଥାନରେ ଏହାକୁ ଦେବତାମାନଙ୍କ ପୋଷାକ ବୋଲି କୁହାଯାଇଛି ।

ବୈଦିକ କାଳରେ ଲୋକେ ସାଧାରଣତଃ ଦୁଇଟି ବସ୍ତ୍ର ପିନ୍ଧୁଥିଲେ । ଏହାକୁ 'ଅଧୋବାସ ଓ ଅଧିବାସ' ବୋଲି କୁହାଯାଉଥିଲା । 'ଅଧୋବାସ' ହେଲା ତଳ ଲୁଗା, 'ଅଧିବାସ' ହେଲା ଉପର ଲୁଗା । ଏହାକୁ ଉତ୍ତରୀୟ ବା ଚଦ୍ଦର ବୋଲି କୁହାଯାଉଥିଲା । ଉଭୟ ସ୍ତ୍ରୀ ଓ ପୁରୁଷ ଏହି ନିୟମରେ ଲୁଗା ପିନ୍ଧୁଥିଲେ । 'ଅଧୋବାସ' ଥିଲା ଧୋତି, ଶାଢୀ କିମ୍ବା ଘାଘରା । ସେହିପରି 'ଅଧିବାସ'କୁ ଆଜିକାଲିର 'ଦୋପଟା' ବା 'ଚଦ୍ଦର' ସହିତ ତୁଳନା କରାଯାଇଥିଲା । ଏହାକୁ ମଧ୍ୟ ବେଳେବେଳେ 'ଉପବସନ' କିମ୍ବା 'ପର୍ଯ୍ୟାନହଣ' ବୋଲି କୁହାଯାଇଥାଏ । 'ନୀବିଂ କରୋତି', (ବା ନୀବି ବାନ୍ଧୁଛନ୍ତି) ଏହାର ପ୍ରୟୋଗ ବେଦରେ ରହିଅଛି । 'ନୀବି' ସଂପର୍କରେ ଭିନ୍ନମତ ରହିଅଛି । ବୈଦିକ ସାହିତ୍ୟ ଓ ସଂସ୍କୃତି ପୁସ୍ତକ (ଅଭିନ୍ନ ଚନ୍ଦ୍ର ଦାଶ) ପୃ ୧୩୦ରେ ଉଲ୍ଲେଖ କରାଯାଇଛି "ଅଣ୍ଟା ପାଖରେ ଧୋତି ପିନ୍ଧିବା ବେଳେ ଖୋସଣି ବା 'ନୀବି' ବାନ୍ଧୁଥିଲେ । ଏହା 'ନୀବିଂ କରୋତି' ରୁ ପ୍ରମାଣିତ ହୁଏ । ନୀବି ଅଣ୍ଟାର ଗୋଟିଏ ସ୍ଥାନରେ ବନ୍ଧା ଯାଉଥିଲା" । ମାତ୍ର 'ଭାରତୀୟ ସଂସ୍କୃତି ତୃତୀୟ ଭାଗ'ରେ ସୁରେନ୍ଦ୍ର ନାଥ ଶତପଥୀ ପୃ୩୮ରେ କହିଅଛନ୍ତି, 'ନୀବି' ବନ୍ଧନ ସେତେବେଳେ ଉଭୟ ସ୍ତ୍ରୀ ଏବଂ ପୁରୁଷଙ୍କ ପାଇଁ ପ୍ରଯୁଜ୍ୟ ଥିଲା । ଏହି 'ନୀବି' ହେଉଛି ଏକ ଭିତର ପିନ୍ଧା ଲୁଗା । ଯାହା ଉପରେ ଲୁଗା ବା ଶାଢୀ ବା ଘାଗରା ପିନ୍ଧା ଯାଉଥିଲା । ଏବେ ଭାରତୀୟମାନଙ୍କ ପୋଷାକ ପରିଛଦର ବହୁତ ପରିବର୍ତ୍ତନ କରାଗଲାଣି । ତେଣୁ ଏହି 'ନୀବି'ର ବ୍ୟବହାର ଉଠିଗଲାଣି । ଏହା ଅନ୍ୟ ରୂପରେ ଦେଖା ଦେଲାଣି ।

ଯଥା ସ୍ତ୍ରୀମାନଙ୍କ ପାଇଁ ସାୟା ଏବଂ ପୁରୁଷ ମାନଙ୍କ ପାଇଁ 'ଚଡି' ବା 'ଅଣ୍ଡର ଓୟାର୍'। 'ନୀବି'କୁ ଆମେ ସାଧାରଣ ଅର୍ଥରେ ଖୋସଣି ବା ଗଣ୍ଠି ବୋଲି କହିବାକୁ ଆରମ୍ଭ କଲୁଣି। ''କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ 'ନୀବି'ଥିଲା ଏକ ସ୍ୱତନ୍ତ୍ର ପରିଧାନ ଏବଂ ତାହା ପିନ୍ଧିଲା ବେଳେ ଗଣ୍ଠି ପକାଇବାକୁ ପଡୁଥିଲା। ତାହାର ନାମ ହେଉଛି 'ନୀବି ବନ୍ଧନ '। ଏହି 'ନୀବି'କୁ କେତେବେଳେ ଅଣ୍ଟାର ଗୋଟିଏ ପଟେ ବନ୍ଧା ଯାଉଥିଲା ତ ଆଉକେତେବେଳେ ଦୁଇପଟେ ବନ୍ଧା ଯାଉଥିଲା। ସ୍ତ୍ରୀମାନେ ଅଣ୍ଟାର ଡାହାଣ ପଟେ 'ନୀବି' ବାନ୍ଧୁଥିଲେ। ତାହା ଉପରେ ସେମାନେ ଘାଘରା ପିନ୍ଧୁ ଥିବାରୁ ଏହି ଗଣ୍ଠି ବାହାରକୁ ଦିଶୁ ନଥିଲା। ସାଧାରଣତଃ ଏହି 'ନୀବି'ର ବ୍ୟବହାର ସ୍ତ୍ରୀମାନଙ୍କ ମଧ୍ୟରେ ବହୁଳ ଭାବରେ ପ୍ରଚଳିତ ଥିଲା।'' ଉଭୟେ ବେଦ ଓ ବେଦୋତ୍ତର ସାହିତ୍ୟରେ ଆମେ 'ନୀବି' ସଂପର୍କରେ ବହୁଳ ଉଲ୍ଲେଖ ଥିବାର ଜାଣି ପାରୁ।(୧୩୬) ବୈଦିକ କାଳରେ କଚ୍ଛା ମାରି ଲୁଗା ପିନ୍ଧିବାର ବିଧି ନଥିଲା ବୋଲି ବଳଦେବ ଉପାଧ୍ୟାୟ ମତ ଦିଅନ୍ତି।(୧୩୭)

ପ୍ରାଥମିକ ଅବସ୍ଥାରେ 'ଶାଢୀ' ପିନ୍ଧୁ ନଥିଲେ। ସେମାନେ ହୁଏତ 'ଘାଘରା' ପିନ୍ଧୁଥିଲେ। ବୈଦିକ ସ୍ତ୍ରୀଙ୍କ ଅଧିବାସ ବା ଉତ୍ତରୀୟ କିଭଳି ପବନରେ ଫର ଫର ହୋଇପଡୁ ଥିଲା ତାହା ଋଗ୍ ବେଦରେ ବର୍ଣ୍ଣିତ ହୋଇଛି। ଏ ସଂପର୍କରେ ଗୋଟିଏ ଅଖ୍ୟାନର ଅବତାରଣା କଲେ ଠିକ୍ ଜଣା ପଡିବ। 'ମୁଦ୍‌ଗଲ' ବୋଲି ଜଣେ ଋଷି ଥିଲେ। ତାଙ୍କ ସ୍ତ୍ରୀଙ୍କ ନାଁ ହେଉଛି 'ମୁଦ୍‌ଗଲାନୀ'। 'ମୁଦ୍‌ଗଲ' ଥରେ ରଥ ଦୌଡ଼ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲେ। 'ମୁଦ୍‌ଗଲାୟନୀ'ଙ୍କୁ ରଥ ଚଳାଇବାର ପଦ୍ଧତି ଭଲ ଭାବରେ ଜଣା ଥିଲା। ସେ ନିଜ ସ୍ୱାମୀଙ୍କୁ ସହାୟତା ଦେଲେ। ଏହା ଫଳରେ 'ମୁଦ୍‌ଗଲ' ରଥ ପ୍ରତିଯୋଗିତାରେ ଜିତିଲେ। ସେତେବେଳେ 'ମୁଦ୍‌ଗଲାନୀ'ଙ୍କ ଉତ୍ତରୀୟ ଫରଫର ହୋଇ ପବନରେ ଉଡୁଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ।(୧୩୮) ସେଠାରେ ଆଉ ମଧ୍ୟ କୁହାଯାଇଛି ଏହାଙ୍କ (ମୁଦ୍‌ଗଲାନୀଙ୍କ) ଉତ୍ତରୀୟ ପବନରେ ଉଡୁଥିଲା। (୧୩୯)

ସ୍ତ୍ରୀମାନେ ବକ୍ଷୋବାସ ବା 'ଗ୍ରେନକ' ବ୍ୟବହାର କରୁଥିଲେ। ଏହାକୁ କୁହାଯାଉଥିଲା 'ପ୍ରତିଧି'। ଏହା ସ୍ତ୍ରୀ ମାନଙ୍କ ବକ୍ଷୋଦେଶକୁ ନିବିଡ ଭାବରେ ଆବୃତ କରି ରହୁଥିଲା। ଅଥର୍ବ ବେଦରେ ଏହା ଉଲ୍ଲିଖିତ ହୋଇଛି।(୧୪୦) 'ପ୍ରତିଧି'ର ବ୍ୟବହାର ନାରୀମାନଙ୍କର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ସଂଗେ ସଂଗେ ନମ୍ରତା ଓ ଲଜ୍ଜାଶୀଳତାର ପରିଚୟ ପ୍ରଦାନ କରୁଥିଲା।

'ଉଷ୍ଣୀଷ'ର ବ୍ୟବହାର ବୈଦିକ ଯୁଗରେ ଥିଲା। ଏହା ଖରା ଓ କାକରରୁ ମୁଣ୍ଡକୁ ରକ୍ଷା କରୁଥିଲା। ବ୍ୟକ୍ତିର ସୌନ୍ଦର୍ଯ୍ୟ ବୃଦ୍ଧିରେ ମଧ୍ୟ ସାହାଯ୍ୟ କରୁଥିଲା। ଏହି 'ଉଷ୍ଣୀଷ' ବା ପଗଡି ଉଭୟେ ପୁରୁଷ ଏବଂ ସ୍ତ୍ରୀମାନେ ପିନ୍ଧୁଥିଲେ। ବାଜପେୟ ଯଜ୍ଞ ସମାହିତ କଲାବେଳେ ରାଜାମାନେ ପଗଡି ପିନ୍ଧୁଥିଲେ ବୋଲି 'ଶତପଥ ବ୍ରାହ୍ମଣ'ରେ ବର୍ଣ୍ଣନା କରାଯାଇଛି।(୧୪୧) ଏହି ଉଷ୍ଣୀଷର ପ୍ରୟୋଗ ଅଥର୍ବ ବେଦରେ ରହିଅଛି।(୧୪୨) ଏହି 'ଉଷ୍ଣୀଷ' ବା ପଗଡି ସୂତା ଲୁଗାରୁ ପ୍ରସ୍ତୁତ ହେଉଥିଲା। 'ବ୍ରାତ୍ୟ' ଉତ୍ସବରେ ପଗଡି ଦିନ ପରି ଉଜ୍ଜ୍ୱଳ ଦିଶୁଥିଲା। ରାତ୍ରି ପରି କଳାକେଶକୁ 'ପଗଡି' ବିଭୂଷିତ କରୁଥିଲା। ଯଜମାନ ପରି ଋତ୍ୱିକ ପୁରୋହିତ ମଧ୍ୟ ଯଜ୍ଞ ସମୟରେ ପଗଡି ପିନ୍ଧୁଥିଲେ। ଏହି ପୁରୋହିତ ଲାଲ ପଗଡି ପିନ୍ଧୁଥିଲେ। ପଗଡି ବଙ୍କା ଭାବରେ ପିନ୍ଧା ଯାଉଥିଲା। ଇନ୍ଦ୍ରପତ୍ନୀ 'ଉଷ୍ଣୀଷ' ବ୍ୟବହାର

କରିବାର ବର୍ଣ୍ଣନା ବେଦରେ ରହିଅଛି ।(୧୪୩) 'ପେଶସ୍' ଏକ ପ୍ରକାର କାରୁକାର୍ଯ୍ୟ ଖଚିତ ବସ୍ତ୍ର । 'ସୁନା'ର ଜରି ଦ୍ୱାରା 'ପେଶସ୍' ବସ୍ତ୍ର ବୁଣା ଯାଉଥିଲା । ଦମ୍ପତି ସୁନା 'ପେଶସ୍' ପିନ୍ଧୁଥିଲେ ।(୧୪୪) ଅଶ୍ୱିନୀ ଧଳା ଏବଂ କଳା 'ପେଶସ୍' ପିନ୍ଧିଥିବାର ଉଲ୍ଲେଖ ମିଳେ ।(୧୪୫)

ଋଗ୍‌ବେଦରେ ସ୍ତ୍ରୀମାନେ ବେଣୀ ପକାଉ ଥିବାର ବର୍ଣ୍ଣନା ରହିଅଛି ।(୧୪୬) ବୈଦିକ ସ୍ତ୍ରୀମାନଙ୍କ କେଶ ପ୍ରଚୁର ଏବଂ ସୁସ୍ଥ ଥିଲା । ଏହି ବେଦରେ ଗୋଟିଏ ସ୍ଥାନରେ ସ୍ତ୍ରୀମାନଙ୍କର ପିଠିରେ ଚାରି ଗୋଟି ବେଣୀ ଝୁଲୁଥିବାର ବର୍ଣ୍ଣନା ରହିଅଛି ।(୧୪୭) ବୈଦିକ ଆର୍ଯ୍ୟମାନେ ଯେଉଁ ପୋଷାକ ପତ୍ର ବ୍ୟବହାର କରୁଥିଲେ ଏବେ ମଧ୍ୟ ଭାରତୀୟମାନେ ସାମନ୍ୟ ପରିବର୍ତ୍ତନ ସହ ପ୍ରାୟ ତାହାହିଁ ବ୍ୟବହାର କରୁଅଛନ୍ତି ।

ବୈଦିକ ଆର୍ଯ୍ୟମାନେ 'ଜୋତା'ର ବ୍ୟବହାର କରୁଥିଲେ ।(୧୪୮) ଯୁଦ୍ଧ ସମୟରେ ସୈନିକମାନେ 'ପଦ୍ମଙ୍କଣୀ' ପଦତ୍ରାଣ ବା ଜୋତା ପିନ୍ଧୁଥିଲେ । ଜଙ୍ଘ ପର୍ଯ୍ୟନ୍ତ ଏକ ପ୍ରକାର 'ପଦତ୍ରାଣ' ପିନ୍ଧୁଥିବାର ଉଲ୍ଲେଖ ମିଳେ ।(୧୪୯) ଯଜୁର୍ବେଦୀୟ 'ତୈତ୍ତିରୀୟ ସଂହିତା' ଓ 'ଶତପଥ ବ୍ରାହ୍ମଣ'ରେ ଜୋତା ଅର୍ଥରେ 'ଉପାନହ' ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ ।(୧୫୦) ମୃଗ ଏବଂ ଶୂକର ଚର୍ମରୁ ଜୋତା ପ୍ରସ୍ତୁତ ହେଉଥିଲା । ଛତା ଏବଂ ଦଣ୍ଡ ବୈଦିକ ଆର୍ଯ୍ୟର ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ ଥିଲା ।

ଆର୍ଯ୍ୟମାନଙ୍କର 'ଆଭୂଷଣ' ଅଧିକ ବୈଚିତ୍ୟ ପୂର୍ଣ୍ଣଥିଲା । ଋଗ୍‌ବେଦରେ ବିଭିନ୍ନ ପ୍ରକାର ଅଳଙ୍କାରର ବର୍ଣ୍ଣନା ମିଳେ । 'କର୍ଣ୍ଣ ଭୂଷଣ' କର୍ଣ୍ଣର ଅଳଙ୍କାର ଥିଲା ଏବଂ ପୁରୁଷମାନେ ତାହାକୁ ପିନ୍ଧୁଥିଲେ । କର୍ଣ୍ଣ ଭୂଷଣ ସୁନାରେ ମଧ୍ୟ ତିଆରି ହେଉଥିଲା (ହିରଣ୍ୟ ବର୍ଣ୍ଣ) । ସ୍ୱର୍ଣ୍ଣ ନିର୍ମିତ 'ନିଷ୍କ' ଅତି ପ୍ରସିଦ୍ଧ ଅଳଙ୍କାର ଥିଲା ।(୧୫୧) 'ନିଷ୍କ'କୁ କଣ୍ଠରେ ପିନ୍ଧୁଥିଲେ । ମୁଦ୍ରା ଆକାରରେ ମଧ୍ୟ ନିଷ୍କ ବ୍ୟବହୃତ ହେଉଥିଲା । ଋଗ୍‌ବେଦରେ ଗୋଟିଏ ସ୍ଥାନରେ ଜଣେ ସ୍ତ୍ରୀ ଲୋକକୁ କୁହାଯାଇଛି 'ନିଷ୍କଗ୍ରୀବା' । 'ନିଷ୍କଗ୍ରୀବା'ର ଅର୍ଥ ହେଉଛି ଯେଉଁ ସ୍ତ୍ରୀର ଗଳାରେ 'ନିଷ୍କ' ଅଳଙ୍କାର ଶୋଭା ପାଉଛି । ଅନେକ ଗୁଡିଏ 'ନିଷ୍କ' ମୁଦ୍ରାକୁ ଏକତ୍ରୀତ କରି 'ହାର' ହିସାବରେ ବ୍ୟବହାର କରାଯାଉଥିଲା । ଏଥିରୁ ଅନୁମାନ କରାଯାଏ 'ନିଷ୍କ'ର ଆକାର ବର୍ତ୍ତୁଳ ବା ଚାରିକୋଣିଆ ଥିଲା । 'ରୁକମ୍' ହେଉଛି ବୈଦିକ କାଳର ଅନ୍ୟତମ କଣ୍ଠଭୂଷା । ତାହା କଣ୍ଠରୁ ଛାତି ପର୍ଯ୍ୟନ୍ତ ଝୁଲି ପଡୁଥିଲା ।(୧୫୨) ସୂତାରେ ତାହାକୁ ଲଟକାଇ ଦିଆଯାଉଥିଲା ।(୧୫୩) ଏହା ଥିଲା ଗୋଲାକାର ଛୋଟ ଥାଳିଆ ଆକାରର । ଯେଉଁ ସୂତାରେ ତାହାକୁ ଝୁଲାଇ ଦିଆଯାଉଥିଲା ତାହାକୁ କୁହାଯାଉଥିଲା 'ରକ୍ମପାଶ' ।(୧୫୪) ଶତପଥ ବ୍ରାହ୍ମଣରେ 'ରକ୍ମର' ବ୍ୟବହାର ଅଛି ।(୧୫୫) 'ମଣି ଓ ମୋତି'କୁ ସୂତାରେ ଗୁନ୍ଥି ସେ କାଳରେ ସ୍ତ୍ରୀମାନେ ପିନ୍ଧୁଥିଲେ । ଋଗ୍‌ବେଦରେ ଉଲ୍ଲେଖିତ 'ମଣିଗ୍ରୀବ' ଶବ୍ଦରୁ ଜଣାପଡେ ମଣିକୁ ସୂତାରେ ଗୁନ୍ଥି ଗଳାରେ ପିନ୍ଧୁଥିଲେ । ବୈଦିକ ସ୍ତ୍ରୀମାନେ କାନରେ 'କର୍ଣ୍ଣ ଶୋଭନ' ପିନ୍ଧୁଥିଲେ । ଏହା ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି ।(୧୫୬) ଏହା ସୁନାରେ ତିଆରି ହେଉଥିଲା । ଗୋଟିଏ ସ୍ଥାନରେ ବୃତ୍ରାସୁରର ଅନୁଚରମାନେ ମଣି ନିର୍ମିତ ଆଭୂଷଣ ପିନ୍ଧୁଥିବାର ବର୍ଣ୍ଣନା ରହିଅଛି ।(୧୫୭) ସେମାନେ ସୁନା ରଂଗର ମଣିରେ ଝଟକୁ ଥିଲେ । ବିବାହ ସମୟରେ ବର ସୁନାର ଗହଣାମାନ ପିନ୍ଧି ସୁନ୍ଦର ଦିଶୁଥିବାର ବର୍ଣ୍ଣନା ବେଦରେ ରହିଅଛି ।(୧୫୮) ସେତେବେଳେ ଭାରତରେ ସୁନାର ପାଚୁର୍ଯ୍ୟ ଖୁବ୍ ଥିଲା ବୋଲି ମନେହୁଏ । ପୁରୁଷମାନେ

ବହୁ ପରିମାଣରେ 'ସ୍ରକ୍' ବା ଫୁଲମାଳ ପିନ୍ଧୁଥିଲେ ।(୧୫୯) ଏହା ବ୍ୟତୀତ ହସ୍ତ ଓ ପାଦରେ ସେତେବେଳେ ଆଭୂଷଣ ପିନ୍ଧା ଯାଉଥିଲା । ହାତରେ ସୁନାର କଙ୍କଣ ବା କଡ଼ା ପିନ୍ଧାଯାଉଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି । ବାଜୁବନ୍ଧ ବା ବଳୟର ବ୍ୟବହାର ମଧ୍ୟ ସେତେବେଳେ ଥିଲା ।(୧୬୦) ଏହି ଆଭୂଷଣ ସବୁ ସୁନାରେ ତିଆରି ହେଉଥିଲା । ପିଲାମାନେ ମଧ୍ୟ ଅଳଙ୍କାର ପିନ୍ଧୁଥିଲେ ବୋଲି ବେଦରେ ବର୍ଣ୍ଣନା କରାଯାଇଛି ।(୧୬୧) ଏଥିରୁ ଅନୁମିତ ହୁଏ ବୈଦିକ ସମାଜରେ ସମସ୍ତେ ଅଳଙ୍କାର ପିନ୍ଧୁଥିଲେ । ଏହି ଅଳଙ୍କାର ଗୁଡିକର ବିଶେଷ ପ୍ରୟୋଗ ବିବାହ ସମୟରେ ହେଉଥିଲା ।

ପୁରୁଷମାନେ ମଧ୍ୟ ସ୍ତ୍ରୀମାନଙ୍କ ଭଳି ବେଣୀ ବାନ୍ଧୁଥିଲେ । ଏହାକୁ 'କପର୍ଦ୍ଦ' ବୋଲି କୁହାଯାଉଥିଲା । ମୁନି ଋଷିଙ୍କ ପାଇଁ ଏହାକୁ 'ଜଟାଜୁଟ' ବୋଲି କୁହାଯାଉଥିଲା । ଏହି 'କପର୍ଦ୍ଦ' ବାନ୍ଧିବାର ଶୈଳୀ ଭିନ୍ନ ଭିନ୍ନ ଥିଲା । ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି ଋଷି ବଶିଷ୍ଠ ଓ ତାଙ୍କ ଶିଷ୍ୟମାନେ ମୁଣ୍ଡର ଡାହାଣ ପଟରେ କପର୍ଦ୍ଦ ବାନ୍ଧୁଥିଲେ । ସେଥିପାଇଁ ସେମାନଙ୍କୁ କୁହାଯାଉଥିଲା 'ଦକ୍ଷିଣ ତସ୍କପର୍ଦ୍ଦ'।(୧୬୨) ରୁଦ୍ର ଓ ପୁଷନ ଦେବତା ଦ୍ୱୟଙ୍କୁ ଋଗ୍‌ବେଦରେ 'ବେଣୀଯୁକ୍ତ' ବୋଲି କୁହାଯାଇଛି ।(୧୬୩) ଏହି ବେଦରେ ଚାରି କପର୍ଦ୍ଦ ଥିବା ଜଣେ ଯୁବତୀଙ୍କର ନାମ ଉଲ୍ଲେଖ ରହିଛି ।(୧୬୪) ରୋଦସି (ଆକାଶ)କୁ ବେଣୀ ବାନ୍ଧି ନଥିବା ଗୋଟିଏ ମୁକ୍ତାକେଶା ନାରୀ ସହିତ ତୁଳନା କରାଯାଇଛି । ଋଗବେଦରେ ଏହାକୁ କୁହାଯାଇଛି 'ବିଷିତସ୍ତୁକ' ବା ବେଣୀନଥିବା ବା ବାଳ ମୁକୁଳା କରିଥିବା ବ୍ୟକ୍ତି ।(୧୬୫) ଏହି ଋଗ୍ ବେଦରେ ଜୈନିକ ଦେବୀଙ୍କୁ 'ସୁକପର୍ଦ୍ଦା, ସୁକରୀରା, ସ୍ୱୋପାଶା' ବୋଲି କୁହାଯାଇଛି । 'ସୁକପର୍ଦ୍ଦା' ହେଲା ଭଲ ବେଣୀଥିବା ସ୍ତ୍ରୀ । 'କୁରୀର' ହେଉଛି ଏକ ପ୍ରକାର ମୁକୁଟ ଯାହା ବିବାହ ସମୟରେ ପିନ୍ଧା ଯାଉଥିଲା । ଏହା ଶିଙ୍ଗ ଆକାରରେ ଥିଲା । 'ସ୍ୱୋପାଶା ବା ଓପାଶର' ଅର୍ଥ ହେଉଛି ଆଜି କାଲି ସ୍ତ୍ରୀମାନେ ଯେଉଁ ମାୟାକେଶ ପିନ୍ଧିଥାନ୍ତି 'ସ୍ୱୋପାଶା' ସେହି ଧରଣର ।(୧୬୬) ଆଉ ଏକ ପ୍ରକାର କେଶ ବିନ୍ୟାସ ଥିଲା 'କୁମ୍ବ'। ସ୍ତ୍ରୀମାନେ ପଛ ଭାଗରେ 'କୁମ୍ବ' ଆକୃତିର କେଶ ରଚନା କରିଥାନ୍ତି ।

ନାରୀମାନଙ୍କର କେଶ ବର୍ଦ୍ଧନ ଲାଗି ସେତେବେଳେ ବିଭିନ୍ନ ପ୍ରକାର ଚେରମୂଳର ବ୍ୟବହାର କରାଯାଉଥିଲା । ଜମଦଗ୍ନି ଋଷି ନିଜ ଝିଅର କେଶ ବର୍ଦ୍ଧନ ଲାଗି ମାଟି ଖୋଳି ଏକ ପ୍ରକାର ଔଷଧ ଆବିଷ୍କାର କରିଥିବା ଅଥର୍ବ ବେଦରେ କୁହାଯାଇଛି ।(୧୬୭)

ବୈଦିକ ଆର୍ଯ୍ୟମାନେ ଗାଧୋଇବା ପୂର୍ବରୁ ଦେହରେ ଏକ ପ୍ରକାର ପ୍ରଲେପ ଦେଉଥିଲେ । ନାକ, କାନ ଓ ଦେହ ସାରାଅଂଶକୁ ବାସନା କରିବା ପାଇଁ ଏକ ପ୍ରକାର ବାସନା ଜିନିଷ ଲଗା ଯାଉଥିଲା । ତାହାର ନାମ ଥିଲା 'ସ୍ଥାପର'। ବୈଦିକ ଆର୍ଯ୍ୟମାନେ ଉଭୟେ ମନ ଓ ଦେହର ପରିଚ୍ଛନ୍ନତା ଓ ସୌନ୍ଦର୍ଯ୍ୟ ଉପରେ ଅଧିକ ଯତ୍ନ ନେଉଥିଲେ । ବୈଦିକ କାଳରେ ପୁରୁଷମାନେ ସାଧାରଣତଃ ନିଶ ଦାଢି ରଖୁଥିଲେ । ଏହା ପୁରୁଷତ୍ୱର ଲକ୍ଷଣ ବୋଲି ବିବେଚନା କରାଯାଉଥିଲା । ବୈଦିକ ଗ୍ରନ୍ଥରେ 'ଶ୍ମଶ୍ରୁ' ଶବ୍ଦର ପ୍ରୟୋଗ ଅଛି ।(୧୬୮) କ୍ଷୌର କର୍ମ ମଧ୍ୟ ସେ କାଳରେ ଥିଲା ।(୧୬୯) ମାତ୍ର ଋଗ୍‌ବେଦରେ ଏହାର ସୂଚନା ନାହିଁ । ସେତେବେଳେ ସୈନ୍ୟମାନେ ଜୋତା ସହିତ ସାଞ୍ଜୁ ମଧ୍ୟ ପିନ୍ଧୁଥିଲେ । ଏହା ଲୁହାରେ ତିଆରି ହେଉଥିଲା । 'ଶତପଥ ବ୍ରାହ୍ମଣ'ରେ ଏହାର ପ୍ରମାଣ ମିଳିଥାଏ ।(୧୭୦)

ଶରୀରକୁ ସବଳ, ସୁସ୍ଥ , ସୌନ୍ଦର୍ଯ୍ୟପୂର୍ଣ୍ଣ କରିବାପାଇଁ ବୈଦିକ ଆର୍ଯ୍ୟମାନେ ବିଶେଷ ଯତ୍ନ ନେଉଥିଲେ । ସେଥିପାଇଁ କୌଣସି 'ଯକ୍ଷ୍ମ' ( ସାଧାରଣ ଅସୁସ୍ଥତା ) ହେଲା ମାତ୍ରେ ଔଷଧର ବ୍ୟବହାର କରୁଥିଲେ । ଏହି ଚିକିତ୍ସା ପାଇଁ ଅଶ୍ୱିନକୁମାର ଦୁହିଙ୍କୁ ବହୁ ପ୍ରଶଂସା କରାଯାଇଛି । ଏମାନେ ଚକ୍ଷୁ ଚିକିତ୍ସା ଓ ସାଧାରଣ ଚିକିତ୍ସା କରୁଥିଲେ । ଏହି ଚିକିତ୍ସା ଦ୍ୱାରା ଚେବନ ଯୌବନ ପ୍ରାପ୍ତ ହୋଇଥିଲେ । 'ରଷିରେଭ' ଜଳରୁ ଉଦ୍ଧାର ପାଇଥିଲେ । 'ବିଶପଳା'କୁ ଲୁହା ଜଙ୍ଘ ମିଳିଥିଲା । ଅଥର୍ବବେଦରେ ନାନାପ୍ରକାର ରୋଗର ବର୍ଣ୍ଣନା ମିଳିଥାଏ । ଏଗୁଡିକ ହେଲା 'ତକମ' ଏକ ପ୍ରକାର ଜ୍ୱର, ମୁଣ୍ଡ ବ୍ୟଥା, ହଳଦିଆ ପାଣ୍ଡୁ, ଚକ୍ଷୁ ରୋଗ, ଜଖମ୍, ସର୍ପ ଦଂଶନ, କୁଷ୍ଠ ଇତ୍ୟାଦି । ପିଲାଙ୍କୁ ଶଙ୍ଖ ରୋଗ ହେଉଥିଲା । ଗର୍ଭାବସ୍ଥାରେ ସୁଖ ପ୍ରସବ ନିମିତ୍ତ ବିଶେଷ ଯତ୍ନ ନିଆ ଯାଉଥିଲା ।

**(୪) ଆମୋଦ ପ୍ରମୋଦ** — ଆମୋଦ ପ୍ରମୋଦରେ ଜୀବନ ଅତିବାହିତ କରିବା ଥିଲା ବୈଦିକ ଆର୍ଯ୍ୟମାନଙ୍କର ଜୀବନର ଲକ୍ଷ୍ୟ । ଏ ସମୟରେ ଜୀବନ ସଂଘର୍ଷ ମୁକ୍ତ ରହୁଥିଲା । ବୈଦିକ କାଳରେ ଏକ ଉତ୍ସବ ପାଳିତ ହେଉଥିଲା ଯାହାର ନାମ ଥିଲା 'ସମନ ଉତ୍ସବ' ।(୧୭୧) ଏହା ଏକ ସାର୍ବଜନୀନ ଉତ୍ସବ ଥିଲା । ଏଥିରେ ସ୍ତ୍ରୀ ପୁରୁଷ ମନୋରଂଜନ ଲାଗି ଯୋଗ ଦେଉଥିଲେ । ଏଥିରେ କବି, କଳାକାରମାନେ ନିଜ କୃତିର ପରିଚୟ ପ୍ରଦାନ କରୁଥିଲେ । ଧନୁର୍ଦ୍ଧାରୀ ବୀର ଏବଂ ରଥୀମାନେ ଶର ଚାଳନା ଏବଂ ରଥ ଦଉଡର ସୁବିଧା ପାଉଥିଲେ । ଏହା ସଂଧ୍ୟାରୁ ଆରମ୍ଭ ହୋଇ ରାତି ଶେଷ ପର୍ଯ୍ୟନ୍ତ ଚାଲୁ ଥିଲା । ଅଥର୍ବ ବେଦରେ କୁହାଯାଇଛି ଯୁବକ ଯୁବତୀମାନେ ନିଜର ପତି ବା ପତ୍ନୀକୁ ଏହି ଉତ୍ସବରେ ବାଛି ନେଉଥିଲେ ।(୧୭୨) ନର୍ତ୍ତକୀମାନଙ୍କର ରୋଜଗାର ଏହି ଉତ୍ସବରେ ଖୁବ୍ ହେଉଥିଲା ।(୧୭୩)

ଉଭୟ ସଂଗୀତ ଓ ବାଦ୍ୟର ପ୍ରଚଳନ ସେତେବେଳେ ଥିଲା । ସାମବେଦରେ ମନ୍ତ୍ରଗୁଡିକୁ ଉଦ୍‌ଗାତା ସ୍ୱର ଲୟ ଦେଇ ବୋଲୁଥିଲେ । ବେଦମନ୍ତ୍ର ଗୁଡିକରେ ବିଭିନ୍ନ ଛନ୍ଦର ପ୍ରୟୋଗରୁ ଜଣାପଡେ ସେଗୁଡିକ ବୋଲିବା ପାଇଁ ବିଭିନ୍ନ ସ୍ୱରଗତ ଶୃଙ୍ଖଳା ଅବଲମ୍ବନ କରାଯାଉଥିଲା । ଏହାକୁ ସଂଗୀତ ବୋଲି କୁହାଯାଉଥିଲା । ଋଗ୍‌ବେଦ କାଳରେ ଆର୍ଯ୍ୟକୁ ଯନ୍ତ୍ର ସଂଗୀତ ଓ କଣ୍ଠ ସଂଗୀତ ଜଣାଥିଲା । ବୈଦିକ ଛନ୍ଦର 'ସ୍ୱରିତ, ଉଦାତ୍ତ ଓ ଅନୁଦାତ୍ତରୁ' ସ୍ୱର ଲହରୀ ଜ୍ଞାନ ଜଣାପଡେ । ବ୍ରାହ୍ମଣ ଯୁଗରେ ସାମ୍ - ମନ୍ତ୍ରର ଗାନ ଖୁବ୍ ଲୋକପ୍ରିୟ ଥିଲା । ଏହାକୁ ବୃଷ୍ଟିସଂପାତ ସହିତ ଗୋଟିଏ ସ୍ଥାନରେ ବର୍ଣ୍ଣନା କରାଯାଇଛି ।(୧୭୪) ବୈଦିକ କାଳରେ ବୀଣା, ବଂଶୀ, ଦୁନ୍ଦୁଭିର ଉଲ୍ଲେଖ ମିଳେ । ଦୁନ୍ଦୁଭି ଷଣ୍ଢର ଚମଡାରେ ତିଆରି ହେଉଥିଲା । ଏହା ଥିଲା ଏକ ବୀର ବାଦ୍ୟ । ଏହା ଯୁଦ୍ଧ ଯାତ୍ରା କଲାବେଳେ କିମ୍ବା ବାହୁଡା ବିଜୟ ବେଳେ ବଜା ଯାଉଥିଲା । ସମୟେ ସମୟେ ସାମଗାନ ସହିତ ତାଳ ରଖି ଦୁନ୍ଦୁଭି ମଧ୍ୟ ବଜା ଯାଉଥିଲା । 'ଶତପଥ ବ୍ରାହ୍ମଣ'ରେ ଏହାର ଉଲ୍ଲେଖ ରହିଅଛି ।(୧୭୫) ଉକ୍ତ ବ୍ରାହ୍ମଣ ଗ୍ରନ୍ଥରେ 'ବାଜପେୟ ଯଜ୍ଞ' ସମୟରେ ସତର ଗୋଟି ଦୁନ୍ଦୁଭି ବାଦନ କରାଯାଉଥିବା କଥା ବର୍ଣ୍ଣିତ ହୋଇଛି ।(୧୭୬) ଏହା ବ୍ୟତୀତ ରଥ ଦଉଡ, ଘୋଡା ଦଉଡ ପ୍ରତିଯୋଗିତାରେ ମଧ୍ୟ ଦୁନ୍ଦୁଭି ବଜା ଯାଉଥିଲା । ବୀଣାବାଦନ ସେତେବେଳେ ଅତ୍ୟନ୍ତ ଲୋକପ୍ରିୟ ଥିଲା । ମଣିଷର କୌଣସି ସିଦ୍ଧିରେ ସଂଗୀତ ଆସରର ଆୟୋଜନ କରାଯାଉଥିଲା ଏବଂ ସେଠାରେ ବୀଣା ବାଦନ କରାଯାଉଥିଲା ।(୧୭୭) ଏଥିରେ ବୀଣା ହେଉଛି ଶ୍ରୀର

ସଂକେତ ସ୍ୱରୂପ ବୋଲି କୁହାଯାଉଥିଲା । ନବସମ୍ବତ୍ସର ଆଗମନ ଉପଲକ୍ଷେ ବୀଣାବାଦନ କରି ସ୍ୱାଗତ କରାଯାଉଥିଲା ।(୧୭୮) ଆଉ ମଧ୍ୟ ସୀମନ୍ତୋନୟନ ସମୟରେ ବୀଣା ବାଦନ କରାଯାଉଥିଲା ।

ବୈଦିକ କାଳରେ ନୃତ୍ୟର ପ୍ରଚଳନ ଥିଲା । ଋଗ୍‌ବେଦରେ ଏହାର ବର୍ଣ୍ଣନା ରହିଅଛି ।(୧୭୯) "'ଐତରେୟ ବ୍ରାହ୍ମଣ'ରେ ମଧ୍ୟ ଦିନ ରାତ୍ରିର ଗତିକୁ ଛନ୍ଦଯୁକ୍ତ ଗତି ସହିତ ତୁଳନା କରି କୁହାଯାଇଛି ଦିନ ହେଉଛି ନିର୍ତ୍ତକର ପଦ ଭଳି ଯାହା ବେଳେବେଳେ ଦେଖା ଯାଉଥାଏ ଏବଂ ବେଳେବେଳେ ଘୋଡାଇ ହୋଇଯାଉଥାଏ"।(୧୮୦) (ସୁରେନ୍ଦ୍ର ଶତପଥୀଙ୍କର ଭାରତୀୟ ସଂସ୍କୃତି- ବୈଦିକ ପର୍ବ- ତୃତୀୟ ଭାଗ ୨୨ ପୃଷ୍ଠାରୁ ଉଦ୍ଧୃତ) । ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ 'ନୃତ୍ୟମ୍ ଓ ନର୍ତ୍ତନମ୍' ଶବ୍ଦର ବହୁଳ ପ୍ରୟୋଗ ଦେଖିବାକୁ ମିଳେ । 'ଶତପଥ ବ୍ରାହ୍ମଣ'ରେ ବାଗ୍‌ଦେବୀ ନୃତ୍ୟ କରିବା ସଂପର୍କରେ ବର୍ଣ୍ଣନା ରହିଅଛି ।(୧୮୧) 'ବାଗ୍‌ଦେବୀ' ନାଚ ଗୀତରେ ଗନ୍ଧର୍ବମାନଙ୍କୁ ମୋହି ଥିଲେ ଏବଂ ସୋମରସକୁ ଉଦ୍ଧାର କରିଥିଲେ ।(୧୮୨) ଋଗ୍‌ବେଦର 'ସଂବାଦ ସୂକ୍ତ'ରେ ନାଟକର ଉତ୍ପତ୍ତିକୁ ସ୍ୱୀକାର କରାଯାଇଛି । 'ମୈତ୍ରାୟଣୀୟ ଉପନିଷଦ୍'ରେ 'ନଟ' ତାର ବେଶ ସଜାଉଥିବା ସୂଚନା ମିଳେ । 'ବାଯସନେୟୀ ସଂହିତା'ରେ ଆମେ ପୁରୁଷମେଧ ଯଜ୍ଞ ସମୟରେ ଯେଉଁ 'ଶୈଳୁଷ' ଶବ୍ଦର ପ୍ରୟୋଗ ଦେଖିଥାଉ ଡଃ. 'କିଥ୍' 'ନଟ' ଅର୍ଥରେ ତାହାକୁ ଗ୍ରହଣ କରିଅଛନ୍ତି । ଏହି ନଟ ଅର୍ଥ ହେଲା ନାଟକର କଳାକାର । ଆଜିର ନାଟକର ଯେ 'ବେଦ ମୂଳତା' ଅଛି ଏକଥା ସ୍ୱୀକାର କରିବାକୁ ହେବ । ଏଭଳି ପ୍ରାଚୀନ ପରମ୍ପରା ନଥିଲେ 'ଭରତ ମୁନି' ତାଙ୍କର 'ନାଟ୍ୟ ଶାସ୍ତ୍ରମ୍' ଆରମ୍ଭ କରି ପାରିନଥାନ୍ତେ ।

କ୍ରୀଡା ବୈଦିକ ଆର୍ଯ୍ୟମାନଙ୍କର ଏକ ଆମୋଦ ପ୍ରମୋଦର ସାମଗ୍ରୀ ଥିଲା । ସେତେବେଳେ ରଥ ଦୌଡ଼ ଏକ ପ୍ରିୟ ବିନୋଦ ଥିଲା । ଘୋଡା ଦୌଡ ମଧ୍ୟ ଆଉ ଏକ ଲୋକପ୍ରିୟ କ୍ରୀଡା ଥିଲା । 'ଘୋଡା ଦୌଡ'ରେ ଉପୁଜୁଥିବା ଟାପୁ ଶବ୍ଦକୁ ଋଗ୍ ବେଦରେ 'ମେଘ ଗର୍ଜ୍ଜନ' ସହିତ ତୁଳନା କରାଯାଇଛି । 'ଜୁଆ ଖେଳ' ଥିଲା ମନୋରଂଜନ କ୍ରୀଡା । ଏହାର ବୈଦିକ ନାମ ଥିଲା 'ଅକ୍ଷ କ୍ରୀଡା' । 'ବାଜି' ରଖାଯାଇ ଏହା ଖେଳା ଯାଉଥିଲା । 'ପଶାଖେଳ' ଏକ ମନୋରଂଜନ କ୍ରୀଡା ଥିଲେ ମଧ୍ୟ 'ପଶାଖେଳ'କୁ ନିନ୍ଦା କରାଯାଇଛି । ପ୍ରାଥମିକ ଅବସ୍ଥାରେ ଲମ୍ବା ପଶା କାଠି ବ୍ୟବହୃତ ହେଉ ନଥିଲା । 'ଶୁଖିଲା ବାହାଡା'କୁ ସାର ହିସାବରେ ବ୍ୟବହାର କରାଯାଉଥିଲା । ବାହାଡା ମଞ୍ଜିରେ ବିଭିନ୍ନ ଆଖି ତିଆରି କରାଯାଉଥିଲା । ଏଇ ଆଖି ଗୁଡିକୁ 'ଅକ୍ଷ୍ୟ' କୁହାଯାଉଥିଲା । ବିଭିନ୍ନ ରାଜକୀୟ ଉତ୍ସବ ଏବଂ ଯଜ୍ଞାନୁଷ୍ଠାନରେ ପଶାଖେଳ ହେଉଥିଲା । ଏହି କାର୍ଯ୍ୟ ପରିଚାଳନା କରିବା ପାଇଁ ଜଣେ 'ଅକ୍ଷବାପ' ନିଯୁକ୍ତ ହେଉଥିଲେ । ଅଥର୍ବ ବେଦର ଗୋଟିଏ ମନ୍ତ୍ରରେ ପଶାକାଠି ମହତ୍ୱ କୁହାଯାଇଛି ।(୧୮୩) ବୈଦିକ କାଳରେ ଅଷ୍ଟପାଦ ନାମକ ଏକ କ୍ରୀଡା ଥିଲା । ସାର ଭିତରେ ରାଜା ଏବଂ ତାଙ୍କ ଚତୁରଙ୍ଗ ବଳ ଥିଲେ । ଏହାର ନାମାନ୍ତର ହୋଇ 'ଚତୁରଙ୍ଗ' ହୋଇଛି । ବୈଦିକ ଭାରତର ଅଷ୍ଟପାଦ ବା ଚତୁରଙ୍ଗ ଖେଳ ଆଜିର 'ଚେସ୍'ଖେଳର ଜନକ ।



# ପଞ୍ଚମ ପରିଚ୍ଛେଦ

## ବୈଦିକ ଶିକ୍ଷା, ଧର୍ମ ଓ ଆଧ୍ୟାତ୍ମିକତା

**(କ) ବୈଦିକ ଶିକ୍ଷା –**

ବୈଦିକ ଶିକ୍ଷା ମୁଖ୍ୟତଃ ଚରିତ୍ର ଗଠନ ଲାଗି ଅଭିପ୍ରେତ ଥିଲା । ପିଲା କିଭଳି ଭଲ ମଣିଷ ହେବ, ସେଥିପାଇଁ ପିତାମାତା, ଆଚାର୍ଯ୍ୟ, ସମାଜ, ତଥା ରାଷ୍ଟ୍ର ବିଶେଷ ଦୃଷ୍ଟି ଦେଉଥିଲେ । ଗୁରୁ ସର୍ବଦା ସତକୁହ, ଧର୍ମ ବାଟରେ ଚାଲ, ପାଠ ପଢାରୁ ବିରତ ହୁଅ ନାହିଁ ଶିଷ୍ୟଙ୍କୁ କହୁଥିଲେ । (୧) ଏଥିରୁ ମନେହୁଏ ଭଲ ମଣିଷ ହୋଇ ପିଲା କିଭଳି ଉତୁରିବ ଏହା ଥିଲା ବୈଦିକ ଶିକ୍ଷାର ମୂଳ ଉଦ୍ଦେଶ୍ୟ । ଏହି ପରମ୍ପରା ଯୁଗ ଯୁଗ ଧରି ଚଳି ଆସିଛି । ବୈଦିକ ଆର୍ଯ୍ୟମାନଙ୍କ ଜୀବନ ଚାରି ଗୋଟି ଆଶ୍ରମ ଦେଇ ଗତି କରୁଥିଲା । ଏହି ଆଶ୍ରମ ଗୁଡ଼ିକ ହେଲା ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ପ୍ରଥମ ଅବସ୍ଥାଟି ବ୍ରହ୍ମଚର୍ଯ୍ୟ ଧାରଣ କରି ପାଠ ପଢିବା ଲାଗି ଉଦ୍ଦିଷ୍ଟ । ବ୍ରହ୍ମଚର୍ଯ୍ୟାଶ୍ରମ ଆରମ୍ଭ ହେଉଥିଲା ଉପନୟନରୁ । ଏହାର ପରିସମାପ୍ତି ଘଟୁଥିଲା ପିତୃଗୃହକୁ ପ୍ରତ୍ୟାବର୍ତ୍ତନରେ । ଗୃହକୁ ପ୍ରତ୍ୟାବର୍ତ୍ତନ ବ୍ୟବସ୍ଥାଟିର ନାମଥିଲା ସମାବର୍ତ୍ତନ । ଏହା ଆର୍ଯ୍ୟମାନଙ୍କର ଷୋଡ଼ଶ ସଂସ୍କାର ମଧ୍ୟରୁ ଦୁଇଟି ସଂସ୍କାର । (୨)

ସେତେବେଳେ ସକଳ ବିଦ୍ୟାଳୟ ଥିଲା ଆବାସିକ । ଗୁରୁଗୃହରେ ରହି ପିଲାମାନେ ବିଦ୍ୟାଧ୍ୟୟନ କରୁଥିଲେ । ବାଲ୍ୟାବସ୍ଥାରେ ପିଲାମାନଙ୍କୁ ନେଇ ଗୁରୁ ଗୃହରେ ପିତାମାତା ଛାଡି ଦେଇ ଆସୁଥିଲେ । ଗୁରୁ ଗୃହରେ ପହଞ୍ଚି ଉପନୟନ ସଂସ୍କାର ଶେଷ କରି ପିଲା ବ୍ରହ୍ମଚାରୀ ହୋଇ ଯଜ୍ଞୋପବୀତ ଧାରଣ କରି ସ୍ୱୀୟ ଗୋଷ୍ଠୀ ସହିତ ସାମିଲ ହେଉଥିଲା । ଏହା ଥିଲା ତା ପାଇଁ ଦ୍ୱିତୀୟ ଜନ୍ମ । ତେଣୁ ତାହାକୁ 'ଦ୍ୱିଜ' ବୋଲି କୁହାଯାଉଥିଲା । ଅଥର୍ବ ବେଦରେ କୁହାଯାଇଛି ଆଚାର୍ଯ୍ୟ ତାଙ୍କ ପାଖକୁ ଆସିଥିବା ଶିଷ୍ୟକୁ ତିନି ରାତି ଗର୍ଭରେ ଧାରଣ କରି ତାପରେ ତାକୁ ଜନ୍ମ କରନ୍ତି ।(୩) ଏହିଯୋଗୁ ବୈଦିକ କାଳରେ ଗୁରୁଙ୍କ ଆସନ ପିତାମାତାଙ୍କଆସନ ଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା । ବ୍ରାହ୍ମଣ , କ୍ଷତ୍ରିୟ ଓ ବୈଶ୍ୟ ବର୍ଣ୍ଣର ପିଲାମାନଙ୍କ ପ୍ରତି ଏହି ବ୍ୟବସ୍ଥାଟି ଲାଗୁ ହେଉଥିଲା । ଗୁରୁ ସର୍ବ ପ୍ରଥମେ ବ୍ରହ୍ମଚାରୀକୁ 'ଗାୟତ୍ରୀ' ମନ୍ତ୍ର ଶିକ୍ଷା ଦେଉଥିଲେ । ଏହି ମନ୍ତ୍ରଟି ହେଲା ସଚ୍ଚିଦାନନ୍ଦମୟ ସୃଷ୍ଟି କର୍ତ୍ତାଙ୍କର ବରଣୀୟ ଜ୍ୟୋତିକୁ ଆମ୍ଭେମାନେ ଧ୍ୟାନ କରୁ ସେ ଆମ୍ଭମାନଙ୍କ ବୁଦ୍ଧିକୁ ପ୍ରେରଣା ଦିଅନ୍ତୁ ।(୪) ଏହି ବ୍ରହ୍ମଚର୍ଯ୍ୟାଶ୍ରମରେ ଶିଷ୍ୟକୁ ତାର ଚରିତ୍ର ଗଠନ କରିବାକୁ ପଡୁଥିଲା । ବେଦ ଅଧ୍ୟୟନ ଶୂଦ୍ର ସମେତ ସମସ୍ତଙ୍କ ଲାଗି ଉଦ୍ଦିଷ୍ଟ ହୋଇଛି ବୋଲି ଯଜୁର୍ବେଦରେ ବର୍ଣ୍ଣିତ ହୋଇଅଛି । ଏଥିରେ କୁହାଯାଇଛି ଋଷି କହୁଛନ୍ତି "ମୁଁ ସବୁ ମନୁଷ୍ୟମାନଙ୍କ ପାଇଁ ଏହି କଲ୍ୟାଣକାରିଣୀ ବେଦ ବାଣୀର ଉପଦେଶ ଦେଉଛି । ତାହା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ସ୍ତ୍ରୀ ମାନଙ୍କ ପାଇଁ ପ୍ରକଟିତ । (୫) ଏଥିରୁ ମନେ ହୁଏ ବେଦ ଅଧ୍ୟୟନ ଲାଗି ସ୍ତ୍ରୀ, ଶୂଦ୍ର ଇତ୍ୟାଦି ସମସ୍ତଙ୍କର ଅଧିକାର ଅଛି ; ଯାହା ବେଦରେ ସ୍ୱୀକୃତ । ତା ନ ହୋଇଥିଲେ ଶୂଦ୍ରାଣୀ ଗର୍ଭରୁ ଜାତ 'ମହୀଦାସ' ଐତରେୟ ଉପନିଷଦ ରଚନା କରି ନଥାନ୍ତେ । ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ମତରେ 'ନିର୍ବୁଦ୍ଧି ଓ ମୂର୍ଖ' ମାନଙ୍କୁ ଶୂଦ୍ର କୁହାଯାଇଛି । ସ୍ତ୍ରୀମାନେ ବେଦ ପାଠ କରି ପାରିବେ ବୋଲି ଅଥର୍ବ ବେଦରେ ସ୍ପଷ୍ଟ ଭାବରେ କୁହାଯାଇଛି । ଅଥର୍ବ ବେଦରେ

କୁହାଯାଇଛି କନ୍ୟା ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଯୁବକ ସ୍ୱାମୀଙ୍କୁ ବରଣ କରିଥାନ୍ତି ।(୬) ଘୋଷା, ବିଶ୍ୱବାରା, ଆପଲା ଆଦି ଅନେକ ବେଦମନ୍ତ୍ରର ଋଷିକା ଅଟନ୍ତି । ଏମାନଙ୍କ ବ୍ୟତୀତ ଗାର୍ଗୀ, ମୈତ୍ରେୟୀଙ୍କ ଭଳି ଅନେକ ଉପନିଷଦ୍ ଯୁଗର ଋଷିକା ଅଛନ୍ତି । ବୈଦିକ କାଳରେ ସ୍ତ୍ରୀ ଶିକ୍ଷା ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆ ଯାଇଥିବା କଥା ଅବିନାଶ ଚନ୍ଦ୍ର ଦାସ ଉଲ୍ଲେଖ କରିଛନ୍ତି ।(୭)

ବୈଦିକ କାଳରେ ବିଦ୍ୟାର୍ଥୀନୀମାନଙ୍କୁ ଦୁଇଭାଗରେ ବିଭକ୍ତ କରାଯାଉଥିଲା । ଗୋଟିଏ ହେଉଛି 'ସଦ୍ୟୋବଧୂ' ଏବଂ ଅନ୍ୟଟି ହେଉଛି 'ବ୍ରହ୍ମବାଦିନୀ'। 'ସଦ୍ୟୋବଧୂ' ସ୍ତ୍ରୀମାନେ ବ୍ରହ୍ମଚର୍ଯ୍ୟାଶ୍ରମପରେ ବିବାହ କରି ଗୃହ ସଂସାର କରୁଥିଲେ ଏବଂ ବ୍ରହ୍ମବାଦିନୀ ସ୍ତ୍ରୀମାନେ ସାରାଜୀବନ ବ୍ରହ୍ମ ବିଷୟରେ ଚିନ୍ତା କରି ସନ୍ନ୍ୟାସିନୀ ହୋଇ ରହୁଥିଲେ । ବ୍ରାହ୍ମଣ କନ୍ୟାମାନଙ୍କୁ ବୈଦିକ ଶିକ୍ଷା ଦିଆ ଯାଉଥିବା ବେଳେ କ୍ଷତ୍ରିୟ କନ୍ୟାମାନଙ୍କୁ ଧନୁର୍ବିଦ୍ୟା ସଂପର୍କରେ ଶିକ୍ଷା ଦିଆଯାଉଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି । ଗୁରୁ ଆଶ୍ରମରେ ଥିବାବେଳେ ସେମାନଙ୍କୁ ବ୍ରହ୍ମଗ୍ରିଣୀ ବୋଲି କୁହାଯାଉଥିଲା ।

ପିଲାଟିର ଭବିଷ୍ୟତ ଗଢିବା ପାଇଁ ବାପ, ମାଙ୍କ ଭଳି ଆଚାର୍ଯ୍ୟଙ୍କର ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଶତପଥ ବ୍ରାହ୍ମଣରେ କୁହାଯାଇଛି ମଣିଷକୁ ଜ୍ଞାନୀ ହେବା ପାଇଁ ଭଲ ବାପା, ମା ଓ ଭଲ ଆଚାର୍ଯ୍ୟ ମିଳିବା ଆବଶ୍ୟକ ।(୯) ଆଚାର୍ଯ୍ୟମାନେ ଶିଷ୍ୟଙ୍କୁ କହିଥାନ୍ତି ଆମ୍ଭେମାନେ (ବାପା, ମା ଓ ଆଚାର୍ଯ୍ୟ) ଯେଉଁ ଯେଉଁ ଭଲ କାମଟିମାନ କରୁଛୁ ତୁମେ ସେହି ଗୁଡିକ ଅନୁକରଣ କର । ଅନ୍ୟ କୌଣସି କାମ ଗୁଡିକ ନୁହେଁ ।(୧୦)

ଉପନୟନ କର୍ମ ବ୍ରାହ୍ମଣ ଶିଶୁର ପାଞ୍ଚବର୍ଷ ବୟସରେ, କ୍ଷତ୍ରିୟ ଶିଶୁର ସପ୍ତମ ବର୍ଷରେ ଏବଂ ବୈଶ୍ୟ ଶିଶୁର ନବମ ବୟସରେ କରାଯାଉଥିଲା । ଆଚାର୍ଯ୍ୟ ଶିଶୁକୁ ଯେଉଁ ଗାୟତ୍ରୀ ମନ୍ତ୍ର କହିଥାନ୍ତି ତାହା ତିନୋଟି ବର୍ଣ୍ଣପାଇଁ ତିନୋଟି ଛନ୍ଦରେ ରଚିତ । ବ୍ରାହ୍ମଣମାନଙ୍କ ପାଇଁ 'ଭୂ ଭୁର୍ବଃ ସ୍ୱଃ' ଇତ୍ୟାଦି ଗାୟତ୍ରୀ ମନ୍ତ୍ର ପୂର୍ବରୁ କୁହାଯାଉଛି । ଏହାର ମାତ୍ରା ସଂଖ୍ୟା ଆଠ । କ୍ଷତ୍ରିୟ ମାନଙ୍କର ଗାୟତ୍ରୀ ମନ୍ତ୍ର 'ତ୍ରିଷ୍ଟୁପ୍ ଛନ୍ଦ'ରେ ଲିଖିତ ଯାହାର ମାତ୍ରା ସଂଖ୍ୟା ହେଉଛି ଏଗାର । ବୈଶ୍ୟମାନଙ୍କର ଗାୟତ୍ରୀ ମନ୍ତ୍ର 'ଜଗତୀ ଛନ୍ଦ'ରେ ଲିଖିତ ଯାହାର ମାତ୍ରା ସଂଖ୍ୟା ହେଲା ଏଗାର । ଗାୟତ୍ରୀମନ୍ତ୍ରରେ ସବିତା ବା ସୂର୍ଯ୍ୟଙ୍କୁ ଆରାଧନା କରା ଯାଇଥାଏ ।(୧୧) ସୂର୍ଯ୍ୟଙ୍କୁ ସାରା ବିଶ୍ୱର ମୂଳ ବୋଲି କଳ୍ପନା କରା ଯାଇଥାଏ । 'ଗାୟତ୍ରୀ ମନ୍ତ୍ର' ଭାରତୀୟ ସଂସ୍କୃତି ସହିତ ଓତଃ ପ୍ରୋତ ଭାବରେ ଜଡିତ । ଉନ୍ନତତର ଜୀବନ ବିଷୟରେ ସଚେତନ କରାଇବା ସଂଗେ ସଂଗେ ମନରେ ଅଧ୍ୟାତ୍ମିକ ଚେତନାକୁ ଜାଗ୍ରତ କରିଥାଏ । ସେଥିପାଇଁ ବୈଦିକ ଶିକ୍ଷାରେ 'ଗାୟତ୍ରୀ ମନ୍ତ୍ର'ର ଅଧ୍ୟୟନ ଓ ଅନୁଶୀଳନ ଉପରେ ଗୁରୁତ୍ୱ ଦିଆଯାଉଥିଲା । 'ଉପନୟନ'ର ସମୟ ସୀମା କ୍ରମେ ବଢିବାକୁ ଲାଗିଲା ଏବଂ ପରବର୍ତ୍ତୀ ଅବସ୍ଥାରେ ଏହା କେବଳ 'ବିଧି'ରେ ପର୍ଯ୍ୟବେସିତ ହେଲା ।

ଋଗ୍‌ବେଦ କାଳରେ ପ୍ରାଚୀନ କାଳର ଶିକ୍ଷା ପଦ୍ଧତି ସଂପର୍କରେ ବିଶେଷ କିଛି ଆଭାସ ମିଳେ ନାହିଁ । ଋଗ୍‌ବେଦର ବ୍ୟଙ୍ଗାତ୍ମକ 'ମଣ୍ଡୁକ ସୂକ୍ତ'ରୁ ତତ୍‌କାଳୀନ ଶିକ୍ଷା ପଦ୍ଧତିର ସାମାନ୍ୟ ସୂଚନା ମିଳେ । ବର୍ଷା ଋତୁର ଆଗମନରେ ବେଙ୍ଗମାନେ ବୋବାନ୍ତି ଏବଂ ସେହି ବେଙ୍ଗ ବୋବାଳିକୁ ଗୁରୁଙ୍କର ବେଦପାଠ ଓ ଛାତ୍ରମାନଙ୍କର ଆବୃତ୍ତି ସହିତ ତୁଳନା କରାଯାଇଛି । ଏଥିରୁ ଅନୁମାନ କରାଯାଏ

ବ୍ରାହ୍ମଣମାନେ ଏକ ନିର୍ଦ୍ଦିଷ୍ଟ ସମୟରେ ବେଦାଧ୍ୟୟନ କରନ୍ତି । ଯେପରି ବେଙ୍ଗମାନେ ବର୍ଷା ଋତୁର ଆରମ୍ଭରେ ବୋବାନ୍ତି । ସାମୂହିକ ଆଲୋଚନାର ମଧ୍ୟ ଉଲ୍ଲେଖ ମିଳେ ।(୧୨) ଧାର୍ମିକ ଛାତ୍ର ହିସାବରେ 'ବ୍ରହ୍ମଚାରୀ' ଶବ୍ଦ ପ୍ରଯୁକ୍ତ ହୋଇଅଛି ।(୧୩) ଏହି ବେଦ ମନ୍ତ୍ରରେ 'ଶିକ୍ଷମାଣ' ଶବ୍ଦଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏଥିରୁ ମନେହୁଏ ଛାତ୍ରମାନେ ଗୁରୁଙ୍କ ଠାରୁ ମନ୍ତ୍ର ଶିକ୍ଷା କରୁଥିଲେ । ବେଦୋକ୍ତ ଏହି 'ଉପମା'ରୁ ସୂଚନା ମିଳୁଛି ଯେ ବୈଦିକ ଆଶ୍ରମମାନଙ୍କରେ ପାଠ ପଢା ଏହି ବର୍ଷା ଦିନେ ହେଉଥିଲା । ଜ୍ଞାନର ବିକାଶ ଲାଗି 'ସାବିତ୍ରୀ' ମନ୍ତ୍ରରେ କୁହାଯାଇଛି 'ବ୍ରହ୍ମଚର୍ଯ୍ୟାଶ୍ରମର ମୂଳ ଲକ୍ଷ୍ୟ ଥିଲା ଆଧ୍ୟାତ୍ମିକ ଓ ଆତ୍ମଭୌତିକ କ୍ଷେତ୍ରରେ ଜ୍ଞାନାର୍ଜନ କରିବା ।(୧୪) ଏପ୍ରକାର ସୁ ସମନ୍ୱିତ ଜ୍ଞାନ ଅର୍ଜନ ଲାଗି ସଚ୍ଚରିତ୍ର ଓ ସଦାଚାରର ଆବଶ୍ୟକତା ଅନୁଭୂତ ହେଉଥିଲା । ବ୍ରହ୍ମଚାରୀର ବୁଦ୍ଧିର ତଥା ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ଥିଲା ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ । ସେ ସମୟରେ ମୌଖିକ ଭାବରେ ଅଧ୍ୟାପନା କାର୍ଯ୍ୟ ହେଉଥିଲା । ସେ ସମୟରେ ଲିଖିତ ପାଠ୍ୟ କିଛି ଥିଲା କି ନାହିଁ ତାହା କହିବା କଷ୍ଟ ସାଧ୍ୟ । କାରଣ ସେ କାଳର ଲିପିମାଳା ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । କେତେକ ବିଦ୍ୱାନଙ୍କ ମତରେ ସିନ୍ଧୁ ସଭ୍ୟତାର ଲିପି ଓ ଅଶୋକଙ୍କ ବ୍ରାହ୍ମୀ ଲିପିର ମଝିରେ ଆଉ ଗୋଟିଏ ଲିପି ବ୍ୟବହୃତ ହୋଇଥିଲା । ଯଦ୍ୱାରା କି ବେଦ ସଂକଳିତ ହୋଇ ଲିଖିତ ରୂପ ଧାରଣ କରିଥିବ । ବୈଦିକ ଲିଖନ ପ୍ରଣାଳୀ ଲୋକମାନଙ୍କୁ ଜଣାଥିବ । ଋଗ୍‌ବେଦରେ ଗୋଟିଏ ମନ୍ତ୍ରରେ ସେତେବେଳେ ଲିଖନ ପ୍ରଣାଳୀ ପ୍ରଚଳିତ ଥିବାର ପରୋକ୍ଷ ସୂଚନା ମିଳେ । ସେ ମନ୍ତ୍ରଟି ହେଲା ଜଣେ ମଣିଷ ବାଣୀକୁ ଦେଖି ମଧ୍ୟ ଦେଖିପାରେ ନାହିଁ । ଆଉ ଜଣେ ଶୁଣି ମଧ୍ୟ ଶୁଣି ପାରେ ନାହିଁ । ସୁନ୍ଦର ପୋଷାକ ପତ୍ର ପିନ୍ଧି ଥିବା ପ୍ରିୟତମା ପତ୍ନୀ ନିଜକୁ ତାର ସ୍ୱାମୀ ନିକଟରେ ସମର୍ପଣ କରି ଦେଲା ପରି ଆଉ ଜଣକ ପାଖରେ ସେ ବାଣୀ ଆସି ସହଜରେ ଧରାଦିଏ ।(୧୫) ଯଦି ଏହା ଲେଖା ଯାଇ ନଥାନ୍ତା ତେବେ ଏହାକୁ ଦେଖିବା ପ୍ରଶ୍ନ ଉଠନ୍ତା କେଉଁଠୁ । ବେଦ ମନ୍ତ୍ର ଗୁଡିକର ସଠିକ ଉଚ୍ଚାରଣ ଅଧିକ ଗୁରୁତ୍ୱ ଆରୋପ କରାଯାଉଥିବାରୁ ପଠନ ଅପେକ୍ଷା ଶ୍ରବଣ ଉପରେ ଅଧିକତର ମହତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ତାହାହିଁ ବେଦର 'ଶ୍ରୁତି' ନାମକୁ ସାର୍ଥକ କରିଅଛି ।

ବୈଦିକ ଶିକ୍ଷା ଖୁବ୍ କଠିନ ଥିଲା । ସମସ୍ତେ ଏ ବିଦ୍ୟା ଶିକ୍ଷା କରି ପାରୁ ନ ଥିଲେ । କେବଳ ଯୋଗ୍ୟ ବ୍ୟକ୍ତିମାନେ ଏହା ପାଇ ପାରୁଥିଲେ । 'ଯାସ୍କ' ତାଙ୍କ 'ନିରୁକ୍ତ'ରେ କହିଛନ୍ତି "ବିଦ୍ୟା ବ୍ରାହ୍ମଣଙ୍କ ପାଖକୁ ଆସି କୁହେ — "ତୁମେ ମୋତେ ରକ୍ଷାକର, ମୁଁ ତୁମର ରତ୍ନ ସ୍ୱରୂପ ଅଟେ" । ଏହାର ତାତ୍ପର୍ଯ୍ୟ ହେଲା ପ୍ରକୃତ ଜ୍ଞାନୀ ଲୋକହିଁ ବିଦ୍ୟା ଧନକୁ ରକ୍ଷା କରିପାରନ୍ତି । ତେଣୁ ବିଦ୍ୟା ତାଙ୍କରି ଆଶ୍ରୟ ଲୋଡି ଥାଏ । ଶିଷ୍ୟମାନଙ୍କୁ ବାଛି କରି ଆଚାର୍ଯ୍ୟମାନେ ଗ୍ରହଣ କରୁଥିଲେ । ସେ କାଳରେ ଯେ ଉପନୟନ କର୍ମ ଦେଇ ଆସି ନଥାଏ ତାକୁ 'ବ୍ରାତ୍ୟ' ବୋଲି କହି ସମସ୍ତେ ଘୃଣା କରୁଥିଲେ । 'ବ୍ରାତ୍ୟଷ୍ଟୋମ ଯଜ୍ଞ' କରି ସାରିବା ପରେ ସେ ଆର୍ଯ୍ୟ ସଂପ୍ରଦାୟର ଅନ୍ତର୍ଭୁକ୍ତ ହେଉଥିଲା । ଉପନୟନ ପରେ ଶିଷ୍ୟ ଲଣ୍ଡିତ ମୁଣ୍ଡ ହୋଇ ମୌଞ୍ଜେୟ ମେଖଳା ଗ୍ରହଣ କରୁଥିଲା । ଏହାକୁ ତିନି ସରି ରଖା ଯାଉଥିଲା । କାରଣ ବ୍ରହ୍ମଚାରୀକୁ 'ବେଦତ୍ରୟୀ' ହେବାକୁ ପଡିଥାଏ । (ଋଗ୍, ସାମ, ଯର୍ଜୁ) ଏହି କୌପୁନୀ ଓ ମେଖଳା ପିନ୍ଧିବା ବେଳେ ତାକୁ 'ଶ୍ରଦ୍ଧାୟାଃ ଦୁହିତା' ମନ୍ତ୍ରଟି ପଢିବାକୁ ହେଉଥିଲା । ତାପରେ ବ୍ରହ୍ମଚାରୀ ତିନି ଗୋଟି ସମିଧ ଆଣି ହୋମାଗ୍ନିରେ ନିକ୍ଷେପ କରୁଥିଲା । ଏହି ସମିଧ ଅଗ୍ନିଙ୍କର 'ତ୍ରିପଡ୍ୟ' ଭାବ କଳ୍ପନା କରି ଅର୍ପଣ

କରାଯାଉଥିଲା । ସର୍ବଦା ସକାଳେ ଓ ସଂଧ୍ୟାରେ ବ୍ରହ୍ମଚାରୀ ସମିଧ ସଂଗ୍ରହ କରି ଅଗ୍ନିକୁ ପରିଚର୍ଯ୍ୟା କରୁଥିଲା । ଅଗ୍ନି ଉପାସନା ସମୟରେ ତାର ପୋଷାକ ଥିଲା ଖଣ୍ଡେ ମୋଟା ମୃଗ ଛାଲ ।

ବୈଦିକ ଆର୍ଯ୍ୟମାନଙ୍କର ଧାରଣା ଥିଲା ଗୁରୁଙ୍କ ବିନା ସାହାଯ୍ୟରେ ବିଦ୍ୟା ଲାଭ କରି ହେବ ନାହିଁ । ଗୁରୁ ଏବଂ ଶିଷ୍ୟଙ୍କର ହୃଦୟ ମିଶିଲେ ବିଦ୍ୟାଲାଭ ହୁଏ ବୋଲି ସେତେବେଳର ବିଶ୍ୱାସ । ସେଥିପାଇଁ ଗୁରୁ ଶିଷ୍ୟର ଛାତି ଛୁଇଁ କୁହନ୍ତି "ଆଜି ଠାରୁ ଆମ ଦୁହିଁଙ୍କ ମଧ୍ୟରେ ଚିରନ୍ତନ ସ୍ନେହ ଓ ବିଶ୍ୱାସ ବିରାଜମାନ କରୁ" । 'ଉପନୟନ' କର୍ମରେ ଏକ ବିଧାନ ହେଉଛି 'ଅଶ୍ମାରୋହଣ' । ଏଥିରେ ବ୍ରହ୍ମଚାରୀକୁ ଗୋଟିଏ 'ଶିଳ' ଉପରେ ଚଢିବାକୁ ହୁଏ । ଏହାର ଉଦ୍ଦେଶ୍ୟ ହେଉଛି ଗୁରୁ ସେତେବେଳେ ଶିଷ୍ୟକୁ ପଥର ଭଳି ମନକୁ ଦୃଢ଼ କରିବା ପାଇଁ ଉପଦେଶ ଦେଇଥାନ୍ତି । ବ୍ରହ୍ମଚର୍ଯ୍ୟାଶ୍ରମ ପରେ ଗୁରୁ ଆଶ୍ରମରେ ଶେଷ ସ୍ନାନ କରି ଶିଷ୍ୟ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିଥାଏ । ତେଣୁ ତାକୁ କୁହାଯାଏ ସ୍ନାତକ ବା ସ୍ନାନ କରିବା ଲୋକ । ଗୁରୁ ଗୃହରେ ଶିଷ୍ୟ ଯଜ୍ଞାନୁଷ୍ଠାନ ସହିତ ତ୍ରିକାଳରେ ସଂଧ୍ୟା କରି ମନକୁ ଶୁଦ୍ଧ ଓ ପବିତ୍ର କରୁଥିଲା । 'ସ୍ୱାଧ୍ୟାୟ', 'ପ୍ରବଚନ' ବା 'ଅଧ୍ୟୟନ' ବା 'ଅଧ୍ୟାପନା' ବ୍ରହ୍ମଚାରୀର ଏକ ମହତ୍ୱପୂର୍ଣ୍ଣ କର୍ତ୍ତବ୍ୟ ଥିଲା ।

ଅଧ୍ୟୟନ ହେଉଛି ଛାତ୍ରମାନଙ୍କର ତପସ୍ୟା । 'ଯାସ୍କ' ତାଙ୍କ 'ନିରୁକ୍ତ'ରେ କହିଅଛନ୍ତି ଯେ ବେଦ ପଢି ତାହାର ଅର୍ଥ ବୁଝି ପାରେନାହିଁ ସେ ହେଉଛି ଭାର ବାହୁ ଥିବା ଗଧଟିଏ ଭଳି । ତେଣୁ ବ୍ରହ୍ମଚାରୀ ବେଦ ଅଧ୍ୟୟନ ସହିତ ତାହାର ଅର୍ଥକୁ ସମ୍ୟକ ଭାବରେ ଉପଲବ୍ଧି କରୁଥିଲା । ବୈଦିକ ଆର୍ଯ୍ୟ ଜ୍ଞାନକୁ ଶିକ୍ଷାର ପରମ ଲକ୍ଷ୍ୟ ବୋଲି ଗ୍ରହଣ କରୁଥିଲେ ମଧ୍ୟ ଶିକ୍ଷାର ଯେ ଜୀବନ ସହିତ ସମ୍ବନ୍ଧ ଥିଲା ତାହା ସେ ଉପଲବ୍ଧି କରୁଥିଲା । ଜୀବନ ଏଠି ଅନନ୍ତ ଜୀବନ ଅର୍ଥରେ ଗ୍ରହଣ କରାଯିବା 'ମୁକ୍ତି' ଶିକ୍ଷାର ଆଉ ଏକ ଲକ୍ଷ୍ୟ ଥିଲା । ବୈଦିକ ଶିକ୍ଷା ସର୍ବଦା ବ୍ୟକ୍ତିକୁ ଜୀବନ ଓ ମୁକ୍ତି ପ୍ରତି ସମ୍ବେଦନଶୀଳ କରାଇ ଗଢି ତୋଳୁଥିଲା । ଅର୍ଜ୍ଜିତ ଜ୍ଞାନକୁ ଜୀବନ ଯାତ୍ରାରେ ଲଗାଇବା ହେଉଛି ଶିକ୍ଷାର ଚରମ ସାର୍ଥକତା । ସେଥିପାଇଁ ବୈଦିକ ଆଚାର୍ଯ୍ୟ ଶିଷ୍ୟକୁ କହିଥାନ୍ତି - ସତ୍ୟଂବଦ, ଧର୍ମଚର ଅର୍ଥାତ୍ ସତ କହ ଓ ଧର୍ମାଚରଣ କର । ବେଦରେ ଆଚାରକୁ ପରମ ଧର୍ମ ଭାବରେ ଗ୍ରହଣ କରାଯାଇଛି । ଯେଉଁ ଗୁରୁ ଆର୍ଯ୍ୟୋଚିତ ଶୁଦ୍ଧ ଆଚରଣ କରିଥାନ୍ତି ତାଙ୍କୁ ଆଚାର୍ଯ୍ୟ କୁହାଯାଉଥିଲା ।

ଗୁରୁ ଆଶ୍ରମରେ ରହି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରୁଥିବା ସମୟରେ ମୁଣ୍ଡରେ ତେଲ ଲଗାଉ ନଥିଲେ । ସେ ସ୍ନାତକ ହେଲା ଦିନ ଗୁରୁ ପତ୍ନୀ ତାକୁ ବାସନା ତେଲ ଲଗାଇ ମୁଣ୍ଡ କୁଣ୍ଡାଇ ଭଲ ଲୁଗା ପିନ୍ଧାଉ ଥିଲେ । ସେ ତପସ୍ୱୀ ଭଳି ଜୀବନ ଯାପନ କରୁଥିଲା । ଭାରତୀୟ ସଂସ୍କୃତିର ଆତ୍ମା ହେଉଛି ଦର୍ଶନ ଓ ଧର୍ମ । ବୈଦିକ ଶିକ୍ଷାର ଉଦ୍ଦେଶ୍ୟ ଥିଲା ଏହାକୁ ପରିପୁଷ୍ଟ କରିବା । ଧର୍ମ ଓ ଦର୍ଶନର ପରିପୁଷ୍ଟି ବିନା ସାଂସ୍କୃତିକ ପରିପୁଷ୍ଟି ସମ୍ଭବ ନୁହେଁ ବୋଲି ସେମାନଙ୍କର ବିଶ୍ୱାସ ଥିଲା । ଆଚାର୍ଯ୍ୟଙ୍କୁ ରକ୍ଷା କରିବା ଥିଲା ବ୍ରହ୍ମଚାରୀର ଆଉ ଏକ କର୍ତ୍ତବ୍ୟ । ଏଥି ପ୍ରତି ଲକ୍ଷ୍ୟ ରଖି 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି "ବ୍ରହ୍ମଚାରୀମାନେ ଆଚାର୍ଯ୍ୟଙ୍କୁ ତାଙ୍କ ଘରକୁ ଓ ଗୋରୁ ଗାଈଙ୍କୁ ରକ୍ଷା କରିଥାନ୍ତି । ଆଚାର୍ଯ୍ୟଙ୍କୁ ବ୍ରହ୍ମଚାରୀ ବିଭିନ୍ନ ଦୁଃଖ ଆପଦରୁ ରକ୍ଷା କରିବା ସହିତ ତାଙ୍କର ସେବା କରୁଥାଏ । ତାଙ୍କୁ ଦେବତା ଭଳି ଜ୍ଞାନ କରି ପୂଜା କରୁଥାଏ ।(୧୬) 'ଆଚାର୍ଯ୍ୟ ଦେବୋଭବ' ଅର୍ଥାତ୍ ଆଚାର୍ଯ୍ୟଙ୍କୁ ଦେବତା

ଭଳି ପୂଜା କରିବାର ମହତ୍ତ୍ୱ ସେ ସର୍ବଦା ରକ୍ଷା କରିଥାଏ । ବ୍ରହ୍ମଚାରୀ ନିଜକୁ ଗୁରୁଙ୍କ ଠାରେ ସମର୍ପି ଦେବା ସହିତ ତାଙ୍କୁ ବାରମ୍ବାର ପ୍ରଶ୍ନ ପଚାରି ତାଙ୍କଠାରୁ ଜ୍ଞାନ ଆହରଣ କରୁଥିଲା ଏବଂ ସେବା କରି ତାଙ୍କୁ ତୃପ୍ତ କରୁଥିଲା ''। 'ଛାନ୍ଦୋଗ୍ୟ ଉପନିଷଦ୍'ରେ ବ୍ରହ୍ମଚାରୀ ସତ୍ୟକାମଙ୍କ ସଂପର୍କରେ କେତେକ ଦୃଷ୍ଟାନ୍ତ ପାଇଥାଉ ।(୧୭) 'ଐତରେୟ ଆରଣ୍ୟକ'ରେ ମଧ୍ୟ ଶିଷ୍ୟମାନେ ଗୁରୁମାନଙ୍କର ଗାଇ ଗୋରୁ ଜଗୁ ଥିବା କଥାର ଉଲ୍ଲେଖ ଅଛି ।(୧୮) ଶିଷ୍ୟ ଆରୁଣି ଗୁରୁଙ୍କ କ୍ଷେତ୍ରରୁ ବୋହି ଯାଉଥିବା ପାଣିକୁ ଅଟକାଇବାକୁ ଯାଇ ନିଜେ ହିଡ଼ ଉପରେ ଶୋଇ ପଡିଥିଲେ ।

ସେତେବେଳେ ରାଷ୍ଟ୍ର ଶିକ୍ଷା ନୀତିକୁ ନିୟନ୍ତ୍ରିତ କରୁ ନଥିଲା । ପ୍ରତ୍ୟେକ ଗୁରୁ ଆଶ୍ରମ ଗୋଟିଏ ଆବାସିକ ବିଶ୍ୱ ବିଦ୍ୟାଳୟ ଭଳି କାର୍ଯ୍ୟ କରୁଥିଲା । ସେଠାରେ ଶିଷ୍ୟମାନେ ଗୁରୁସେବା ସହିତ ଚରିତ୍ର ଗଠନ, ଯଜ୍ଞାନୁଷ୍ଠାନ ଓ ବିଦ୍ୟା ଅଧ୍ୟୟନ ସଂର୍ପରେ ଶିକ୍ଷା ଲାଭ କରୁଥିଲେ । ବ୍ରହ୍ମଚାରୀମାନେ ପ୍ରତ୍ୟହ ଭିକ୍ଷା କରି ଗୁରୁଙ୍କୁ ଆଣି ଦେଉଥିଲେ । ବ୍ରହ୍ମଚାରୀମାନେ ଭିକ୍ଷା କରିବା ଉଚିତ୍ ବୋଲି 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି ।(୧୯) ଧନୀ ଦରିଦ୍ର ସବୁ କୁଳର ବ୍ରହ୍ମଚାରୀମାନେ ଭିକ୍ଷା କରୁଥିଲେ । ଫଳରେ ସେମାନଙ୍କ ମନରେ ନମ୍ରତା ସୃଷ୍ଟି ହେଉଥିଲା । ସ୍ନାତକ ହୋଇ ଘରକୁ ଫେରିବା ପରେ ଭିକ୍ଷା ନିଷିଦ୍ଧ ଥିଲା ।

ଗୁରୁ ଆଶ୍ରମରେ ଯଜ୍ଞାନୁଷ୍ଠାନ ଥିଲା ନିତ୍ୟ ନୈମିତ୍ତିକ କାର୍ଯ୍ୟ । ସେଥିପାଇଁ ସମିଧ ସଂଗ୍ରହ କରିବାକୁ ପଡୁଥିଲା । ଯେଉଁଦିନ ସେ ସମିଧ ସଂଗ୍ରହ କରୁନଥିଲା ତାର ସେହି ଦିନ ରାତିରୁ ଆୟୁଷ କ୍ଷୟ ହେଉଥିଲା ।(୨୦) ଅଗ୍ନିରେ ସମିଧ ପକାଇଲାବେଳେ ବ୍ରହ୍ମଚାରୀ ମନ୍ତ୍ରମାନ ଉଚ୍ଚାରଣ କରି କହୁଥିଲା -- ''ହେ ଅଗ୍ନି ଦେବ ତୁମେ ଯେମିତି ସମିଧର ଅର୍ପଣରେ ପ୍ରଦୀପ୍ତ ହୋଇ ଉଠୁଅଛ । ମୁଁ ସେମିତି ତୁମର ଆଶୀର୍ବାଦ ପାଇ ଦୀର୍ଘାୟୁ, ଜ୍ଞାନୀ, ବ୍ରହ୍ମବାଦୀ ଓ ଦୀପ୍ତିମାନ ହୁଏ''।(୨୧) ଅଗ୍ନିରେ ସମିଧ ଅର୍ପଣ କରିବାର ଏହାହିଁ ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଏହି ସବୁ ବିଚାରରୁ ଆମେ ବୁଝିପାରିବା ଯେ ସମିଧ ସଂଗ୍ରହ ମଧ୍ୟ ଥିଲା ବ୍ରହ୍ମଚାରୀର ଆଉ ଏକ କର୍ତ୍ତବ୍ୟ ।

ବୈଦିକ ବିଦ୍ୟାଳୟମାନଙ୍କରେ ଯେଉଁ ପାଠ୍ୟକ୍ରମ ସବୁ ଥିଲା, ତାହା ଶତପଥ ବ୍ରାହ୍ମଣରୁ ସୂଚନା ମିଳିଥାଏ । ବୈଦିକ ମନ୍ତ୍ର, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ ଓ ବେଦାଙ୍ଗ ଥିଲା ମୁଖ୍ୟ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ । ବୈଦିକ ଶିକ୍ଷାକୁ କୁହାଯାଉଥିଲା 'ସ୍ୱାଧ୍ୟାୟ' ଏବଂ ଏହି 'ସ୍ୱାଧ୍ୟାୟ'ର ଅନ୍ୟନାମ ଥିଲା 'ବ୍ରହ୍ମ'। 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି 'ସ୍ୱାଧ୍ୟାୟ' ହେଉଛି ବ୍ରହ୍ମଯଜ୍ଞ । ଅତଏବ ବ୍ରହ୍ମଯଜ୍ଞରେ ସିଦ୍ଧି ଲାଭ କରିବାପାଇଁ ବା ବ୍ରହ୍ମଜ୍ଞାନ ପାଇବାପାଇଁ ଛାତ୍ରମାନଙ୍କୁ ବେଦାଧ୍ୟୟନ କରିବାକୁ ପଡିଥାଏ ।(୨୨) ସକଳ ବିଦ୍ୟା ମଧ୍ୟରେ ବୈଦିକ ମନ୍ତ୍ରର ଅଧ୍ୟୟନ ଏ ଶିକ୍ଷାର ବିଶିଷ୍ଟ ଅଙ୍ଗ ଥିଲା । ବୈଦିକ ସାହିତ୍ୟ ମଧ୍ୟରେ ସକଳ ବେଦମନ୍ତ୍ର ଓ ତତ୍ ସଂପର୍କିତ ଛନ୍ଦ ବିଦ୍ୟା ଅନ୍ତର୍ଭୁକ୍ତ ଥିଲା । ପ୍ରାଥମିକ ଅବସ୍ଥାରେ ବେଦାଧ୍ୟାୟନ ଉପରେ ଗୁରୁତ୍ୱ ଦିଆ ଯାଉଥିଲା । ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ଗ୍ରନ୍ଥ ଗୁଡିକର ଅଧ୍ୟୟନ ଉପରେ ଗୁରୁତ୍ୱ ଦିଆ ଯାଉଥିଲା । ବ୍ରାହ୍ମଣ ଗୋଷ୍ଠୀର ଶିଷ୍ୟମାନେ ବୈଦିକ କର୍ମକାଣ୍ଡ ଉପରେ ବିଶେଷ ଜ୍ଞାନ ଉପାର୍ଜନ କରିବାକୁ ଉଦ୍ୟମ କରୁଥିଲେ । କାରଣ ଭବିଷ୍ୟତରେ ପୌରହିତ୍ୟ କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ବିଭିନ୍ନ ଆକାରର ଯଜ୍ଞ ବେଦୀ ନିର୍ମାଣ କରିବା ପାଇଁ ଶିଷ୍ୟମାନଙ୍କୁ

ମୌଳିକ ଜ୍ୟାମିତିକ ସୂତ୍ର ବିଷୟରେ ଶିକ୍ଷା ଦିଆଯାଉଥିଲା । ଏଥି ସହିତ ସଂପୃକ୍ତ ମୌଳିକ ଗାଣିତିକ ସୂତ୍ର ବିଷୟରେ ଶିକ୍ଷା ପାଉଥିଲେ ।

'ଗ୍ରହମାସ ଓ ସୌରବର୍ଷ' ମଧ୍ୟରେ ପ୍ରଭେଦ ନିର୍ଣ୍ଣୟ କରିବା ଲାଗି ଜ୍ୟୋତିର୍ବିଦ୍ୟା ଶିକ୍ଷା କରୁଥିଲେ । ବିଭିନ୍ନ ଯଜ୍ଞର କାଳ ନିର୍ଣ୍ଣୟ ଲାଗି ଜ୍ୟୋତିର୍ବିଦ୍ୟା ଶିକ୍ଷା ମଧ୍ୟ ସେମାନେ କରୁଥିଲେ । ବୈଦିକ କାଳରେ ଜ୍ୟୋତିର୍ବିଦ୍ୟା ଅଧିକ ଲୋକପ୍ରିୟ ଥିଲା । ଫଳରେ ଶିକ୍ଷାର ପାଠ୍ୟକ୍ରମରେ ଜ୍ୟୋତିର୍ବିଦ୍ୟା ଅଧ୍ୟୟନ ଅନ୍ତର୍ଭୁକ୍ତ ଥିଲା । ଋଗ୍‌ବେଦ ଏବଂ ଅନ୍ୟାନ୍ୟ ବୈଦିକ ଗ୍ରନ୍ଥମାନଙ୍କରେ ନଦୀ, ପର୍ବତ, ସମୁଦ୍ର, ଅରଣ୍ୟ ଆଦିର ବର୍ଣ୍ଣନା ରହିଅଛି । ବୈଦିକ ଋଷିମାନଙ୍କର ଭୌଗଳିକ ସ୍ଥିତି ସଂପର୍କରେ ଯଥେଷ୍ଟ ଜ୍ଞାନ ଥିଲା । ପାଠ୍ୟକ୍ରମରେ ଭୂଗୋଳ ବିଷୟକ ମୌଳିକ ଶିକ୍ଷା ଦାନ ଅନ୍ତର୍ଭୁକ୍ତ ଥିଲା ।

ଏହାଛଡ଼ା ନିରୁକ୍ତ, ବ୍ୟାକରଣ, ବିଦ୍ୟା ବା ବିଜ୍ଞାନ, ଇତିହାସ, ପୁରାଣ ବା ଆଖ୍ୟାନ ସମୂହ ମଧ୍ୟ ବୈଦିକ ଶିକ୍ଷା ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ଥିଲା । ଏହା ବ୍ୟତୀତ ନିଧି (Chronology) ବାକୋବାକ୍ୟ,(Dialectics) ଏକାୟନ (Ethics) ଯୁଦ୍ଧ ବିଦ୍ୟା, ସର୍ପଜ୍ଞାନ, ଦୈବ (Knowledge of the Portents) ଥିଲା ପ୍ରଧାନ । ଦେବବିଦ୍ୟା, ଭୂତିବିଦ୍ୟା, ଦେବ ଜନ ବିଦ୍ୟା, (Dancing or Music or mythology) ମଧ୍ୟ ପଢ଼ା ଯାଉଥିଲା । ଯଦିଓ ଏଗୁଡ଼ିକର ବିଭିନ୍ନ ଶାଖା ମିଳୁନାହିଁ ତଥାପି କେତେକ ଉଲ୍ଲେଖରୁ ଜଣା ପଡ଼େ ଶିକ୍ଷା ତାର ଉନ୍ନତି ପଥରେ ଏସବୁ ପାଠ୍ୟକ୍ରମକୁ ନେଇ ଆଗେଇ ଥିଲା । 'ଛାନ୍ଦୋଗ୍ୟ ଉପନିଷଦ୍'ରେ ନାରଦ ଋଷି ତାଙ୍କ ଗୁରୁ 'ସନତ୍ କୁମାର' ଙ୍କ ଠାରୁ କେଉଁ କେଉଁ ବିଷୟରେ ଶିକ୍ଷା ଲାଭ କରିଥିଲେ ତାହାର ଏକ ଦୀର୍ଘ ତାଲିକା ଦିଆଯାଇଛି ।(୨୩) ଏହି ତାଲିକାରୁ ଅନୁମିତ ହୁଏ ଯେ ଉପନିଷଦ୍ ଯୁଗ ବେଳକୁ ବୈଦିକ ଶିକ୍ଷା ଏକ ବିଧିନିଷ୍ଠ ଓ ଶୃଙ୍ଖଳିତ ପର୍ଯ୍ୟାୟରେ ଆସି ପହଞ୍ଚିଥିଲା । ଉଭୟ ବିଶାରଦ ଜ୍ଞାନ ଓ ଅନ୍ତର୍ବିଦ୍ୟା ଭିତ୍ତିକ ଜ୍ଞାନ ବିତରଣ କରିବା ଏହାର ଲକ୍ଷ୍ୟ ଥିଲା ।

ବ୍ରହ୍ମଚର୍ଯ୍ୟାଶ୍ରମରେ କିଛି କର୍ତ୍ତବ୍ୟ ପାଳନର ଯେପରି ବିଧିଥିଲା କ'ଣ କ'ଣ ନକରିବ ତାହା ମଧ୍ୟ ଉଲ୍ଲେଖିତ ହୋଇଛି 'ଗୋପଥ ବ୍ରାହ୍ମଣ'ରେ ।(୨୪) ନିମ୍ନ ଲିଖିତ କେତେକ ପ୍ରଧାନ ପ୍ରଧାନ ନିଷେଧ ଏଥିରେ ଅନ୍ତର୍ଗତ । (କ) ବ୍ରହ୍ମଚାରୀକୁ ଇନ୍ଦ୍ରିୟମାନଙ୍କୁ ଦମନ କରିବାକୁ ପଡ଼ିବ । (ଖ) ନିଦ୍ରା, ଆଳସ୍ୟ, କ୍ରୋଧ, ଲୋଭ ଓ ଗର୍ବ ଅଭିମାନକୁ ଦୂରେଇ ଦେବାକୁ ପଡ଼ିବ । (ଗ) ସେ ବ୍ୟକ୍ତିଗତ ସୌନ୍ଦର୍ଯ୍ୟ ବୃଦ୍ଧିଲାଗି ଭଲ ଲୁଗାପଟା ପିନ୍ଧିବ ନାହିଁ କିମ୍ବା ଦେହରେ ସୁଗନ୍ଧ ଦ୍ରବ୍ୟାଦି ଲାଗାଇବ ନାହିଁ । (ଘ) ସେ ନିଜର ଯଶ ପ୍ରାପ୍ତି ଲାଗି ଲାଳାୟିତ ହେବ ନାହିଁ । (ଙ) ସେ କୌଣସି ବିଳାସ ବ୍ୟସନରେ ମାତିବ ନାହିଁ । (ଚ) ତାକୁ ସ୍ତ୍ରୀ ଜାତିର ସାନ୍ନିଧ୍ୟ ପରିହାର କରିବାକୁ ପଡ଼ିବ । (ଛ) ତାକୁ ନାଚ ଗୀତ ଠାରୁ ଦୂରେଇ ରହିବାକୁ ପଡ଼ିବ ।(ଜ) ସେ କାହାକୁ କଟୁ କଥା କହି ମନରେ ଆଘାତ ଦେବ ନାହିଁ କିମ୍ବା କାହା ଉପରେ ରାଗିବ ନାହିଁ । (ଝ) ସେ ଉଲଗ୍ନସା ନାରୀ ଆଡ଼କୁ ଚାହିଁବ ନାହିଁ । (ଞ) ସେ କୌଣସି ବାସନା ଜିନିଷ ଶୁଙ୍ଘିବ ନାହିଁ, ଏପରିକି ବାସ ଛାଡୁଥିବା କୌଣସି ଗଛ ଉପାଡ଼ି ତାହାକୁ ଶୁଙ୍ଘିବ ନାହିଁ । (ଟ) ସେ ଉଚ୍ଚ ଆସନରେ ବସିବ ନାହିଁ । (ଠ) ସେ ଖଟ ଉପରେ ନଶୋଇ ତଳେ ଶୋଇବ । (ଡ) ଅତି ନମ୍ର ଭାବରେ ଚଲା ବୁଲା କରିବ । (ଢ) ସେ ଛେପ ପକାଇବ ନାହିଁ । (ଏଗୁଡ଼ିକ ସୁରେନ୍ଦ୍ରନାଥ ଶତପଥୀଙ୍କ

ଭାରତୀୟ ସଂସ୍କୃତି ବୈଦିକ ପର୍ବ ଦ୍ୱିତୀୟ ଭାଗ ପୃଷ୍ଠା ୧୮୭ ରୁ ଉଦ୍ଧୃତ) ଉପରୋକ୍ତ ତାଲିକାରୁ ଜଣାପଡୁଛି ବ୍ରହ୍ମଚାରୀଙ୍କୁ ଏକ ସତ୍ ଚରିତ୍ର ଓ ଶୀଳବାନ ବ୍ୟକ୍ତି କରି ଗଢ଼ିବା ଥିଲା ଏଗୁଡ଼ିକର ଲକ୍ଷ୍ୟ ଏବଂ ସେହି ଲକ୍ଷ୍ୟ ସାଧନ ନିମିତ୍ତ ଆଚାର୍ଯ୍ୟ ଥିଲେ ସର୍ବଦା ସଚେତନ । ଆଚାର୍ଯ୍ୟ ଶିଷ୍ୟଙ୍କୁ ଦେଉଥିବା ଉପଦେଶ ଗୁଡ଼ିକ ହେଲା – "ସତ୍ୟକୁ ଛାଡ ନାହିଁ, ଧର୍ମକୁ ଛାଡ ନାହିଁ, କୁଶଳ କର୍ମକୁ ଛାଡନାହିଁ, ଐଶ୍ୱର୍ଯ୍ୟକୁ ଛାଡ ନାହିଁ, ଅଧ୍ୟୟନ ଓ ଅଧ୍ୟାପନାକୁ ଛାଡ ନାହିଁ, ମାଆଙ୍କର ପୂଜାକର, ବାପାଙ୍କର ପୂଜାକର, ଆଚାର୍ଯ୍ୟଙ୍କୁ ପୂଜାକର, ଅତିଥିଙ୍କର ପୂଜାକର, ଅନ୍ୟସବୁ କାମ ଛାଡି ଯେଉଁ ଗୁଡିକ ଭଲ କାମ ସେଗୁଡିକ କର । ଆମ୍ଭେମାନେ ଯେଉଁଭଲ ଆଚରଣ ଦେଖାଉଛୁ, ତୁମେ ଅନ୍ୟ ସବୁ ଛାଡି ସେଗୁଡିକ ପାଳନ କର" । (୨୫)

ବୈଦିକ ଶିକ୍ଷା ଗୁରୁ ଓ ଶିଷ୍ୟଙ୍କ ପାରସ୍ପରିକ ସହଯୋଗରେ ସମାହିତ ହେଉଥିଲା । ଗୁରୁ ମଧ୍ୟ ଶିଷ୍ୟ ସହିତ ଅଧ୍ୟୟନରତ ହେଉଥିଲେ । ଶିଷ୍ୟର ଆଚରଣ ଉପରେ ପ୍ରଭାବ ପକାଇବାପାଇଁ ଗୁରୁ ଆଚରଣ ଶୁଦ୍ଧି କରୁଥିଲେ । ଆଚାର୍ଯ୍ୟ ନାମଟି ସୃଷ୍ଟି ହୋଇଛି ଏହି ଆଚରଣ ଶୁଦ୍ଧତା ଉପରେ ଉପଲକ୍ଷ୍ୟ କରି । ତେଣୁ କୁହାଯାଇଛି ନାନାପ୍ରକାର ଶାସ୍ତ୍ର ଆଲୋଚନା କରି, ବାରମ୍ବାର ବିଚାର କରି ନିଜେ ସେହିଭଳି ଆଚରଣ ଯେ କରନ୍ତି ତାହାଙ୍କୁ କୁହାଯାଏ ଆଚାର୍ଯ୍ୟ । 'ତୈତ୍ତିରୀୟ ଉପନିଷଦ୍' ରେ ଉଭୟେ ଗୁରୁ ଶିଷ୍ୟ ଏକତ୍ର ପ୍ରାର୍ଥନା କରି କହିଅଛନ୍ତି- "ଆମ ଦୁହିଁଙ୍କ ଦ୍ୱାରା ପଠିତ ପାଠ୍ ତେଜସ୍ୱୀ ହୋଇଉଠୁ" ।(୨୬) ଏଥିରୁ ଅନୁମିତ ହୁଏ ଯେ ଗୁରୁ ଓ ଶିଷ୍ୟଙ୍କର ପାରସ୍ପରିକ ସାହାଯ୍ୟ ସହଯୋଗରେ ଶିକ୍ଷା ନିର୍ବାହ କରିବା ଥିଲା ବଳିଷ୍ଠ ବୈଦିକ ପରମ୍ପରା ।

ବିଦ୍ୟାର ପରାକାଷ୍ଠା ପ୍ରଦର୍ଶନ କରିବା ପାଇଁ ବିଭିନ୍ନ 'ତର୍କ' ସଭାମାନ ଆୟୋଜନ ହେଉଥିଲା । ଏଗୁଡିକ ହେଲା ରାଜା ଜନକଙ୍କ ତର୍କ ସଭା । ଯେଉଁଥିରେ 'ଯାଜ୍ଞବଳକ୍ୟ', ଗାର୍ଗୀ, ମୈତ୍ରେୟୀ ଆଦି ବିଦ୍ୱାନ ଓ ବିଦୂଷୀମାନେ ଯୋଗ ଦେଇଥିଲେ । ପ୍ରଶ୍ନ କର୍ତ୍ତାଙ୍କୁ ପ୍ରଶ୍ନୀ ଯେ ପ୍ରଶ୍ନର ଉତ୍ତର ଦେଇ ପୁନଃ ପ୍ରଶ୍ନ ପଚାରୁ ଥିଲେ ତାଙ୍କୁ 'ଅଭିପ୍ରଶ୍ନୀ' ବୋଲି କୁହାଯାଉଥିଲା । ବୈଦିକ 'ବାକୋବାକମ୍' ଶବ୍ଦଟି ଏହି ପ୍ରକାର ପ୍ରଶ୍ନୋତ୍ତର ଦେବା ପ୍ରସଙ୍ଗରୁ ବାହାରିଛି । ବୌଦ୍ଧିକ ସ୍ତରକୁ ଶାଣିତ କରିବା ପାଇଁ ଆଚାର୍ଯ୍ୟ ଏବଂ ଶିଷ୍ୟମାନେ ବକ୍ତୃତା ପ୍ରତିଯୋଗିତାରେ ଯୋଗ ଦେଉଥିଲେ । ସମାଜରେ ଗୁରୁଙ୍କ ଆସନ ଖୁବ୍ ଉଚ୍ଚରେ ଥିଲା । ତେଣୁ ତାଙ୍କୁ ଛାତ୍ରର ଆଧ୍ୟାତ୍ମିକ ପିତା ବୋଲି କୁହାଯାଉଥିଲା ।

ବ୍ରହ୍ମଚାରୀର ମଧ୍ୟ ସାମାଜିକ ସ୍ଥିତି ଉଚ୍ଚରେ ଥିଲା । ସ୍ନାତକ ଗୁରୁ ଆଶ୍ରମରୁ ଗୃହକୁ ଫେରିବା ବେଳେ ତାଙ୍କୁ ଲକ୍ଷ୍ୟ କରି କୁହାଯାଇଛି "ସେ ପୂର୍ବ ସମୁଦ୍ରରୁ ଅର୍ଥାତ୍ ବ୍ରହ୍ମଚର୍ଯ୍ୟାଶ୍ରମରୁ ଉତ୍ତର ସମୁଦ୍ରକୁ ଅର୍ଥାତ ଗୃହସ୍ଥାଶ୍ରମକୁ ଆସୁଛି ଏବଂ ସବୁ ଲୋକଙ୍କୁ ସଂଗଠିତ କରି ନିଜ ଆଡକୁ ଟାଣି ନେଉଛି ।"(୨୭) ସମାଜ ବ୍ରହ୍ମଚାରୀ ଲାଗି ସ୍ୱତନ୍ତ୍ର ଆତିଥେୟତାର ବ୍ୟବସ୍ଥା କରିଥିଲା । ରାଜା ଯେତେଥର ଅତିଥି ହେଉଥିଲେ ତାଙ୍କୁ ମଧୁପର୍କ ଦେଇ ଆତିଥ୍ୟ ପ୍ରଦାନ କଲା ଭଳି ବ୍ରହ୍ମଚାରୀଙ୍କ ପାଇଁ ସେହି ନିୟମଟି ପ୍ରଯୁଜ୍ୟ ଥିଲା । ମାଲି ମକଦ୍ଦମାରେ ମଧ୍ୟ ବ୍ରହ୍ମଚାରୀଙ୍କର ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା । ସବୁଠାରୁ ବଡ ମହତ୍ତ୍ୱପୂର୍ଣ୍ଣ କଥା ଥିଲା ଗୁରୁ ଆଶ୍ରମ ଥିଲା ଏକ ସଂପୂର୍ଣ୍ଣ ସ୍ୱାଧୀନ ଅନୁଷ୍ଠାନ । ଏହା ଉପରେ ରାଷ୍ଟ୍ରର କିଂବା ରାଜାଙ୍କର

କିଛି କର୍ତ୍ତୃତ୍ୱ ନଥିଲା । ବୈଦିକ ସମାଜରେ ଗୁରୁ, ଶିଷ୍ୟ ଏବଂ ବିଦ୍ୟାୟତନ ମହତ୍ତ୍ୱପୂର୍ଣ୍ଣ ଓ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଭାବରେ ଗୃହୀତ ହେଉଥିଲା ।

ବୈଦିକ ସମାଜରେ ଶିକ୍ଷା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି କେବଳ ବଡ ବଡ ରାଜା ଏବଂ ବିଶିଷ୍ଟ ଜ୍ଞାନୀ, ଅଧ୍ୟାପକ ଆଦି ସାହିତ୍ୟିକ ତଥା ଆଧ୍ୟାତ୍ମିକ ଆଲୋଚନାରେ ଭାଗ ନେଉଥିଲେ ତାହା ନୁହେଁ , ଅତି ସାଧାରଣ ଲୋକ ମଧ୍ୟ ସେଥିରେ ଭାଗ ନେଉଥିଲେ । ବ୍ରାହ୍ମଣମାନେ ମଧ୍ୟ ତତ୍ତ୍ୱଦର୍ଶୀ କ୍ଷତ୍ରିୟମାନଙ୍କଠାରୁ ବିଦ୍ୟା ଗ୍ରହଣ କରିଥିବା କଥା 'ଉପନିଷଦ୍'ରୁ ପ୍ରମାଣିତ ହୁଏ । ରାଜାଜନକ, ଅଶ୍ୱପତି, କୈକୟ, ଅଜାତଶତ୍ରୁ ତଥା ପ୍ରବହଣ ଆଦି କ୍ଷତ୍ରିୟ ରାଜାମାନଙ୍କ ଠାରୁ ବ୍ରାହ୍ମଣମାନେ ବିଦ୍ୟା ଅଧ୍ୟୟନ କରିଥିଲେ । 'ବୃହଦାରଣ୍ୟକ ଉପନିଷଦ୍'ରେ ଗାର୍ଗୀ ଦୈବୀ ଶକ୍ତିର ଉତ୍ପତ୍ତି ବିଷୟରେ 'ଯାଜ୍ଞବଲକ୍ୟ'ଙ୍କୁ ବାରମ୍ବାର ପ୍ରଶ୍ନ ପଚାରି ଥାନ୍ତି । 'ଯାଜ୍ଞବଲକ୍ୟ' ନିଜ ପତ୍ନୀ ମୈତ୍ରେୟୀଙ୍କୁ ଅଧ୍ୟାତ୍ମଜ୍ଞାନ ପ୍ରଦାନ କରିଛନ୍ତି । ଏଥିରୁ ପ୍ରମାଣିତ ହୁଏ ସ୍ତ୍ରୀମାନେ ଯେ କେବଳ 'ଆଧ୍ୟାତ୍ମ' ଚିନ୍ତାରେ ଭାଗ ନେଉଥିଲେ ତାହା ନୁହେଁ, ସେମାନେ ମଧ୍ୟ ଅଧ୍ୟାପନା କରୁଥିଲେ । (ଅଭିନ୍ନ ଚନ୍ଦ୍ର ଦାଶଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି ପୁସ୍ତକର ୧୨୦ ପୃଷ୍ଠାରୁ ଉଦ୍ଧୃତ)

ବୈଦିକ ଶିକ୍ଷାର ଉପକର୍ମ ଉତ୍ସବ ଶ୍ରାବଣ ମାସର ଶୁକ୍ଳ ପକ୍ଷରେ ପାଳିତ ହେଉଥିଲା । ସେହିଦିନ ଠାରୁ ଛାତ୍ରମାନେ ଗୁରୁ ଗୃହରେ ବେଦାଧ୍ୟୟନ ଆରମ୍ଭ କରୁଥିଲେ । ପାଞ୍ଚମାସ କିମ୍ବା ଛଅମାସ ପରେ ଉତ୍ସର୍ଗ ଉତ୍ସବ (ଅନଧ୍ୟୟନ) ପୌଷ କିମ୍ବା ମାଘ ମାସରେ ପାଳିତ ହେଉଥିଲା । ଏଥିରୁ ମନେହୁଏ ବର୍ଷର ପ୍ରାୟ ୬ମାସ ବେଦାଧ୍ୟୟନ ହେଉଥିଲା ଏବଂ ଅନ୍ୟ ୬ମାସ 'ଅନଧ୍ୟୟନ'ରେ ଅର୍ଥାତ୍ ଛୁଟିରେ କଟୁଥିଲା । 'ଧର୍ମ ସୂତ୍ର' ଅନୁସାରେ ଶୁକ୍ଳପକ୍ଷରେ ବେଦାଧ୍ୟୟନ ହେଉଥିଲା ଏବଂ କୃଷ୍ଣ ପକ୍ଷରେ ବେଦାଙ୍ଗର ଅଧ୍ୟୟନ କରାଯାଉଥିଲା । ମଝିରେ ମଝିରେ ମଧ୍ୟ କୌଣସି ଦୈବ ଦୁର୍ବିପାକ, ବର୍ଷା, ଚନ୍ଦ୍ର ଗ୍ରହଣ, ସୂର୍ଯ୍ୟୋପରାଗ, ଜନ୍ମ, ମୃତ୍ୟୁ ଇତ୍ୟାଦି ସମୟରେ ଛାତ୍ରମାନେ ଛୁଟି ପାଉଥିଲେ । ବେଦାଧ୍ୟୟନର ଶୁଦ୍ଧତା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ଯେ କୌଣସି ସ୍ଥାନରେ ବେଦ ପାଠ କରାଯାଉ ନଥିଲା । ପୂତ ଓ ପବିତ୍ର ହୃଦୟରେ ବେଦଗାନ କରାଯାଉଥିଲା ।

ନୈତିକ ଶିକ୍ଷା ସହିତ ଶାରିରୀକ ଶିକ୍ଷାକୁ ମଧ୍ୟ ମହତ୍ତ୍ୱ ପ୍ରଦାନ କରାଯାଉଥିଲା । ଉପନୟନ ବା ସଂସ୍କାର କର୍ମର ପ୍ରାର୍ଥନା ମନ୍ତ୍ରରେ ବଳ ଓ ଉତ୍ସାହ ନିମିତ୍ତ ନିବେଦନ କରାଯାଇଛି । ଭିକ୍ଷାଟନ, ଯଜ୍ଞକାଠ ସଂଗ୍ରହ, ଜଳଦାନ, ଗୋରକ୍ଷା ଇତ୍ୟାଦି ଦୈହିକ କର୍ମ ଛାତ୍ର ବା ବ୍ରହ୍ମଚାରୀମାନଙ୍କୁ କରିବାକୁ ହେଉଥିଲା । ଉଚ୍ଚସ୍ୱରରେ ବେଦ ପଠନ; ସକାଳ, ମଧ୍ୟାହ୍ନ ଓ ସଂଧ୍ୟାରେ ପ୍ରାର୍ଥନା ତଥା ପ୍ରାଣାୟମ ଆଦି କ୍ରିୟା ଦ୍ୱାରା ଛାତ୍ରମାନଙ୍କୁ ଶାରିରୀକ ଶ୍ରମ କରିବାକୁ ପଡୁଥିଲା ।

**(ଖ) ଧର୍ମ ଓ ଆଧ୍ୟାତ୍ମିକତା :-**

ଧର୍ମ ଶବ୍ଦ 'ଧୃ' ଧାତୁରୁ ନିଷ୍ପନ୍ନ । ଯାହା ଧାରଣ କରେ । ଧର୍ମରେ ଉଭୟେ ଜଡ ଓ ଜୀବ ବନ୍ଧା ହୋଇ ରହିଅଛନ୍ତି । "କୌଣସି ବସ୍ତୁ ବା କୌଣସି ଚେତନ ପଦାର୍ଥର ଜନ୍ମ ହେବା ମାତ୍ରେ, ତାହା କିପରି ରହିବ, କିପରି ବଢିବ, ସେଥିପାଇଁ ଏକ ଚିରନ୍ତନ ନିୟମ କାର୍ଯ୍ୟ କରିଥାଏ । ଏହାକୁ କୁହାଯାଏ ଧର୍ମ "।(୨୮)

ବୈଦିକ ଯୁଗରେ ଯେଉଁ ଧର୍ମ ବିକଶିତ ହୋଇଥିଲା ତାହା ହେଉଛି ବୈଦିକ ଧର୍ମ ବା ସନାତନ ଧର୍ମ । ଏହାର "ପ୍ରବର୍ତ୍ତକ ହେଉଛନ୍ତି ବୈଦିକ ମୁନି ଋଷି , ଯାହା ସେମାନେ ଦର୍ଶନ କରିଛନ୍ତି । ଯାହା ଉପଲବ୍ଧି କରିଛନ୍ତି ତାହାକୁ ଧର୍ମ ବୋଲି କହି ସାରା ଜଗତ ଆଗରେ ଉପସ୍ଥାପିତ କରିଛନ୍ତି । ସାରା ମାନବ ସମାଜର ମଙ୍ଗଳ ଲାଗି ତାହାର ଅନୁଗାମୀ ହେବା ପାଇଁ ମାନବ ଜାତିକୁ ଉଦ୍‌ବୋଧନ ଦେଇଛନ୍ତି "। ରାଧାକୃଷ୍ଣନ୍ ଏ ସ୍ଥିତିକୁ ବୁଝାଇ କରି ଯଥାର୍ଥରେ କହିଅଛନ୍ତି "ବୈଦିକ ଦର୍ଶନ ଅନୁଭୂତି ସହିତ ସଂପର୍କିତ "।(୨୯) 'ମୈତ୍ରେୟ ଉପନିଷଦ' ମଧ୍ୟ କୁହେ ଯେ ଅନୁଭୂତି ବିନା ମୂର୍ଖ ଲୋକ ବ୍ରହ୍ମାନନ୍ଦ ପାଇବା ପାଇଁ ଉଦ୍ୟମ କରିଥାଏ ।(ଅନୁଭୂତି ବିନା ମୂଢୋ ବୃଥା ବ୍ରହ୍ମଣି ମୋଦତେ) ବୈଦିକ ଦର୍ଶନ ପରି ବୈଦିକ ଧର୍ମ ମଧ୍ୟ ଅନୁଭୂତିନିଷ୍ଠ । ନିମ୍ନଲିଖିତ ଦାର୍ଶନିକ ଚିନ୍ତାଧାରା ଦ୍ୱାରା ବୈଦିକ ଧର୍ମ ଅନୁପ୍ରାଣୀତ । "(କ) ସାରାବିଶ୍ୱ ବ୍ରହ୍ମାଣ୍ଡ ମୂଳରେ ଏକ ଚିରନ୍ତନ ସତ୍ୟ ବିଦ୍ୟମାନ । (ଖ) ଏହି ସତ୍ୟକୁ ଉପଲବ୍ଧି କରି ହେବ । (ଗ) ଏହି ସତ୍ୟାନୁସାରୀ ଜୀବନ ମଧ୍ୟ କାଟି ହେବ । (ଘ) ମାନବ ଜୀବନର ଅନନ୍ତ ସମ୍ଭାବନା ରହିଛି ଏବଂ କ୍ରମବିବର୍ତ୍ତନରେ ସେ ଜୀବନର ପରମ ଲକ୍ଷ୍ୟ ମୋକ୍ଷ ପାଇପାରିବ । (ଙ) "ମୋକ୍ଷ ପ୍ରାପ୍ତି" ଭବିଷ୍ୟତ ଜୀବନ ଲାଗି ଏକ ସିଦ୍ଧି ନୁହେଁ । ଏହା ଏହି ଜୀବନର ଏକ ମାନସିକ ସ୍ଥିତି ଯାହାକି ମନର ଚତୁର୍ଥ ଅବସ୍ଥା 'ତୁରୀୟ ଅବସ୍ଥା'ରେ ଉପଲବ୍ଧ ହୋଇଥାଏ । (ଚ) ସର୍ବଦା ଆଲୋକ ଓ ଅନ୍ଧାର ମଧ୍ୟରେ, ଭଲ ଓ ମନ୍ଦ ମଧ୍ୟରେ ସଂଘର୍ଷ ଲାଗି ରହିଅଛି । ପରିଶେଷରେ ଆଲୋକର ଜୟ ହେଉଛି, ଭଲ ତାହାର ଆସନ ବଜାୟ ରଖିପାରୁଛି । ମନ୍ଦ କେବଳ ବିପର୍ଯ୍ୟସ୍ତ ଭାବରେ ହଟି ଯାଉଛି । (ଛ) ମନୁଷ୍ୟର ଦୁଃଖଜଞ୍ଜାଳମୟ ଜୀବନରେ ଆଶାର ଆଲୋକ ଜଳାଇ ପରମ ସୁଖ ପାଇବାର ସମ୍ଭାବନା ରହିଛି । (ଜ) ଧର୍ମର ଲକ୍ଷ୍ୟ ହେଉଛି ଏହି ଦୁଃଖ ଗୁଡିକ ଦୂର କରି ମନୁଷ୍ୟ ଲାଗି ସୁଖମୟ ଜୀବନ ଆଣି ଦେବ । "(ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ତୃତୀୟ ଭାଗ ପୃ ୨୨୩/୨୨୨୪ ରୁ ଉଦ୍ଧୃତ) ସମଗ୍ର ବୈଦିକ ସାହିତ୍ୟକୁ ଅନୁଧ୍ୟାନ କଲେ ଜଣାଯିବ ବୈଦିକ ଧର୍ମ ଏହି ଆଠ ଗୋଟି ମୌଳିକ ଦାର୍ଶନିକ ଭିତ୍ତି ଭୂମି ଉପରେ ପ୍ରତିଷ୍ଠିତ । ଏହା ପରବର୍ତ୍ତୀ ଯୁଗରେ ସମଗ୍ର ଭାରତୀୟ ଧର୍ମ ଧାରଣାକୁ ପ୍ରଭାବିତ କରିଅଛି । ଏହି ବୈଦିକ ସନାତନ ଧର୍ମରୁ ଗ୍ଣରୋଟି ପ୍ରଧାନ ଧର୍ମ ଉତ୍ପତ୍ତି ଲାଭ କରିଅଛି । ଏଗୁଡିକ ହେଉଛି ଜୋରେଷ୍ଟର ଧର୍ମ, ହିନ୍ଦୁଧର୍ମ, ବୌଦ୍ଧଧର୍ମ ଓ ଜୈନଧର୍ମ । 'ଜୋରାଷ୍ଟ୍ର'ର ଧର୍ମର ସ୍ରଷ୍ଟା ହେଉଛନ୍ତି ବୈଦିକ ଆର୍ଯ୍ୟମାନଙ୍କର ଏକ ଭିନ୍ନ ମତବାଦୀ ଗୋଷ୍ଠୀ ଯେଉଁମାନେ ଅସୁର ନାମରେ ଖ୍ୟାତ । ସେମାନେ ଆର୍ଯ୍ୟମାନଙ୍କ ଦ୍ୱାରା ପରାସ୍ତ ହୋଇ ସପ୍ତସିନ୍ଧୁ ଅଞ୍ଚଳ ଛାଡି ଇରାନ୍ ଅଭିମୁଖେ ପଳାୟନ କରିଥିଲେ । ସେମାନଙ୍କର ଦେବତା ଥିଲେ 'ମିଥ୍ର' (ବୈଦିକ ମିତ୍ର) ଯାହାଙ୍କୁ ଉଭୟ ଅଗ୍ନି ଓ ସୂର୍ଯ୍ୟ କହିଥାନ୍ତି । କାଳକ୍ରମେ ମୁସଲମାନ ଧର୍ମର ଉଦ୍ଭବ ପରେ ଏହି ଅଗ୍ନି ପୂଜକମାନେ ଭାରତକୁ ଗ୍ଳି ଆସିଥିଲେ ଏବଂ ସ୍ୱୀୟ ଧର୍ମାନୁଗତ ପନ୍ଥା ଆଚରଣ କରି ରହିଲେ । ଆଧୁନିକ ପାର୍ସିମାନେ ହେଉଛନ୍ତି ସେମାନଙ୍କର ବଂଶଧର । ଏହାର ପ୍ରଭାବରେ ରୋମୀୟମାନେ ଆସି ଏହି ଧର୍ମକୁ ( ଅର୍ଥାତ୍ 'ମିଥ୍ର' ପୂଜାକୁ ) ବିଶ୍ୱ ଧର୍ମରେ ପରିଣତ କରି ଦେଇଥିଲେ । ମାତ୍ର ପରବର୍ତ୍ତୀ କାଳରେ 'କନଷ୍ଟାଣ୍ଟାଇନ'. ଖ୍ରୀଷ୍ଟ ଧର୍ମ ଗ୍ରହଣ କରିବାରୁ ଏହି ଧର୍ମ ରୋମରେ ଲୋପ ପାଇଗଲା । ଆର୍ଯ୍ୟ ଧର୍ମ କେବଳ ଭାରତରେ ରହି ବିକଶିତ ହେବାକୁ ଲାଗିଲା । ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଜୈନ ଧର୍ମ ଏହି ଆର୍ଯ୍ୟଧର୍ମର ରୂପାନ୍ତର ମାତ୍ର । ବୌଦ୍ଧଧର୍ମ, ଜୈନଧର୍ମ ଯଥାକ୍ରମେ ଗୌତମ ବୁଦ୍ଧ ଓ ମହାବୀରଙ୍କ

ଦ୍ୱାରା ପ୍ରଚାରିତ ହୋଇଥିଲା । ହିନ୍ଦୁ ଧର୍ମ ହେଉଛି ସଂପୂର୍ଣ୍ଣ ରୂପେ ଆର୍ଯ୍ୟ ଧର୍ମ ଓ ବେଦର ଗୁରୁତ୍ୱକୁ ସ୍ୱୀକାର କରିଥାଏ । କୌଣସି ସନ୍ଦେହରେ ହିନ୍ଦୁ ବେଦର ବାଣୀକୁ ଅନୁସନ୍ଧାନ କରିଥାଏ । ଏହି ବୈଦିକ ଧର୍ମକୁ କେହି ପ୍ରଚାର କରି ନାହାଁନ୍ତି । ଯୁଗ ଯୁଗ ଧରି ଏହା ପାରମ୍ପରିକ ରୀତିରେ ଗୋଟିଏ ପୁରୁଷରୁ ଆଉ ଗୋଟିଏ ପୁରୁଷକୁ ଗଡିଆସିଛି ।

"ଆଦିମ ଯୁଗର ଆର୍ଯ୍ୟମାନେ ଥିଲେ ପ୍ରକୃତିର ପୂଜକ । ପ୍ରାକୃତିକ ବିପତ୍ତିରୁ ନିଜକୁ ରକ୍ଷା କରିବାକୁ ଅସମର୍ଥ ହୋଇ ସେ କଳ୍ପିତ ଦେବତାର ଉପାସନା କରିବାକୁ ଲାଗିଲେ । ମାତ୍ର ସେହି କଳ୍ପିତ ଦେବତା ପ୍ରାକୃତିକ କ୍ରମର କୌଣସି ପରିବର୍ତ୍ତନ କରି ନପାରିବାରୁ ସେ ଭାବିଲା ସେହି ପ୍ରାକୃତିକ କ୍ରମ ପଛରେ କୌଣସି ଅଦୃଶ୍ୟ ଶକ୍ତିର ହାତ ଅଛି ଏବଂ ସେହି ଶକ୍ତିର ଇଂଗିତରେ ପ୍ରକୃତି ପରିଚାଳିତ ହେଉଅଛି । ତେଣୁ ଦୈବୀ ଓ ଅତିମାନୁଷୀ ଶକ୍ତି ଉପରେ ତାର ବିଶ୍ୱାସ ଜାତ ହେଲା । ସେହି ଦୈବୀ ଓ ଅତିମାନୁଷୀ ଶକ୍ତି ପ୍ରତି ଅନ୍ତରର ଗଭୀର ଭକ୍ତି, ଅନୁରାଗ ଓ ଶ୍ରଦ୍ଧା ଉଲ୍ଲସିତ ଭାବରେ ଝରି ପଡିଛି ଆର୍ଯ୍ୟ କଣ୍ଠରୁ ବେଦ ମନ୍ତ୍ର ରୂପରେ । ଫଳରେ ଭିନ୍ନ ଭିନ୍ନ ପ୍ରାକୃତିକ ବିଭବର ପ୍ରତୀକ ସ୍ୱରୂପ ଭିନ୍ନ ଭିନ୍ନ ଦେବତାର କଳ୍ପନା ଜାଗି ଉଠିଛି "।(୩୦)

ଆର୍ଯ୍ୟ ଦୃଷ୍ଟିରେ ଦେବତାର ରୂପ ମନୁଷ୍ୟର ଶରୀର ପରି ଦେବତାର ଅଙ୍ଗ ପ୍ରତ୍ୟଙ୍ଗ ଅନେକ ସ୍ଥାନରେ ପ୍ରାକୃତିକ ଦୃଶ୍ୟର ରୂପାତ୍ମକ ପ୍ରତିନିଧି ସ୍ୱରୂପ, ଯଥା- ସୂର୍ଯ୍ୟଙ୍କର ବାହୁ ହେଉଛି ତାଙ୍କର କିରଣ, ଅଗ୍ନିର ଜିହ୍ୱା ହେଉଛି ତାଙ୍କର ଶିଖା ଇତ୍ୟାଦି । "ଦେବତାର ଖାଦ୍ୟ ହେଉଛି ଘିଅ, ଦୁଧ, ଭାତ ଓ ପଶୁ ମାଂସ, କାରଣ ମନୁଷ୍ୟ ତା ପ୍ରିୟ ଖାଦ୍ୟ ଦେବତାଙ୍କୁ ଅର୍ପଣ କରୁଥିଲା । ତେଣୁ ଆର୍ଯ୍ୟ ପ୍ରାକୃତିକ ଶକ୍ତିରେ ଚୈତନ୍ୟ ଆରୋପ କରି ବୈଶ୍ୱାନର, ପ୍ରଭଞ୍ଜନ, ସୌଦାମିନୀ, ନଦୀ, ଉଷା ଇତ୍ୟାଦି ପ୍ରାକୃତିକ ଶକ୍ତିର ପ୍ରଶଂସା, ପୂଜା ଓ ଆବାହନ କରି ଆସିଛି । ଏମାନେ ହେଉଛନ୍ତି ଏକ ଦେବତାରଙ୍କର ବିଭିନ୍ନ ଅଭିପ୍ରକାଶ । ତାଙ୍କୁ ହିଁ ବହୁ ଦେବତା ଭାବରେ ଦେଖିଛନ୍ତି । ମାତ୍ର ଏକଥା ସ୍ୱୀକାର କରିବାକୁ ହେବ ବୈଦିକ ଆର୍ଯ୍ୟମାନେ ହେଉଛନ୍ତି ଏକେଶ୍ୱର ବାଦୀ ।"(୩୧)

ଋଗ୍‌ବେଦ ମତରେ "ଏହି ସବୁ ଯାହାଅଛି, ଯାହା ବା ଅତୀତରେ ଥିଲା ପୁଣି, ଯାହା ଭବିଷ୍ୟତରେ ଥିବ, ତାହା ଭଗବାନ । ସେହି ଏକ ଭଗବାନ ସର୍ବଦା ଥିଲେ, ଅଛନ୍ତି ଓ ଥିବେ । ସେହି ଏକ ଭଗବାନ ପୁରୁଷ ନା ସ୍ତ୍ରୀ ବା ଆଉ କେଉଁ ରୂପରେ କଳ୍ପିତ "।(୩୨) ଏହାର ଉତ୍ତର 'ନାରଦୀୟ ସୂକ୍ତ'ରେ ଦିଆଯାଇଛି । ସେଠାରେ ତାଙ୍କୁ କୁହାଯାଇଛି "ତଦ୍ ଏକମ୍"। ଏହା କ୍ଲୀବ ବାଚକ ଶବ୍ଦ । ଏହାର ତାତ୍ପର୍ଯ୍ୟ ହେଲା "ଭଗବାନ ଲିଙ୍ଗ ହୀନ । ସେ ପୁରୁଷ ନୁହନ୍ତି କି ସ୍ତ୍ରୀ ନୁହଁନ୍ତି ।(୩୩) 'ଶ୍ୱେତାଶ୍ୱେତ ଉପନିଷଦ୍'ରେ ବ୍ରହ୍ମଙ୍କ ସଂପର୍କରେ କୁହାଯାଇଛି "ତୁମେ ପୁରୁଷ ନୁହଁ କି ସ୍ତ୍ରୀ ନୁହଁ । ତୁମେ କୁମାର ନୁହଁକି କୁମାରୀ ନୁହଁ"।(୩୪) ଶ୍ରୀ ଅରବିନ୍ଦ କହିଛନ୍ତି – " ଏକହିଁ ପରମେଶ୍ୱର ପୂଜା ପାଆନ୍ତି ସକଳ ରୂପରେ । କାରଣ ସେହି ଈଶ୍ୱରହିଁ ବିଶ୍ୱ ବ୍ରହ୍ମାଣ୍ଡର ସବୁ କିମ୍ବା ତାଙ୍କରି ସତ୍ତା ତାଙ୍କରି ପ୍ରକୃତିରେ ସମସ୍ତେ ଗଢା ।"(୩୫) ଏହି ଏକକୁ ଅନେକ ସମୟରେ ଜ୍ଞାନୀଲୋକମାନେ ବହୁ ପ୍ରକାର କଳ୍ପନା କରିଥାନ୍ତି । ତାଙ୍କ ମତରେ ଏକମାତ୍ର ଅଗ୍ନି ବହୁ ପ୍ରକାର ଜଳିଥାନ୍ତି । ଏକମାତ୍ର ସୂର୍ଯ୍ୟ ଜଗତକୁ ଆଲୋକିତ କରିଥାନ୍ତି । ଏକମାତ୍ର ଉଷା ସମସ୍ତ ଅନ୍ଧକାରକୁ ଦୂର କରିଥାନ୍ତି - ସେହି ଏକ ରୁ ହିଁ ସାରା ଜଗତ ସୃଷ୍ଟି ।(୩୬) " ଏହି ସବୁ ଆଲୋଚନା ବୈଦିକ ଐକେଶ୍ୱର ବାଦର ନିଦର୍ଶନ "।

**ବୈଦିକ ଦେବତା** - "ବେଦରେ ବହୁ ଦେବତାଙ୍କ ବର୍ଣ୍ଣନା ମିଳେ । ଏଥିରୁ ବହୁ ଦେବତା ବାଦର **(Poly theism)** ପ୍ରମାଣ ମିଳିଥାଏ । ବହୁଦେବତାର ଅଧିପତି ଏକଦେବତାଙ୍କୁ ମଧ୍ୟ ସ୍ୱୀକାର କରାଯାଇଛି । କେତେକ କୁହନ୍ତି 'ବହୁଦେବତା ବାଦ' ଅନେକ ଦିନ ପ୍ରଚଳିତ ହେବା ପରେ ଏକଦେବତା ବାଦ ପ୍ରଚଳିତ ହୋଇଥିଲା । ଆଉ ମଧ୍ୟ କେତେକ କୁହନ୍ତି 'ଏକେଶ୍ୱରବାଦ'ରୁ ବହୁ ଦେବତା ବାଦର ସୃଷ୍ଟି । ବହୁଦେବତା ବାଦ ଏବଂ ଏକଦେବତା ବାଦ ମଧବର୍ତ୍ତୀ ସମୟରେ ସର୍ବେଶ୍ୱର ବାଦ ( Pantheism) ପ୍ରଚଳିତ ବୋଲି କେତେକ ମତ ଦେଇଥାନ୍ତି । ବିଶିଷ୍ଟ ଯଜ୍ଞାନୁଷ୍ଠାନ ସମୟରେ ଯେଉଁ ଦେବତାଙ୍କୁ ଆହ୍ୱାନ କରାଯାଉଥିଲା ତାଙ୍କୁ ସବୁଠାରୁ ପ୍ରଭାବଶାଳୀ ବୋଲି କୁହାଯାଉଥିଲା । "ମ୍ୟାକ୍ସମୁଲାରଙ୍କ ମତାନୁସାରେ ଏପରି ଧାରଣା ହେଉଛି Henotheism Katheneotheism । ମ୍ୟାକ୍ସମୁଲାର କୁହନ୍ତି "ଋଗ୍ ବେଦ ସୃଷ୍ଟିର ବହୁ ପୂର୍ବରୁ ମଧ୍ୟ ଏକେଶ୍ୱର ବାଦର ଚିନ୍ତାଧାରା ଆର୍ଯ୍ୟମାନଙ୍କ ମଧ୍ୟରେ ଥିଲା ଏବଂ ଏହାର ଭୂୟୋବିକାଶ ଋଗ୍‌ବେଦ କାଳରେ ସଂଘଟିତ ହୋଇଥିଲା ।(୩୭) ଏକଥା ଋଗ୍‌ବେଦରେ ଋଷି ମଧ୍ୟ ସ୍ପଷ୍ଟ ଭାବରେ ସ୍ୱୀକାର କରିଅଛନ୍ତି । ଯେଉଁଠି ସେ କହିଅଛନ୍ତି ପୂର୍ବରୁ ଋଷିମାନେ ଅଗ୍ନିକୁ ପୂଜା କରୁଥିଲେ ଏବଂ ଏବର ଋଷି ମଧ୍ୟ ତାଙ୍କୁ ପୂଜା କରୁଅଛନ୍ତି । ଏହି ଅଗ୍ନି ହେଉଛନ୍ତି ସର୍ବବ୍ୟାପି ଭଗବାନ । (ଅଙ୍ଗତି ସର୍ବତ୍ର ବ୍ୟାପ୍ନୋତୀତ ଅଗ୍ନି)" ।(୩୮)

ଋଗ୍‌ବେଦର ଦେବତାମାନଙ୍କର ଦୁଇ ପ୍ରକାର ରୂପ ବର୍ଣ୍ଣିତ ହୋଇଅଛି । ଯଥା-ସ୍ଥୂଳ ଦୃଶ୍ୟ ଓ ସୂକ୍ଷ୍ମ ଦୃଶ୍ୟ । ଯେଉଁ ରୂପ ସାଧାରଣରେ ଦୃଶ୍ୟ ହେଉଥିଲା ତାହା ସ୍ଥୂଳ ରୂପ ଏବଂ ଯେଉଁ ରୂପ ଇନ୍ଦ୍ରିୟର ଗୋଚରୀଭୂତ ହେଉ ନଥିଲା ତାହା ଆଧିଦୈବିକ ବା ଅଦୃଶ୍ୟ ରୂପ । କେତେକ କୁହନ୍ତି ଦେବତାର ତୃତୀୟ ପ୍ରକାର ଆଧ୍ୟାତ୍ମିକ ରୂପ କେତେକ ମନ୍ତ୍ରରେ ଥିବା ଜଣାପଡେ । ବୈଦିକ ଦେବତାମାନଙ୍କ ଠାରୁ କିଏ ବଡ ଓ କିଏ ସାନ ତାହା କୁହା ଯାଇପାରିବ ନାହିଁ । ଦେବତାମାନଙ୍କର ଶ୍ରେଣୀ ବିଭାଗ ସାନ ବଡ ହିସାବରେ କରାଯାଇ ନାହିଁ । ଯାସ୍କ ଦେବତାଙ୍କୁ ତିନି ଭାଗରେ ବିଭକ୍ତ କରିଅଛନ୍ତି । ସେମାନେ ହେଲେ- (କ) ପୃଥିବୀ ସ୍ଥାନ ଦେବତା (Terrestrial) (ଖ) ଅନ୍ତରୀକ୍ଷ ସ୍ଥାନ (Aerial or intermediate) ଏବଂ (ଗ) ଦ୍ୟୁସ୍ଥାନ ଦେବତା (Celestial) । ପୃଥିବୀ, ଅଗ୍ନି, ସୋମ, ବୃହସ୍ପତି ଓ ନଦୀ ହେଉଛନ୍ତି ପୃଥିବୀ ସ୍ଥାନ ଦେବତା । ଇନ୍ଦ୍ର, ଅପାମ୍, ନପାତ୍, ରୁଦ୍ର, ବାୟୁବାତ, ପର୍ଜନ୍ୟ, ଆପଃ ଓ ମାତରିଶ୍ୱାନ ହେଉଛନ୍ତି ଅନ୍ତରୀକ୍ଷ ସ୍ଥାନର ଦେବତା । ଦୌସ, ବରୁଣ, ମିତ୍ର, ସୂର୍ଯ୍ୟ, ସବିତୃ, ପୂଷନ୍, ବିଷ୍ଣୁ, ଆଦିତ୍ୟ, ଉଷସ୍ ଓ ଅଶ୍ୱିନୀକୁମାର ହେଉଛନ୍ତି ଦ୍ୟୁସ୍ଥାନ ଦେବତା । ଅଗ୍ନି ଓ ଉଷସ୍ ପୃଥିବୀ ସ୍ଥାନର ଦେବତା । ଦ୍ୟୁସ୍ଥାନର ଦେବତା ଭାବରେ ମଧ୍ୟ ବର୍ଣ୍ଣିତ ହୋଇଅଛନ୍ତି । ଏହା ବ୍ୟତୀତ ବିଶ୍ୱକର୍ମା ତ୍ୱଷ୍ଟା, ପ୍ରଜାପତି, ମନ୍ୟୁ, ଶ୍ରଦ୍ଧା ଇତ୍ୟାଦି କେତେକ କାଳ୍ପନିକ ଦେବତା ଅଟନ୍ତି । ଏ ସମସ୍ତ ଦେବତାଙ୍କ ମୂଳରେ ଅଛନ୍ତି ଜଣେ ଦେବତା ଯାହାଙ୍କର ଅଭିପ୍ରକାଶ ପରେ ତିନି ଦେବତାଙ୍କ ମାଧ୍ୟମରେ ହୋଇଛି । ଏ ତିନି ଦେବତା ଅଧ୍ୟକ୍ଷ ଭାବରେ ସ୍ୱର୍ଗରେ ଅଛନ୍ତି , ପୃଥିବୀରେ ଅଛନ୍ତି, ଅନ୍ତରୀକ୍ଷରେ ଅଛନ୍ତି । ସୂର୍ଯ୍ୟ ହେଲେ ସ୍ୱର୍ଗର ଦେବତା, ଅଗ୍ନି ହେଲେ ପୃଥିବୀର ଦେବତା, ବାୟୁ ବା ବାତ ହେଲେ ଅନ୍ତରୀକ୍ଷର ଦେବତା । "ଋଗ୍‌ବେଦରେ ଋଷି ସୂର୍ଯ୍ୟ ଆମ୍ଭମାନଙ୍କୁ ସ୍ୱର୍ଗରେ ରକ୍ଷା କରନ୍ତୁ, ବାୟୁ ଅନ୍ତରୀକ୍ଷରେ ରକ୍ଷା କରନ୍ତୁ , ଅଗ୍ନି ପୃଥିବୀରେ ରକ୍ଷା କରନ୍ତୁ ବୋଲି ପ୍ରାର୍ଥନା କରିଅଛନ୍ତି" । ତେଣୁ ବେଦରେ ସୂର୍ଯ୍ୟ, ଅଗ୍ନି ଓ ବାୟୁ ତିନି ପ୍ରତୀକ ମାଧ୍ୟମରେ ତିନି ପ୍ରକାର ପ୍ରାଣିକ ଶକ୍ତିର ଆରଧନା କରାଯାଇଛି ।

"ଋଗ୍‌ବେଦ ଗୋଟିଏ ସ୍ଥାନରେ ଏହି ତିନି ଦେବତାମାଙ୍କର ସଂଖ୍ୟା ୩୩୩୯ ବୋଲି କହିଅଛନ୍ତି ।(୩୯) ମୂଳ ତିନି ସଂଖ୍ୟାକୁ ୧୦,୧୦୦, ୧୦୦୦ରେ ଗୁଣି ଏହି ଗୁଣ ଫଳ ସହିତ ପ୍ରତ୍ୟେକ କ୍ଷେତ୍ରରେ ୩ ମିଶାଇବା ଫଳରେ ଏହି ୩୩୩୯ ସଂଖ୍ୟାଟିର ଉଦ୍ଭବ ହୋଇଛି । (୩୩ + ୩୦୩ + ୩୦୦୩ = ୩୩୩୯) ଆଉ ଗୋଟିଏ ପ୍ରକାରରେ ମଧ୍ୟ ବୈଦିକ ଦେବ ସଂଖ୍ୟାର ହିସାବ କରାଯାଇଥାଏ । ଏହି ହିସାବ ଅନୁସାରେ ସେମାନଙ୍କରସଂଖ୍ୟା ହେଲା ୩୩ । ସେମାନେ ହେଲେ :-(କ) ବସୁ- ୮ ସଂଖ୍ୟକ, (ଖ) ରୁଦ୍ର- ୧୧ ସଂଖ୍ୟକ, (ଗ) ଆଦିତ୍ୟ -୧୨ ସଂଖ୍ୟକ, (ଘ) ଅଶ୍ୱିନୀ ୨ ସଂଖ୍ୟକ । ଏହି ୩୩ ସଂଖ୍ୟାଟି ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହାକୁ ଭିତ୍ତି କରି ପରବର୍ତ୍ତୀ କାଳରେ ବୌଦ୍ଧମାନେ ୩୩ ସ୍ୱର୍ଗର କଳ୍ପନା କରିଥିଲେ । ଏହି ଅନୁସରଣରେ ହିନ୍ଦୁମାନେ ଦେବତାମାନଙ୍କର ସଂଖ୍ୟା ୩୩ କୋଟି ବୋଲି କହିବାକୁ ଲାଗିଲେ । ଅତଏବେ ସଂକ୍ଷେପରେ କହିବାକୁ ଗଲେ ବୈଦିକ ଦେବତା ତତ୍ତ୍ୱ ହେଲା ମାନସ, ଜୀବନ ଓ ଜଡ଼ ଜଗତ ମଧ୍ୟରେ ଥିବା ତିନି ପ୍ରକାର ପ୍ରାଣମୟୀ ଶକ୍ତିର ଆବିଷ୍କାର କରିବାରେ ପର୍ଯ୍ୟବସିତ "। (ସୁରେନ୍ଦ୍ର ଶତପଥୀଙ୍କ ଭାରତୀୟ ସଂସ୍କୃତି, ବୈଦିକ ପର୍ବ, ତୃତୀୟ ଭାଗ, ପୃଷ୍ଠା ୨୨୮ରୁ ଉଦ୍ଧୃତ) "ବିଶ୍ୱ ବ୍ରହ୍ମାଣ୍ଡରେ ମନ, ଜୀବ ଓ ଜଡ ମଧ୍ୟରେ ଥିବା ତିନି ପ୍ରକାର ପ୍ରାଣମୟୀ ଶକ୍ତିକୁ ଆବିଷ୍କାର କରି ତାହାକୁ ଉଦ୍‌ବୋଧନ କରିବା, ଚୈତ୍ୟ ସ୍ତରରେ ସେହି ଶକ୍ତିର ସ୍ପର୍ଶ ପାଇ ନିଜକୁ ଶକ୍ତିମାନ କରାଇବା ଥିଲା ବୈଦିକ ଋଷି ମାନଙ୍କର ଉଦ୍ଦେଶ୍ୟ ଓ ଲକ୍ଷ୍ୟ "।(୪୦) ବେଦ ମନ୍ତ୍ର ଗୁଡିକର ମନସ୍ତାତ୍ତ୍ୱିକ ଅର୍ଥ କରିବାକୁ ଯାଇ ଶ୍ରୀ ଅରବିନ୍ଦ ମଧ୍ୟ ଠିକ୍ ଅନୁରୂପ ନିର୍ଣ୍ଣୟରେ ପହଞ୍ଚିଅଛନ୍ତି ।(୪୧) ବର୍ତ୍ତମାନ ବେଦମନ୍ତ୍ର ଗୁଡିକରେ କିପରି ଭାବରେ ଦେବତାମାନଙ୍କର ଅବତାରଣା କରାଯାଇଛି ତାହା ନିମ୍ନୋକ୍ତ ମତେ ଆଲୋଚନା କରାଗଲା । ଏହି ଆଲୋଚନାରେ ପ୍ରମୁଖ ଦେବତାଙ୍କ ସଂପର୍କରେ କୁହାଯାଇଛି ।

**(କ) ସବିତା** – ସବିତାଙ୍କ ଠାରେ ଏକେଶ୍ୱର ଭଗବାନଙ୍କର ଭାବକୁ ଆରୋପ କରାଯାଇଛି । 'ସୂ' ଧାତୁର ଅର୍ଥ ହେଲା ସୃଷ୍ଟି କରିବା ତହିଁରୁ 'ଇତ୍' ପ୍ରତ୍ୟୟ ହୋଇ ସୃଷ୍ଟି ହୋଇଛି ସବିତା ଶବ୍ଦଟି । "ତେଣୁ ସବିତା ଅର୍ଥ ହେଉଛି ସୃଷ୍ଟି କର୍ତ୍ତା ଭଗବାନ । ଋଗ୍‌ବେଦରେ ସବିତାଙ୍କ ସଂପର୍କରେ ଏଗାରଟି ସୂକ୍ତରେ ବର୍ଣ୍ଣନା କରାଯାଇଛି "। ସେ ହେଉଛନ୍ତି ହିରଣ୍ୟମୟ । ତାଙ୍କର ହାତ, ଗୋଡ, ଜିଭ ଆଦି ସବୁ ସୁନା ଭଳି ଝଟକୁଛନ୍ତି । "ସେ ଦୁଇଟି କ୍ଷିପ୍ରଗାମୀ ଅଶ୍ୱଯୁକ୍ତ ରଥରେ ବସି ଓ ମନୁଷ୍ୟକୁ ଅମୃତର ଅଧିକାରୀ କରାଇ ସୁନାର ରଥରେ ଚଢି ସବିତା ଦେବ ସାରା ବିଶ୍ୱକୁ ଦେଖି ଦେଖି ଯାଉଛନ୍ତି "।(୪୨) ଏହାର ମନସ୍ତାତ୍ତ୍ୱିକ ଅର୍ଥ ହେଉଛି ମନୋରାଜ୍ୟରେ ଏହି ସବିତାଙ୍କର ଆବିର୍ଭାବ ହେଲେ ଜୀବ ଅମୃତର ସ୍ୱାଦୁ ଗ୍ରହି ପାରିବ । ସେ ମରଣଶୀଳ ଥାଇ ଅମର ହୋଇ ଉଠିବ । "ସବିତା ମନକୁ ପ୍ରେରଣା ଦିଅନ୍ତୁ ଏବଂ ତହିଁରେ ତାଙ୍କର ଅମୃତମୟ ସୁନାର କିରଣ ଢାଳି ଦିଅନ୍ତୁ ବୋଲି ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ବିଶ୍ୱାମିତ୍ର ପ୍ରାର୍ଥନା କରିଅଛନ୍ତି"। ଏହି ମନ୍ତ୍ରଟି ହେଉଛି 'ଗାୟତ୍ରୀ ମନ୍ତ୍ର'। ଏହି ଗାୟତ୍ରୀ ମନ୍ତ୍ରରେ କୁହାଯାଇଛି "ପୃଥିବୀ, ଅନ୍ତରୀକ୍ଷ ଓ ସ୍ୱର୍ଗ ସବିତା ଦେବଙ୍କର ବରଣୀୟ ତେଜଃ ପରିବ୍ୟାପ୍ତ । ଆମେ ତାହାକୁ ଧ୍ୟାନ କରୁ"।(୪୩) ସୂର୍ଯ୍ୟ ଏବଂ ସବିତାଙ୍କ ମଧ୍ୟରେ କିଛିତ ପାର୍ଥକ୍ୟ ଥିବାର ସୂଚନା ମିଳେ । ସାୟଣଙ୍କ ମତରେ "ଉଦୟ ଲାଭ କରିବା ପୂର୍ବରୁ ସୂର୍ଯ୍ୟଙ୍କୁ ସବିତା ( ସବିତୃ) କୁହାଯାଏ"।

**(ଖ) ସୂର୍ଯ୍ୟ –** ବୈଦିକ ସୂର୍ଯ୍ୟ ଦେବତାଙ୍କୁ ଋଗ୍ ବେଦରେ ବିଶେଷ ମାନ୍ୟତା ଦିଆଯାଇଛି । ଏଥିରେ ବର୍ଣ୍ଣିତ ହୋଇଛି "ଏ ସଂସାରରେ ସ୍ଥାବର ଓ ଜଙ୍ଗମ ସକଳର ଆତ୍ମା ହେଉଛନ୍ତି ସୂର୍ଯ୍ୟ। ସୂର୍ଯ୍ୟଙ୍କ ବିନା ଆତ୍ମାର ସ୍ଥିତି ଅସମ୍ଭବ"।(୪୪) ହରିତ୍ ନାମରେ ସାତୋଟି ଘୋଡୀ ଖୁବ୍ ବେଗରେ ସୂର୍ଯ୍ୟଙ୍କ ରଥକୁ ଆକାଶରେ ଟାଣୁଥିବା କଥା ଋଗ୍ ବେଦରେ ବର୍ଣ୍ଣନା କରାଯାଇଛି । ସୂର୍ଯ୍ୟଙ୍କୁ ବରୁଣଙ୍କର ନେତ୍ର ବୋଲି କୁହାଯାଇଛି । ବୈଦିକ ସାହିତ୍ୟରେ ସୂର୍ଯ୍ୟଙ୍କୁ ଆତ୍ମା ସହିତ ଯୋଡି ଦିଆଯାଇଛି । ଉପନିଷଦ୍ ଯୁଗରେ ଏହି ଆତ୍ମା ବିଷୟରେ "ସମ୍ୟକ ଅନୁଶୀଳନ କରାଯାଇ ତାହାଙ୍କୁ ସ୍ୱୟଂ ପରବ୍ରହ୍ମଙ୍କ ସହିତ ଚିହ୍ନଟ କରାଯାଇଅଛି"। ଈଷ ଉପନିଷଦ୍‌ରେ କୁହାଯାଇଛି "ନିବିଡ ଅନ୍ଧକାରରେ ବୁଡି ରହିଛି ଯେଉଁ ଲୋକ ଗୁଡିକ ସେଗୁଡିକ ହେଉଛନ୍ତି ସୂର୍ଯ୍ୟ ହୀନ. ଯେଉଁମାନେ ଆତ୍ମଘାତୀ ସେମାନେ ମୃତ୍ୟୁ ପରେ ସେହି ସ୍ଥାନକୁ ଯାଇଥାନ୍ତି । ଆତ୍ମା ଉପରେ ଯେଉଁ ମାନଙ୍କର ବିଶ୍ୱାସ ନଥାଏ. ଯେଉଁମାନେ କେବଳ ଦେହ ସର୍ବସ୍ୱ ସେମାନେ ଏଭଳି ସୂର୍ଯ୍ୟହୀନ ଲୋକକୁ ଯାଇ ଥାଆନ୍ତିବୋଲି ଏଠାରେ କୁହାଯାଇଛି"।(୪୫) ଶ୍ରୀ ଅରବିନ୍ଦ ଏହି ସୂର୍ଯ୍ୟଙ୍କୁ ପ୍ରତୀକ ଭାବରେ ଗ୍ରହଣ କରିଅଛନ୍ତି । ତାଙ୍କ ଭାଷାରେ ସୂର୍ଯ୍ୟ ହେଉଛନ୍ତି "ଦିବ୍ୟ ଆଲୋକ. 'ସୂର' ହେଉଛି ଦିବ୍ୟ ସତ୍ୟ ଯେଉଁଠି ଦିବ୍ୟାଲୋକ ଅଛି ସେଠି ଦିବ୍ୟ ସତ୍ୟ ଅଛି । ଏହି ଦିବ୍ୟ ଆଲୋକ ସାହାଯ୍ୟରେ ଦିବ୍ୟ ସତ୍ୟକୁ ଉପଲବ୍ଧି କରିହୁଏ"।(୪୬) ଏଥିରୁ ମନେହୁଏ ସୂର୍ଯ୍ୟ ପ୍ରତୀକାତ୍ମକ ଭାବରେ ଦିବ୍ୟଆଲୋକ ଅର୍ଥରେ ବୈଦିକ ମନ୍ତ୍ର ଗୁଡିକରେ ବ୍ୟାଖ୍ୟାତ । ସୂର୍ଯ୍ୟ ହେଉଛନ୍ତି ପ୍ରାଣୀମାନଙ୍କର ରକ୍ଷକ ବୋଲି କୁହାଯାଇଛି । ସେ ହେଉଛନ୍ତି ମିତ୍ରାବରୁଣଙ୍କ ଆଖି. ସୂର୍ଯ୍ୟ ରୋଗ. ବ୍ୟାଧି ଓ ଦୁଃ ସ୍ୱପ୍ନକୁ ଦୂର କରନ୍ତି । "ବେଦରେ ସୂର୍ଯ୍ୟଙ୍କୁ ଆକାଶରେ ଉଡୁଥିବା ଲାଲ ରଂଗର ପକ୍ଷୀ ରୂପରେ ବର୍ଣ୍ଣନା କରାଯାଇଛି"।

**(ଗ) ପୂଷନ୍ –** ପୂଷନ୍ ଶବ୍ଦର ଅର୍ଥ ହେଉଛି 'ପୋଷଣ କର୍ତ୍ତା' । ତେଣୁ ସୂର୍ଯ୍ୟଙ୍କ ପ୍ରତିନିଧି ଭାବରେ ତାଙ୍କୁ ଗ୍ରହଣ କରାଯାଇଛି । ସେ ହେଉଛନ୍ତି ସୂର୍ଯ୍ୟଙ୍କର କନ୍ୟା ସୂର୍ଯ୍ୟାଙ୍କର ପତି । ବିବାହ ସମୟରେ ତାଙ୍କ ଉଦ୍ଦେଶ୍ୟରେ ମନ୍ତ୍ରସବୁ ପାଠ କରାଯାଇଥାଏ । 'ପୂଷନ୍' ହେଉଛନ୍ତି ସୂର୍ଯ୍ୟଙ୍କ ପୋଷଣ ଶକ୍ତିର ପ୍ରତିନିଧି ଦେବତା । ବେଦରେ ତାଙ୍କର ନିଶ ଦାଢିଥିବା କଥା ବର୍ଣ୍ଣନା କରାଯାଇଛି । ୟାଙ୍କ ରଥରେ ଘୋଡା ଜାଗାରେ ଛେଳି ଯୋଗ୍ୱ ହୋଇଥାନ୍ତି । ୟାଙ୍କର ବାସସ୍ଥାନ ହେଉଛି ସ୍ୱର୍ଗରେ । ଗ୍ୱରଣ ଭୂମିରେ ପଶୁମାନେ ବିଚରଣ କରୁଥିବା ବେଳେ 'ପୂଷନ୍' ସେମାନଙ୍କ ପଛେ ପଛେ ଯାଆନ୍ତି ଏବଂ ସେମାନଙ୍କୁ ରକ୍ଷା କରନ୍ତି । ସେଥିପାଇଁ ପଣ୍ଡିତମାନେ ତାଙ୍କୁ ଗ୍ୱରଣ ଭୂମିର ଦେବତା ବୋଲି କହିଥାନ୍ତି । ଏହାଙ୍କୁ 'ପଶୁପା' ବା ପଶୁମାନଙ୍କର ଦେବତା ବୋଲି କୁହାଯାଇଛି ।(୪୭) ଆଉ ମଧ୍ୟ ୟେ ଗାଇ ଜଗା ପାଞ୍ଚଣଟିଏ ଧରି ଗୋରୁ ମାନଙ୍କର ପଛେ ପଛେ ଗ୍ଳୁଥାନ୍ତି ବୋଲି ବେଦରେ ବର୍ଣ୍ଣିତ ।(୪୮) ହଜିଯାଇ ଥିବା ଗାଇମାନଙ୍କୁ ପୂଷନ୍ ଖୋଜିଆଣନ୍ତି ବୋଲି ଯେଉଁ ବର୍ଣ୍ଣନା ବେଦରେ ଅଛି ତାହାକୁ ଶ୍ରୀଅରବିନ୍ଦ ପ୍ରତୀକାତ୍ମକ ଅର୍ଥରେ ଗ୍ରହଣ କରିଅଛନ୍ତି । ତାଙ୍କ ମତରେ "ମନୁଷ୍ୟ ତାର ଯାତ୍ରା ପଥରେ ସତ୍ୟର ଆଲୋକକୁ ବେଳେ ବେଳେ ହଜାଇ ଦେଇଥାଏ । ଏହା ଫଳରେ ତା ପକ୍ଷରେ ଲକ୍ଷ୍ୟ ସ୍ଥାନରେ ପହଞ୍ଚିବା ସମ୍ଭବ ହୁଏ ନାହିଁ । ଏଥିରେ 'ପୂଷନ୍' ତାହାକୁ ସାହାଯ୍ୟ କରନ୍ତି । ସେ ମଣିଷକୁ ଠିକଣା ବାଟ ଦିଅନ୍ତି ଏବଂ ତା ଜୀବନରେ ପୁଷ୍ଟି ଆଣି ଦିଅନ୍ତି"।(୪୯) ଏହିଦୃଷ୍ଟିରୁ ବିଗ୍ୱର କଲେ 'ପୂଷନ୍' ହେଉଛନ୍ତି 'ଆଧ୍ୟାତ୍ମିକ ପୁଷ୍ଟି ସାଧନ' ଆଣି ଦେବାର ଜଣେ ଦେବତା । 'କରମ୍ଭ' ହେଉଛି ତାଙ୍କର ରୁଚିକର ଖାଦ୍ୟ ।

ବରୁଣ – 'ବୃଙ' ଧାତୁ 'ବରଣାର୍ଥ'ର ସୂଚନା ଦିଏ । ଏଥିରୁ ନିଷ୍ପନ୍ନ 'ବରୁଣ' । ଏହାର ଅର୍ଥ ହେଲା ଯେ "ବରଣୀୟ ବା ପ୍ରିୟ ସେ ହେଲେ ବରୁଣ" । ବରୁଣଙ୍କ ବିଷୟରେ ଋଗ୍ ବେଦରେ ୧୨ ଟି ମାତ୍ର ସୂକ୍ତ ଅଛି । ଯେ କୌଣସି କର୍ମାନୁଷ୍ଠାନ ପୂର୍ବରୁ ଆର୍ଯ୍ୟମାନେ ପ୍ରଥମତଃ ବରୁଣଙ୍କୁ ପୂଜା କରିଥାନ୍ତି । ସେ ଆର୍ଯ୍ୟମାନଙ୍କର ଅତି ପ୍ରିୟ ଥିଲେ । ଆର୍ଯ୍ୟମାନେ ଜାଣିଥିଲେ ସକଳ ବ୍ରହ୍ମାଣ୍ଡ 'ଋତ' ଦ୍ୱାରା ପରିଚାଳିତ । ଏହା ଏକ ଚିରନ୍ତନ ନିୟମ । ଏହି 'ଋତ'ର ସ୍ରଷ୍ଟା ହେଉଛନ୍ତି ବରୁଣ । ଏହି 'ଋତ' କିଭଳି ସୁଚାରୁ ରୂପେ ପାଳିତ ହେବ ସେଥିପ୍ରତି ବରୁଣ ସର୍ବଦା ଦୃଷ୍ଟି ରଖିଥାନ୍ତି । ଯଦି କେହି ଏହାକୁ ପାଳନ ନକରନ୍ତି ସେ ତାହାକୁ ଦଣ୍ଡ ପ୍ରଦାନ କରିଥାଆନ୍ତି । ବରୁଣ 'ଋତ'କୁ ରକ୍ଷା କରିଥିବାରୁ ବୈଦିକ ଋଷି ତାହାଙ୍କୁ 'ଋତସ୍ୟଗୋପା' ବୋଲି କହିଥାନ୍ତି ।(୫୦) ସକଳ ଦେବତା ଏହି 'ଋତୁ'ର ଅଧୀନ ।(୫୧) ଋଗ୍‌ବେଦରେ ଅନ୍ୟ ଏକ ସ୍ଥାନରେ ବରୁଣଙ୍କୁ ଦେବତା ଓ ମାନବଙ୍କ ସମ୍ରାଟ ବୋଲି କୁହାଯାଇଛି । (୫୨) ବରୁଣ ହେଉଛନ୍ତି ସର୍ବସ୍ରଷ୍ଟା । ସୂର୍ଯ୍ୟ ରୂପକ ଚକ୍ଷୁରେ ସାରା ଜଗତକୁ ଦେଖୁଛନ୍ତି ।(୫୩ ) ବରୁଣ ସାରା ବିଶ୍ୱ ବ୍ରହ୍ମାଣ୍ଡରେ ଗୁପ୍ତଚର ରଖି ତାଙ୍କର ଖବର ନେଇଥାନ୍ତି ।(୫୪) ଏହିମାନଙ୍କୁ 'ସ୍ପଶଃ' କୁହାଯାଏ । ଏହି ଦୂତମାନଙ୍କର କାର୍ଯ୍ୟ ହେଲା ଆକାଶ ଓ ପୃଥିବୀକୁ ଭଲ ଭାବରେ ଦେଖିବା । ଏ ସଂପର୍କରେ ବରୁଣଙ୍କ ଦ୍ୱାରା ସୁନ୍ଦର ଭାବେ ବଛା ହୋଇ ଦୂତମାନେ ସୁନ୍ଦର ଆକାଶ ଓ ପୃଥିବୀର ଚାରି ଦିଗକୁ ଦେଖା ଚାହାଁ କରିଥାନ୍ତି ।(୫୫) ଆକାଶର ସୀମାକୁ କେହି ଅତିକ୍ରମ କରି ଉଡି ଚାଲି ଗଲେ ମଧ୍ୟ ବରୁଣଙ୍କ ଆଖିକୁ ତାହା ଦେଖାଯାଏ ।(୫୬) ଏଥିରୁ ବରୁଣଙ୍କର 'ସର୍ବବ୍ୟାପିତ୍ୱ ଓ ସର୍ବଦ୍ରଷ୍ଟୃତର' ନିଦର୍ଶନ ମିଳେ । ବରୁଣ ଅନ୍ୟାନ୍ୟ ବୈଦିକ ଦେବତା ମାନଙ୍କ ଅପେକ୍ଷା ମନୁଷ୍ୟର ଚରିତ୍ର ସହିତ ଅଧିକ ମାତ୍ରାରେ ସଂପୃକ୍ତ । ବରୁଣ ମନୁଷ୍ୟମାନଙ୍କ ଭଳି ନିଜର ହାତ ହଲାଇ ଭ୍ରମଣ କରନ୍ତି । ମଣିଷଙ୍କ ପରି ସେ ଖାଆନ୍ତି ଓ ପିଅନ୍ତି । ସେ ସ୍ୱାସ୍ଥ୍ୟବାନ । ସେ ହିରଣ୍ୟର 'ଦ୍ରାପି', ସୁନାର କବଚ ପିନ୍ଧିଥାନ୍ତି । ତାଙ୍କ ରଥରେ ସୁନ୍ଦର ଘୋଡା ଲଗା ହୋଇଥାନ୍ତି ଓ ରଥ ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ ଦେଖାଯାଏ । ବରୁଣ ଏକ ହଜାର ସ୍ତମ୍ଭ ଓ ଏକ ସହସ୍ର ଦ୍ୱାର ବିଶିଷ୍ଟ ପ୍ରାସାଦରେ ବସି ଅତୀତ ଓ ଭବିଷ୍ୟତର କାର୍ଯ୍ୟକଳାପକୁ ଦେଖି ପାରନ୍ତି । ସେ ମନୁଷ୍ୟମାନଙ୍କର ମନୋଗତ ଭାବନା ଜାଣି ପାରନ୍ତି । ସେ ସତ୍ୟ ଓ ମିଥ୍ୟାଚାରର ବିଚାର କରନ୍ତି । ତେଣୁ ବୈଦିକ ଋଷି 'ସ୍ପଶଃ' ଦ୍ୱାରା ପରିବେଷ୍ଟିତ ବରୁଣଙ୍କୁ ଭୀତ 'ଶଂକିତ' ଚିତ୍ତରେ ସ୍ତୁତି କରୁଅଛନ୍ତି ।(୫୭)

ବରୁଣ ଉଜ୍ଜ୍ୱଳ ବସ୍ତ୍ର ପରିଧାନ କରିଥାନ୍ତି । ସେ ମାୟା ବିସ୍ତାର କରି ପାରନ୍ତି । ସେ ସ୍ୱର୍ଗ ଲୋକ ପୃଥିବୀ ଓ ପବନକୁ ରକ୍ଷା କରିଛନ୍ତି । ମଣିଷ କିମ୍ବା ଦେବତା ବରୁଣଙ୍କ ନିୟମକୁ ଅତିକ୍ରମ କରିପାରନ୍ତି ନାହିଁ । ତାଙ୍କର ଉପାସକମାନଙ୍କ ପ୍ରତି ସେ ଦୟାଶୀଳ । ବରୁଣ ସମ୍ରାଟ ଓ ସ୍ୱରାଟ ରୂପରେ ବର୍ଣ୍ଣିତ ହୋଇଅଛନ୍ତି । କ୍ଷେତ୍ରର ଅଧିପତି ହେତୁ ତାଙ୍କୁ କ୍ଷିତ୍ରୀୟ କୁହାଯାଏ । ବରୁଣଙ୍କ ବ୍ରତ ଅତି ଦୃଢ଼ । ତାଙ୍କୁ 'ଧୃତ ବ୍ରତ' କୁହାଯାଇଛି । ବରୁଣ ହେଉଛନ୍ତି ସର୍ବଜ୍ଞ । ଆକାଶରେ ଉଡୁଥିବା ପକ୍ଷୀ, ସମୁଦ୍ରରେ ଭାସୁଥିବା ନୌକା ଏବଂ ଦୂର ଦେଶରେ ପ୍ରବାହିତ ହେଉଥିବା ପବନର ଗତିକୁ ବରୁଣ ଉତ୍ତମ ରୂପେ ଜାଣିପାରନ୍ତି ।(୫୮) ବେଦରେ ବରୁଣଙ୍କ ନାମ ସହିତ ଅସୁରଙ୍କ ନାମକୁ ଯୋଡା ଯାଇଛି । ତାଙ୍କୁ 'ଅସୁର ବରୁଣ' କୁହାଯାଏ । ସେ ପ୍ରାଣ ଦେଇଥାନ୍ତି ।(ଅସୁଂ ପ୍ରାଣଂ ରାତି ଦଦାତୀତ ଅସୁର) ସମସ୍ତଙ୍କ ପ୍ରାଣ ସ୍ୱରୂପ ସେ ବିଦ୍ୟମାନ । ସେ ଯେଉଁଠି ନାହାଁନ୍ତି ସେଠି ପ୍ରାଣ ନାହିଁ । ଏହା ହେଉଛି

ବରୁଣଙ୍କ ଅସୁରତ୍ୱ । ଏହା ପରବର୍ତ୍ତୀ ସମୟରେ ସମସ୍ତ ଦେବତାଙ୍କ ଠାରେ ଏହି ଅସୁରତ୍ୱ ଆରୋପ କରାଯାଇଛି ।(୫୯) ଏହି ଅସୁରତ୍ୱର ଆରୋପ ଲାଗି ସୂର୍ଯ୍ୟ ଏବଂ ଅସୁରମାନଙ୍କର ବହୁଦିନ ଧରି ଯୁଦ୍ଧ ଲାଗି ଥିଲା । ଅସୁରମାନେ ହେଉଛନ୍ତି ଆର୍ଯ୍ୟମାନଙ୍କର ଏକ ଭିନ୍ନ ମତବାଦୀ ଗୋଷ୍ଠୀ । ପ୍ରଥମେ ଏହି ଦୁଇ ଗୋଷ୍ଠୀ ବରୁଣଙ୍କୁ ପ୍ରାଥମିକତା ଦେଉଥିଲେ । କିନ୍ତୁ କାଳକ୍ରମେ ଆର୍ଯ୍ୟମାନେ ଇନ୍ଦ୍ରଙ୍କୁ ପ୍ରାଥମିକତା ପ୍ରଦାନ କରିଥିଲେ । ଫଳରେ ଆର୍ଯ୍ୟ ଏବଂ ଅସୁରମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା । ଅସୁରମାନେ ଭାରତରୁ ବିତାଡିତ ହୋଇ ସମୁଦ୍ରରେ ରହି ବହୁକାଳ ପର୍ଯ୍ୟନ୍ତ ଆର୍ଯ୍ୟମାନଙ୍କ ସହିତ ଯୁଦ୍ଧ କଲେ । ଅସୁରମାନେ ବରୁଣଙ୍କ ଉପାସକ ଅଟନ୍ତି । ବରୁଣଙ୍କ ବାସସ୍ଥାନ ସମୁଦ୍ରରେ ବୋଲି ଏବେ ମଧ୍ୟ ଭାରତୀୟଙ୍କ ବିଶ୍ୱାସ ।(୬୦) ବରୁଣ ତାଙ୍କ 'ପାଶ'ରେ ସାରା ବିଶ୍ୱ ବ୍ରହ୍ମାଣ୍ଡକୁ ବାନ୍ଧି ରଖିଛନ୍ତି ବୋଲି ବେଦରେ କଳ୍ପନା କରାଯାଇଛି । ସେ ହେଉଛନ୍ତି ବୈଦିକ ଭାଷାରେ 'ମାୟୀ' । ସାରା ବିଶ୍ୱରେ ସେହି ବିରାଟ ଅସୁର- ବରୁଣଙ୍କର ମାୟା ପ୍ରକଟିତ । ବରୁଣଙ୍କର ଏହି 'ପାଶ' ଦ୍ୱୈତ କାର୍ଯ୍ୟ ସମାହିତ କରିଥାଏ । "ପ୍ରଥମତଃ ସାରା ବିଶ୍ୱକୁ ଏକ ଚିରନ୍ତନ ସୂତ୍ରରେ ବାନ୍ଧି ରଖିଥାନ୍ତି । ଦ୍ୱିତୀୟରେ ଏହି ଚିରନ୍ତନ ସତ୍ୟକୁ କେହି ଲଙ୍ଘନ କଲେ ତାଙ୍କୁ ଦଣ୍ଡିତ କରିଥାନ୍ତି । ବୈଦିକ ଋଷି ତେଣୁ କହିଛନ୍ତି "ଅଦବ୍‌ଧାନି ବରୁଣସ୍ୟ ବ୍ରତାନି" ଅର୍ଥାତ ବରୁଣଙ୍କ ବ୍ରତ ଗୁଡ଼ିକୁ ଯିଏ ଟାଳିଦେବ ତା ପାଇଁ ଆଦୌ କ୍ଷମା ନାହିଁ । ବରୁଣଙ୍କ ଠାରେ ଏହି ନୈତିକ ବା ଶୀଳାତ୍ମକ ଗୁଣ ରାଶି ଥିବାରୁ ସେ ସର୍ବ ଦେବତାଙ୍କର ଅଗ୍ରଗଣ୍ୟ ବୋଲି କହିଛନ୍ତି" । ବରୁଣଙ୍କୁ ତେଣୁ "ସତୋ ଅସ୍ୟ ରାଜା" ଅର୍ଥାତ୍ ସତ୍ୟର ରାଜା ହେଉଛନ୍ତି ବରୁଣ ବୋଲି କୁହାଯାଇଛି ।

ଋଗ୍‌ବେଦରେ ମିତ୍ର ସହିତ ବରୁଣଙ୍କୁ ସିନ୍ଧୁପତି, ନଦୀମାନଙ୍କର ପତିରୂପେ ବର୍ଣ୍ଣନା କରାଯାଇଛି । ବେଦର ଅନେକତ୍ର ବରୁଣ ସହିତ ମିତ୍ରଙ୍କ ନାମ ମିଶି କରି ରହିଅଛି । ମିତ୍ରା ଓ ବରୁଣ ଯଥା କ୍ରମେ ଦୁଇ ମିତ୍ର ଓ ଦୁଇ ବରୁଣଙ୍କ ନାମକୁ ସୂଚିତ କରୁଅଛି । ବରୁଣ ଏବଂ ମିତ୍ର ଏକାଠି ରଥରେ ଚଢି ଯାଆନ୍ତି ବୋଲି ବେଦରେ ବର୍ଣ୍ଣନା କରାଯାଇଛି ।(୬୧) ଏକାକୀ ମିତ୍ରଙ୍କ ସଂପର୍କରେ ଋଗ୍‌ବେଦରେ ଗୋଟିଏ ମାତ୍ର 'ସୂକ୍ତ' ଅଛି । ଏଥିରେ ଉକ୍ତ ହୋଇଛି ମିତ୍ର ତାଙ୍କର ଆଦେଶାନୁକ୍ରମେ ଲୋକମାନଙ୍କୁ ନିଜ ନିଜ ଜାଗାରେ ଠିକଣା ଭାବରେ ରଖିଥାନ୍ତି ।(୬୨) ଋଗ୍‌ବେଦର ଗୋଟିଏ ମନ୍ତ୍ରରେ କୁହାଯାଇଛି ବିଶାଳ ସମୁଦ୍ରରେ ଗୋଟିଏ ନୌକା ଉପରେ ବରୁଣ ଓ ବଶିଷ୍ଠ ଏକାଠି ବସି ଝୁଲି ଝୁଲି ଯାଉ ଅଛନ୍ତି । ଏଠାରେ ପ୍ରତୀକାତ୍ମକ ଅର୍ଥଟିକୁ ଗ୍ରହଣ କଲେ ଜଣାଯିବ ବଶିଷ୍ଠ ହେଉଛନ୍ତି ସାଧାରଣ ଜୀବର ଦ୍ୟୋତକ । ବରୁଣ ହେଉଛନ୍ତି ପରମାତ୍ମା । ସମୁଦ୍ରକୁ ଏଠି ଭବ- ସମୁଦ୍ର ରୂପରେ ଗ୍ରହଣ କରାଯାଇଛି । ବରୁଣଙ୍କୁ ନାରାୟଣ ଓ ବଶିଷ୍ଠଙ୍କୁ ଜୀବ ଭାବରେ ଗ୍ରହଣ କରାଯାଇଛି ।

**ବିଷ୍ଣୁ** – ବୈଦିକ ଦେବ ମଣ୍ଡଳରେ ବିଷ୍ଣୁ ହେଉଛନ୍ତି ଅନ୍ୟ ଏକ ଦେବତା । ବିଷ୍ଣୁଙ୍କର ବିଶେଷ କିଛି ପ୍ରାଧାନ୍ୟ ଥିବା ଭଳି ମନେ ହୁଏ ନାହିଁ । ଋଗ୍‌ବେଦରେ ସେ ଖୁବ୍‌-ଅଳ୍ପ ସଂଖ୍ୟକ ସୂକ୍ତରେ ଆହୂତ ହୋଇଛନ୍ତି । ବ୍ୟାପକ ଶୀଳ ହେତୁ ବିଷ୍ଣୁ ସୂର୍ଯ୍ୟଙ୍କର କ୍ରିୟାଶୀଳ ରୂପର ପ୍ରତୀକ ସ୍ୱରୂପ । ସୂର୍ଯ୍ୟ ଏକ ସ୍ଥାନରେ ରହନ୍ତି ନାହିଁ । ସେ ସର୍ବଦା ଭ୍ରମଣ କରୁଥାଆନ୍ତି । ତେଣୁ ବିଷ୍ଣୁଙ୍କୁ (ସୂର୍ଯ୍ୟ ଶକ୍ତିର ପ୍ରତୀକ) ପର୍ବତରେ ବାସ କରୁଥିବା ଓ ଇଚ୍ଛାନୁସାରେ ଭ୍ରମଣ କରୁଥିବା ଭୟଙ୍କର ପଶୁ ସହିତ ତୁଳନା କରାଯାଇଛି ।(୬୨କ) ଋଗ୍‌ବେଦର ୨/୧/୩, ୨/୨/୧୨ ସୂକ୍ତରେ ବିଷ୍ଣୁ ବର୍ଣ୍ଣିତ ହୋଇଅଛନ୍ତି । ଅବଶ୍ୟ ତାଙ୍କର କିଛି ମହତ୍ତ୍ୱ ଉପଲବ୍ଧ ହୁଏ ନାହିଁ । ଇନ୍ଦ୍ର ବୃତ୍ରକୁ ନିଧନ କଲାବେଳେ ବିଷ୍ଣୁ ତାଙ୍କୁ ସାହାଯ୍ୟ

କରିଥିଲେ ବୋଲି ଋଗ୍‌ବେଦରେ ବର୍ଣ୍ଣିତ । ଏଥିରୁ ଅନୁମିତ ହୁଏ ଇନ୍ଦ୍ରଙ୍କ ନିମ୍ନରେ ବିଷ୍ଣୁଙ୍କ ସ୍ଥାନ ଥିଲା । ବିଷ୍ଣୁ ସହସ୍ର ନାମରେ 'ଉପେନ୍ଦ୍ର' ନାମରୁ ଜଣାଯାଏ ସେ ହେଉଛନ୍ତି ଇନ୍ଦ୍ରଙ୍କର ଅଧୀନସ୍ଥ ; କିନ୍ତୁ ବେଦୋତ୍ତର କାଳରେ ବିଶେଷ କରି ପୁରାଣ ଯୁଗରେ ବିଷ୍ଣୁ ସହସ୍ରଙ୍କ ଠାରୁ ବଡ ଦେବତା ଭାବରେ ଗଣ୍ୟ ହେଲେ । ଏଭଳିକି ଭାଗବତରେ ବର୍ଣ୍ଣିତ ହୋଇଛି ଇନ୍ଦ୍ର ବିଷ୍ଣୁଙ୍କ ଠାରୁ ପରାଜିତ ହୋଇଥିଲେ । ବୈଦିକ ସଂହିତା ଯୁଗର ଠିକ୍ ପରବର୍ତ୍ତୀ ବ୍ରାହ୍ମଣ ଯୁଗରୁ ବିଷ୍ଣୁ କ୍ରମଶଃ ପ୍ରାଧାନ୍ୟ ଲାଭ କରିଅଛନ୍ତି । ବିଷ୍ଣୁ ପଦ ହେଉଛି ଶ୍ରେଷ୍ଠ ପଦ ଏବଂ ମନୁଷ୍ୟ ଯଜ୍ଞ ଦ୍ୱାରା ସେହି ପଦକୁ ପ୍ରାପ୍ତ ହୋଇପାରିବ । ଏହାକୁ ମୁକ୍ତି ବୋଲି କୁହାଯିବ । ଜୀବ ଥରେ ଏଠାକୁ ଗଲେ ଆଉ ଫେରିବ ନାହିଁ ବା ତାହାର ପୁନର୍ଜନ୍ମର ଅବକାଶ ନାହିଁ ।(୬୩)

ଏହି ବିଷ୍ଣୁ ଧାମ ପ୍ରତି ଲକ୍ଷ୍ୟ କରି ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଅଛନ୍ତି "ହେ ଅର୍ଜୁନ, ଯେଉଁ ଧାମକୁ ଗଲେ ଜୀବମାନଙ୍କୁ ଆଉ ଫେରି ଆସିବାକୁ ପଡିବ ନାହିଁ ତାହା ହେଉଛି ମୋର ପରମଧାମ । ଋଗ୍‌ବେଦରେ ଏହି ପରମଧାମ ବା ପରମ ପଦ କଥା" ମଧ୍ୟ କୁହାଯାଇଛି । ସମସ୍ତେ ତାହାକୁ ଦେଖିପାରନ୍ତି ନାହିଁ । କେବଳ ଜ୍ଞାନୀମାନେ ତାହାକୁ ଦେଖି ପାରନ୍ତି । ଋଗ୍‌ବେଦୀୟ ଭାଷାରେ ବିଷ୍ଣୁଙ୍କର ସେହି ପରମ ପଦକୁ ସର୍ବଦା ଜ୍ଞାନୀ ଲୋକମାନେ ଦେଖିପାରନ୍ତି । (୬୪) ବିଷ୍ଣୁଙ୍କର ତିନି ପାଦ ଅଛି । ସେ ପାଦକୁ ବିସ୍ତାର କରିଅଛନ୍ତି । ଏହି ତିନି ପାଦ ହେତୁ ତାଙ୍କୁ 'ଉରୁକ୍ରମ' ଓ 'ଉରୁଗାୟ' ବିଶେଷଣରେ ଭୂଷିତ କରାଯାଇଛି ।(୬୫) ବିଷ୍ଣୁ ଖୁବ୍ ଲମ୍ବ ପାଦ ପକାନ୍ତି । "ବିଷ୍ଣୁ ତିନି ପାଦରେ ଜଗତକୁ ଆବୃତ୍ତ କରି ରଖିଛନ୍ତି ବୋଲି ଋଗ୍‌ବେଦରେ କୁହାଯାଇଛି । ଉଦୟ କାଳୀନ ସୂର୍ଯ୍ୟ, ମଧ୍ୟାହ୍ନ ସୂର୍ଯ୍ୟ ଓ ଅସ୍ତକାଳୀନ ସୂର୍ଯ୍ୟଙ୍କର ତିନି ଅବସ୍ଥାକୁ ବିଷ୍ଣୁଙ୍କର ତିନିପାଦ ବୋଲି କୁହାଯାଇଛି । ଏହି ମତ ହେଉଛି 'ନିରୁକ୍ତକାର' 'ଯାସ୍କ'ଙ୍କର । 'ବିଷ୍ଣୁ'ଙ୍କର ମୁଣ୍ଡକଟା ଯିବା ପରେ ମୁଣ୍ଡଟି ସୂର୍ଯ୍ୟରେ ପରିଣତ ହୋଇଯାଇଥିଲା । ଏହା ବିଷ୍ଣୁ ଓ ସୂର୍ଯ୍ୟଙ୍କର ଅଙ୍ଗାଙ୍ଗୀ ସମ୍ବନ୍ଧର ସୂଚକ ।(୬୬) ବିଷ୍ଣୁ ଏକ ଚକ୍ର ଭଳି ଘୁରୁଛନ୍ତି ବୋଲି ଋଗ୍ ବେଦରେ ଗୋଟିଏ ସ୍ଥାନରେ ବର୍ଣ୍ଣନା କରାଯାଇଅଛି । ତାଙ୍କର ନବେଟି ଘୋଡା ଅଛନ୍ତି । ପ୍ରତିଟି ଘୋଡାର ଚାରୋଟି ନାଁ । ଏହା ବର୍ଷର ୩୬୦ ଦିନ ସୃଷ୍ଟି କରୁଥିବା ସୂର୍ଯ୍ୟ ଦେବତାଙ୍କ ନାମକୁ ସୂଚିତ କରୁଥିବା ପରି ମନେ ହୁଏ ।(୬୭) "ବିଷ୍ଣୁଙ୍କ ସୁଦର୍ଶନ ଚକ୍ର ସୂର୍ଯ୍ୟ ଚକ୍ରର ସୂଚକ । ବିଷ୍ଣୁଙ୍କର ପୀତାମ୍ବର ସୂର୍ଯ୍ୟଙ୍କ ସୁନେଲି କିରଣର ସୂଚକ । ବିଷ୍ଣୁଙ୍କର ପଦ୍ମ ଦିବ୍ୟାଲୋକର ଜୀବନୀ ଶକ୍ତିକୁ ସୂଚନା ଦେଉଅଛି । ସୂର୍ଯ୍ୟ କିରଣରେ ପଦ୍ମ ଫୁଲ ଫୁଟେ ଓ ସୂର୍ଯ୍ୟ ଅସ୍ତ ହେଲେ ପଦ୍ମ ଫୁଲ ବୁଜିଯାଏ । ପଦ୍ମ ଫୁଟିବା ଜୀବନୀ ଶକ୍ତିର ବିକାଶ ଯାହା ପ୍ରତୀକାତ୍ମକ ଭାବରେ ଦର୍ଶାଯାଇଛି । ସେହି ପ୍ରତୀକ ଧାରଣ କରିଛନ୍ତି ସୌର ଦେବତା ବିଷ୍ଣୁ"।(ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି- ବୈଦିକ ପର୍ବ- ତୃତୀୟ ଭାଗ- ପୃଷ୍ଠା ୨୫୬ ରୁ ଉଦ୍ଧୃତ ) ଏହି ଦୃଷ୍ଟିରୁ ବିଚାର କଲେ ଜଣାପଡେ ବିଷ୍ଣୁ ହେଉଛନ୍ତି ସୌର ଦେବତା । ଉତ୍ତର ବୈଦିକ କାଳରେ ବିଷ୍ଣୁ ସର୍ବମୟ କର୍ତ୍ତା ହୋଇ ଉଠିଲେ । "ବିଷ୍ଣୁ ଏ ସର୍ବତ୍ର ଅନୁପ୍ରବେଶ କରିଛନ୍ତି "। ଅଥବା "ଏହାଙ୍କ ଠାରେ ସର୍ବ ଶେଷରେ ସାରା ବିଶ୍ୱ ଅନୁପ୍ରବେଶ କରେ ବୋଲି ଏହାଙ୍କୁ ବିଷ୍ଣୁ କୁହାଯାଇଛି "।

ବିଷ୍ଣୁଙ୍କୁ ବୈଦିକ କାଳରେ ଅପେକ୍ଷାକୃତ ନିମ୍ନ ସ୍ଥାନ ଦିଆ ଯିବାର କାରଣ ସଂପର୍କରେ କେତେକ ବିଦ୍ୱାନ ମତ ଦିଅନ୍ତି "ବିଷ୍ଣୁ ପ୍ରଥମେ ଥିଲେ ଏକ ଆର୍ଯ୍ୟେତର ଦେବତା । ଆର୍ଯ୍ୟ ଓ ଆର୍ଯ୍ୟେତର

ଗୋଷ୍ଠୀ ମଧ୍ୟରେ ସାଂସ୍କୃତିକ ଭାବ ବିନିମୟ ହେବା ଫଳରେ ଆର୍ଯ୍ୟମାନେ ବିଷ୍ଣୁଙ୍କୁ ଦେବତା ଭାବରେ ଗ୍ରହଣ କଲେ । ମାତ୍ର ବୈଦିକ ସମାଜରେ ଇନ୍ଦ୍ରଙ୍କ ପ୍ରାଧାନ୍ୟ ଖୁବ୍ ଥିଲା । ଇନ୍ଦ୍ରଧର୍ମୀମାନେ ବୈଦିକ ସମାଜକୁ ନିୟନ୍ତ୍ରିତ କରୁଥିଲେ । ତେଣୁ ବିଷ୍ଣୁଧର୍ମୀମାନେ ସେମାନଙ୍କର ଆଧିପତ୍ୟ ବିସ୍ତାର କରିପାରିନଥିଲେ ”। ପି.ଟି. ଏସ. ଆୟଙ୍ଗରଙ୍କ ମତରେ “ଆର୍ଯ୍ୟମାନଙ୍କର ବିଷ୍ଣୁ ହେଉଛନ୍ତି ଦ୍ରାବିଡମାନଙ୍କର ଦେବତା ବିନ୍‌ଙ୍କର ଏକ ପ୍ରତିରୂପ” ।(୬୮) ସୁନୀତି କୁମାର ଚାଟାର୍ଜୀ କୁହନ୍ତି ଦ୍ରାବିଡୀୟ ଆକାଶ ଦେବତା ‘ବିନ୍’ ଓ ଆର୍ଯ୍ୟମାନଙ୍କର ସୂର୍ଯ୍ୟ ଦେବତା ବିଷ୍ଣୁଙ୍କ ମିଶ୍ରଣ ଘଟି ପରବର୍ତ୍ତୀ ଯୁଗରେ ହିନ୍ଦୁମାନଙ୍କର ସୂର୍ଯ୍ୟ ନାରାୟଣ ଉପାସନାର ଉଦ୍ଭବ ହୋଇଥିଲା ।(୬୯) ସୂର୍ଯ୍ୟଙ୍କ ସହିତ ବିଷ୍ଣୁଙ୍କର ଏହି ସଂପର୍କ ବୈଦିକ ଯୁଗର । ବିଷ୍ଣୁଙ୍କର ସୌର ସ୍ୱଭାବ ବେଦରେ ଅତି ପରିଷ୍କାର ଭାବରେ ବର୍ଣ୍ଣିତ ହୋଇଅଛି । (୭୦)

**ମିତ୍ର –** ମିତ୍ର ସବୁବେଳେ ବରୁଣଙ୍କ ସହିତ ଆହୂତ ହୋଇଅଛନ୍ତି । କେବଳ ଋଗ୍‌ବେଦ ତୃତୀୟ ମଣ୍ଡଳ ୫୯ ସୂକ୍ତରେ ସ୍ୱତନ୍ତ୍ର ରୂପରେ ଆହୂତ ହୋଇଅଛନ୍ତି । ମିତ୍ର ସୂର୍ଯ୍ୟଙ୍କର ମଙ୍ଗଳମୟ ଶକ୍ତିର ପ୍ରତିନିଧି । ମିତ୍ର ମଣିଷକୁ କ୍ରିୟାଶୀଳ କରିଥାଆନ୍ତି । ସେ ସ୍ୱର୍ଗ ଓ ମର୍ତ୍ତ୍ୟକୁ ଦୃଢ ରୂପେ ଧାରଣ କରିଅଛନ୍ତି । ଊଷାର ଆଗମନ ପୂର୍ବରୁ ଉଦୟ ଲାଭ କରୁଥିବା ଅଗ୍ନି ମିତ୍ରକୁ ଉତ୍ପନ୍ନ କରନ୍ତି । ସେହି ଅଗ୍ନି ପ୍ରଜ୍ୱଳିତ ହେବାପରେ ହୁଅନ୍ତି ମିତ୍ର । ବୈଦିକ ମିତ୍ର ଇରାନୀୟ ଦେବତା ସହିତ Mithra ପ୍ରାୟ ସମାନ । ଋଗ୍‌ବେଦରେ ମିତ୍ର ବିଶ୍ୱାସର ଦେବତା ରୂପରେ ପରିକଳ୍ପିତ ହୋଇଅଛନ୍ତି ।

**ଅଦିତି ଓ ଆଦିତ୍ୟ –** ଅଦିତିର ଅର୍ଥ ହେଲା ବନ୍ଧନ ମୁକ୍ତ । ଦା’ ଧାତୁରୁ ଏହା ଉତ୍ପତ୍ତି ହୋଇଛି । ଅଦିତିଙ୍କୁ ଦେବୀ ରୂପରେ ବର୍ଣ୍ଣନା କରାଯାଇଛି ।(୭୧) ଉପାସକ ନିଜେ ବନ୍ଧନ ମୁକ୍ତ ହେବାପାଇଁ ଅଦିତିଙ୍କୁ ପ୍ରାର୍ଥନା କରିଅଛି । ଆଦିତ୍ୟମାନଙ୍କୁ ବହୁ ସ୍ଥାନରେ ଅଦିତିଙ୍କର ପୁତ୍ର ବୋଲି ବର୍ଣ୍ଣନା କରାଯାଇଛି । ସେମାନଙ୍କୁ ଆଲୋକ ପୁତ୍ର ମଧ୍ୟ କୁହାଯାଇଛି । ତେଣୁ ଆଲୋକର ଦେବତା ହେଉଛନ୍ତି ଆଦିତ୍ୟ । ଋଗ୍‌ବେଦରେ ଆଦିତ୍ୟଙ୍କ ସଂଖ୍ୟା ‘ସାତ’ କି ‘ଆଠ’ । ଗୋଟିଏ ସ୍ଥାନରେ ‘ଛଅ’ ଜଣ ଆଦିତ୍ୟଙ୍କ ଉଲ୍ଲେଖ ଅଛି । ବରୁଣ, ମିତ୍ର, ଅର୍ଯମନ୍, ଭଗ, ଦକ୍ଷ, ଅଂଶ । ସୂର୍ଯ୍ୟ ହେଉଛନ୍ତି ୭ମ ଆଦିତ୍ୟ ଓ ମାର୍ତ୍ତଣ୍ଡ ହେଉଛିନ୍ତି ଅଷ୍ଟମ ଆଦିତ୍ୟ । ବ୍ରାହ୍ମଣ ଗ୍ରନ୍ଥରେ ଆଦିତ୍ୟଙ୍କ ସଂଖ୍ୟା ୧୨ ।

**ଊଷା –** ଊଷା ଶବ୍ଦ ‘ବସ୍’ (ଦୀପ୍ତୌ to Shine) ଧାତୁରୁ ଉତ୍ପନ୍ନ ହୋଇଅଛି । ତେଣୁ ଊଷାର ଅର୍ଥ ପ୍ରକାଶମାନ୍ ବା ଦୀପ୍ତିମାନ । ଋଗ୍ ବେଦରେ ୨୦ଟି ସୂକ୍ତରେ ଊଷା ଆହୂତ ହୋଇଅଛନ୍ତି । ସମଗ୍ର ବୈଦିକ କବିତାରେ ଊଷା ହେଉଛନ୍ତି ସୌନ୍ଦର୍ଯ୍ୟର ପ୍ରତୀକ । ଊଷା ଦେବୀଙ୍କୁ ବେଦରେ କୁହାଯାଇଛି ‘ପୁରାଣୀ ଯୁବତୀଃ’ “ନର୍ତ୍ତକୀ ପରି ରକ୍ତ ବସନ ପିନ୍ଧି ଊଷା ଦେବୀ ଯେତେବେଳେ ପ୍ରାଚୀ ଗଗନରେ ଆବିର୍ଭୂତା ହୁଅନ୍ତି ଏବଂ ଆଲୋକର ଆବରଣରେ ନିଜକୁ ଘୋଡାଇ ରଖିଥାନ୍ତି ସେତେବେଳେ ରାତ୍ରିର ଅନ୍ଧକାର ମଣିଷ ମଇଳା ଲୁଗାକୁ ଫିଙ୍ଗି ଦେବା ଭଳି ଫିଙ୍ଗି ହୋଇଯାଏ ”। (ଆ, ଘ ଯୋଷାଃଇବ ସୁନରୀ ଊଷାଃ ଯାତି ପ୍ରଭୁଞ୍ଜତୀ ) “ପୁରାଣୀ ଯୁବତୀଃ” ଯୋଗୁ ସେ ଅନନ୍ତ ଯୌବନା । କେବେହେଲେ ବୃଦ୍ଧା ହୁଅନ୍ତି ନାହିଁ । ସେ ସଦା ଭାସ୍କରା, କେବେ ମଳିନ ହୁଅନ୍ତି ନାହିଁ । ଊଷା ହେଉଛନ୍ତି ହିରଣ୍ୟବର୍ଣ୍ଣା । ତାଙ୍କର ସୁନାର ରଥକୁ ରକ୍ତବର୍ଣ୍ଣର ଘୋଡା ବହନ କରି ଆକାଶ ମାର୍ଗରେ ନେଇ ଯାଆନ୍ତି । “ଊଷା

ସ୍ନାନ ପରେ ଉଜ୍ଜ୍ୱଳ ବେଶ ଧାରଣ କରି ହସି ହସି ରାତ୍ରିର ବକ୍ଷର କଳା ବସନକୁ ଖସାଇ କାଳିମାକୁ ଦୂର କରି ପୁରୋହିତ ଓ ଯଜ୍ଞକର୍ତ୍ତାମାନଙ୍କୁ ନିଦରୁ ଉଠାଇ ଦିଅନ୍ତି । ସେମାନେ ଅଗ୍ନିକୁ ପ୍ରଜ୍ୱଳିତ କରନ୍ତି xxx । ସେ ରାତ୍ରିର ଦୁଃସ୍ୱପ୍ନକୁ ଦୂର କରନ୍ତି । ଉପାସକର ମନ୍ତ୍ର ଓ ପକ୍ଷୀମାନଙ୍କର ମଧୁର କାକଳି ଉଷାଙ୍କର ସ୍ୱାଗତ ସମ୍ଭାଷଣ ଜ୍ଞାପନ କରେ ''। (ବୈଦିକ ସାହିତ୍ୟ ଓ ସଂସ୍କୃତି ପୁସ୍ତକ ୧୪୯ ରୁ ଉଦ୍ଧୃତ- ଅଭିନ୍ନ ଚନ୍ଦ୍ର ଦାସ)

ଉଷାଙ୍କୁ ସୂର୍ଯ୍ୟ ସହିତ ବେଦରେ ସଂବନ୍ଧିତ କରାଯାଇଛି । ସେ ସୂର୍ଯ୍ୟଙ୍କ ଲାଗି ମାର୍ଗ ପ୍ରସ୍ତୁତ କରନ୍ତି । ଉଷାଙ୍କୁ ସୂର୍ଯ୍ୟଙ୍କର ଜନନୀ ଏବଂ ଅନେକ ସ୍ଥାନରେ ସୂର୍ଯ୍ୟଙ୍କର ସ୍ତ୍ରୀ ଭାବରେ ବର୍ଣ୍ଣନା କରାଯାଇଛି । ଉଷାଙ୍କୁ ବେଳେବେଳେ ରାତ୍ରି ଦେବୀଙ୍କର ଜ୍ୟେଷ୍ଠା ଭଉଣୀ ଭାବରେ ବର୍ଣ୍ଣନା କରାଯାଇଛି । ତେଣୁ ଦୁଇ ଭଉଣୀଙ୍କୁ "ଉଷାସାନକ୍ତ" ଓ "ନକ୍ତୋଷାସା" ବୋଲି କୁହାଯାଇଛି । ଆକାଶରେ ଉଦୟ ଲାଭ କରୁଥିବାରୁ ଉଷାଙ୍କୁ 'ଦୁହିତା ଦିବଃ' ଆକାଶର କନ୍ୟା ରୂପେ ବର୍ଣ୍ଣନା କରାଯାଇଛି । 'ଋତ୍ୱିଜ'ଙ୍କ ଦ୍ୱାରା ପ୍ରଜ୍ୱଳିତ ଅଗ୍ନି ଉଷାଙ୍କ ସହିତ ମିଳିତ ହେଉ ଥିବାରୁ ଅଗ୍ନିଙ୍କୁ ଉଷାଙ୍କର ପ୍ରେମିକ ବୋଲି କୁହାଯାଇଛି । ଉଷା ଚିରନ୍ତନ ନିୟମ ଋତକୁ ମାନି ଠିକ୍ ସମୟରେ ଆବିର୍ଭୂତା ହେଉଥିବାରୁ ତାଙ୍କୁ 'ଋତାବରୀ' ବୋଲି କୁହାଯାଏ । "ଋତାବରୀ ଶବ୍ଦର ଅର୍ଥହେଲା ଚିରନ୍ତନ ସତ୍ୟ ଦ୍ୱାରା ଆବୃତ" ।

ଶ୍ରୀ ଅରବିନ୍ଦ ଉଷାର ଅର୍ଥ ପ୍ରାକୃତିକ ଉଷା ବୋଲି ଗ୍ରହଣ ନକରି ମନୁଷ୍ୟର ଚୈତ୍ୟ ସ୍ତରରେ ଯେଉଁ ଆଭ୍ୟନ୍ତରୀଣ ଉଷାର ଅଭ୍ୟୁଦୟ ହୁଏ ସେହି ଅର୍ଥଟିକୁ ଗ୍ରହଣ କରିଅଛନ୍ତି । ସେଥିପାଇଁ ତାଙ୍କୁ ଯଥାର୍ଥରେ 'ଋତାବରୀ' କୁହା ହୋଇଅଛି । ଋଗ୍‌ବେଦର ଋଷି ଉଷାଙ୍କ ସଂପର୍କରେ କହିଛନ୍ତି "ଉଷା ଚିରନ୍ତନ ସତ୍ୟର ପଛାକୁ ସଫଳ ଭାବରେ ଅନୁସରଣ କରିଅଛନ୍ତି "।(୭୨) ଋଗ୍‌ବେଦର ଅନ୍ୟତ୍ର ଗୋଟିଏ ସ୍ଥାନରେ କୁହାଯାଇଛି "ସ୍ୱର୍ଗରେ ଜନ୍ମ ନେଇଥିବା ଉଷା ସତ୍ୟକୁ ଉଦ୍‌ଘାଟିତ କରି ଦିଅନ୍ତି ଏବଂ ତାଙ୍କରି ମହିମା ଦେଖାଇ ଆସନ୍ତି "।(୭୩) ଯେଉଁ ଉଷା ମନୁଷ୍ୟକୁ ସତ୍ୟ ନିକଟରେ ପହଞ୍ଚାଇ ଦିଏ ସେହି ମହତ୍ତର ଉଷା ପ୍ରତି ଲକ୍ଷ୍ୟ କରି କୁହାଯାଇଛି "ଏହି ସତ୍ୟର ଉପଲବ୍ଧି ହେଲେ ମନୁଷ୍ୟ ଅମୃତତ୍ତ୍ୱ ପାଇଥାଏ "। ସେଥିପାଇଁ ଉଷା 'ଅମୃତସ୍ୟ କେତୁଃ' ବା 'ଅମୃତର ପତାକା' ନାମରେ ଅଭିହିତା ।(୭୪) ଏଥିରୁ ଅନୁମିତ ହୁଏ "ଉଚ୍ଚତର ଚେତନା ସ୍ତରରେ ଯେଉଁ ଦିବ୍ୟ ଆଲୋକ ଝଲସି ଉଠେ ତାହାହିଁ ହେଉଛି ଉଷା । ତାହା ହେଉଛି ସତ୍ୟ ରୂପକ ଉଷା । ବେଦରେ ଯେଉଁଠି ଉଷା କଥା କୁହାଯାଇଛି ସେଠି ଚିରନ୍ତନ ସତ୍ୟ ସ୍ୱରୂପୀୟ ଚିନ୍ତାଧାରା ଦେଖିବାକୁ ମିଳେ" । ସେଥିପାଇଁ ଶ୍ରୀ ଅରବିନ୍ଦ କହିଅଛନ୍ତି "ସେ ହେଉଛନ୍ତି ଅନନ୍ତ ଆଲୋକ ଯାହାଙ୍କ ଠାରୁ ସକଳ ଆଲୋକର ସୃଷ୍ଟି ହୋଇଅଛି "।(୭୫) ବୈଦ୍ଦିକ ଉଷା ପ୍ରାକୃତିକ ଉଷାକୁ ନିର୍ଦ୍ଦେଶ କରୁଥିଲେ ହେଁ ପ୍ରକୃତରେ ଏହା ହେଉଛି ମନୁଷ୍ୟର ଚୈତ୍ୟ ସ୍ତରରେ ଆର୍ବିଭୂତ ହେଉଥିବା ଦିବ୍ୟଜ୍ଞାନର ଉଷା ଯାହା ସାହାଯ୍ୟରେ ସେ ସତ୍ୟକୁ ଉପଲବ୍ଧି କରିପାରେ ଏବଂ ଶାଶ୍ୱତଙ୍କ ନିକଟରେ ପହଞ୍ଚିପାରେ "।(ସୁରେନ୍ଦ୍ରନାଥ ଶତପଥୀଙ୍କ- ଭାରତୀୟ ସଂସ୍କୃତି - ବୈଦିକ ପର୍ବ ତୃତୀୟ ଭାଗ ପୃ ୨୬୧ରୁ ଉଦ୍ଧୃତ)

**ଅଶ୍ୱିନୌ** – ବୈଦିକ ସାହିତ୍ୟରେ ଇନ୍ଦ୍ର, ଅଗ୍ନି ଓ ସୋମଙ୍କ ପରେ ଅଶ୍ୱିନୌଙ୍କ ସ୍ଥାନ । ୫୦ ସୂକ୍ତରେ ଅଶ୍ୱିନ ଆହୂତ ହୋଇଅଛନ୍ତି । ସୂର୍ଯ୍ୟା ନାମକ ଯୁବତୀ ଅଶ୍ୱିନୌଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ

ପତି ରୂପରେ ବରଣ କରିଥିଲେ । 'ଅଶ୍ୱିନୌ' ତାଙ୍କ ରଥରେ ସୂର୍ଯ୍ୟାଙ୍କୁ ସଙ୍ଗରେ ନିଅନ୍ତି । 'ଉଷା ଅଶ୍ୱିନୌ'ଙ୍କ ଭଉଣୀ ଭାବରେ ବର୍ଣ୍ଣିତ ହୋଇଅଛନ୍ତି । 'ଅଶ୍ୱିନୌ' ହେଉଛନ୍ତି 'ଦୌସ୍'ଙ୍କ ଦୁଇ ପୁତ୍ର । 'ଅଶ୍ୱିନ୍'ର ଅର୍ଥ ହେଉଛି ଯାହାର ଘୋଡା ଅଛି । ଅଶ୍ୱିନୌ ସୋମ ପାନ ଅପେକ୍ଷା ମଧୁ ପାନକୁ ପସନ୍ଦ କରନ୍ତି । ସେ ସୁନାର ରଥରେ ଭ୍ରମଣ କରନ୍ତି । ସେ ରଥରେ ବସି ଦିନକ ଭିତରେ ସମଗ୍ର ଦାବ୍ୟା ପୃଥିବୀକୁ ଭ୍ରମଣ କରନ୍ତି । ଅଶ୍ୱିନୌ ସ୍ୱର୍ଗର ଦେବତାମାନଙ୍କର ନିପୁଣ ବୈଦ୍ୟ ରୂପେ ବେଦରେ କୀର୍ତ୍ତିତ ହୋଇଅଛନ୍ତି । ସେ ମଧ୍ୟ ମର୍ତ୍ତ୍ୟର ମଣିଷ ମାନଙ୍କୁ ରୋଗ ମୁକ୍ତ କରିଅଛନ୍ତି । ସେ ହେଉଛନ୍ତି ବିଚକ୍ଷଣ ଶଲ୍ୟ ଚିକିତ୍ସକ । ଋଷି ଅର୍ଥବଣଙ୍କ ଠାରୁ ମଧୁ ବିଦ୍ୟା ଗ୍ରହଣ କରିବାକୁ ଇନ୍ଦ୍ର ଆସିଥିଲେ । ମାତ୍ର ଉକ୍ତ ଇନ୍ଦ୍ରଙ୍କୁ ଋଷି ଏ ବିଦ୍ୟା ନଦେବାରୁ ସେ ଋଷିଙ୍କୁ ଅପମାନିତ କରି କହିଯାଇଥିଲେ ଅଥର୍ବଣ ଏ ବିଦ୍ୟା ଯଦି ଅନ୍ୟ କାହାକୁ ଦିଅନ୍ତି ତାହେଲେ ସେ ତାଙ୍କର ମୁଣ୍ଡ କାଟି ଦେବେ । କିଛି ଦିନ ପରେ ଅଶ୍ୱିନୌ ଏହି ବିଦ୍ୟା ଋଷିଙ୍କ ଠାରୁ ପ୍ରାପ୍ତ ହେଲେ । ସେ ଏହି ସମୟରେ ଋଷିଙ୍କ ମୁଣ୍ଡ କାଟି ଗୋଟିଏ ଅଶ୍ୱ ମୁଣ୍ଡ ଲଗାଇ ଦେଲେ ଏବଂ ବିଦ୍ୟାଲାଭ କରି ସାରିବା ପରେ ପୁନର୍ବାର ଋଷିଙ୍କ ମୁଣ୍ଡ ଲଗାଇ ଦେଇଥିଲେ । 'ବିଶପଲା' ଯୁଦ୍ଧରେ ତା'ର ଗୋଡକୁ ହରାଇଥିଲା । ଅଶ୍ୱିନୌ ତାର ପ୍ରକୃତ ଗୋଡ ପରିବର୍ତ୍ତେ ଲୁହାର ଗୋଡଟିଏ ଲଗାଇ ଦେଇଥିଲେ । ସେ ବୃଦ୍ଧ ଋଷି 'ଚ୍ୟବନ'ଙ୍କୁ ଯୌବନ, ରୁଦ୍ରାଶ୍ୱଙ୍କୁ ଚକ୍ଷୁ ପ୍ରଦାନ କରିଥିବା କଥା ବେଦରେ ବର୍ଣ୍ଣିତ ହୋଇଛି ।

**ଇନ୍ଦ୍ର :-** ଋଗ୍‌ବେଦରେ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ୨୫୦ ସଂଖ୍ୟକ ସୂକ୍ତ ଉଦ୍ଦିଷ୍ଟ । ସାମବେଦରେ ମଧ୍ୟ ବହୁ ସଂଖ୍ୟକ ସୂକ୍ତ ଇନ୍ଦ୍ରଙ୍କ ଲାଗି ରହିଅଛି । ଏଥିରେ ଥିବା 'ଐନ୍ଦ୍ରକାଣ୍ଡ' ଇନ୍ଦ୍ରଙ୍କର ମହତ୍ତ୍ୱର ସୂଚନା ଦେଇଥାଏ । ଏହା ବ୍ୟତୀତ ଅନେକ ସୂକ୍ତ ଅଛି ଯହିଁରେ ଅନ୍ୟ ଦେବତାଙ୍କ ସହିତ ଇନ୍ଦ୍ରଙ୍କୁ ଆରାଧନା କରାଯାଇଛି । ବୈଦିକ ଯୁଗର ଜାତୀୟ ଦେବତା ଭାବେ ଇନ୍ଦ୍ର ବିଦିତ । ବେଦରେ ବର୍ଣ୍ଣିତ ସୂକ୍ତ ଗୁଡିକରେ ସେ କେଉଁଠି ମହାବୀର ଆଉ କେଉଁଠି ଉର୍ଦ୍ଧ୍ୱସ୍ଥଳ ଆଲୋକରେ ଝଲସିତ । ପୁଣି କେଉଁଠି ଦିବ୍ୟ ଆନନ୍ଦର ଉତ୍ସ । ପୁଣି କେଉଁଠି ଅନନ୍ତ ପ୍ରାଣମୟତାରେ ଉଦ୍‌ବେଳିତ । ବୈଦିକ ସୂକ୍ତ ଗୁଡିକରୁ ତାଙ୍କର ତିନୋଟି ସ୍ୱରୂପ ଦେଖିବାକୁ ପାଇଁଥାଉ । (କ) ସେ ଥିଲେ ରଣ କ୍ଷେତ୍ରରେ ପ୍ରଧାନ ନେତା । ତାଙ୍କ ସାହଯ୍ୟରେ ଆର୍ଯ୍ୟମାନେ ବହୁ ଯୁଦ୍ଧରେ ବିଜୟୀ ହୋଇଥିଲେ । (ଖ) ସେ ଥିଲେ ଜଣେ ପ୍ରାଚୀନ ପ୍ରବାଦ ଦେବତା ଯେ କି ବୃତ୍ର ନାମକ ରାକ୍ଷସକୁ ମାରି ଥିଲେ । (ଗ) ସେ ଥିଲେ ମହାଜାଗତିକ ଶକ୍ତିର ପ୍ରତୀକ । ଋଗ୍‌ବେଦ କାଳରେ ଆର୍ଯ୍ୟ ଯେପରି ଯୁଦ୍ଧ ପ୍ରିୟ ଜାତି ଥିଲା ଇନ୍ଦ୍ର ମଧ୍ୟ ପ୍ରଚଣ୍ଡ ଶକ୍ତି ସମ୍ପନ୍ନ ଯୋଦ୍ଧା ରୂପେ ବର୍ଣ୍ଣିତ ହୋଇଛନ୍ତି । ଇନ୍ଦ୍ର ଆର୍ଯ୍ୟମାନଙ୍କୁ ବହୁ ଯୁଦ୍ଧରେ ସାହାଯ୍ୟ କରି ତାଙ୍କୁ ବିଜୟ ଶ୍ରୀ ମଣ୍ଡିତ କରିଥିଲେ । ସେଗୁଡିକ ହେଲା- (କ) ସେ ଦସ୍ୟୁମାନଙ୍କୁ ଆର୍ଯ୍ୟମାନଙ୍କର ପଦାନତ କରିଥିଲେ ।(୭୬) (ଖ) ସେ ଦାସ ବର୍ଣ୍ଣକୁ ପରାଜିତ କରିଥିଲେ ।(୭୭) (ଗ) ସେ କୃଷ୍ଣକାୟ ଶତ୍ରୁମାନଙ୍କ ଉପରେ ବିଜୟୀ ହୋଇଥିଲେ ।(୭୮) (ଘ) ସେ କୃଷ୍ଣକାୟ ଶତ୍ରୁମାନଙ୍କର ଦୁର୍ଗ ଧ୍ୱଂସ କରିଥିଲେ ।(୭୯) (ଙ) ସେ ପଣିମାନଙ୍କୁ ଦମନ କରିଥିଲେ ।(୮୦) (ଚ) ସେ 'କୁତ୍ସ'ଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ ।(୮୧) (ଛ) ସେ ସୁଦାସଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ ।(୮୨) (ଜ) ସେ ମୁଦଗଳ ଓ ମୁଦଗଲାନୀଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ ।(୮୩) (ଝ) ସେ କକ୍ଷିବତ୍‌ଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ । (୮୪)

ଇନ୍ଦ୍ରଙ୍କର ବୀରତ୍ୱ ଥିଲା ଅସାଧାରଣ । ଦାଣ୍ଡେକରଙ୍କ ମତରେ 'ଇନ୍ଦ୍ର ପ୍ରଥମେ ଦେବତା ନଥିଲେ । ସେ ଥିଲେ ଜଣେ ମଣିଷ । ତାଙ୍କର ପରାକ୍ରମ ଯୋଗୁ ସେ ପର ଅବସ୍ଥାରେ ଦେବତା ସ୍ଥାନକୁ ଉନ୍ନୀତ ହୋଇଥିଲେ । ତାଙ୍କର ଏପରି ଲୋକପ୍ରିୟତା ଥିଲା ଯେ ସେ ସମସ୍ତ ଦେବତାଙ୍କୁ ଟପି ଗଲେ । ଇନ୍ଦ୍ର ପ୍ରାୟ ସମସ୍ତ ମାନବୀୟ ଗୁଣରେ ଭୂଷିତ । ଦୌସ ତାଙ୍କର ପିତା । ଇନ୍ଦ୍ର ଜନ୍ମ ହେବା ମାତ୍ରେ ସୋମ ପାନ କରିଥିଲେ । ତେଣୁ ତାଙ୍କୁ 'ସୋମପା' କୁହାଯାଇଅଛି । ଇନ୍ଦ୍ର ସୋମ ପାନ କଲେ ତାଙ୍କର ମାନସିକ ଓ ଶାରିରୀକ ଶକ୍ତି ପରିବର୍ଦ୍ଧିତ ହୁଏ । ସେ ଯୁଦ୍ଧକୁ ଯିବା ପୂର୍ବରୁ ଏବଂ ପରେ ସୋମ ପାନ କରିଥାନ୍ତି । ଇନ୍ଦ୍ର ଏକା ଢୋକରେ ପନ୍ଦର ସେର ସୋମ ପାନ କରିଥିବା ଉଲ୍ଲେଖ ଅଛି । ସୋମ ରସ ପାନ କଲାବେଳେ ସେ ତାଙ୍କର ଦାନ୍ତ ଓ ଦାଢ଼ିକୁ ଆନନ୍ଦରେ ହଲାନ୍ତି । ତାଙ୍କର ଆକୃତି ଓ ବେଶ ସୁନାର ବର୍ଣ୍ଣ । ତାଙ୍କର ହାତରେ ବଜ୍ର ଥାଏ । ବଜ୍ର ହେଉଛି ତାଙ୍କର ପ୍ରଧାନ ଆୟୁଧ । ତେଣୁ ସେ ହେଉଛନ୍ତି ବଜ୍ରବାହୁ ଓ ବଜ୍ରୀ । ସୁନାର ରଥରେ ବସି ସେ ବିଚରଣ କରନ୍ତି । ତାଙ୍କ ରଥକୁ ହଳଦିଆ ବର୍ଣ୍ଣର ଘୋଡା ଟାଣନ୍ତି । ବେଦରେ ଇନ୍ଦ୍ରଙ୍କ ପତ୍ନୀ ଇନ୍ଦ୍ରାଣୀଙ୍କର ମଧ୍ୟ ବର୍ଣ୍ଣନା ମିଳେ । ଇନ୍ଦ୍ର ଅନ୍ୟ ଦେବତାମାନଙ୍କ ସହିତ ମଧ୍ୟ ଆହୂତ ହୋଇଅଛନ୍ତି । ଚଳନଶୀଳ ପୃଥିବୀ ଓ ହଲୁ ଥିବା ପର୍ବତଗୁଡିକୁ ମଧ୍ୟ ସେ ସ୍ଥିର କରିଦେଇଛନ୍ତି ।(୮୫) ଇନ୍ଦ୍ର ଶତ୍ରୁମାନଙ୍କର ପୁର ଓ ଦୁର୍ଗକୁ ଧ୍ୱଂସ କରିଥିବାରୁ ତାଙ୍କୁ 'ପୁରଭିଦ୍' କୁହାଯାଇଛି । ଅନେକ ସ୍ଥଳରେ ଇନ୍ଦ୍ର ଉନ୍ନତ ଦେବତା ଭାବରେ ଚିତ୍ରିତ ହୋଇଛନ୍ତି ।(୮୬) ''ପ୍ରାରମ୍ଭିକ କାଳରେ ଇନ୍ଦ୍ର ଦେବତାମାଙ୍କର ଅଧିପତି ଭାବରେ 'ସ୍ତୁତ' ହୋଇଅଛନ୍ତି । ତିନୋଟି ପାତ୍ରରେ ପୂର୍ଣ୍ଣ ମାତ୍ରାରେ ରଖାଯାଇଥିବା ସୋମ ରସକୁ ପାନ କରି ବୃଷଭ ପରି ଆଗ୍ରହଣ କରି ଇନ୍ଦ୍ର 'ବୃତ୍ର'କୁ ଯୁଦ୍ଧରେ ନିହତ କରିଥିଲେ'' ।(୮୭) 'ମରୁଦ୍ ଗଣ' ଇନ୍ଦ୍ରଙ୍କୁ ଯୁଦ୍ଧରେ ସାହାଯ୍ୟ କରନ୍ତି । ଇନ୍ଦ୍ର, ତଡିତ, ଝଞ୍ଜା, ବାତ ଓ ବର୍ଷାର ଦେବତା । 'ବୃତ୍ର' ହେଉଛି ଜଳକୁ ଆବରଣ କରି ରଖିଥିବା ଶତ୍ରୁ । ପର୍ବତ ବେଦରେ ମେଘ ଅର୍ଥରେ ବ୍ୟବହୃତ ହୋଇଅଛି । ଜଳ ବର୍ଷଣ ନ କରୁଥିବା ମେଘର ପ୍ରତିନିଧି ହେଉଛନ୍ତି 'ବୃତ୍ର'। ଇନ୍ଦ୍ର ଦୁଇଟି ପଥର ମଝିରେ ଅଗ୍ନି ସ୍ଫୁରଣ କରାଇ ଆବୃତ ଜଳକୁ ମୁକ୍ତ କରିଅଛନ୍ତି । ତେଣୁ ଇନ୍ଦ୍ର ବୃଷ୍ଟିର ଦେବତା । ଐତିହାସିକମାନଙ୍କ ମତରେ 'ବୃତ୍ର' ହେଉଛି ଏକ ପ୍ରଭାବଶାଳୀ ରାଜା । ଇନ୍ଦ୍ରଙ୍କ ସହିତ 'ବୃତ୍ର'ର ବାସ୍ତବ ଯୁଦ୍ଧ ହୋଇଥିଲା । 'ବୃତ୍ର' ବ୍ୟତୀତ ଅନ୍ୟାନ୍ୟ ରାକ୍ଷସ ମାନଙ୍କ ସହିତ ତାଙ୍କର ଯୁଦ୍ଧ ହୋଇଥିଲା । ଇନ୍ଦ୍ର 'ବୃତ୍ର'ଙ୍କ ଯୁଦ୍ଧ ସଂପର୍କରେ ଭି.ଏମ.ଆପ୍ଟେ, ଭି.ଏ. ଗାଡଗିଲ, ଏନ୍ ଯମୁନାଚାର୍ଯ୍ୟ, ବାଳ ଗଙ୍ଗାଧର ତିଳକ, ଏଫ. ସିଂହ, ପି.ସି. ସେନଗୁପ୍ତ, ଓଲଡନବର୍ଗ, ଆର.ଓଝା, ଡି.ଡି. ଗୋସ୍ୱାମୀ ଡବଲ୍ୟୁ. ନରମ୍ୟାନ ବ୍ରାଉଷ୍ଟନ, ଶ୍ରୀ ଅରବିନ୍ଦ ପ୍ରମୁଖ ବିଭିନ୍ନ ଦିଗରୁ ବିଚାର କରି ସ୍ୱ ମତାମତ ପ୍ରଦାନ କରିଅଛନ୍ତି । ଶ୍ରୀ ଅରବିନ୍ଦଙ୍କ ପ୍ରତୀକାତ୍ମକ ବ୍ୟାଖ୍ୟା ହେଉଛି ଇନ୍ଦ୍ର ବୃତ୍ର ସଂଘର୍ଷ ହେଉଛି ଆଲୋକ ଓ ଅନ୍ଧକାର ମଧ୍ୟରେ ସଂଘର୍ଷ । ବୈଦିକ ଋଷିଙ୍କ ସଂପର୍କରେ ଶ୍ରୀ ଅରବିନ୍ଦଙ୍କର ମତକୁ ଭିତ୍ତିକରି 'ପୁରାଣୀ' ଏହା କହିଅଛନ୍ତି ।(୮୮) ''ଇନ୍ଦ୍ରବୃତ୍ର ସଂଘର୍ଷକୁ ଭଲ ଓ ମନ୍ଦ ମଧ୍ୟରେ, ପାପ ଓ ପୂଣ୍ୟ ମଧ୍ୟରେ, ବିଦ୍ୟା ଓ ଅବିଦ୍ୟା ମଧ୍ୟରେ, ମୃତ୍ୟୁ ଓ ଅମୃତତ୍ୱ ମଧ୍ୟରେ, ଆଲୋକ ଓ ଅନ୍ଧକାର ମଧ୍ୟରେ ହେଉଥିବା ସଂଘର୍ଷ ରୂପରେ ବୁଝିବାକୁ ହେବ । ଆର୍ଯ୍ୟ ଋଷିମାନେ କିପରି ଭାବରେ ଅନ୍ଧକାରର ଆବରଣକୁ ଚିରି ଆଲୋକର ମହିମାମୟ ଜ୍ୟୋତିଃ ସାଗରରେ ଅବଗାହନ କରିବେ ସେଥିପାଇଁ ଇନ୍ଦ୍ରଙ୍କୁ ପ୍ରାର୍ଥନା କରୁଥିଲେ । ଇନ୍ଦ୍ର ସେମାନଙ୍କର ସେହି ପ୍ରାର୍ଥନା ପୂରଣ କରୁଥିଲେ ।

ଏହି ସଂଗ୍ରାମ ତେଣୁ ଏକ ଅନ୍ଧକାର ପୂର୍ଣ୍ଣ ପୃଷ୍ଠଭୂମିରୁ ଆଲୋକମୟ ଭୂମିକୁ ମନୁଷ୍ୟର ଚେତନାକୁ ନେଇ ଯିବାର ଏକ ସଂଗ୍ରାମ ।''(ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତି- ତୃତୀୟ ଭାଗ ୨୪୨ ପୃଷ୍ଠାରୁ ଉଦ୍ଧୃତ) ।

ଇନ୍ଦ୍ର ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥରୁ ମଧ୍ୟ ଏହି ଭାବଟି ସୂଚିତ ହୋଇଥାଏ । (ଇତାଂ ଶତ୍ରୁଣାଂ ଦାରୟିତା ଇତି ଇନ୍ଦ୍ରଃ) ଶତ୍ରୁମାନଙ୍କର ଦାରଣକାରୀ ହୋଇଥିବାରୁ ତାଙ୍କୁ ଇନ୍ଦ୍ର କୁହାଯାଏ । କାମ, କ୍ରୋଧ, ଅଜ୍ଞାନ, ଅଧର୍ମ ଆଦି ଶତ୍ରୁମାନଙ୍କୁ ଯେ ଦାରଣ କରନ୍ତି ସେ ହେଉଛନ୍ତି ଇନ୍ଦ୍ର ।

''ଇନ୍ଦ୍ର ହେଉଛନ୍ତି ମହାଜାଗତିକ ଶକ୍ତିର ସ୍ୱରୂପ । ଇନ୍ଦ୍ର ତାଙ୍କ ଶକ୍ତି ବଳରେ ବିଶ୍ୱ ସୃଷ୍ଟିର ଅବ୍ୟବହିତ ପୂର୍ବରୁ ସଂକୁଚିତ ବିଶ୍ୱବ୍ରହ୍ମାଣ୍ଡ ଉପରେ ଥିବା ଆବରଣଟିକୁ ଫଟାଇ ଦେଇଥିଲେ । ତାହା ପରେ ପରେ ସୂର୍ଯ୍ୟ, ପୃଥିବୀ, ଅନ୍ୟାନ୍ୟ ଗ୍ରହ ନକ୍ଷତ୍ର ଆଦିର ସୃଷ୍ଟି ହୋଇଥିଲା । ଏହି ମହାଜାଗତିକ କ୍ରିୟାଶୀଳ ଶକ୍ତି ହେଉଛି ଇନ୍ଦ୍ରଙ୍କର ଆଉ ଏକ ପରିଭାଷା । ଏହି ଶକ୍ତି ସକଳ ଜୀବ ଓ ଜଡ଼ ଜଗତ ମଧ୍ୟରେ ସଂଗୃହିତ, ଜୀବ ଜଗତରେ ଏହା ବିକଶିତ ; କିନ୍ତୁ ଜଡ଼ ଜଗତରେ ଏହା ଅବିକଶିତ । ଜୀବର ବିଭିନ୍ନ ଇନ୍ଦ୍ରିୟମାନଙ୍କର ମାଧ୍ୟମରେ ଏହି ଶକ୍ତି ପ୍ରକଟିତ xxx । ଦେବତାମାନଙ୍କର ରାଜା ଇନ୍ଦ୍ର ବୋଲି କହିବାର ତାତ୍ପର୍ଯ୍ୟ ହେଲା ଇନ୍ଦ୍ରିୟମାନଙ୍କର ନିୟନ୍ତ୍ରଣ କାରୀ ହେଉଛନ୍ତି ଇନ୍ଦ୍ର ''। ( ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତି ତୃତୀୟ ଭାଗ ପୃଷ୍ଠା ୨୪୮ ରୁ ଉଦ୍ଧୃତ ।) ଯେ ପ୍ରକାଶମାନ ତାହାର ନାମ ଇନ୍ଦ୍ରିୟ । ଦେବଗଣ ପ୍ରକାଶମାନ, ତେଣୁ ସେମାନଙ୍କୁ ଇନ୍ଦ୍ରିୟମାନ ବୋଲି କୁହାଯାଇଥାଏ ।(୮୯)

''ଇନ୍ଦ୍ର ଉପାସକଙ୍କୁ ବିଜୟ ପ୍ରଦାନ ଓ ପ୍ରଚୁର ଧନ ଦାନ ଦିଅନ୍ତି । ତେଣୁ ସେ ମଘବନ୍ । ସେ ହିରଣ୍ୟ ବାହୁ, ହରିତାଶ୍ୱ, ଶିପ୍ର, ବୃତ୍ର ଦହନ, ଓ ରଥୋଷ୍ଠ ନାମରେ ନାମିତ । ଆଧ୍ୟାତ୍ମିକ ଦୃଷ୍ଟିରେ ଇନ୍ଦ୍ର ପରମାତ୍ମା, ଆଧିଦୈବିକ ଦୃଷ୍ଟିରେ ସେ ହେଉଛନ୍ତି ଶ୍ରେଷ୍ଠ ଦେବତା ଏବଂ ଆଧିଭୌତିକ ଦୃଷ୍ଟିରେ ସେ ମହାନ୍ ଯୋଦ୍ଧା ରୂପରେ ଗୃହୀତ ହୋଇଅଛନ୍ତି । ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଇନ୍ଦ୍ର ଅଦ୍ୱିତୀୟ ଆତ୍ମା, ଜୀବାତ୍ମା ଓ ପ୍ରାଣ ରୂପରେ ବର୍ଣ୍ଣିତ ହୋଇଅଛନ୍ତି ''। (ଅଭିନ୍ନ ଚନ୍ଦ୍ର ଦାସଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି ପୃଷ୍ଠା ୧୫୬ରୁ ଗୃହୀତ) ।

**ମରୁତଃ** – ମରୁତ୍‌ଗଣଙ୍କର ପିତା 'ରୁଦ୍ର' ଓ ମାତା 'ଗୋରୂପା' ପୃଶ୍ନି । ମରୁତଗଣ ସ୍ୱତନ୍ତ୍ର ରୂପରେ ଏବଂ ଅନ୍ୟାନ୍ୟ ଦେବତାମାନଙ୍କ ସହିତ ବେଦରେ ଉକ୍ତ ହୋଇଅଛନ୍ତି । କେତେବେଳେ ସେମାନଙ୍କୁ ସ୍ୱୟଂ ସୃଷ୍ଟ ବୋଲି କୁହାଯାଉଅଛି । ସେମାନଙ୍କର କାନ୍ତି ଅଗ୍ନି ଓ ସୁନା ପରି ଦୀପ୍ତିମାନ୍ । ସେମାନେ ସୁନାର ଦ୍ରାପି, ଅଳଙ୍କାର ଓ ଶିରସ୍ତ୍ରାଣ ଧାରଣ କରିଥାନ୍ତି । ମରୁଦ୍‌ଗଣ ସ୍ୱର୍ଗର ଗାୟକ ଭାବରେ ପରିଚିତ । ସେମାନେ ଇନ୍ଦ୍ରଙ୍କର ପ୍ରଧାନ ସହାୟକ । ବୃଷ୍ଟିଦାନ ହେଉଛି ମରୁଦ୍‌ଗଣଙ୍କର ପ୍ରଧାନ କର୍ତ୍ତବ୍ୟ ।ମାନବଙ୍କ ଦୁଃଖ ହରଣ କରନ୍ତି ଓ ରୋଗ ନିବାରଣ କରନ୍ତି ।

**ଅପାଂନପାତ** – ଅପାଂନପାତ୍‌ର ଅର୍ଥ ହେଉଛି 'ଜଳର ପୁତ୍ର' । ଅପାଂନପାତ ଦୀପ୍ତିମାନ ଯୁବକ ଭାବରେ ବର୍ଣ୍ଣିତ ହୋଇଅଛନ୍ତି । ସେ ବିନା ଇନ୍ଧନରେ ଜଳ ମଧ୍ୟରେ ଝଲସି ଉଠନ୍ତି । ସେ ସୁବର୍ଣ୍ଣ ବର୍ଣ୍ଣ । ବେଗଶାଳୀ ଅଶ୍ୱ ତାଙ୍କର ରଥକୁ ଟାଣେ । ସେ ଖୁବ୍ ବେଗଗାମୀ । ସେ ମେଘ ଭିତରେ ଲୁଚି ରହିଥିବା ବିଦ୍ୟୁତ୍ ପ୍ରତୀକ ସ୍ୱରୂପ ।

**ପର୍ଜନ୍ୟ –** ପର୍ଜନ୍ୟର ଅର୍ଥ ହେଉଛି ବର୍ଷା କାଳୀନ ମେଘ । ପର୍ଜନ୍ୟ ହେଉଛନ୍ତି ବୃଷ୍ଟିପାତ କରାଇବାର ଦେବତା । ବୃଷ୍ଟିପାତ ହେବା ସମୟରେ ବିଦ୍ୟୁତ୍‌ର ସ୍ଫୁରଣ ଓ ମେଘର ଗୁରୁ ଗର୍ଜନ ହୋଇଥାଏ । ପର୍ଜନ୍ୟ ପୃଥିବୀରେ ଓଷଧୀଶ (ବୃକ୍ଷଲତା)ଙ୍କୁ ଉତ୍ପନ୍ନ କରନ୍ତି । ତେଣୁ ତାଙ୍କୁ ମଙ୍ଗଳକାରୀ ଦେବତା ଭାବରେ ବର୍ଣ୍ଣନା କରାଯାଇଛି ।

**ରୁଦ୍ର–** ବେଦରେ ଅଗ୍ନି , ଇନ୍ଦ୍ର, ବରୁଣ ଆଦି ଦେବତାଙ୍କ ଅପେକ୍ଷା ରୁଦ୍ରଙ୍କୁ ଅଳ୍ପ ମହତ୍ତ୍ୱ ଦିଆଯାଇଛି । ସ୍ୱତନ୍ତ୍ର ଭାବରେ ଏବଂ ଅନ୍ୟ ଦେବତାଙ୍କ ସହ ସେ ୫୦ ଥର ବେଦରେ ବର୍ଣ୍ଣିତ ହୋଇଅଛନ୍ତି । ଶୁକ୍ଳ ଯଜୁର୍ବେଦର ରୁଦ୍ରାଧ୍ୟାୟରେ ଏବଂ ଅଥର୍ବ ବେଦରେ ରୁଦ୍ରଙ୍କର ମହତ୍ତ୍ୱ ପ୍ରକର୍ଷିତ ହୋଇଅଛି । ଋଗ୍‌ବେଦରେ ରୁଦ୍ରଙ୍କର ମାନବୀୟ ରୂପର ବର୍ଣ୍ଣନା ମିଳେ । ରୁଦ୍ରଙ୍କର ମୁଣ୍ଡରେ ଜଟା ଜୁଟ ଥିବାରୁ ତାଙ୍କୁ 'କପର୍ଦୀ' କୁହାଯାଇଛି । ତାଙ୍କ ଶରୀରର ବର୍ଣ୍ଣ 'ବଭ୍ରୁ' । ତାଙ୍କର ଓଠ ସୁନ୍ଦର ଓ ବଳିଷ୍ଠ । ତାଙ୍କର ସହସ୍ର ନେତ୍ର ଥିବାରୁ ତାଙ୍କୁ 'ସହସ୍ରାକ୍ଷଃ' କୁହାଯାଏ । ତାଙ୍କର ଗ୍ରୀବା ନୀଳ ବର୍ଣ୍ଣ କଂଠ ଉଜ୍ଜ୍ୱଳ ହେତୁ ତାଙ୍କୁ 'ଶିତିକଂଠ' କୁହାଯାଏ । କେତେବେଳେ ରୁଦ୍ର ମଧ୍ୟ ମୁଣ୍ଡିତ କେଶ । ତାଙ୍କର କେଶ ଲାଲ ବା ନୀଳବର୍ଣ୍ଣ । ରୁଦ୍ରାଧ୍ୟାୟୀରେ ବର୍ଣ୍ଣିତ ହୋଇଛି 'ରୁଦ୍ର ପିନାକ ପାଣି । ତାଙ୍କର ଧନୁ ସ୍ୱର୍ଣ୍ଣ ନିର୍ମିତ । ତାଙ୍କର ବାଣ ଗୁଡିକ ମୟୂରପୁଚ୍ଛରେ ସୁଶୋଭିତ । ସେ ହାତରେ ଖଣ୍ଡା ଓ ବଜ୍ର ଧାରଣ କରିଥାନ୍ତି । ତାଙ୍କର ବଜ୍ରର ନାମ 'ସୃକ୍ତ' । ନିଜର ଶରୀରକୁ ରକ୍ଷା କରିବା ନିମିତ୍ତ ସେ ବର୍ମ ଓ ମୁଣ୍ଡରେ ଶିରସ୍ତ୍ରାଣ ପିନ୍ଧିଥାନ୍ତି । ଦେହରେ କବଚ ମଧ୍ୟ ଧାରଣ କରିଥାନ୍ତି । ସେ ଜଣେ ପରାକ୍ରମୀ ଦେବତା । ରୁଦ୍ର ହେଉଛନ୍ତି ଶ୍ରେଷ୍ଠ ବୃଷଭ । ସେ ନିତ୍ୟ ଯୌବନରେ ପରିପୂର୍ଣ୍ଣ । ସେ ପର୍ବତରେ ଅଟକି ଯାଇଥିବା ନଦୀର ଜଳକୁ ମୁକ୍ତ କରିଦିଅନ୍ତି । ରୁଦ୍ର ତାଙ୍କର ଉପାସକଙ୍କୁ ସକଳ ବିପତ୍ତିରୁ ରକ୍ଷା କରନ୍ତି । ସେ ହେଉଛନ୍ତି ମରୁଦ୍‌ଗଣଙ୍କର ଜନକ । ରୁଦ୍ରଙ୍କର ପତ୍ନୀ ହେଉଛନ୍ତି ଅମ୍ବିକା(୯୦) ତାଙ୍କର ଅନ୍ୟନାମ ପାର୍ବତୀ (୯୧) ଓ 'ଉମା ହୈମବତୀ'(୯୨) ବୋଲି କୁହାଯାଇଛି ।

ରୁଦ୍ରାଧ୍ୟାୟୀରେ ଭବ, ଖର୍ବ, ଉଗ୍ର, ଭୀମ, ପଶୁପତି ଆଦି ରୁଦ୍ରଙ୍କର ପର୍ଯ୍ୟାୟବାଚୀ ନାମ ପ୍ରଯୁକ୍ତ ହୋଇଛି । ରୁଦ୍ରଙ୍କର ଆଧିପତ୍ୟ ବିଶ୍ୱର ଯେ କୌଣସି ସ୍ଥାନରେ ରହିଅଛି । ସେ ହେଉଛନ୍ତି ସକଳ ପଦାର୍ଥର ସ୍ୱାମୀ । ଅନ୍ନକ୍ଷେତ୍ର ଓ ବନର ଅଧିପତି । ସେ ମଧ୍ୟ ଭୂତଗଣଙ୍କର ସ୍ୱାମୀ । ବ୍ରାହ୍ମଣ ଓ ଉପନିଷଦ୍ କାଳରେ ସେ ସ୍ପଷ୍ଟ ପରିଲକ୍ଷିତ ହୋଇଅଛନ୍ତି ।

ରୁଦ୍ର ଶବ୍ଦର ବ୍ୟୁତ୍ପତ୍ତି 'ରୁଦ୍' ଧାତୁରୁ କରାଯାଉଛି । ଜନ୍ମ ହେବା ସଂଗେ ସଂଗେ ସେ ରୋଦନ କରୁଥିବାରୁ ତାଙ୍କୁ ରୁଦ୍ର କୁହାଯାଇଛି ।(୯୩) ରୁଦ୍ର ହେଉଛନ୍ତି ପ୍ରଳୟର ଦେବତା । କେତେକ ତାଙ୍କୁ ତୋଫାନର ଦେବତା ଏବଂ ଅନ୍ୟ କେତେକ ତାଙ୍କୁ ଗ୍ରୀଷ୍ମକାଳର ଦେବତା ଭାବରେ ଗ୍ରହଣ କରିଅଛନ୍ତି । ରୁଦ୍ରଙ୍କ ଜନ୍ମ ସଂପର୍କରେ ଶତପଥ ବ୍ରାହ୍ମଣରେ ଏକ ରୋଚକ ଗଳ୍ପ ଅଛି । ସେଇଟି ହେଲା – 'ପ୍ରଜାପତି ଯେତେବେଳେ ସାରା ସଂସାର ସୃଷ୍ଟି କରିବାକୁ ଇଚ୍ଛା କଲେ ସେତେବେଳେ ଜଣେ ଦେବ କୁମାରଙ୍କର ଜନ୍ମ ହେଲା । ଉକ୍ତ କୁମାର ଜଣଙ୍କ ଜନ୍ମ ହେବା ମାତ୍ରେ ତାଙ୍କ ନାମ କରଣ ଲାଗି କାନ୍ଦିଥିଲେ । ସେ ଜନ୍ମରୁ ନାମକରଣ ଲାଗି କାନ୍ଦୁ ଥିବାରୁ ତାଙ୍କ ନାମ ରୁଦ୍ର ରଖାଗଲା ।(୯୪) ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରୀୟ ଓ ମନ ଏମାନଙ୍କୁ ଏକାଦଶ ରୁଦ୍ର କୁହାଯାଏ ।(୯୫) ଏମାନେ ଶରୀରରୁ

ଗ୍ଳିଗଲେ ମନୁଷ୍ୟ ମରିଯାଏ ଏବଂ ତାର ଭାଇ ବନ୍ଧୁ କୁଟୁମ୍ବ କାନ୍ଦନ୍ତି । ଏମାନେ ଭାଇ ବନ୍ଧୁ କୁଟୁମ୍ବ ଆଦିଙ୍କୁ କନ୍ଦାନ୍ତି ବୋଲି ଏମାନେ ହେଲେ ରୁଦ୍ର । ରୁଦ୍ରଙ୍କର ସର୍ବଦା ମୃତ୍ୟୁ ସହିତ, କ୍ରନ୍ଦନ ସହିତ ଓ ଦୁଃଖ ସହିତ ସଂପୃକ୍ତି ।

ରୁଦ୍ର ଅନ୍ୟ ରୂପରେ ଶିବ । ସେ ମଙ୍ଗଳମୟ । ସେ ମଧ୍ୟ ଶୁଭଙ୍କର । ବଳଦେବ ଉପାଧ୍ୟାୟଙ୍କ ଶିବତ୍ୱ ସଂପର୍କୀୟ ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ ।(୯୬) ବୈଦିକ ପଂକ୍ତି ମାନଙ୍କରେ ରୁଦ୍ରଙ୍କର ଦ୍ୱୈତ ବ୍ୟକ୍ତିତ୍ୱ ସଂପର୍କରେ ବର୍ଣ୍ଣିତ ହୋଇଅଛି । "(କ) ସେ ଉଗ୍ର ସ୍ୱଭାବର ଦେବତା,(୯୭) (ଖ) ସେ ଭୟଙ୍କର ପଶୁ ଭଳି ଧ୍ୱଂସକାରୀ,(୯୮) (ଗ) ସେ ଦେବତାମାନଙ୍କ ମଧ୍ୟରେ କ୍ରୁର,(୯୯) (ଘ) ଦେବତାମାନେ ମଧ୍ୟ ତାଙ୍କୁ ଡରନ୍ତି,(୧୦୦) (ଙ) ସେ ତାଙ୍କ ଉପାସକ ମାନଙ୍କୁ ଆଶୀର୍ବାଦ ଦେଇଥାନ୍ତି ।(୧୦୧) (ଚ) ଗାଁର ଲୋକମାନେ କିଭଳି ଭଲ ଖାଇବେ ଓ ପିନ୍ଧିବେ ଏବଂ ସେମାନେ କିପରି ନୀରୋଗ ହେବେ ସେଥି ପ୍ରତି ସେ ଦୃଷ୍ଟି ଦେଇଥାନ୍ତି । (୧୦୨) (ଛ) ବୈଦ୍ୟମାନଙ୍କ ମଧ୍ୟରେ ସେ ଶ୍ରେଷ୍ଠ ବୈଦ୍ୟ । (୧୦୩) (ଜ) ସେ ତାଙ୍କ ଶତ୍ରୁମାନଙ୍କୁ କଫ, ଜ୍ୱର ଆଦି ରୋଗଗ୍ରସ୍ତ କରି ମାରି ଦିଅନ୍ତି ।(୧୦୪) (ଝ) ସେ ଅନାର୍ଯ୍ୟମାନଙ୍କର ପତି,(୧୦୫) (ଞ) ସେ ଚୋର ତସ୍କର ମାନଙ୍କର ପ୍ରଭୁ(୧୦୬)" । "ଏହା ସହିତ ରୁଦ୍ରଙ୍କୁ ଋଗ୍‌ବେଦରେ ଦୀର୍ଘ ଜୀବନ କାମନା ଲାଗି ଯେଉଁ ମନ୍ତ୍ରଟି ଦିଆଯାଇଛି ତାହା 'ସଞ୍ଜୀବନୀ ମନ୍ତ୍ର' । ଏହାକୁ ଉଚ୍ଚାରଣ କଲେ ଦୀର୍ଘ ଜୀବନ ମିଳେ । ଜୀବ ମୃତ୍ୟୁ ମୁଖରୁ ତରିଯାଏ । ମୃତ୍ୟୁ ଭୟ ପୀଡ଼ିତ ବ୍ୟକ୍ତି ଏହି ମନ୍ତ୍ରକୁ ଜପ କରିଥାନ୍ତି ।(୧୦୭) ଏହି 'ତ୍ର୍ୟମ୍ବକ' ଶବ୍ଦର ଅର୍ଥକୁ ବ୍ୟାଖ୍ୟାକାରମାନେ କହିଛନ୍ତି ରୁଦ୍ରଙ୍କର ତିନି ଆଖି । ଦୁଇଟି ସାଧାରଣ ଆଖି ଓ ତୃତୀୟଟି ଜ୍ଞାନର ଆଖି । ତେଣୁ ସେ ହେଲେ 'ତ୍ର୍ୟମ୍ବକ' । ତେଣୁ ଆମ୍ଭେମାନେ ସୁଗନ୍ଧ ଯୁକ୍ତ ପୁଷ୍ଟି ସାଧନ କାରୀ 'ତ୍ର୍ୟମ୍ବକ'ଙ୍କୁ (ରୁଦ୍ରଙ୍କୁ) ଯଜ୍ଞରେ ଆବାହନ କରୁଅଛୁ"।

କାଳକ୍ରମେ ରୁଦ୍ରଙ୍କର ବିବର୍ତ୍ତନ ହୋଇ ଅଗ୍ନିଙ୍କ ସହିତ ଚିହ୍ନଟ କରାଯାଇଥିଲା । ତେଣୁ ରୁଦ୍ରଙ୍କୁ ଅଗ୍ନିଙ୍କ ପ୍ରତୀକ ଭାବରେ ଗ୍ରହଣ କରାଯାଇଅଛି । ଅଗ୍ନି ବେଦୀ ଉପରେ ପ୍ରଜ୍ୱଳିତ ହୁଅନ୍ତି । ତାଙ୍କର ଶିଖା ଉପରକୁ ଉଠେ । ରୁଦ୍ରଙ୍କର ଉର୍ଦ୍ଧ୍ୱଲିଙ୍ଗର କଳ୍ପନା କରାଯାଇଛି । ସେମଧ୍ୟ ଜଳଧାରୀଙ୍କ ମଧ୍ୟରେ ସ୍ନାନ କରନ୍ତି । ଅଗ୍ନିରେ ଘୃତର ଆହୁତି କରାଯାଏ । ରୁଦ୍ରଙ୍କୁ ଜଳରେ ଅଭିଷେକ କରାଯାଏ ।(୧୦୮) "ହେ ଅଗ୍ନି ତୁମେ ହେଉଛ ରୁଦ୍ର" । ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଅଗ୍ନି ଓ ରୁଦ୍ରଙ୍କୁ ଗୋଟିଏ ଦେବତା ଭାବରେ ବହୁଧା ଆବାହନ କରାଯାଇଛି ।(୧୦୯) ଅଥର୍ବବେଦରେ ରୁଦ୍ର ଏବଂ ଅଗ୍ନିଙ୍କର ସଂକେତ ମିଳିଥାଏ ।(୧୧୦) ଶତପଥ ବ୍ରାହ୍ମଣ ଗ୍ରନ୍ଥରେ ଅଗ୍ନିଙ୍କର ଦୃଶ୍ୟ ଓ ଭୌତିକ ଆଧାର ଉପରେ ରୁଦ୍ରଙ୍କର କଳ୍ପନା ଆଧାରିତ ।(୧୧୧)

"ରୁଦ୍ରଙ୍କର ଆଠଟି ମୂର୍ତ୍ତି ଆଠଟି ଭୌତିକ ପଦାର୍ଥର ପ୍ରତିନିଧି ସ୍ୱରୂପ । ରୁଦ୍ର(ଅଗ୍ନି) ଖର୍ବ (ଜଳରୂପ) ପଶୁପତି (ଔଷଧି) ଉଗ୍ର (ବାୟୁ) ଅଶନି (ବିଦ୍ୟୁତ୍) ଭବ (ପର୍ଜ୍ଜନ୍ୟ), ମହାନ ଦେବ୍ (ମହାଶିବ) ଚନ୍ଦ୍ରମା, ଈଶାନ ( ଆଦିତ୍ୟ) ଅଟନ୍ତି । ଶୁକ୍ଳ ଯଜୁର୍ବେଦରୁ ଜଣାପଡେ ଅଗ୍ନି, ପଶୁପତି, ଭବ, ଖର୍ବ, ଈଶାନ, ମହାଦେବ, ଉଗ୍ର ଏମାନେ ଗୋଟିଏ ଦେବତା କିନ୍ତୁ ଭିନ୍ନ ଭିନ୍ନ ନାମରେ ନାମିତ ହୋଇଅଛନ୍ତି" ।(୧୧୨) ଅଶନିର ଅର୍ଥ ହେଉଛି ବିଦ୍ୟୁତ୍ । ଏଥିରୁ ଅନୁମିତ ହୁଏ ଯେ ରୁଦ୍ର ପୃଥିବୀରେ

ଅଗ୍ନି ରୂପରେ ପ୍ରକଟିତ ହୁଅନ୍ତି । ତେଣୁ ରୁଦ୍ରଙ୍କୁ ବିଦ୍ୟୁତର ଅଧିଷ୍ଠାତା ଦେବତା ଭାବରେ ଗ୍ରହଣ କରିବାକୁ ହୁଏ ।(୧୧୩) ରୁଦ୍ର ନିଜର ଭକ୍ତଙ୍କୁ ବିପଦରୁ ଉଦ୍ଧାର କରନ୍ତି । ତାଙ୍କ ଠାରେ ରୋଗ ନିବାରଣ କରିବାର ଶକ୍ତି ଅନେକତ୍ର ବର୍ଣ୍ଣିତ । ରୁଦ୍ର ଜ୍ୱର ତଥା ଅନ୍ୟାନ୍ୟ ରୋଗ ନିବାରଣରେ ନିପୁଣ । ରୁଦ୍ରଙ୍କୁ ଜଳାଷ (ଥଣ୍ଡା ଉପଗ୍ରହ ପ୍ରଦାନକାରୀ) ଓ ଜଳାଷ ଭେଷଜ ( ଥଣ୍ଡା ଔଷଧ ରଖିଥିବା ବ୍ୟକ୍ତି) ଭାବରେ ବିଭୂଷିତ କରାଯାଇଛି । (୧୧୪)

ରୁଦ୍ର ହେଉଛନ୍ତି ଏକ ଆର୍ଯ୍ୟେତର ଦେବତା । ଯେକି ପରବର୍ତ୍ତୀ ସମୟରେ ଆର୍ଯ୍ୟ ଦେବ ମଣ୍ଡଳରେ ପ୍ରବେଶ କରିଥିଲେ । ସେଥିପାଇଁ ବେଦରେ ରୁଦ୍ରଙ୍କୁ ବିଶେଷ ପ୍ରାଧାନ୍ୟ ଦିଆ ଯାଇନାହିଁ । ଉତ୍ତର ବୈଦିକ କାଳରେ ରୁଦ୍ରଙ୍କର ପ୍ରାଧାନ୍ୟ ସୃଷ୍ଟି ହେଲା । ବୈଦିକ ଆର୍ଯ୍ୟମାନେ ରୁଦ୍ରଙ୍କୁ ନିମ୍ନସ୍ଥାନ ପ୍ରଦାନ କରିଥିଲେ । ସେ ପ୍ରଥମେ 'ଶିବମ୍' ଭାବରେ 'ଶିବମ୍' ଗୋଷ୍ଠୀ ଦ୍ୱାରା ପୂଜିତ ହେଉଥିଲେ । ସେ ବୈଦିକ ମଣ୍ଡଳକୁ ଆସି ଯିବାପରେ ରୁଦ୍ର ବା ଶିବ ଭାବରେ ବର୍ଣ୍ଣିତ ହେଲେ । ଶତପଥ ବ୍ରାହ୍ମଣରେ ବର୍ଣ୍ଣନା କରାଯାଇଛି ସବୁ ଦେବତାମାନେ ସ୍ୱର୍ଗକୁ ଗଲେ ମଧ୍ୟ ରୁଦ୍ର ପଛରେ ପଡି ଯାଇଥିଲେ ।(୧୧୫)

**ଅଗ୍ନି** – ଅଗ୍ନି ହେଉଛନ୍ତି ପ୍ରାଚୀନତମ ଦେବତା । ଋଗ୍‌ବେଦର ପୂର୍ବକାଳରୁ ସେ ପୂଜିତ ହୋଇ ଆସୁଛନ୍ତି । ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି ଯେ "ପୂର୍ବର ଋଷିମାନେ ଅଗ୍ନିଙ୍କୁ ପୂଜା କରୁଥିଲେ ଏବଂ ଏବର ନୂଆ ଋଷିମାନେ ମଧ୍ୟ ତାଙ୍କର ପୂଜା କରୁଅଛନ୍ତି ।(୧୧୬) 'ନିରୁକ୍ତ'କାର ଯାସ୍କ କୁହନ୍ତି 'ଅଗ୍' ଧାତୁରୁ 'ଅଗ୍ନି' ଶବ୍ଦ ନିଷ୍ପନ୍ନ । ସେ ସର୍ବତ୍ର ବ୍ୟାପ୍ତ । ସେ ହେଉଛନ୍ତି 'ଅଗ୍ନି' । ଅର୍ଥାନ୍ତରରେ ସେ କୁହନ୍ତି ଯେ "ଅଗ୍ରଣୀ ବା ନେତା ହେଲେ ଅଗ୍ନି । (ଅଗ୍ରଣୀଃ ଭବତୀତି ଅଗ୍ନି) ଅଗ୍ନି ହେଉଛନ୍ତି ଭକ୍ତ ଜନଙ୍କର ନେତା । ସେ ଭକ୍ତମାନଙ୍କୁ ହାତ ଧରି ପରମ ପଦ ଆଡକୁ ଟାଣି ନିଅନ୍ତି । ସେ ମଧ୍ୟ ଦେବତାମାନଙ୍କର ନେତା । ତାଙ୍କରି ମାଧ୍ୟମରେ ଅନ୍ୟ ଦେବତାମାନଙ୍କୁ ଆବାହନ କରାଯାଏ" । ସେଥିପାଇଁ ଋଗ୍‌ବେଦରେ କୁହାଯାଇଛି "ମୁଁ ସମସ୍ତଙ୍କ ଆଗରେ ଆସନ ପାଇବାକୁ ଯୋଗ୍ୟ ଅଗ୍ନିଙ୍କୁ ପୂଜା କରୁଅଛି"।(୧୧୭) ଅଗ୍ନି ସମସ୍ତଙ୍କ ନେତା ହୋଇ ଥିବାରୁ ତାଙ୍କୁ ପୁରୋହିତ ଭାବରେ ଆବାହନ କରାଯାଇଅଛି ।(୧୧୮) ବ୍ରାହ୍ମଣ ଗ୍ରନ୍ଥରେ ଅଗ୍ନି ହେଉଛନ୍ତି ଦେବତାମାନଙ୍କର ଉଚ୍ଚର ସ୍ୱରୂପ ବୋଲି କୁହାଯୋଇଛି ।(୧୧୯) ଅଥର୍ବ ବେଦରେ ଅଗ୍ନି ହେଉଛନ୍ତି ସକଳ ଦେବତା ବୋଲି କୁହାଯାଇଛି । (୧୨୦) ସାମବେଦର ଗୋଟିଏ ସୂକ୍ତରେ କୁହାଯାଇଛି "ହେ ଅଗ୍ନି ! ତୁମକୁ ମୁଁ ସ୍ତୁତି କରୁଅଛି । ତୁମେ ମୋର ମୁକ୍ତି ଲାଗି ଓ କାମନା ବାସନା ଆଦି ଛେଦନ କରିବା ଲାଗି ଆସି ତୁମେ ହୋତା ହୋଇ ମୋର ହୃଦୟ ଆକାଶରେ ସଂପୂର୍ଣ୍ଣ ରୂପେ ବିରାଜମାନ କର"।(୧୨୧) ଏ ହେଉଛନ୍ତି ପ୍ରାଣକୁ ନିୟନ୍ତ୍ରଣ କରୁଥିବା ପରମାତ୍ମା ଯେକି ଜୀବ ଦେହରେ ବିରାଜମାନ୍ କରି ଥାଆନ୍ତି । 'ଐତରେୟ ବ୍ରାହ୍ମଣ' ଭାଷାରେ "ସେ ହେଉଛିନ୍ତି ପ୍ରାଣ"।(୧୨୨) ଶତପଥ ବ୍ରାହ୍ମଣରେ ଏହି ତତ୍ତ୍ୱ ଅନୁରଣିତ ହୋଇ କୁହାଯାଇଛି "ପ୍ରାଣ ହେଉଛି ଅଗ୍ନି" ।(୧୨୩) ଅଗ୍ନିଙ୍କର ମୃତ୍ୟୁ ନାହିଁ ବୋଲି ଋଗ୍‌ବେଦରେ ଅନେକ ସ୍ଥାନରେ କୁହାଯାଇଛି । ମୁନିଋଷିମାନେ ସର୍ବଦା କହିଛନ୍ତି ମରଣଶୀଳ ଜୀବମାନଙ୍କ ମଧ୍ୟରେ ଏହି ଅମୃତ ବିଦ୍ୟମାନ । ମୃତ୍ୟୁ ତତ୍ତ୍ୱ ମଧ୍ୟରେ ଅମୃତତତ୍ତ୍ୱ ଅନୁପ୍ରବିଷ୍ଟ ହୋଇଅଛି । ଋଗ୍‌ବେଦରେ କୁହାଯାଇଛି -ମରଣଶୀଳ ଜୀବମାନଙ୍କ ମଧ୍ୟରେ ଏହି ଜ୍ୟୋତି (ଅଗ୍ନିଙ୍କର) ଅମୃତ ରୂପରେ ବିଦ୍ୟମାନ ।(୧୨୪) ସେହି ବେଦରେ ଅନ୍ୟତ୍ର

ଉଲ୍ଲିଖିତ ଅଛି ; "ସେ ( ଅଗ୍ନି ) ମରଣଶୀଳ ଜୀବମାନଙ୍କ ଠାରେ ଅମୃତମୟ ଚେତନା ଭାବରେ ପ୍ରତିଷ୍ଠିତ" ।(୧୨୫) ଦିବ୍ୟଜ୍ଞାନର ଉଦୟ ହେଲେ ଚିରନ୍ତନ ସତ୍ୟକୁ ବୁଝିହୁଏ । ଶ୍ରୀ ଅରବିନ୍ଦଙ୍କ ମତରେ "ଅଗ୍ନିଙ୍କର ସତ୍ୟ ସହିତ ନିବିଡ ସଂପର୍କ ରହିଅଛି"। (୧୨୬) ଅନେକ ବୈଦିକ ମନ୍ତ୍ର ପାଠ କରି ଶ୍ରୀ ଅରବିନ୍ଦ ଅଗ୍ନି ସଂପର୍କରେ ଯେଉଁ ସତ୍ୟରେ ଉପନୀତ ହୋଇଅଛନ୍ତି ସେମାନଙ୍କ ମଧ୍ୟରୁ ଗୋଟିଏ ମନ୍ତ୍ରରେ କୁହାଯାଇଛି "ହେ ଅଗ୍ନି ତୁମେ ଯଜ୍ଞର ହୋତା ସ୍ୱରୂପ, ସକଳ କର୍ମ ପ୍ରତି ତୁମର ଋଷିଙ୍କ ଭଳି ଦୃଷ୍ଟି । ତୁମେ ସତ୍ୟ, ବହୁ ବିଚିତ୍ର ପ୍ରେରଣାରେ ତୁମେ ଶ୍ରୀମନ୍ତ, ତୁମେ ଦେବ । ଦେବତାମାନଙ୍କ ସହିତ ତୁମେ ଆସ"। ଅଗ୍ନିଙ୍କୁ ଏଠାରେ ଯଜ୍ଞର ହୋତା କହିବାର ତାତ୍ପର୍ଯ୍ୟ ହେଲା ସେ ହେଉଛନ୍ତି ସକଳ କର୍ମର କର୍ତ୍ତା । ସେ ହେଉଛନ୍ତି 'କବିକ୍ରତୁ' କିନ୍ତୁ ଅର୍ଥାତ୍ ସକଳ କର୍ମ କରିବାର ଯେଉଁ ଇଛା ଶକ୍ତି ଅଛି ତାହା ଋଷି ସୁଲଭ ଦୃଷ୍ଟିରେ ଶାଣିତ ଓ ମାର୍ଜିତ । ଏଭଳି କର୍ମ ନିଶ୍ଚିତ ଭାବରେ ବିଶ୍ୱ ଲାଗି ଶୁଭଙ୍କର । ସେ ହେଉଛନ୍ତି ସତ୍ୟ ବା ସତ୍ୟ ଚେତନା । ଏହି ଚେତନାର ଅଭ୍ୟୁଦୟ ହେଲେ ମନୁଷ୍ୟ ଚିରନ୍ତନ ସତ୍ୟକୁ ଉପଲବ୍ଧି କରିପାରେ । ସେ ପୁଣି ହେଉଛନ୍ତି ଉତ୍ସାହ, ଉଦ୍ଦୀପନା ଓ ପ୍ରେରଣା ଦେବାରେ ଶ୍ରେଷ୍ଠ । ତାଙ୍କ ପ୍ରେଚୋଦନାରେ ଯେଉଁ ବିଚିତ୍ର ଓ ବର୍ଣ୍ଣାଢ୍ୟଧାରା ଅନ୍ତରରେ ବହିଯାଏ ତାହା ଫଳରେ ମନୁଷ୍ୟର କର୍ମ ଶକ୍ତି ଆହୁରି ପୂର୍ଣ୍ଣତର ହୋଇଉଠେ ଓ ସେ ଉତ୍ତମ କର୍ମ କରିବାକୁ ସମର୍ଥ ହୋଇଥାଏ । "ଦେବୋ ଦେବେଭିଃ" ପଂକ୍ତିଟିରେ ଦେବ ଶବ୍ଦର ବାରମ୍ବାର ବ୍ୟବହାର ଅଗ୍ନିଙ୍କ ଦିବ୍ୟତ୍ୱ ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ ଛଡା ଆଉ କିଛି ନୁହେଁ । "ଦିବ୍ୟ ଅଗ୍ନି ସକଳ ଦେବତ୍ୱଧରି ଅବତୀର୍ଣ୍ଣ ହୁଅନ୍ତୁ ବୋଲି ଏଠାରେ ବୈଦିକ ଋଷି କାମନା କରିଅଛନ୍ତି"।( ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି- ବୈଦିକ ପର୍ବ, ତୃତୀୟଭାଗ ପୃ ୨୬୯-୨୭୦ ରୁ ଉଦ୍ଧୃତ) ଶ୍ରୀ ଅରବିନ୍ଦଙ୍କର ମତ ଅନୁରୂପ ହୋଇଅଛି ।(୧୨୭)

ବେଦରେ ପ୍ରାୟ ୨୦୦ ସୂକ୍ତରେ ଅଗ୍ନିଙ୍କର ପ୍ରାର୍ଥନା ପ୍ରଯୁକ୍ତ ହୋଇଛି । ଇନ୍ଦ୍ରଙ୍କ ପରେ ବେଦରେ ଅଗ୍ନିଙ୍କ ସ୍ଥାନ ଆସି ଅଛି । ବୈଦିକ କାଳରେ ଅଗ୍ନିଙ୍କର ଦର୍ଶନ ଯାଜ୍ଞିକ ଅଗ୍ନି ରୂପରେ ଏବଂ ମାନବର ମିତ୍ର ରୂପରେ ହୋଇଅଛି । "ପୃଥିବୀରେ ଅରଣିରୁ (ଚକମକି) ଉତ୍ପନ୍ନ ହେଉଥିବା ଅଗ୍ନି, ଅନ୍ତରୀକ୍ଷରେ ବିଦ୍ୟୁତ୍ ରୂପେ ବିଳାସ କରୁଥିବା ଅଗ୍ନି ଏବଂ ସ୍ୱର୍ଗରେ ସୂର୍ଯ୍ୟ ରୂପରେ ପ୍ରକାଶିତ ହେଉଥିବା ଅଗ୍ନି - ଏହିପରି ଅଗ୍ନିଙ୍କର ତିନି ପ୍ରକାର ରୂପର କଳ୍ପନା କରାଯାଇଅଛି"। ଇନ୍ଦ୍ର ଦେବ ଯଦି ଯୋଦ୍ଧାମାନଙ୍କର ଦେବତା ଅଗ୍ନିଦେବ ହେଉଛନ୍ତି ଗୃହସ୍ୱାମୀଙ୍କର ଦେବତା । ଅଗ୍ନି ପ୍ରତ୍ୟେକ ଗୃହର ଅତିଥି ଏବଂ ପ୍ରଥମ ଅତିଥି ସ୍ୱରୂପ । ତାଙ୍କୁ ବୃହସ୍ପତି (ଗୃହର ପ୍ରଭୁ) ମଧ୍ୟ କୁହାଯାଇଛି । ( ଅଭିନ୍ନ ଚନ୍ଦ୍ର ଦାସଙ୍କର ବୈଦିକ ସାହିତ୍ୟ ଓ ସଂସ୍କୃତି ପୁସ୍ତକର ୧୫୯ ପୃଷ୍ଠାରୁ ଉଦ୍ଧୃତ) ।

ଅଗ୍ନିଙ୍କର ତିନୋଟି ଜନ୍ମସ୍ଥାନ ସ୍ୱୀକୃତ ହୋଇଅଛି । ଯେଉଁ ଦଶଟି କନ୍ୟା ଅଗ୍ନିଙ୍କୁ ଉତ୍ପନ୍ନ କରନ୍ତି ସେମାନେ ହେଉଛନ୍ତି ଉତ୍ପାଦକର ଦଶଟି ଅଙ୍ଗୁଳି । ଅଗ୍ନିଙ୍କର କେଶ ଜ୍ୱାଳାମୟ, ଦାଢିଲାଲ ବର୍ଣ୍ଣ, ଦନ୍ତ ତୀକ୍ଷଣ ଓ ସ୍ୱର୍ଣ୍ଣିମ । ଅଗ୍ନିଙ୍କର ଶିଖାକୁ ଜିହ୍ୱା କୁହାଯାଏ । ଅଗ୍ନିଙ୍କୁ ସହସ୍ରନେତ୍ର ଭାବରେ ଭୂଷିତ କରାଯାଇଥାଏ । ଅଗ୍ନିକୁ ବୃଷଭ ମଧ୍ୟ କୁହାଯାଇଥାଏ । ଅଗ୍ନି ସ୍ୱର୍ଗର ପକ୍ଷୀରୂପେ କଳ୍ପିତ ହୋଇଅଛନ୍ତି । କାଠ ଓ ଘିଅ ହେଉଛି ଅଗ୍ନିଙ୍କର ପ୍ରିୟ ଖାଦ୍ୟ । ତରଳ ଲହୁଣୀ ହେଉଛି ତାଙ୍କର

ରୁଚିକର ପାନୀୟ । ସେ ଅନ୍ୟାନ୍ୟ ଦେବତାମାନଙ୍କ ସହିତ ସୋମପାନ କରିବାକୁ ଆହୂତ ହୋଇଅଛନ୍ତି । ଅଗ୍ନି ହେଉଛନ୍ତି ଦେବତାମାନଙ୍କର ମୁଖ ସ୍ୱରୂପ । ଅଗ୍ନି ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ । ଅଗ୍ନିଙ୍କର ସୁନାର ରଥକୁ ଜଷରିଆ ବର୍ଣ୍ଣର ଘୋଡା ଟାଣନ୍ତି । ମନୁଷ୍ୟ ଓ ଦେବତାମାନଙ୍କ ମଧ୍ୟରେ ସେ ଦୂତ ରୂପରେ କାମ କରନ୍ତି । "ଅଗ୍ନିଙ୍କୁ ଉପାସନାର ଭାଇ, ପିତା ଓ ପୁତ୍ର ରୂପରେ ଚିତ୍ରଣ କରାଯାଇଛି" । ଅଗ୍ନି ହେଉଛି ଯଜ୍ଞର ଋତ୍ୱିକ । ପୁଣି ଅଗ୍ନି ହେଉଛି ଘରର ପୁରୋହିତ । ଅଗ୍ନି ହେଉଛନ୍ତି ଜାତବେଦ । ସେ ସକଳ ବିଷୟ ଜାଣି ପାରନ୍ତି । ସମସ୍ତଙ୍କ ଅଗ୍ରଗାମୀ ହେତୁ ସେ ଅଗ୍ନି । ହୋମକୁ ତୁରନ୍ତ ବହନ କରୁଥିବାରୁ ସେ ବହ୍ନି ଓ ହବ୍ୟବାହନ ।

ଏହି ଅଗ୍ନି ପୂଜାହିଁ ବୈଦିକ ସଂସ୍କୃତିର ବିକାଶ ସହିତ ଅଙ୍ଗାଙ୍ଗୀ ଭାବରେ ଜଡିତ । ବୈଦିକ ସଂସ୍କୃତିରେ ଯେଉଁ ଯେଉଁ ଅଞ୍ଚଳ ମାନଙ୍କରେ ପ୍ରସାର ଘଟିଛି ସେହି ସେହି ଅଞ୍ଚଳରେ ପ୍ରଥମେ ଅଗ୍ନିଙ୍କର ଅନୁପ୍ରବେଶ ଘଟିଅଛି । ସେଥିପାଇଁ କୁହାଯାଇଛି ଆର୍ଯ୍ୟମାନେ ପୂର୍ବାଞ୍ଚଳକୁ ଗତି କରି ଆର୍ଯ୍ୟ ସଂସ୍କୃତିର ବିସ୍ତାର କରୁଥିବା ସଂପର୍କରେ 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି 'ବିଦେଘ ମାଥବ' ବୈଶ୍ୱାନର ଅଗ୍ନିଙ୍କୁ ମୁଖରେ ବହି ଆଣିଥିଲେ । ତାଙ୍କ ପୁରୋହିତ ଥିଲେ 'ଗୋତମ ରାହୁଗଣ ଋଷି'।(୧୨୮)

**ବୃହସ୍ପତି** – ବୃହସ୍ପତିଙ୍କୁ ବେଦରେ ବ୍ରାହ୍ମଣସ୍ପତି କୁହାଯାଇଛି । ଅର୍ଥାତ୍ ସେ ହେଉଛନ୍ତି ମନ୍ତ୍ରର ପତି ବା ଦେବତା । ଅଗ୍ନିଙ୍କ ପରି ବୃହସ୍ପତିଙ୍କର ମାନବିକ ରୂପର ବର୍ଣ୍ଣନା ବେଦରେ ବିଶେଷ ଭାବରେ ମିଳେ ନାହିଁ । ଅଗ୍ନିଙ୍କ ପରି ସେ ହେଉଛନ୍ତି ଗୃହର ପୁରୋହିତ । ତାଙ୍କର କାନ୍ତି ସ୍ୱର୍ଣ୍ଣ ପରି ଦୀପ୍ତିମାନ । ସେ ହାତରେ ଧନୁ, ବାଣ, ପରଶୁ ଧାରଣ କରିଅଛନ୍ତି । ତାଙ୍କର ରଥକୁ ଲାଲ ରଂଗର ଘୋଡା ବହନ କରନ୍ତି । ସେ ବହୁବାର ବେଦରେ ଇନ୍ଦ୍ରଙ୍କ ସହିତ ଆହୂତ ହୋଇଅଛନ୍ତି । ବୃହସ୍ପତିଙ୍କୁ ମଘବାନ, (ଦାନଶୀଳ) 'ବଜ୍ରୀ' ମଧ୍ୟ କୁହାଯାଇଛି । ସେ ବଳ ନାମକ ଅସୁରକୁ ନିହତ କରି ଗାଈମାନଙ୍କୁ ଉଦ୍ଧାର କରିଥିଲେ । ବୃହସ୍ପତି 'ବୃହ' (ବର୍ଦ୍ଧନ) ଧାତୁରୁ ନିଷ୍ପନ୍ନ । ବୃହସ୍ପତି ଅଗ୍ନିଙ୍କ ପ୍ରତୀକ ପରି । ହିନ୍ଦୁ ଧର୍ମର ବିକାଶ ସମୟରେ ବୃହସ୍ପତି ଗଣପତି ରୂପରେ ଗୃହୀତ ହୋଇଅଛନ୍ତି ।

**ସୋମ** – ବେଦରେ ଇନ୍ଦ୍ର ଅଗ୍ନିଙ୍କ ପରେ ସୋମଙ୍କ ପ୍ରାଧାନ୍ୟ ପରିଲକ୍ଷିତ ହୋଇଅଛି । ସୋମଙ୍କୁ ଦେବତା ରୂପରେ ୧୫ ସୂକ୍ତରେ ସ୍ତୁତି କରାଯାଇଛି । ବେଦରେ କେବଳ ସୋମର ରଥ ଓ ଧନୁର ଉଲ୍ଲେଖ ମିଳେ । ଋଗ୍‌ବେଦର ୯ମ ମଣ୍ଡଳର ସମସ୍ତ ସୂକ୍ତ ସୋମଙ୍କ ଉଦ୍ଦେଶ୍ୟରେ । ସୋମର ରୋଗ ନିବାରଣୀ ଶକ୍ତି ଥିବାର କୁହାଯାଇଛି । ସୋମକୁ ମଧ୍ୟ ଅମୃତ କୁହାଯାଇଛି । ସୋମର ବାସସ୍ଥାନ ସ୍ୱର୍ଗରେ ବୋଲି କୁହାଯାଇଛି ଯଦିଓ ତାହା ପର୍ବତ ଉପରେ ଉତ୍ପନ୍ନ ହେଉଥିବା ବର୍ଣ୍ଣନା ମିଳେ । ସୋମ ରାଜା ଅଟନ୍ତି । ସେ ମାନବ ଓ ଦେବତାଙ୍କ ଅଧିପତି । ଚନ୍ଦ୍ରଙ୍କ ସହିତ ସୋମର ସମୀକରଣ ଋଗ୍‌ବେଦ ଓ ଅଥର୍ବ ବେଦରେ ଦେଖାଦିଏ ।

ପୃଥିବୀ, ଦ୍ୟୌସ୍, ସରସ୍ୱତୀ, ନଦୀ, ଯମ ଆଦି ଅନେକ ଦେବତା ବୈଦିକ ମନ୍ତ୍ର ଗୁଡିକରେ ବିଭିନ୍ନ ଭାବରେ ଆରାଧିତ ହୋଇଅଛନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ବୈଦିକ ଆର୍ଯ୍ୟମାନେ ପ୍ରକୃତି ପୂଜକ ନଥିଲେ । ସେମାନେ ସାରା ବିଶ୍ୱ ବ୍ରହ୍ମାଣ୍ଡରେ ଗୋଟିଏ ସତ୍ତାର ଉପଲବ୍ଧି କରି ପାରିଥିଲେ ଏବଂ

ଏହି ସତ୍ତାର ବିଭିନ୍ନ ବିଭୂତି ବା ଅଭିପ୍ରକାଶକୁ ବିଭିନ୍ନ ନାମ ଦେଇ, ବିଭିନ୍ନ ଦେବା ଦେବୀ ଭାବରେ ଆରାଧନା କରୁଥିଲେ । ବୈଦିକ ଆର୍ଯ୍ୟ ସଂସାରିକ ସୁଖ କାମନା କରୁଥିଲେ ମଧ୍ୟ ଆଧ୍ୟାତ୍ମିକ ସୁଖ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ସେମାନେ ବହୁ ଦେବତାଙ୍କ ମଧ୍ୟରେ ସତ୍ୟ, ଶିବ, ସୁନ୍ଦରଙ୍କୁ ଆବିଷ୍କାର କରିଥିଲେ । ତାଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା ମୋକ୍ଷ । ଦେବତାମାନଙ୍କୁ ଆରାଧନା କରିବାର ଲକ୍ଷ୍ୟଥିଲା ମୃତ୍ୟୁରାଜ୍ୟରୁ ଯାଇ ଅମୃତରାଜ୍ୟରେ ପହଞ୍ଚିବା । ବୈଦିକ ଦେବମଣ୍ଡଳରେ କେତେକ ଆର୍ଯ୍ୟେତର ଦେବ ପ୍ରବେଶ କରିଥିଲେ । ମାତ୍ର ସେମାନେ ସଂପୂର୍ଣ୍ଣ ରୂପେ ଆର୍ଯ୍ୟ ଧର୍ମନିଷ୍ଠ ହେବା ସଂଗେ ସଂଗେ ବିବର୍ତ୍ତିତ ରୂପ ଧାରଣ କରିଥିଲେ ।

**ଯଜ୍ଞତତ୍ତ୍ୱ –** ଯଜ୍ଞତତ୍ତ୍ୱ ବୈଦିକ ଚିନ୍ତାଧାରାର ଥିଲା ମୂଳ ଭିତ୍ତି । ଦାସ, ଦସ୍ୟୁ, ଅସୁରମାନେ ଦେହସେବୀ ଥିବାରୁ ଆର୍ଯ୍ୟମାନେ ତାଙ୍କୁ 'ଅଯାନୀ ବା ଅଯାଜ୍ଞିକ' ବୋଲି ଘୃଣା କରୁଥିଲେ । 'ଦ୍ରବ୍ୟ ତ୍ୟାଗ' ମାଧ୍ୟମରେ ବୈଦିକ ଆର୍ଯ୍ୟମାନେ ସ୍ୱାର୍ଥ ତ୍ୟାଗ କରି ଜଗତର ମଙ୍ଗଳ କାମନା କରୁଥିଲେ । ଏହା ଯଜ୍ଞ ଯଜ୍ଞରୁ ଅନୁମିତ । ଯାହାର ନିଷ୍ଠା ଯେତେ ବେଶି ତାହାର ଯଜ୍ଞ ସେତେ ସଫଳ । ଯାହାର ନିଷ୍ଠା ପୂର୍ଣ୍ଣମାତ୍ରାରେ ଅଛି ତାହାର ଯଜ୍ଞ ପୂର୍ଣ୍ଣମାତ୍ରାରେ ସଫଳ । ଯଜ୍ଞର ଏ ପ୍ରକାର ଅର୍ଥକୁ ଅବଶ୍ୟ ପରବର୍ତ୍ତୀ କାଳରେ ଲୋକମାନେ ଭୁଲିଗଲେ । ସେମାନେ କର୍ମକାଣ୍ଡର ପୂଜକ ହୋଇଉଠିଲେ । ଜ୍ଞାନକାଣ୍ଡ ସେମାନଙ୍କ ଠାରୁ ଦୂରେଇ ଗଲା । ସ୍ୱାର୍ଥ ତ୍ୟାଗ ପୂର୍ବକ ସାରା ବ୍ରହ୍ମାଣ୍ଡ ମଧ୍ୟରେ ଥିବା ମହାନ୍ ଐକ୍ୟକୁ ଉପଲବ୍ଧି କରିବା ହେଉଛି ବୈଦିକ ଆଧାତ୍ମିକ ଧାରଣାର ପରମ ଆଧାର ଏବଂ ଏହା ଉପରେ ଯଜ୍ଞତତ୍ତ୍ୱ ସୁପ୍ରତିଷ୍ଠିତ । ବୈଦିକ ଯଜ୍ଞର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଆତ୍ମ ତ୍ୟାଗ କରି ଫଳ ଲାଭର ଆଶା ନ ରଖି ଜଗତର ମଙ୍ଗଳ ସାଧନ ଲାଗି କାମ କରିବା । ସେହି କର୍ମ ମାଧ୍ୟମରେ ଜୀବନର ଚରମ ଲକ୍ଷ୍ୟ 'ନିଶ୍ରେୟସ୍'ରେ ପହଞ୍ଚିବା । ଋଗ୍‌ବେଦରେ କୁହାଯାଇଛି ସାରା ସଂସାରର ନାଭି ହେଉଛି ଏହି ଯଜ୍ଞ । ଏହା ସାରା ସଂସାରର କେନ୍ଦ୍ରବିନ୍ଦୁ । ପ୍ରାଣର ପ୍ରାଣ, ସାରା ସଂସାରର ପୁଷ୍ଟି ସାଧନ ଏହାରି ଦ୍ୱାରା ହିଁ ସମ୍ଭବ । ଏହାହିଁ ଯଜ୍ଞ ତତ୍ତ୍ୱର ମହତ୍ୱ । (୧୨୯)

**ଋଷିଙ୍କ ଅନ୍ତର୍ଦୃଷ୍ଟି –** ବୈଦିକ ଧର୍ମ ବେଦବାଣୀ ଉପରେ ପ୍ରତିଷ୍ଠିତ । ଏହି ବେଦବାଣୀ ଋଷିମାନଙ୍କର ମୁଖ ନିସୃତ । ବେଦର ସୂକ୍ତଗୁଡିକ ଋଷିମାନଙ୍କର ଦିବ୍ୟାନୁଭୂତି ବଳରେ ସୃଷ୍ଟ । ଋଷିମାନେ ମନ୍ତ୍ରଦ୍ରଷ୍ଟା ବୋଲି ଯାସ୍କ କହିଅଛନ୍ତି ।(୧୩୦) ସେମାନଙ୍କର ଅନ୍ତର୍ଦୃଷ୍ଟି ବଳରେ ମନ୍ତ୍ରଲବ୍ଧ ଜ୍ଞାନକୁ ପାଇ ପାରିଥିଲେ ଏବଂ ତାହା ଜଗତର କଲ୍ୟାଣ ଲାଗି ଉଦ୍ଦିଷ୍ଟ ଥିଲା । ଯେତେବେଳେ ଋଷିମାନଙ୍କର ଅନ୍ତର୍ଦୃଷ୍ଟି ଦିବ୍ୟାଲୋକରେ ଉଦ୍ଭାସିତ ହୋଇଉଠିଛି ସେତେବେଳେ ବେଦର 'ଗୋପନବାଣୀ ସମୂହ'ର ସେ ସନ୍ଧାନ ପାଇ ପାରିଛନ୍ତି । (ନିନ୍ୟା ବଂଗ୍ୱସି) ସେତେବେଳେ ତାଙ୍କ ହୃଦ ସାଗରରେ 'ମଧୁମାନ ଉର୍ମି' ଲହଡ଼ା ଭାଙ୍ଗିଛି ।(୧୩୧) ଏହା ଜ୍ଞାନରେ ମାପିବାର ବସ୍ତୁ ନୁହେଁ କିମ୍ବା ବାକ୍ୟରେ ପ୍ରକାଶ କରିବାର ବସ୍ତୁ ନୁହେଁ । ଏହା ଅନୁଭୂତିର ବସ୍ତୁ । ବୈଦିକ ଧର୍ମ ଚେତନା ଅନୁଭୂତି ପ୍ରସୂତ, ଅଥଚ ଅନ୍ୟାନ୍ୟ ଧର୍ମ ଚେତନା ଚିନ୍ତା ଓ ଜ୍ଞାନ ପ୍ରସୂତ । ମାତ୍ର ବେଦୋତ୍ତର କାଳରେ ଅନ୍ତର୍ଦୃଷ୍ଟି ସଂପନ୍ନ ଋଷିମାନଙ୍କର ଅଭାବ ଘଟିଲା । ଫଳରେ ବେଦ ପ୍ରତି ଜନସାଧାରଣରେ ଅନାଗ୍ରହ ଦେଖା ଦେଲା । ଏଭଳିକି ଯାସ୍କ ମଧ୍ୟ ବେଦର ଅନେକ ମନ୍ତ୍ର ବୁଝି ପାରି ନଥିଲେ । ଏହି ଅନ୍ତର୍ଦୃଷ୍ଟି ବଳରେ ଯେଉଁ ଜ୍ଞାନ ଋଷିମାନେ ଉପଲବ୍ଧି

କରିଥିଲେ ତାହାହିଁ ବେଦ ସଂପର୍କୀୟ ପ୍ରକୃଷ୍ଟ ଜ୍ଞାନ । ତଦନୁସାରୀ ଅର୍ଥ ହେଉଛି ବେଦର ପ୍ରକୃତ ଅର୍ଥ । ଏହି ସଂପର୍କରେ ଶ୍ରୀ ଅରବିନ୍ଦ ଲକ୍ଷ୍ୟ କରି ତାଙ୍କର ସୁଚିନ୍ତିତ ମତାମତ ପ୍ରଦାନ କରିଅଛନ୍ତି ।(୧୩୨)

ବାସ୍ତବିକ ବୈଦିକ ଚିନ୍ତାଧାରା ଅନୁସାରେ ଦିବ୍ୟତ୍ୱ ହେଉଛି ମନୁଷ୍ୟର ସ୍ୱାଭାବିକ ଲକ୍ଷଣ । ଅଦିବତ୍ୱ ହେଉଛି ତା ନିକଟରେ ଅସ୍ୱାଭାବିକ । ମନୁଷ୍ୟ ହେଉଛି ଦିବ୍ୟ ଚେତନାର ଅଂଶ । ପରମାତ୍ମାଙ୍କର ଏକ ସ୍ଫୁରଣ । ତେଣୁ ପରମାତ୍ମା ଚେତନାରେ ଲୀନ ହେବା ତା ପକ୍ଷରେ ଅସମ୍ଭବ ନୁହେଁ ବୋଲି ଋଷିମାନେ ଭାବୁଥିଲେ ।(୧୩୩) ହେତୁବାଦ ମନୁଷ୍ୟର ବୁଦ୍ଧିକୁ ତୀକ୍ଷ୍ଣ, ମସ୍ତିଷ୍କକୁ ଜ୍ଞାନୀ କରିପାରେ ମାତ୍ର ତାକୁ ପରମ ଜ୍ଞାନୀ କରିପାରିବ ନାହିଁ । "ପରମ ସତ୍ୟର ଉପଲବ୍ଧି କେବଳ ହୃଦୟରେ ସମ୍ଭବ । ଏହାକୁ କୁହାଯାଏ ଅନ୍ତର୍ଦୃଷ୍ଟି "। ବୈଦିକ ଚିନ୍ତାଧାରାରେ ତେଣୁ ଅନ୍ତର୍ଦୃଷ୍ଟି ଥିଲା ଜ୍ଞାନ ଠାରୁ ମହତ୍ତର । ବୈଦିକ ଋଷିମାନଙ୍କର ଏହି ଅନ୍ତର୍ଦୃଷ୍ଟି ଜନିତ ଉପଲବ୍ଧି କେବଳ କଳ୍ପନାର ବସ୍ତୁ ନଥିଲା । ଏହା ଥିଲା ଏକ ନିଛକ ସତ୍ୟ ଚେତନା । ଏହା ଏବେ ମଧ୍ୟ ଉପଲବ୍ଧ କରିହେବ । ରାଧାକୃଷ୍ଣନ୍‌ଙ୍କ ଏହି ମତର ଯଥେଷ୍ଟ ପୌଷ୍ଟିକତା କରି ଅଛନ୍ତି ।(୧୩୪) (ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତିର ବୈଦିକ ପର୍ବ-ତୃତୀୟ ଭାଗ ପୃ ୨୭୫ ରୁ ଉଦ୍ଧୃତ) ଶ୍ରୀ ଅରବିନ୍ଦଙ୍କ ମତରେ ମନୁଷ୍ୟ ଏକ ପୂର୍ଣ୍ଣାଙ୍ଗ ସତ୍ତାରେ ପରିଣତ ହେବାପାଇଁ ଏ ପ୍ରକାର ଅନ୍ତର୍ଦୃଷ୍ଟିର ଏକାନ୍ତ ଆବଶ୍ୟକତା ରହଅଛି ।(୧୩୫)

"ବୈଦିକ ମୁନିଋଷିମାନେ ଜାଣିଥିଲେ ମଣିଷ ହେଉଛି ଆନନ୍ଦର ସନ୍ତାନ । ଅମରତ୍ୱ ବା ଅମୃତ ଜୀବନ ପ୍ରତି ହେଉଛି ତାର ସ୍ୱାଭାବିକ ଗତି । ମୃତ୍ୟୁ କିନ୍ତୁ ନୁହେଁ । ଯଦି କୌଣସି ବ୍ୟକ୍ତି ଦୁଃଖ କରୁଥାଏ ତାହାର କିଛି ବାହାରର କାରଣ ଅଛି "। ମନୁଷ୍ୟ ପାଇଁ ଦୁଃଖ ହେଉଛି ଅସ୍ୱାଭାବିକ ; ସୁଖ ଓ ଆନନ୍ଦ ହେଉଛି ତାର ସ୍ୱାଭାବିକ । ଏହି ସତ୍ୟଟିକୁ ବୈଦିକ ଋଷିମାନେ ଅନ୍ତର୍ଦୃଷ୍ଟି ବଳରେ ଆବିଷ୍କାର କରିଥିଲେ । ଏହି ଅନ୍ତର୍ଦୃଷ୍ଟି ବଳରେ ସେମାନେ ଅନ୍ଧକାର ନିରାନନ୍ଦ ଓ ମୃତ୍ୟୁକୁ ଆଲୋକ, ଆନନ୍ଦ ଓ ଅମୃତ ବୋଲି କହୁଥିଲେ । ଫଳରେ ସେମାନେ ଆତ୍ମଜ୍ଞାନ ଲାଭ କରିଥିଲେ । ଭାରତୀ କୃଷ୍ଣତୀର୍ଥଙ୍କ ମତରେ "ଆମ ମଧ୍ୟରେ ଯେ ଦିବ୍ୟତ୍ୱ ଅଛି । ତାହା ବୁଝି ପାରିବା ହିଁ ହେଉଛି ଯଥାର୍ଥ ଆତ୍ମଜ୍ଞାନ "। (୧୩୬)

**ଆତ୍ମା ଓ ପରମାତ୍ମା –**

"ଆତ୍ମା ଓ ପରାମାତ୍ମା ସଂପର୍କୀୟ ଜ୍ଞାନ ଉପନିଷଦ୍ ଯୁଗରେ ଅବଶ୍ୟ ପୂର୍ଣ୍ଣତା ହାସଲ କରିଥିଲା । ସେତେବେଳେ ପରମଜ୍ଞାନ କହିଲେ ଆତ୍ମଜ୍ଞାନକୁ ହିଁ ବୁଝାଉଥିଲା । ଶ୍ରେଷ୍ଠ ବିଦ୍ୟା କହିଲେ ଆତ୍ମ ବିଦ୍ୟାକୁ ହିଁ ବୁଝାଉଥିଲା । ଋଷି ଯାଜ୍ଞବଲକ୍ୟ ତାଙ୍କ ପତ୍ନୀ ମୈତ୍ରେୟୀଙ୍କୁ ଉପଦେଶ ଦେବାକୁ ଯାଇ କହିଥିଲେ "ଆଗୋ ମୈତ୍ରେୟୀ ! ତୁମେ ଏହି ଆତ୍ମାଙ୍କ ବିଷୟରେ ଶୁଣ, ଚିନ୍ତାକର ଏବଂ ବୈଜ୍ଞାନିକ ଦୃଷ୍ଟି ଭଂଗୀନେଇ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ବିଶ୍ୱର କର" ।(୧୩୭) ଶୁକ୍ଳ ଯଜୁର୍ବେଦରେ ତ ସ୍ପଷ୍ଟ ଭାବରେ କୁହାଯାଇଛି ଯେ "ଆତ୍ମା ଉପରେ ବିଶ୍ୱାସ କରୁ ନଥିବା ଲୋକ (ଆତ୍ମଘାତୀ) ଅନ୍ଧକାରମୟ ଧାମକୁ ଯାଇଥାଏ । ଅର୍ଥାତ୍ ଯାହାର ନରକ ଗତି ହୋଇଥାଏ ।(୧୩୮) ମାତ୍ର ଋଗ୍‌ବେଦରେ ପ୍ରତ୍ୟକ୍ଷ

ଭାବରେ କିଛି ଉଲ୍ଲେଖ ନାହିଁ । ଋଗ୍‌ବେଦରେ ଆତ୍ମା ସଂପର୍କରେ ପଚରା ଯାଇଛି ଆତ୍ମା କିଏ ''?(୧୩୯) ଏହି ଋଗ୍‌ବେଦରେ କୁହାଯାଇଛି ଶରୀରର ଅଜନ୍ମା ଅଂଶ ହେଉଛି ଆତ୍ମା ।(୧୪୦) ବୈଦିକ ଆର୍ଯ୍ୟମାନଙ୍କର ଧାରଣା ଥିଲା ଯେ ଜୀବ ଶରୀର ସର୍ବସ୍ୱ ନୁହେଁ । ସେ ଶରୀର ଠାରୁ ଭିନ୍ନ ଏବଂ ସେହି ଭିନ୍ନତା ହେଉଛି ତାର ଉପଯୁକ୍ତ ପରିଚୟ । ଉପନିଷଦ୍ ଯୁଗରେ ଏହି ଚିନ୍ତାଧାରା ଏକ ବିଧିବଦ୍ଧ ଦାର୍ଶନିକ ରୂପରେଖ ନେଇଥିଲେ ମଧ୍ୟ ବୈଦିକ ସଂହିତା ଯୁଗରେ ଏହାର ଏକ ଅଭ୍ୟୁଦୟ ସମ୍ଭବ ହୋଇଥିଲା । ଋଗ୍‌ବେଦର ୧୦ମ ମଣ୍ଡଳର ୧୬ଟି ସୂକ୍ତରେ ଆତ୍ମା ସଂପର୍କରେ ପରୋକ୍ଷ ଭାବରେ କୁହାଯାଇଛି । ତାହା ଶରୀର ଠାରୁ ଭିନ୍ନ ବୋଲି ବ୍ୟକ୍ତ ହୋଇଅଛି । ଏହାର ସାର ବସ୍ତୁ ହେଲା – ''ଶରୀର ପଞ୍ଚଭୂତ ଦ୍ୱାରା ନିର୍ମିତ । ଆତ୍ମା ଭୌତିକ ଶରୀର ଠାରୁ ଭିନ୍ନ । ବିଭିନ୍ନ ଜନ୍ମରେ ଆତ୍ମା ଗୋଟିଏ ଶରୀରରୁ ଯାଇ ଆଉ ଗୋଟିଏ ଶରୀରରେ ପ୍ରବେଶ କରେ ଏବଂ କର୍ମ ଅନୁଯାୟୀ ଏହି ପରି ତାର ଅବିଶ୍ରାନ୍ତ ଘୂର୍ଣ୍ଣନ ଚାଲିଥାଏ । ଆତ୍ମା ଦେହରୁ ଚାଲି ଯିବା ପରେ ଜୀବର ଆଉ ଜୀବତ୍ୱ ନଥାଏ ଏବଂ ତା ଶରୀରର ପଞ୍ଚଭୂତ ସହିତ ମିଶି ଯାଆନ୍ତି । ଆତ୍ମାର ଜନ୍ମ ନାହିଁ କିମ୍ବା ମୃତ୍ୟୁ ନାହିଁ । (ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ବୈଦିକ ପର୍ବ ତୃତୀୟ ଭାଗରୁ ଉଦ୍ଧୃତ) । ଆତ୍ମା ଅମର, ଆତ୍ମା ଯେତେବେଳେ କୌଣସି ଶରୀର ମଧ୍ୟରେ ପ୍ରବିଷ୍ଟ ଥାଏ, ସେତେବେଳେ ସେ ସେହି ଶରୀରର ଗୁଣ ଧର୍ମକୁ ଆଚରଣ କରିଥାଏ । ତା'ର ସୁଖ ଦୁଃଖରେ ଭାଗୀ ହୋଇଥାଏ । ଏହା ହେଲା ଜୀବାତ୍ମାର ଲକ୍ଷଣ କିନ୍ତୁ ପରମାତ୍ମା କୌଣସି ସୁଖ ଦୁଃଖରେ ଭାଗୀ ହୋଇନଥାନ୍ତି । ସେ ନୀରବ, ନିଷ୍ପନ୍ଦ, ନିଷ୍କ୍ରିୟ, ନିର୍ମମ ଭାବରେ ବିଦ୍ୟମାନ ଥାଇ ସବୁ ଦେଖୁଥାନ୍ତି । ଏହି ଭାବଟି ଋଗ୍‌ବେଦର 'ଦ୍ୱାସୁପର୍ଣ୍ଣା ମନ୍ତ୍ର'ରେ ସାଙ୍କେତିକ ଭାବରେ ବ୍ୟଞ୍ଜିତ । ସେଠାରେ କୁହାଯାଇଛି ''ସାଙ୍ଗ ହୋଇ ଦୁଇଟି ସୁନ୍ଦର ଡେଣା ଥିବା ଚଢେଇ ଗୋଟିଏ ଅଶ୍ୱତ୍ଥ ବୃକ୍ଷରେ ବସିଛନ୍ତି । ଗୋଟିଏ ଚଢେଇ ଅଶ୍ୱତ୍ଥଫଳ ଖାଉଛି । ଆଉ ଗୋଟିଏ ଚଢେଇ ନୀରବରେ ଚାହିଁ ରହିଛି । ଅଶ୍ୱଥଗଛ ହେଲା ଜୀବର ଶରୀର, ଚଢେଇ ଦିଓଟି ହେଲେ ଜୀବାତ୍ମା ଓ ପରମାତ୍ମା । ଜୀବାତ୍ମା ସୁଖ ଦୁଃଖର ଫଳ ଭୋଗୁଥିଲା ବେଳେ ପରମାତ୍ମା ନୀରବ, ନିଷ୍କଳ ଓ ଉଦାସୀନ ହୋଇ ଚାହିଁ ରହିଛନ୍ତି ''। ( ସୁରେନ୍ଦ୍ର ନାଥ ଶତପଥୀ – ଭାରତୀୟ ସଂସ୍କୃତି - ବୈଦିକ ପର୍ବ, ତୃତୀୟ ଭାଗ ପୃ ୨୮୧ରୁ ଉଦ୍ଧୃତ) ।

''ଏ ସବୁ ସତ୍ତ୍ୱେ ବୈଦିକ ଋଷିମାନେ ମଧ୍ୟ ବାରମ୍ବାର ଚିନ୍ତା କରି ଏହି ସୃଷ୍ଟି ତତ୍ତ୍ୱର ଠିକଣା ଜବାବ ପାଇ ପାରି ନଥିଲେ । ସେମାନଙ୍କର ଏହି ଅସହାୟତା 'ନାସଦୀୟ ସୂକ୍ତ'ରେ ଅନୁରଣିତ ହୋଇଛି । ସେଠାରେ କୁହାଯାଇଛି ସାରା ବ୍ୟୋମବ୍ୟାପୀ ଯେଉଁ ଅଧ୍ୟକ୍ଷ ଏହାର ଅଛନ୍ତି ( ସୃଷ୍ଟିର) ସେ ହୁଏତ ଏହାକୁ ( ସୃଷ୍ଟି ତତ୍ତ୍ୱକୁ) ଜାଣିଥିବେ ଅଥବା ଜାଣି ନଥିବେ । ଉପନିଷଦ୍‌ରେ ଏ ପ୍ରକାର ସାରା ଜଗତରେ ପରଂବ୍ରହ୍ମଙ୍କର ଅବସ୍ଥିତିକୁ ମାୟା ବୋଲି କୁହାଗଲା ।-କିନ୍ତୁ ସେ ମାୟା କ'ଣ ତାହାକୁ ସ୍ପଷ୍ଟ କରାଗଲା ନାହିଁ । ବରଂ ତାହା ଅନିର୍ବଚନୀୟ ବା ବାକ୍ୟରେ ପ୍ରକାଶ କରି ହେବ ନାହିଁ ବୋଲି କୁହାଗଲା । ଏହି ସବୁ ଆଲୋଚନାରୁ ବୈଦିକ ଋଷିଙ୍କ ମତରେ ''ଶରୀର ପଞ୍ଚଭୂତରେ ନିର୍ମିତ ଏବଂ ଏହାକୁ ଛାଡି ଶରୀରର ଷଡ଼ତ୍ୱ ଗୋଟିଏ ଅଛି । ଯାହା ହେଲା ଆତ୍ମା । ଆତ୍ମାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ଏହା ଘଟରୁ ଘଟାନ୍ତର ଗତି କରେ ଏବଂ ଆଶ୍ରୟ କରିଥିବା ଶରୀରର ଗୁଣ ଧର୍ମ ପାଇଥାଏ । ଶରୀର ମଧ୍ୟରେ ଜୀବାତ୍ମା ଓ ପରମାତ୍ମା ଉଭୟ ବିଦ୍ୟମାନ । ଜୀବାତ୍ମା ସୁଖ ଦୁଃଖର ଫଳ ଭୋଗୁଥିବା ବେଳେ

ପରମାତ୍ମା ଥାଆନ୍ତି ଉଦାସୀନ ଓ ନିଷ୍କଳ । ଅଲୌକିକ ଅନୁଭବାତୀତ ଅବସ୍ଥାରେ ଜୀବାତ୍ମା ଓ ପରମାତ୍ମା ମଧ୍ୟରେ କିଛି ହିଁ ଭିନ୍ନତା ଦୃଷ୍ଟ ହୁଏ ନାହିଁ । ବୈଦିକ ମନ୍ତ୍ରରେ ଅଦ୍ୱୈତବାଦର ମୂଳ ବୀଜ ନିହିତ ।(ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ବୈଦିକ ପର୍ବ ତୃତୀୟ ଭାଗ ପୃ ୨୮୧ରୁ ଉଦ୍ଧୃତ) ।

**ସ୍ୱର୍ଗର କଳ୍ପନା** – ବୈଦିକ ଧର୍ମ ଧାରଣାରେ ସ୍ୱର୍ଗ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ସ୍ୱର୍ଗ ହେଉଛି ସକଳ ସୁଖର ଆଧାର । ସେ ସୁଖ ଠାରୁ ବଳି ସୁଖ ଆଉ ନାହିଁ । 'ନରକ' ବିଷୟରେ ପ୍ରାଥମିକ ଅବସ୍ଥାରେ ବେଦରେ ବର୍ଣ୍ଣନା ନାହିଁ । ଋଗ୍‌ବେଦରେ 'ନରକ'ର ଉଲ୍ଲେଖ ନାହିଁ । ଅଥର୍ବ ବେଦରେ କେବଳ ଆମେ 'ନରକଂ ଲୋକଂ' ବା ନରକ ଲୋକର ନାମୋଲ୍ଲେଖ ଦେଖିଥାଉ ।(୧୪୧) ନରକ କେବଳ ସ୍ୱର୍ଗର ବିପରୀତ ଅର୍ଥରେ ପ୍ରୟୋଗ ହୋଇଛି । ଯଜୁର୍ବେଦରେ 'ଅନ୍ଧକାରମୟ ଧାମ'ର ବର୍ଣ୍ଣନା ନରକ ଅର୍ଥରେ କୁହାଯାଇଛି । ଏଠାରେ କୁହାଯାଇଛି ଯେଉଁମାନେ ଆତ୍ମା ଉପରେ ବିଶ୍ୱାସ କରନ୍ତି ନାହିଁ ଏବଂ କେବଳ ଦେହସେବୀ ଅଟନ୍ତି ସେମାନେ ଏହି ଅନ୍ଧକାରମୟ ଧାମକୁ ଯାଇଥାନ୍ତି ।(୧୪୨) ପରବର୍ତ୍ତୀ ବୌଦ୍ଧ ସାହିତ୍ୟରେ ଏହି 'ନରକ'ର ବର୍ଣ୍ଣନା ହୋଇଅଛି । ବୈଦିକ ଚିନ୍ତାଧାରା ଅନୁଯାୟୀ 'ଯଜ୍ଞ'ର ପ୍ରଧାନ ଉଦ୍ଦେଶ୍ୟ ହେଲା ସ୍ୱର୍ଗ ପ୍ରାପ୍ତି । ସ୍ୱର୍ଗ ରାଜ୍ୟର ରାଜା ହେଉଛନ୍ତି ଯମ । ଋଗ୍‌ବେଦରେ କୁହାଯାଇଛି ଏହା ହେଉଛି ସେହି ଲୋକ ଯେଉଁ ଲୋକରେ ସ୍ୱର୍ଗ ଅଛି । ସେଠାରେ ଅଜସ୍ର ଜ୍ୟୋତି ବିଦ୍ୟମାନ ।(୧୪୩) ଏହା ଏକ ଜ୍ୟୋତିର୍ମୟଧାମ । ଏଠାରେ ଦେବତା ଓ ପିତୃ ପୁରୁଷ ସମସ୍ତେ ଜ୍ୟୋତିର୍ମୟ । ଯମଙ୍କର ଦୂତ ସ୍ୱରୂପ ଦୁଇଟି କୁକୁର ଥାଆନ୍ତି । ସେମାନେ ହେଉଛନ୍ତି ସରମାର ପୁଅ । ସେମାନେ ଦିବ୍ୟ ମାର୍ଗର ରକ୍ଷକ ଏବଂ ମନୁଷ୍ୟମାନଙ୍କ ଉପରେ ଦୃଷ୍ଟି ରଖିଥାନ୍ତି । ଶ୍ରୀ ଅରବିନ୍ଦଙ୍କ ମତରେ ସରମା ଏବଂ ସରମାର ଦୁଇ ପୁତ୍ର ହେଉଛନ୍ତି ପ୍ରତୀକ । ମନୁଷ୍ୟ ଅବିଦ୍ୟା ଓ ଅନ୍ଧକାରରେ ପଡି ଆଲୋକ ହରାଇ ବସିଥିଲା ବେଳେ ସରମା ରୂପକ ଦିବ୍ୟ ଦୃଷ୍ଟି ବଳରେ ସେ ତାହାକୁ ଫେରିପାଇ ପାରିଥାଏ । ଏସବୁ ଆଲୋଚନାରୁ ପ୍ରତୀତ ହୁଏ 'ସ୍ୱର୍ଗ ସୁଖ ବା ଦିବ୍ୟ ଆନନ୍ଦ' ଜନିତ ସୁଖ ପାଇବାକୁ ବୈଦିକ ଆର୍ଯ୍ୟମାନଙ୍କର ଚରମ ଅଭୀପ୍ସାଥିଲା ।

**ମୋକ୍ଷ** – ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହା ହେଉଛି ଚତୁର୍ବର୍ଗ ଫଳ । ଏହା ମାଧ୍ୟମରେ ସମନ୍ୱୟ ରକ୍ଷା କରି ଅଗ୍ରଗତି କରିବାକୁ ବୈଦିକ ଧର୍ମ ଶିକ୍ଷା ଦେଇଥାଏ । ଅର୍ଥ ଓ କାମକୁ ଧର୍ମ ମାର୍ଗରେ ବୈଦିକ ଆର୍ଯ୍ୟମାନେ ହାସଲ କରୁଥିବା କଥା କୁହାଯାଇଛି । ଋଗ୍‌ବେଦ 'ଗଚ୍ଛଧର୍ମେଣ' ବା ଧର୍ମ ମାର୍ଗରେ ଗ୍ଭଲ ବୋଲି ମାନବ ସମାଜକୁ ଉପଦେଶ ଦେଇଅଛି । ଧର୍ମ, ଅର୍ଥ, କାମ ହାସଲ କରିବା ପରେ ଶେଷ ପର୍ଯ୍ୟାୟର ଲକ୍ଷ୍ୟ ହେଉଛି ମୋକ୍ଷ । ଏହା ହେଉଛି ମଣିଷର ଚରମ ଲକ୍ଷ୍ୟ । ମୋକ୍ଷ ମୃତ୍ୟୁ ପରେ ଅନ୍ୟ କେଉଁଠାରେ ମିଳିବ ନାହିଁ ବୋଲି ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଜଗତ ସଂପର୍କରେ ସମସ୍ତ ମିଥ୍ୟା ଧାରଣା ଦୂର କରିବା ହେଉଛି ମୋକ୍ଷ । "ମୋକ୍ଷର ଘର ନାହିଁ, ଅନ୍ୟ କେଉଁଠି ଗ୍ରାମ ବି ନାହିଁ । ହୃଦୟରୁ ଅଜ୍ଞାନର ଗଣ୍ଠି ଛିଣ୍ଡି ଗଲେ, ତାହାକୁ କୁହାଯାଏ ମୋକ୍ଷ । ଏହା ଭବିଷ୍ୟତ ଲାଗି ଏକ ସିଦ୍ଧି ନୁହେଁ । ଅନ୍ୟ ପକ୍ଷରେ ଏହା ହେଉଛି ବର୍ତ୍ତମାନର ଏକ ଉପଲବ୍ଧି, ଅତଏବ, ଏହା ଏକ 'ମାନସୋତ୍ତର' ସ୍ଥିତି, ଯାହାକି ଏହି ଜୀବନର ଉପଲଭ୍ୟ । ବାସ୍ତବିକ ବୈଦିକ ଧର୍ମ ଯାହା କହିଥାଏ, ତାହା ସବୁ ଋଷିମାନଙ୍କ ଅନୁଭୂତିର ବସ୍ତୁ । ଅତଏବ, ତାହା ମନୁଷ୍ୟ ପକ୍ଷରେ ଅନୁଭବ କରି ହେବ । କିନ୍ତୁ ସେଥିପାଇଁ ତାକୁ ଜାଗ୍ରତ ରହିବାକୁ ପଡିବ "।(୧୪୪)

ଏହି ମୋକ୍ଷ ନିମିତ୍ତ ବୈଦିକ ଆର୍ଯ୍ୟମାନେ କେତେକ ମୌଳିକ ପ୍ରଶ୍ନ ଉପରେ ଅନୁସନ୍ଧିତ୍ସା କରୁଥିଲେ । ଜନ୍ମର ଉଦ୍ଦେଶ୍ୟ କ'ଣ, ଲକ୍ଷ୍ୟ କ'ଣ, ସମାଜ ପ୍ରତି କିଛି କର୍ତ୍ତବ୍ୟ ଅଛି କି ନାହିଁ ଏବଂ ସର୍ବୋପରି ପ୍ରକୃତ ସତ୍ୟ କ'ଣ ଏହା ଜାଣିବା ପାଇଁ ସେ ସର୍ବଦା ଇଛା କରୁଥିଲେ । ବୈଦିକ ସମାଜରେ ଯେଉଁ ଦ୍ରଷ୍ଟା ଓ ଦାର୍ଶନିକ ଋଷିମାନେ ଥିଲେ ସେମାନେ ଏହି ସଂପର୍କରେ ସର୍ବଦା ଜିଜ୍ଞାସା କରୁଥିଲେ । ଏହି ପ୍ରଶ୍ନ ଗୁଡ଼ିକର ଉତ୍ତର ଖୋଜୁ ଖୋଜୁ ସେମାନଙ୍କ ମଧ୍ୟରେ ଯେଉଁ ଭାବୋଦୟ ହେଉଥିଲା ତାହାରି ଫଳ ସ୍ୱରୂପ ସେମାନଙ୍କ ମୁଖରୁ ବହୁ ବାଣୀ ନିସୃତ ହେଉଥିଲା । ଯାହା ବେଦର ପ୍ରତିଟି ପୃଷ୍ଠାରେ ଅନୁରଣିତ ହୋଇଅଛି । ଏହି ଜ୍ଞାନକୁ "ସତ୍ୟ ଜ୍ଞାନ ବା ବ୍ରହ୍ମ ଜ୍ଞାନ" ବୋଲି କୁହାଯାଇଛି । ବେଦରେ ଏମାନଙ୍କୁ 'ସତ୍ୟ ଶ୍ରୁତଃ' ବା "ସତ୍ୟବାଣୀ ଶୁଣି ଥିବା ଲୋକମାନେ" ବୋଲି କୁହାଯାଇଛି ।

ଏହି ସତ୍ୟ ଦର୍ଶନ ଫଳରେ ଅବିଦ୍ୟା ଓ ଅଜ୍ଞାନର ଗଣ୍ଠି ଛିଡ଼ିଯାଏ । ମନୁଷ୍ୟ ଓ ଦେବତା, ଭକ୍ତ ଓ ଭଗବାନ ସମସ୍ତେ ଏକାକାର ହୋଇ ଯାଆନ୍ତି । ଜୀବ ଓ ପରମ ମଧ୍ୟରେ କିଛି ପ୍ରଭେଦ ରହେ ନାହିଁ । ଯିଏ ଜୀବାତ୍ମା ସେହି ପରମାତ୍ମା ଭାବରେ ଅଭିହିତ ହୁଅନ୍ତି । ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ ଯେଉଁ ଏକତାର ଦିବ୍ୟ ଉପଲବ୍ଧି ଆସେ ତାହାହିଁ ହେଉଛି ମୁକ୍ତିର ଅବସ୍ଥା । ଏହାକୁ ପାଇବାକୁ ହେଲେ କଠିନ ତପସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । ଏହି ଏକତ୍ୱାନୁଭୂତିର ସ୍ୱର ଋଗ୍‌ବେଦରେ ଋଷି ଆମ୍ଭୃଣି ପାଇଥିଲେ ।(୧୪୫) ତାହା ହେଉଛି 'ମୁଁ ରୁଦ୍ରମାନଙ୍କ ମଧ୍ୟରେ ଅଛି, ବସୁମାନଙ୍କ ମଧ୍ୟରେ ଅଛି, ଆଦିତ୍ୟ ଓ ବିଶ୍ୱଦେବମାନଙ୍କ ମଧ୍ୟରେ ଅଛି, ମୁଁ ମିତ୍ର ବରୁଣ ଉଭୟଙ୍କୁ ପୋଷଣ କରୁଛି । ମୁଁ ହେଉଛି ଇନ୍ଦ୍ର ଓ ଅଗ୍ନି । ମୁଁ ହେଉଛି ଅଶ୍ୱିନୀକୁମାର ଯୁଗଳ' । ଏହିଠାରେ ହିଁ ଅଦ୍ୱୈତବାଦର ମୂଳବୀଜ ନିହିତ ଅଛି । ଏହାର କ୍ରମଶଃ ବିକାଶ ଘଟି ଉପନିଷଦ୍ ଯୁଗ ବେଳକୁ ଏହାର ଚରମ ବିକାଶ ଘଟିଥିଲା ।(୧୪୬)

ଦିବ୍ୟଚେତନା ଜାଗ୍ରତ ହୋଇ ସାରା ଜଗତ ସହିତ ଏକୀଭୂତ ହୋଇଯିବାକୁ ବୈଦିକ ଭାଷାରେ କୁହାଯାଉଥିଲା 'ଆତ୍ମଜ୍ଞାନ' । ଏହି 'ଆତ୍ମଜ୍ଞାନ'ର ଅନୁଭୂତି ଆସି ଗଲେ ମୋକ୍ଷ ମିଳୁଥିଲା । ଏହି ଜ୍ଞାନକୁ ଜୀବନରେ ପ୍ରୟୋଗ କରିବାରେ ଏବଂ ଏହି ଦର୍ଶନ ଦ୍ୱାରା ଜୀବନର ପ୍ରତିଟି ମୁହୂର୍ତ୍ତକୁ ଅନୁପ୍ରାଣିତ କରିବାର ଥିଲା ଏ ଜ୍ଞାନ, ଏ ଦର୍ଶନର ମହତ୍ତ୍ୱ । ବୈଦିକ 'ମୋକ୍ଷ ତତ୍ତ୍ୱ'ର ଅନୁଭୂତିଧର୍ମୀ ପରିଭାଷା ଉପରେ ବୈଦିକ ଆର୍ଯ୍ୟମାନେ ଗୁରୁତ୍ୱ ଦେଉଥିଲେ ।

**ଶୀଳ** – ବୈଦିକ ଧର୍ମ 'ଶୀଳ' ସହିତ ସମ୍ବନ୍ଧିତ । ତେଣୁ କେତେକ ନୀତି, ନିୟମ, ବ୍ରତ ଓ ସଦାଗ୍ରହ ମଧ୍ୟ ଦେଇ ଉଚ୍ଚତମ ଆଧ୍ୟାତ୍ମିକ ଅନୁଭୂତି ଲାଭ କରିହୁଏ । ବେଦ ଓ ଉପନିଷଦ୍‌ରେ ଅନେକ 'ଶୀଳ' ଗୁଡ଼ିକର ଅବତାରଣା କରାଯାଇଛି । ବେଦ, ବ୍ରାହ୍ମଣ, ଉପନିଷଦରେ ଏହି 'ଶୀଳ' ଗୁଡ଼ିକ ବିଭିନ୍ନ ଆଖ୍ୟାନ ମାଧ୍ୟମରେ ଶିକ୍ଷା ଦିଆଯାଇଛି । ଋଗ୍‌ବେଦ ବର୍ଣ୍ଣିତ 'ଶୁନଃ ଶେପ' ଆଖ୍ୟାନ ଏହି ଗୋଷ୍ଠୀୟ । ଏଥିରେ ବ୍ୟକ୍ତିଗତ, ପାରିବାରିକ, ତଥା ସାମାଜିକ ଶୀଳ ବିଷୟରେ ଶିକ୍ଷା ଦିଆଯାଇଛି ।(୧୪୭) ଏହି ଶିକ୍ଷା ଗୁଡ଼ିକ ହେଲା – (କ) ଦେବତାଙ୍କ ଉଦ୍ଦେଶ୍ୟରେ ଦ୍ରବ୍ୟ ତ୍ୟାଗ କରିବାକୁ ହେବ । (ଖ) ଦେଇଥିବା ପ୍ରତିଶ୍ରୁତିକୁ ପାଳନ କରିବାକୁ ହେବ । (ଗ) ଭୌତିକ ଓ ଆଧ୍ୟାତ୍ମିକ ଏହି ଉଭୟବିଧ ଅଗ୍ରଗତି ହାସଲ କରିବାକୁ ହେଲେ ଆଗେଇ ଯିବାକୁ ହେବ, ପଛକୁ ଫେରି ଚାହିଁବାକୁ ହେବ ନାହିଁ । (ଘ) ପିତାଙ୍କୁ ସ୍ତ୍ରୀ ସନ୍ତାନ ସନ୍ତତିଙ୍କର ରକ୍ଷଣ ଦାୟିତ୍ୱ ବହନ କରିବାକୁ ହେବ । ଏହି ଦାୟିତ୍ୱ ବହନ କରିବାରେ ସେ ଯଦି

ଅସମର୍ଥ ହୁଅନ୍ତି, ତେବେ ତାଙ୍କୁ ପିତୃତ୍ୱର ଗୌରବରୁ ବଞ୍ଚିତ ହେବାକୁ ପଡିବ । (ଙ) ଯେଉଁ ବ୍ୟକ୍ତି 'ନାବାଳକ' ପିଲାମାନଙ୍କୁ ରକ୍ଷଣ କରିବାରେ ସମର୍ଥ ସେ ଜନ୍ମଦାତା ହୋଇ ନଥିଲେ ମଧ୍ୟ ପ୍ରକୃତ ପିତା ଭାବରେ ଗଣ୍ୟ ହେବେ ।(ସୁରେନ୍ଦ୍ରନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତି ବୈଦିକ ପର୍ବ- ତୃତୀୟ ଭାଗ ପୃ ୨୮୯ରୁ ଉଦ୍ଧୃତ) ।

"ଛାନ୍ଦୋଗ୍ୟ ଉପନିଷଦ୍‌ରେ ବର୍ଣ୍ଣିତ 'ଜାବାଳ' ଉପାଖ୍ୟାନଟିକୁ ମଧ୍ୟ ଅନ୍ୟ ଏକ ଉଦାହରଣ ଭାବରେ ନିଆଯାଇ ପାରିବ । କିଏ ପ୍ରକୃତ ବ୍ରାହ୍ମଣ ଏଥିରେ ତାହା ସମାଧିତ ହୋଇଛି । ସେଥିରେ ସନ୍ନିବେଶିତ 'ଶୀଳ' ଗୁଡିକ ହେଲା – "(କ) କେହି ଜନ୍ମତଃ ବ୍ରାହ୍ମଣ କିମ୍ବା ଅନ୍ୟ କୌଣସି ବର୍ଣ୍ଣର ହୁଏ ନାହିଁ । (ଖ) ଗୁଣ ଓ କର୍ମକୁ ନେଇ ତାର ବର୍ଣ୍ଣ ନିର୍ଣ୍ଣୟ କରାଯାଏ । (ଗ) ନିର୍ଲିପ୍ତ ଭାବରେ ସତ୍ୟ କଥା ପ୍ରକାଶ କରିବା ହେଉଛି ବ୍ରାହ୍ମଣର ଧର୍ମ ଏବଂ ସତ୍ୟବାଦୀତା ହେଉଛି ବ୍ରାହ୍ମଣତ୍ୱର ମାପକାଠି"। ଏହା ବ୍ୟତୀତ ଆହୁରି ଅନେକ ଉପାଖ୍ୟାନରେ ଏହି ଶୀଳ ଉପରେ ଗୁରୁତ୍ୱ ଦିଆଯାଇଛି । ଏହା ବ୍ୟତୀତ ଗୁରୁକୁଳ ଆଶ୍ରମ ଗୁଡିକ ବ୍ୟକ୍ତିଗତ ଜୀବନ ଓ ସାମାଜିକ ଜୀବନରେ 'ଶୀଳ'ର ଉପାଦେୟତା ସଂପର୍କରେ ଅଧିକ ଗୁରୁତ୍ୱ ଦେଉଥିଲେ । 'ତୈତ୍ତିରୀୟ ଆରଣ୍ୟକ'ରେ ଏହି 'ଶୀଳ' ଗୁଡିକ ସଂପର୍କରେ ବିଶଦ୍ ଭାବରେ ବର୍ଣ୍ଣିତ ହୋଇଛି । ସେଗୁଡିକ ହେଲା – (କ) ସତ୍ୟଂବଦ (ସତକୁହ), (ଖ) ଧର୍ମଂଚର (ଧର୍ମାଚରଣ କର), (ଗ) ସ୍ୱାଧ୍ୟାୟାନ୍ମା ପ୍ରମଦ ( ପାଠପଢାରୁ ହଟିଯାଅ ନାହିଁ ),(ଘ)ସତ୍ୟାନ୍ନପ୍ରମଦିତବ୍ୟମ୍ (ସତ୍ୟରୁ ଘୁଞ୍ଚ ନାହିଁ ), (ଙ) ଧର୍ମାନ୍ନପ୍ରମଦିତବ୍ୟମ୍ ( ଧର୍ମରୁ ଘୁଞ୍ଚ ନାହିଁ), (ଛ) କୁଶଳାନ୍ନ ପ୍ରମଦିତବ୍ୟମ୍ (ଭଲକାମରୁ ଘୁଞ୍ଚନାହିଁ), ଭୂତ୍ୟୈନ ପ୍ରମଦିତବ୍ୟମ୍ ( ଐଶ୍ୱର୍ଯ୍ୟ ଓ ବୃଦ୍ଧି ପ୍ରାପ୍ତିରୁ ଘୁଞ୍ଚ ନାହିଁ ), (ଜ) ସାଧାୟ ପ୍ରବଚନଭ୍ୟାଂଧ୍ୟାନ ପ୍ରମଦିତବ୍ୟମ୍ (ପାଠପଢ଼ିବା ଓ ପଢାଇବାରୁ ଘୁଞ୍ଚନାହିଁ ), (ଝ) ମାତୃଦେବୋଭବ (ମା'ଙ୍କୁ ଦେବତା ସ୍ଥାନରେ ପୂଜା କର), (ଞ) ପିତୃ ଦେବୋଭବ (ବାପାଙ୍କୁ ଦେବତା ସ୍ଥାନରେ ପୂଜାକର ), (ଟ) ଅତିଥି ଦେବୋଭବ ( ଅତିଥିଙ୍କୁ ଦେବତା ସ୍ଥାନରେ ପୂଜାକର) ।

ଏହିଭଳି ବହୁ ଶୀଳ ବୈଦିକ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଛି । ଏହି ଶୀଳ ସବୁ ବ୍ୟକ୍ତିଗତ ଜୀବନକୁ, ପାରିବାରିକ ଜୀବନକୁ ତଥା ସାମଜିକ ଜୀବନକୁ ଶୁଦ୍ଧ କରିବା ଉପରେ ଅଧିକ ଗୁରୁତ୍ୱ ଦେଉଥିଲା । ଏହି ଶୀଳ ଗୁଡିକ ପାଳନ ଫଳରେ ଆଧ୍ୟାତ୍ମିକ ସିଦ୍ଧି ଲାଭର ପଥ ସୁଗମ ହେଉଥିଲା । ଏହା ବୈଦିକ ଆର୍ଯ୍ୟମାନଙ୍କ ଭୌତିକ ଓ ଆଧ୍ୟାତ୍ମିକ ଅଭ୍ୟୁଦୟରେ ସାହାଯ୍ୟ କରୁଥିଲା । ଏହି ଶୀଳ ଐହିକ ଓ ଆଧ୍ୟାତ୍ମିକ ଜୀବନ ମଧ୍ୟରେ ସମନ୍ୱୟ ସ୍ଥାପନ କରୁଥିଲା । ବୈଦିକ ଆର୍ଯ୍ୟମାନଙ୍କର ନିକଟରେ ଏ ପ୍ରକାର ସମନ୍ୱୟ ଧର୍ମର ଆଧାର ଶୀଳ ଭାବରେ ଗଣିତ ହେଉଥିଲା । ଏ ପ୍ରକାର ସମନ୍ୱୟ ଉପରେ ଗୁରୁତ୍ୱ ଆରୋପ କରି ଶ୍ରୀ ଅରବିନ୍ଦ କହିଥିଲେ– "ପ୍ରକୃତରେ ଐହିକ ଓ ଆଧ୍ୟାତ୍ମିକ ଉଭୟ ଜୀବନ ମଧ୍ୟରେ ସଂପୂର୍ଣ୍ଣ ସମନ୍ୱୟ ସ୍ଥାପନ ପ୍ରୟୋଜନ ; କାରଣ ଆତ୍ମା ହିଁ ମନ ଓ ଶରୀର ମାଧ୍ୟମରେ କାର୍ଯ୍ୟ କରେ । କିନ୍ତୁ ଇଉରୋପ ଯେଉଁ ସଂପୂର୍ଣ୍ଣ ବୁଦ୍ଧିଗତ ବା ଭାରାକ୍ରାନ୍ତ ଭୌତିକ ସଂସ୍କୃତିର ସମାଦାର କରୁଛି ତାହାର ମର୍ମସ୍ଥଳରେ ମୃତ୍ୟୁ ବୀଜ ନିହିତ ଅଛି, କାରଣ ପୃଥିବୀରେ ସ୍ୱର୍ଗ ରାଜ୍ୟ ସ୍ଥାପନ ହିଁ ସଂସ୍କୃତିର ଜୀବନ୍ତ ଲକ୍ଷ୍ୟ"।(୧୪୮)

**ଭଲ ଓ ମନ୍ଦ** – ଭଲ ଓ ମନ୍ଦ ମଧ୍ୟରେ ସଂଗ୍ରାମ ନିରନ୍ତର ଲାଗି ରହିଅଛି । ଜୀବନରେ ସିଦ୍ଧି ହାସଲ କରିବାକୁ ହେଲେ ଏ ପ୍ରକାର ସଂଗ୍ରାମ ମଧ୍ୟ ଦେଇ ଯିବାକୁ ହେବ । ଏହି ସତ୍ୟ ଆର୍ଯ୍ୟ ଋଷିମାନେ ଜାଣିଥିଲେ । ଦେବତା ଓ ଅସୁରମାନଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧ ଓ ଶେଷରେ ଦେବତାମାନଙ୍କର ବିଜୟ ସାଂକେତିକ ଭାବରେ ବର୍ଣ୍ଣିତ ହୋଇଅଛି । ଏହି ଅର୍ଥ ବେଦମନ୍ତ୍ର ଗୁଡିକର ପ୍ରତୀକାତ୍ମକ ଅର୍ଥରୁ ମିଳିଥାଏ । ଶ୍ରୀଅରବିନ୍ଦ ପ୍ରତିକଧର୍ମୀତାର ବ୍ୟାଖ୍ୟା ତାଙ୍କ The Search of the Veda ପୁସ୍ତକରେ କରିଅଛନ୍ତି । 'ଇନ୍ଦ୍ର ଓ ବୃତ୍ର' ମଧ୍ୟରେ ହୋଇଥିବା ଯୁଦ୍ଧକୁ ସେ ଆଧ୍ୟାତ୍ମିକ ଅର୍ଥରେ ଗ୍ରହଣ କରିଅଛନ୍ତି । ସେ ଏହାକୁ ସତ୍ୟ ଓ ଅସତ୍ୟ, ଆଲୋକ ଓ ଅନ୍ଧକାର, ମୃତ୍ୟୁ ଓ ଅମୃତତ୍ତ୍ୱ ମଧ୍ୟରେ ସଂଘର୍ଷ, ଇନ୍ଦ୍ରଙ୍କର ବିଜୟ ସତ୍ୟ, ଆଲୋକ ଓ ଅମୃତତ୍ୱର ବିଜୟ ।" (୧୪୯)

ଜୀବନର ଯାତ୍ରା ହେଉଛି ଏକ ଯଜ୍ଞ । ଏ ଯାତ୍ରାରେ ଲକ୍ଷ୍ୟ ହେଲା ଆଧ୍ୟାତ୍ମିକ ସିଦ୍ଧିପ୍ରାପ୍ତି । ବ୍ୟକ୍ତି ଆଧ୍ୟାତ୍ମିକ ସିଦ୍ଧିପ୍ରାପ୍ତି ନିମିତ୍ତ ତାହାର ସମସ୍ତ ଶକ୍ତିକୁ ଉପଯୋଗ କରିବା ଫଳରେ ଦିବ୍ୟଭାବ ଗୁଡ଼ିକ ଉଦୟ ହୋଇ ତାହାକୁ ଆଧ୍ୟାତ୍ମିକ ସିଦ୍ଧି ଆଡକୁ ଆଗେଇ ନିଏ । ଏହି ଯାତ୍ରା ପଥରେ ଅନେକ ବାଧା ବିଘ୍ନ ସୃଷ୍ଟି ହୋଇଥାଏ । ଏହି ବାଧାମାନେ ବୈଦିକ ଯୁଗରେ ହେଉଛନ୍ତି ବୃତ୍ରମାନେ, ପଣିମାନେ, ଦାସ, ଦସ୍ୟୁ ଓ ଅସୁରମାନେ । ମାନସିକ ସ୍ତରରେ ଦିବ୍ୟ ଚେତନାର ଆବିର୍ଭାବ ଘଟିଲେ ଏସବୁ ବାଧାମାନ ଦୂରେଇ ଯାଆନ୍ତି । ଫଳରେ ସେ ଜ୍ଞାନ, ଆଲୋକ ଓ ଅମରତ୍ୱ ପାଇଥାଏ । ମରଶରୀର ଧାରଣ କରିଥିଲେ ମଧ୍ୟ ଅମର ହୋଇ ଉଠେ । ସେଥିପାଇଁ ସାମ ବେଦରେ (ଐନ୍ଦ୍ରିକାଣ୍ଡ) ଆର୍ଯ୍ୟଋଷି "ମରଣଶୀଳ ବସ୍ତୁମାନଙ୍କ ମାଧ୍ୟମରେ ଅମର ଶୀଳ ଇନ୍ଦ୍ରଙ୍କୁ ପାଇବା ପାଇଁ କାମନା କରିଅଛନ୍ତି"। ଏହି ଶରୀର ମଧ୍ୟରେ ଅମୃତତ୍ୱ ମିଳିପାରିବ । ଅତଏବ ଅମୃତତ୍ୱ ଆର୍ଯ୍ୟ ଋଷିଙ୍କ ଲାଗି କେବଳ ଏକ ମାନସିକ ଉପଲବ୍ଧି ହୋଇ ରହି ନଥିଲା । ଏହା ମଧ୍ୟ ଥିଲା ଏକ ଦୈହିକ ଅନୁଭୂତି । "ଦେହ ଯେ ଜ୍ୟୋତିର୍ମୟ ଓ ଅମୃତମୟ ହୋଇ ପାରିବ ଆର୍ଯ୍ୟଋଷିମାନଙ୍କର ଏ ଧାରଣା ଥିଲା" । ଶ୍ରୀ ଅରବିନ୍ଦ ଠିକ୍ ଅନୁରୂପ କଥା କହିଅଛନ୍ତି । ସେ କହିଅଛନ୍ତି "ମନୁଷ୍ୟର କ୍ରମ ବିବର୍ତ୍ତନ ଚାଲିଛି ଏବଂ ଏହିପରି ସମୟ ଭବିଷ୍ୟତରେ ଆସିବ । ଯେତେବେଳେ କି ସେ ସଂପୂର୍ଣ୍ଣ ଜ୍ୟୋତିର୍ମୟ ଓ ଅମୃତମୟ ହୋଇଉଠିବ । ତାକୁ ସେତେବେଳେ କୁହାଯିବ ଅତିମାନସ (Superman)।"(୧୫୦) ଏହି ଭଲ ମନ୍ଦର ସଂଗ୍ରାମ ମଧ୍ୟରେ ଫଳଶ୍ରୁତି ସ୍ୱରୂପ ମନୁଷ୍ୟ ଦିବ୍ୟ ଆଲୋକ ଓ ଅମରତ୍ୱ ପାଇ ପାରିବ ।

**ତିନିମାର୍ଗ** – ମୋକ୍ଷ ଓ ମୁକ୍ତି ଲାଗି ବେଦରେ 'ତ୍ରି ମାର୍ଗ'ର ନିର୍ଦ୍ଦେଶ ଅଛି । ତାହା ହେଲା କର୍ମ ମାର୍ଗ, ଭକ୍ତିମାର୍ଗ ଓ ଜ୍ଞାନ ମାର୍ଗ । ଯଦିଓ ବୈଦିକ ଧର୍ମ ଏହି ତ୍ରିମାର୍ଗର କଥା କହିଅଛନ୍ତି ତଥାପି ଏହି ମାର୍ଗ ଗୁଡିକ ମଧ୍ୟରେ ପାରସ୍ପରିକ ସମନ୍ୱୟ ରକ୍ଷା କରିବାପାଇଁ ଶିକ୍ଷା ଦେଇଅଛନ୍ତି । "ପ୍ରତ୍ୟେକ ବ୍ୟକ୍ତିର କିଛିନା କିଛି ଆଧ୍ୟାତ୍ମିକ ଅଭୀପ୍ସା ସହିତ ଆଧ୍ୟାତ୍ମିକ ସିଦ୍ଧି ମଧ୍ୟ ଅଛି । କେହି ଶୂନ୍ୟରୁ ଜୀବନକୁ ଆରମ୍ଭ କରିନଥାନ୍ତି । ତା ହୋଇଥିଲେ ମାର୍ଗ ବତାଇବା ସୁବିଧା ଜନକ ହୋଇଥାନ୍ତା । ପ୍ରତ୍ୟେକ ବ୍ୟକ୍ତିର ଆଧ୍ୟାତ୍ମିକ ମୂଳ ଅନ୍ୟ ବ୍ୟକ୍ତିର ଆଧ୍ୟାତ୍ମିକ ମୂଳ ଠାରୁ ପୃଥକ । ତେଣୁ ସମସ୍ତେ ସମାନ ମାର୍ଗରେ ଚାଲିବା ପାଇଁ ସମର୍ଥ ହୁଅନ୍ତି ନାହିଁ । ସେହି ଦୃଷ୍ଟିରୁ ବିଚାର କରି ବୈଦିକ ଋଷି ତିନି ପ୍ରକାର ମାର୍ଗର ବ୍ୟବସ୍ଥା କରିଥିଲେ । ଏହି ବୈଦିକ ପରମ୍ପରାକୁ ଯୁଗ ଯୁଗ ଧରି ଭାରତ ମାନ୍ୟତା ଦେଇ ଆସିଛି ।

ସେମାନେ କୌଣସି ଗୋଟିଏ ଉପରେ ଗୁରୁତ୍ୱ ନଦେଇ ସମନ୍ୱୟ ଉପରେ ଅଧିକ ଗୁରୁତ୍ୱ ଦେଇଅଛନ୍ତି । ଏହା ଦ୍ୱାରା ମନୁଷ୍ୟ ଚରମ ଅଧ୍ୟାତ୍ମିକ ସିଦ୍ଧି ପାଇ ପାରିବ ବୋଲି ସେମାନଙ୍କର ବିଶ୍ୱାସ । ବୈଦିକ ଧର୍ମ ଓ ଆଧ୍ୟାତ୍ମିକତାର ଉଦ୍ଦେଶ୍ୟ ଥିଲା ସାରା ମନୁଷ୍ୟ ଜାତିକୁ ସ୍ୱୀୟ ସାଧ୍ୟ ମତେ ପଛାନୁସରଣ କରାଇ ସିଦ୍ଧିର ଚରମ ଶିଖରରେ ପହଞ୍ଚାଇ ଦେବା । ଶ୍ରୀ ଅରବିନ୍ଦଙ୍କ ମତରେ ସର୍ବୋତ୍କୃଷ୍ଟ ଆଧ୍ୟାତ୍ମିକ ଧର୍ମର ଲକ୍ଷ୍ୟ ହେଉଛି – "ସକଳ ମଣିଷ, ସମୁଦାୟ ଜୀବନ ଆଉ ସମୁଦାୟ ମାନୁଷୀ ସତ୍ତାକୁ ଊର୍ଦ୍ଧ୍ୱଗାମୀ କରାଇବା, ଜୀବନକୁ ଶେଷରେ 'ଚିନ୍ମୟ' କରି ଗଢି ତୋଳିବା ଏବଂ ମାନୁଷୀ ପ୍ରକୃତିର ଦିବ୍ୟ ରୂପାନ୍ତର ସାଧନ କରିବା "।(୧୫୧) ବୈଦିକ ଧର୍ମ ଓ ଆଧ୍ୟାତ୍ମିକାର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଠିକ୍ ଏହାହିଁ ଥିଲା ।

ବୈଦିକ ଧର୍ମ ଜୀବନରେ ଅନନ୍ତ ଜୀବନର ମହାସ୍ପନ୍ଦନକୁ ଆବିଷ୍କାର କରିଥିଲା । ବୈଦିକ ଧର୍ମ ମଣିଷଠାରେ ଦେବତାର ସମ୍ଭାବନା ଆବିଷ୍କାର କରିଥିଲା । ଏହି ଧର୍ମ ଧରଣୀରେ ସ୍ୱର୍ଗର ଅବତରଣ କରାଇଥିଲା । ଏହାର ଲକ୍ଷ୍ୟ ଥିଲା ଧରଣୀର ଧୂଳିକୁ ମଧୁମୟ କରିଦେବା । (ମଧୁମତ୍ ପାର୍ଥିବଂ ରଜଃ) ପୃଥିବୀପୃଷ୍ଠରେ ଦିବ୍ୟାନନ୍ଦ ଛୁଟାଇ ଦେବା । ଏହି ଦିବ୍ୟାନନ୍ଦ ବୈଦିକ ଯୁଗରେ ଥିଲା ଜୀବନରେ ଉପଲବ୍ଧ୍ୟ ଏବଂ ଅନୁଭୂତି ସର୍ବସ୍ୱ । ମାନବ ଜୀବନରେ 'ନିଃ ଶ୍ରେୟସ୍' ଆଣି ଦେବା ଥିଲା ଚରମ ଲକ୍ଷ୍ୟ । ଉତ୍ତରୋତ୍ତର ଉନ୍ନତି ସାଧନ କରି ମଣିଷ ନିମ୍ନ ସ୍ତରରୁ ଉଚ୍ଚ ସ୍ତରକୁ ଆରୋହଣ କରିବାର ପ୍ରୟାସ କରୁଥିଲା । ଧର୍ମ ଓ ଜୀବନ ଓତଃପ୍ରୋତ ଭାବରେ ଜଡ଼ିତ । ଧର୍ମର ପ୍ରାଣ ହେଲା ଜୀବନରେ ଶିବ ଓ ସୁନ୍ଦରର ଅବତରଣ କରାଇବା । ବୈଦିକ ଧର୍ମର ଏହି ଲକ୍ଷ୍ୟ ସାରା ବିଶ୍ୱରେ ଅନତିକ୍ରମ୍ୟ ହୋଇ ଉଠିଛି ।



# ଷଷ୍ଠ ପରିଚ୍ଛେଦ

## ବୈଦିକ ରାଷ୍ଟ୍ର , ଶାସନ, ସମର ବିଦ୍ୟା, ଗ୍ରାମ ଓ ନଗର

ବେଦରେ ସମାଜ ଧର୍ମ, ରାଜଧର୍ମ, ରାଜା ପ୍ରଜା ସଂପର୍କ, ରାଷ୍ଟ୍ର ଧର୍ମ, ଶାସନ ନୀତି ଓ ଦଣ୍ଡନୀତି ସଂପର୍କରେ ବର୍ଣ୍ଣିତ ହୋଇଅଛି । ପାରସ୍ପରିକ ଅଭ୍ୟୁଦୟରେ ସୁସଂହତ ସମାଜ ଗଠିତ ହେବାର ପ୍ରକ୍ରିୟା ବେଦରେ ଦେଖିବାକୁ ମିଳେ । ଏହାର ଆଲୋଚନାରୁ ତାହା ସ୍ପଷ୍ଟ ହୋଇ ଉଠିବ ।

**(କ) ରାଷ୍ଟ୍ର ଓ ରାଜା –**

ଯଜୁର୍ବେଦରେ ପୁରୋହିତମାନେ କହୁଅଛନ୍ତି "ଆମେ ପୁରୋହିତମାନେ ରାଷ୍ଟ୍ରରେ ଜାଗ୍ରତ ଅଛୁ"। (୧) ପୁରୋହିତ ଶବ୍ଦର ଅର୍ଥ ହେଲା ଆଗରେ ଥିବା ଲୋକ । "ଯେ ସବୁ କାମକୁ ଆଗୁଆ"। ବୈଦିକ ଯୁଗରେ ପୁରୋହିତ କର୍ମ ବ୍ରାହ୍ମଣମାନେ କରୁଥିଲେ । କେବଳ ଯଜ୍ଞାଦି କର୍ମ ସେ କରୁ ନଥିଲେ; ଲଢେଇ ବେଳେ ମଧ୍ୟ ସେ ଆଗରେ ଆସି ଠିଆ ହେଉଥିଲେ । 'ଦାଶରାଜ୍ଞ' ଯୁଦ୍ଧରେ ବଶିଷ୍ଠ ଓ ବିଶ୍ୱାମିତ୍ର ସେମାନଙ୍କ ରାଜାଙ୍କ ପକ୍ଷ ସମର୍ଥନ କରି ସଂଗ୍ରାମ ଭୂମିର ଆଗରେ ଥିଲେ । ରାଷ୍ଟ୍ର, ଏଠି ରାଜା ଓ ରାଜମହଲ ନୁହେଁ । ରାଷ୍ଟ୍ରର ପରିସର ବୃହତ୍ତର, ରାଜା ଏହାର ଅଂଶ ବିଶେଷ । ରାଜାଙ୍କ କର୍ତ୍ତବ୍ୟ ହେଉଛି ରାଷ୍ଟ୍ରକୁ ରକ୍ଷା କରିବା । ଅଥର୍ବ ବେଦରେ କୁହାଯାଇଛି "ବ୍ରହ୍ମଚର୍ଯ୍ୟ ତଥା ତପସ୍ୟା ଦ୍ୱାରା ରାଜା ରାଷ୍ଟ୍ରକୁ ରକ୍ଷା କରିଥାନ୍ତି । (୨) ରାଜାଙ୍କର ନୁହେଁ ବରଂ ଜନତାର ରାଷ୍ଟ୍ର ଗଠନ ସହିତ ଅଧିକତର ସଂପୃକ୍ତି ଅଛି ବୋଲି ଐତରେୟ ବ୍ରାହ୍ମଣରେ ବର୍ଣ୍ଣିତ ହୋଇଅଛି । ଏହାର ବର୍ଣ୍ଣନାନୁସାରେ ପ୍ରଜାମାନେ ହେଉଛନ୍ତି ରାଷ୍ଟ୍ର । ବୈଦିକ ଚିନ୍ତାଧାରା ଅନୁସାରେ ପ୍ରଜାମାନେ ରାଷ୍ଟ୍ରକୁ ତିଆରି କରିଥାନ୍ତି ଏବଂ ରାଜା ତାହାକୁ ରକ୍ଷା କରିଥାନ୍ତି ।(୩) ବୈଦିକ ରାଷ୍ଟ୍ର ଓ ରାଜା ଥିଲେ ପରସ୍ପର ଠାରୁ ପୃଥକ୍ ।"

ରାଷ୍ଟ୍ରକୁ ବୈଦିକ କାଳରେ ମାନ୍ୟତା ଦିଆ ଯାଉଥିଲା । ଅଥର୍ବ ବେଦରେ କୁହାଯାଇଛି "ସକଳ ଜନତାର କଲ୍ୟାଣ କାମନା କରୁଥିବା ଆତ୍ମଜ୍ଞାନୀ ଋଷିମାନେ ପ୍ରଥମେ ଦୀକ୍ଷା ନେଇ ତପସ୍ୟା କଲେ । ତାହାର ଫଳ ସ୍ୱରୂପ 'ରାଷ୍ଟ୍ର, ବଳ ଓ ଓଜଃ'ର ସୃଷ୍ଟି ହେଲା" । ଏଥିପାଇଁ ସକଳ ଦେବତାମାନେ ଏହି ରାଷ୍ଟ୍ରକୁ ଭକ୍ତି କରିବା ଉଚିତ୍ ।(୪) ରାଷ୍ଟ୍ର ପ୍ରତି ବୈଦିକ ଆର୍ଯ୍ୟମାନଙ୍କର ଭକ୍ତି, ଶ୍ରଦ୍ଧା ଓ ସମ୍ମାନର ତ୍ରିବେଣୀ ଧାରା ପ୍ରବାହିତ ହେଉଥିଲା ।

ଏକଥା ନିଶ୍ଚିତ ସତ୍ୟ ଯେ ବିଧିବଦ୍ଧ ଭାବରେ ରାଜା, ପ୍ରଜା, ରାଷ୍ଟ୍ର ଆଦି ବିଷୟରେ ଏକ ସୁସଂହତ ଚିନ୍ତାଧାରା ବୈଦିକ କାଳରେ କିମ୍ବା ବେଦୋତ୍ତର ବ୍ରାହ୍ମଣ- ଉପନିଷଦ କାଳରେ ବିକଶିତ ହୋଇ ନଥିଲା । ବୈଦିକ ସାହିତ୍ୟରେ ବିଭିନ୍ନ ସ୍ଥାନରେ ଏହି ଚିନ୍ତାଧାରା ଖଣ୍ଡିତ ଆକାରରେ ପରିବେଷିତ ହୋଇଅଛି । ଅର୍ଥଶାସ୍ତ୍ର ପ୍ରଣେତା 'କୌଟିଲ୍ୟ' (ଖ୍ରୀ.ପୂ. ୩୦୦ରୁ ଖ୍ରୀ.ପୂ.୪୦୦) ଏହି ଚିନ୍ତାଧାରାର ଏକ ଶୃଙ୍ଖଳିତ ଓ ବିଧିବଦ୍ଧ ରୂପ ଦେଲେ । ତାଙ୍କ ମତରେ ରାଷ୍ଟ୍ରର ସାତଟି ପ୍ରକୃତି ବା ଅଙ୍ଗ ଅଛି । 'କୌଟିଲ୍ୟ' କହିଅଛନ୍ତି 'ରାଜା ଓ ରାଷ୍ଟ୍ର ଏକ ନୁହଁନ୍ତି । ରାଷ୍ଟ୍ର ହେଉଛି ଏକ ବୃହତ୍ତର କଳ୍ପନାର କ୍ଷେତ୍ର, ଯାହା ଭିତରେକି ରାଜା ଅନ୍ତର୍ଭୁକ୍ତ '। ବୈଦିକ ଆର୍ଯ୍ୟମାନେ ରାଜା ଓ ରାଷ୍ଟ୍ର ସଂପର୍କରେ ସୂକ୍ଷ୍ମ ବିଗ୍ରହ କରି ସେମାନଙ୍କର ପାରସ୍ପରିକ ସଂପର୍କ କଣ ହେବ ତାହାର ଏକ ଯୁକ୍ତିଯୁକ୍ତ ନିର୍ଣ୍ଣୟ ନେଇଥିଲେ ।

ଋଗ୍‌ବେଦରେ ପ୍ରାୟ ତ୍ରିଶ ଜଣ ରାଜାଙ୍କ ନାମ ଦେଖିବାକୁ ମିଳିଥାଏ । ପ୍ରତ୍ୟେକ କ୍ଷେତ୍ରରେ ରାଜାଙ୍କୁ ପ୍ରଜାମାନଙ୍କର ରକ୍ଷକ ଭାବରେ କଳ୍ପନା କରାଯାଇଛି । ବାଳଶାସ୍ତ୍ରୀ ହରଦାସ ଏହି ମତକୁ ଗ୍ରହଣ କରିଅଛନ୍ତି ।(୫) ଋଗ୍‌ବେଦରେ ଜଣେ ରାଜା ସିନ୍ଧୁ ନଦୀ ତୀରରେ ରହୁଥିବା କଥା ଉଲ୍ଲିଖିତ । ଆଉ ମଧ୍ୟ ତହିଁରେ 'ଚିତ୍ର' ନାମକ ଆଉ ଜଣେ ରାଜା ସରସ୍ୱତୀ ନଦୀ ତୀରରେ ବାସ କରୁଥିବା ବର୍ଣ୍ଣିତ ।(୬) ଐତିହାସିକ 'ଦାଶରାଜ୍ଞ' ଯୁଦ୍ଧରେ ଭରତମାନଙ୍କର ରାଜା 'ସୁଦାସ'ଙ୍କ ବିରୁଦ୍ଧରେ ପାଞ୍ଚଜଣ ଆର୍ଯ୍ୟ ରାଜା ଏବଂ ପାଞ୍ଚଜଣ ଆର୍ଯ୍ୟେତର ରାଜା ଯୁଦ୍ଧ କରି ଶେଷରେ ପରାସ୍ତ ହୋଇଥିଲେ । ଋଗ୍‌ବେଦର ଆଉ ଗୋଟିଏ ପଂକ୍ତିରେ 'କଶୁ' ନାମକ ଜଣେ ରାଜା ଜଣେ ଋଷିଙ୍କୁ ଦଶ ଜଣ ରାଜାଙ୍କୁ ଦାନ କରିଥିବା କଥା ବର୍ଣ୍ଣିତ ।(୭) 'ତ୍ରସଦସ୍ୟୁ, ଦିବୋଦାସ, ତୈତୃଷ୍ଟ' ଆଦି ଆହୁରି ଅନେକ ରାଜାଙ୍କ ନାମ ଋଗ୍‌ବେଦରେ ଦେଖିବାକୁ ମିଳେ । ଉକ୍ତ ବେଦର ଦାନସ୍ତୁତିମାନଙ୍କରେ ଅନେକ ରାଜା ଋଷି ବ୍ରାହ୍ମଣମାନଙ୍କୁ ଦାନ ଦେଇଥିବା କଥା ଉଲ୍ଲିଖିତ । ମିତ୍ର ବରୁଣ ଦେବତାଙ୍କୁ ସ୍ୱର୍ଗର ରାଜା ବୋଲି କଳ୍ପନା କରାଯାଇ ସେମାନଙ୍କର ରାଜ ମହଲର ବର୍ଣ୍ଣନା ଦିଆଯାଇଛି ।(୮) ଏହି ରାଜ ମହଲର ଏକ ହଜାର ସ୍ତମ୍ଭ ଏବଂ ଏକ ହଜାର ଫାଟକ ଥିବାର କୁହାଯାଇଛି । ଏଥିରୁ ଅନୁମିତ ହୁଏ ସେତେବେଳେ ରାଜାମାନେ ବଡ ବଡ ଘରମାନଙ୍କରେ ରହୁଥିଲେ ।

ଏକଥା ନିଃସନ୍ଦେହରେ କୁହାଯାଇପାରିବ ଋଗ୍‌ବେଦର ସୃଷ୍ଟି ବେଳକୁ 'ରାଜା' ପଦବୀ ସୃଷ୍ଟି ହୋଇ ସାରିଥିଲା ଏବଂ ରାଜାମାନେ ଧନାଢ୍ୟ ଥିଲେ । ଫଳରେ ସେମାନେ ପ୍ରଚୁର ଦାନ ଦେଉଥିଲେ । ମନେ ହୁଏ ରାଜତନ୍ତ୍ରର ପ୍ରତିଷ୍ଠା ହୋଇ ପ୍ରତ୍ୟେକ ଗୋଷ୍ଠୀକୁ ଏକ ସ୍ୱତନ୍ତ୍ର ରାଜନୈତିକ 'ଏକକ' ଭାବରେ ଧରାଯାଉଥିଲା । 'ଏକକ'ଟି ଜଣେ ନେତାଙ୍କ କର୍ତ୍ତୃତ୍ୱାଧୀନ ଥିଲା ଏବଂ ସେହି ନେତାଙ୍କୁ 'ରାଜା' କୁହାଯାଉଥିଲା । ରାଜା ସେତେବେଳକୁ ଦଳର ନେତା ପଦରୁ ଉନ୍ନତ ହୋଇ ରାଷ୍ଟ୍ରର ନେତା ହୋଇ ସାରିଥିଲେ । ବୈଦିକ ଆର୍ଯ୍ୟମାନେ ନିଜ ପାଇଁ କେବଳ ରାଜା ନିର୍ବାଚନ କରୁନଥିଲେ । ସେମାନେ ମଧ୍ୟ ଦେବତାମାନଙ୍କ ମଧ୍ୟରେ ଜଣକୁ ରାଜା ଭାବରେ ଗ୍ରହଣ କରୁଥିଲେ । ପ୍ରାଥମିକ ଅବସ୍ଥାରେ 'ବରୁଣ' ଥିଲେ ଦେବତାମାନଙ୍କର ରାଜା ଏବଂ ପରବର୍ତ୍ତୀ ଅବସ୍ଥାରେ ଇନ୍ଦ୍ରଙ୍କୁ ଏହି ଆସନ ରାଜାମାନେ ଦେଇଥିଲେ । ସିଂହକୁ ଜଙ୍ଗଲି ପଶୁମାନଙ୍କର ରାଜା ବୋଲି କୁହାଯାଇଥିଲା ।(୯) ଆଉମଧ୍ୟ 'କାକ'ଜାତୀୟ ପକ୍ଷୀମାନଙ୍କ ମଧ୍ୟରେ 'ଛଞ୍ଚାଣ'କୁ ରାଜା ବୋଲି ସ୍ୱୀକାର କରାଗଲା ।(୧୦) ବୃକ୍ଷମାନଙ୍କ ମଧ୍ୟରେ ବରକୁ କୁହାଗଲା ରାଜା ।(୧୧) ସଂସାରର ସମସ୍ତ ଜୀବ ଏପରିକି ଦେବତା ସମତେ ସମସ୍ତେ କୌଣସି ରାଜାଙ୍କ କର୍ତ୍ତୃତ୍ୱାଧୀନ ଅଛନ୍ତି ବୋଲି ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ରାଜାଙ୍କ ବ୍ୟତୀତ ସାମାଜିକ ଶୃଙ୍ଖଳା କରାଯାଇପାରିବ ନାହିଁ ବୋଲି ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଏକ ଉନ୍ନତତର ସାମାଜିକ ବ୍ୟବସ୍ଥା ଆଣିବା ବୈଦିକ ରାଷ୍ଟ୍ରର ଉଦ୍ଦେଶ୍ୟ ଥିଲା । ଏହା ଠାରୁ ଅଧିକ ଉଦ୍ଦେଶ୍ୟ ଥିଲା ନୈତିକ ମୂଲ୍ୟବୋଧର ସଂରକ୍ଷଣ । ଏହି ନୈତିକ ମୂଲ୍ୟବୋଧର ଦାୟିତ୍ୱ ନେଇଥିଲେ ରାଜା । ବୈଦିକ ଆର୍ଯ୍ୟମାନେ ରାଜା ହେଉଛନ୍ତି ରାଷ୍ଟ୍ର ବୋଲି କଳ୍ପନା କରିଥିଲେ ।(୧୨) ରାଜାମାନେ ରାଷ୍ଟ୍ରର ସ୍ୱାର୍ଥକୁ ନିଜର ସ୍ୱାର୍ଥ ବୋଲି ଭାବୁଥିଲେ ଏବଂ ସେଥିପାଇଁ ଯାହା କିଛି ଆତ୍ମତ୍ୟାଗ କରିବାକୁ ପଡୁଥିଲା ତାହା ସେ କରୁଥିଲେ ।

ଏହି ରାଜ ପଦବୀ ସୃଷ୍ଟି ହେଲା ଏକ ପରିସ୍ଥିତିର ଉପରେ । ଦେବତା ଓ ଅସୁରମାନଙ୍କ ମଧ୍ୟରେ ପୂର୍ବେ ବାରମ୍ବାର ଯୁଦ୍ଧ ହେଉଥିଲା । ପ୍ରତ୍ୟେକ ଯୁଦ୍ଧରେ ଦେବତାମାନେ ହାରି ଯାଉଥିଲେ । କାରଣ ସେମାନଙ୍କର କୌଣସି ରାଜା ନଥିଲେ । ମାତ୍ର ଅସୁରମାନେ ଜଣେ ଜଣେ ରାଜାଙ୍କ ନେତୃତ୍ୱରେ ଯୁଦ୍ଧ କରୁଥିଲେ । ଫଳରେ ଦେବତାମାନେ ସେମାନଙ୍କ ଭିତରୁ ଜଣଙ୍କୁ ରାଜା ବୋଲି ବାଛିବାକୁ ସ୍ଥିର କଲେ ।(୧୩) ଐତରେୟ ବ୍ରାହ୍ମଣ ଭାଷାରେ 'ସେମାନେ ସୋମଙ୍କୁ ରାଜା କଲେ' ।(୧୪) ଏହା ଫଳରେ ଉପଯୁକ୍ତ ନେତୃତ୍ୱ ଯୋଗୁଁ ସେମାନେ ଅସୁରମାନଙ୍କୁ ପରାସ୍ତ କଲେ । ରାଜାର ସୃଷ୍ଟିର ମୂଳରେ ଜାତୀୟ ବିପତ୍ତି ଓ ଯୁଦ୍ଧର ବିଭୀଷିକା ସେଉଁଥିରୁ ରକ୍ଷା ପାଇବା ପାଇଁ ପ୍ରଜାକୁଳ ବ୍ୟାକୁଳିତ ହୋଇଥିଲେ । ବୈଦିକ ରାଜପଦ ଯୁଦ୍ଧ ଭିତ୍ତିକ ଏବଂ ନିର୍ବାଚନ ମୂଳକ ଥିଲା ବୋଲି 'ବାସମ୍' ମତ ଦେଇଅଛନ୍ତି ।(୧୫) ଐତରେୟ ବ୍ରାହ୍ମଣ ପରେ ସୃଷ୍ଟ ହୋଇଥିବା ତୈତ୍ତିରୀୟ ଉପନିଷଦ୍‌ରେ (୧/୭) ଏହି ଗଳ୍ପଟି ସାମାନ୍ୟ ପରିବର୍ତ୍ତନ ଭାବରେ ରହିଅଛି । ଏଥିରେ ଦେବତାମାନେ ଜଣଙ୍କୁ ରାଜା ଭାବେ ନିର୍ବାଚିତ କରିଥିଲେ । ଦେବତାମାନେ ପ୍ରଜାପତିଙ୍କୁ ସନ୍ତୁଷ୍ଟ କରିବାପାଇଁ ଯଜ୍ଞ କଲେ । ପ୍ରଜାପତି ସନ୍ତୁଷ୍ଟ ହୋଇ ଶେଷରେ ତାଙ୍କ ପୁତ୍ର ଇନ୍ଦ୍ରଙ୍କୁ ଦେବତାମାନଙ୍କ ରାଜା ହେବା ପାଇଁ ପଠାଇଲେ । ଇନ୍ଦ୍ରଙ୍କ ନେତୃତ୍ୱରେ ଯୁଦ୍ଧ କରି ଦେବତାମାନେ ଅସୁରମାନଙ୍କୁ ପରାସ୍ତ କରିଥିଲେ ।

'ରାଟ୍' ଧାତୁର ଅର୍ଥ ହେଉଛି ଶାସନ କରିବା । ଏଥିରୁ ନିଷ୍ପନ୍ନ ଶବ୍ଦ ହେଉଛି ରାଜା । ପରବର୍ତ୍ତୀ ଅବସ୍ଥାରେ 'ରଞ୍ଜୟତୀତି ରାଜା' ଅର୍ଥାତ୍ ପ୍ରଜାମାନଙ୍କର ମନୋରଂଜନ କରନ୍ତି ବୋଲି ହେଲେ ରାଜା । ବୈଦିକ ରାଜା ନିଜ ଠାରୁ ଦିବ୍ୟତ୍ୱ ଦାବି କରୁନଥିଲେ । କିନ୍ତୁ ପ୍ରଜାମାନେ ସେମାନଙ୍କୁ ଦେବତା ମାନି ପୂଜା କରନ୍ତୁ ବୋଲି ସେମାନେ ଚାହୁଁ ନଥିଲେ । ବୈଦିକ ରାଜା ଅଭିଷିକ୍ତ ହେବାପରେ ଦେବତା ହୋଇଯାଉ ନଥିଲେ ବରଂ ହେଉଥିଲେ 'ବ୍ରତୀ' । ଏହାର ଅର୍ଥ ହେଲା ସେ ଆତ୍ମ ସେବା ଛାଡି ଜନ ସେବା, ରାଜ୍ୟ ସେବା ଓ ସମାଜ ସେବାରେ ନିଜକୁ ଉତ୍ସର୍ଗ କରି ଦେଉଥିଲେ । ସେ ହେଉଥିଲେ ରାଜ୍ୟର ପ୍ରଥମ ସେବକ । ସେ ଶାସକ ଥାଇ ବେଦର 'ଋତ' ଦ୍ୱାରା ସେ ଶାସିତ ହେଉଥିଲେ । ରାଜା ନିଜକୁ ଦେବତା ବୋଲି ଚିନ୍ତା କରିବା ଏକ ଆର୍ଯ୍ୟୋତ୍ତର ଚିନ୍ତାଧାରା । ଶତପଥ ବ୍ରାହ୍ମଣ (୫/୪/୫/୪ ଓ ୫/୨/୧/୨୪) ରେ ଯଥା କ୍ରମେ ରାଜାଙ୍କୁ ଇନ୍ଦ୍ର ଏବଂ ପ୍ରଜାପତି ଭାବରେ ବର୍ଣ୍ଣନା କରାଯାଇଛି । ଏହି ପଂକ୍ତିଗୁଡିକରୁ ରାଜାଙ୍କର ଶୌର୍ଯ୍ୟ, ବୀର୍ଯ୍ୟ ଓ ମହନୀୟତାର ସୂଚନା ମିଳିଥାଏ । ମାତ୍ର ଏଠାରେ ତାଙ୍କୁ କଦାପି ଦେବତାଙ୍କ ଆସନରେ ଆସୀନ କରାଯାଇନାହିଁ । ଶତ୍ରୁମାନଙ୍କର ହନ୍ତା ଯୋଗୁ ତାଙ୍କୁ 'ଇନ୍ଦ୍ର' ଏବଂ ପ୍ରଜାମାନଙ୍କର ରକ୍ଷକ ବୋଲି ତାଙ୍କୁ 'ପ୍ରଜାପତି' ଭାବରେ ଗ୍ରହଣ କରାଯାଇଅଛି । ତେଣୁ ଏଥିରୁ ଅନୁମିତ ହୁଏ ଯୁଦ୍ଧ ଆଦି ବିଭୀଷିକାରୁ ରକ୍ଷା କରିବାର ଦାୟିତ୍ୱ ନେବାକୁ ରାଜା ପଦବୀର ସୃଷ୍ଟି ହୋଇଥିଲା । ରାଜା ମଧ୍ୟ ପ୍ରଜାମାନଙ୍କ ଦ୍ୱାରା ନିର୍ବାଚିତ ହେଉଥିଲେ । ତାଙ୍କ ଠାରେ ଦିବ୍ୟତ୍ୱ ଆରୋପ କରାଯାଉ ନଥିଲା । ସେ ଥିଲେ ପ୍ରଜାମାନଙ୍କର ପ୍ରଥମ ସେବକ ଏବଂ ରାଷ୍ଟ୍ର ଏବଂ ରାଜା ମଧ୍ୟରେ ପ୍ରଭେଦ ନଥିଲା ।

ବୈଦିକ କାଳରେ ରାଜାମାନଙ୍କ ଉପରେ ଆଉ ଜଣେ ରାଜା ଥିଲେ । ତାଙ୍କୁ କୁହାଯାଉଥିଲା ସମ୍ରାଟ୍ । 'ପୃଥୁ' ମାନଙ୍କ ରାଜାଙ୍କ ନାମ ଥିଲା 'ଅଭୟବର୍ତ୍ତୀ ଚୟମାନ' । ତାଙ୍କୁ ରାଜାମାନଙ୍କର

ରାଜା ବୋଲି କୁହାଯାଉଥିଲା । 'ଚକ୍ରବର୍ତ୍ତୀ' ରାଜା ହେବାପାଇଁ ଅଶ୍ୱମେଧ ଯଜ୍ଞ କରିବାକୁ ପଡୁଥିଲା । ବୈଦିକ ଆର୍ଯ୍ୟମାନେ 'ସମ୍ରାଟ' ଓ 'ଚକ୍ରବର୍ତ୍ତୀ' ପଦଦ୍ୱୟ ସଂପର୍କରେ ସଂପୂର୍ଣ୍ଣ ଅବହିତ ଥିଲେ । ବେଦୋତ୍ତର କାଳରେ ଏହି 'ଚକ୍ରବର୍ତ୍ତୀ' ଚିନ୍ତା ଧାରାର 'ଭୂୟୋ ବିକାଶ' ଘଟିଥିଲା । ବେଦ ଓ ଐତରେୟ ବ୍ରାହ୍ମଣ ଗ୍ରନ୍ଥରେ "ଅଧିରାଜ, ରାଜାଧିରାଜ, ସମ୍ରାଟ, ସାର୍ବଭୌମ, ଏକରାଟ" ଆଦି ଶବ୍ଦର ଉଲ୍ଲେଖ ମିଳେ । ରାଜାମାନେ ରାଜ ତିଳକ ଅବସରରେ ବିଭିନ୍ନ ଯଜ୍ଞାନୁଷ୍ଠାନ କରୁଥିଲେ । ସେହି ଯଜ୍ଞ ଗୁଡିକ ହେଉଛି 'ବାଜପେୟ, ରାଜସୂୟ, ଅଶ୍ୱମେଧ' ପ୍ରଭୃତି । 'ଗୋପଥ ବ୍ରାହ୍ମଣ' ଅନୁସାରେ ରାଜସୂୟ ଯଜ୍ଞ କରୁଥିବା ରାଜା 'ଏକରାଟ୍', ବାଜପେୟ ଯଜ୍ଞ କରୁଥିବା ରାଜା 'ସମ୍ରାଟ୍,' ଅଶ୍ୱମେଧ ଯଜ୍ଞ କରୁଥିବା ରାଜା 'ସ୍ୱରାଟ୍', ପୁରୁଷ ମେଧ ଯଜ୍ଞ କରୁଥିବା ରାଜା ବିରାଟ ଏବଂ ସର୍ବମେଧ ଯଜ୍ଞ କରୁଥିବା ରାଜା 'ସର୍ବରାଟ୍' ନାମରେ ପ୍ରସିଦ୍ଧି ଲାଭ କରୁଥିଲେ । ସ୍ୱରାଜ୍ୟ, ବୈରାଜ୍ୟ, ରାଜ୍ୟ, ଅଧିରାଜ୍ୟ ଆଦି ଶବ୍ଦର ଉଲ୍ଲେଖରୁ ସେକାଳରେ 'ସର୍ବତନ୍ତ୍ର', 'ସ୍ୱତନ୍ତ୍ର', 'ସ୍ୱାଧୀପତ୍ୟ' ଆଦି ରାଜ୍ୟ ଥିବା କଥା ସୂଚିତ ହୁଏ ।

**ରାଜାଙ୍କ ନିର୍ବାଚନ ପଦ୍ଧତି –**

ଐତରେୟ ବ୍ରାହ୍ମଣ ଯୁଗରେ ରାଜା ନିର୍ବାଚିତ ହେବାର କଥା ସୂଚନା ମିଳିଥିଲା । ମାତ୍ର 'ବ୍ରାହ୍ମଣ' ଯୁଗ ବେଳକୁ ରାଜପଦ ପୁରୁଷାନୁକ୍ରମିକ ହୋଇଗଲା । "ତଥାପି ବ୍ରାହ୍ମଣ ଗ୍ରନ୍ଥ ମାନଙ୍କରେ ରାଜାଙ୍କ ଅଭିଷେକ ସମୟରେ ଯେଉଁ ମନ୍ତ୍ର ଗୁଡିକ ସୃଷ୍ଟ ହୋଇଛି ସେଥିରୁ ମନେ ହେଉଛି ରାଜପଦ ପୁରୁଷାନୁକ୍ରମିକ ହୋଇ ଯାଇଥିଲେ ମଧ୍ୟ ଏହାର ସୃଷ୍ଟି ମୂଳରେ ଯେଉଁ ପ୍ରଜାମାନଙ୍କ ଦ୍ୱାରା ରାଜାଙ୍କୁ ବାଛିବା ପରମ୍ପରାଟି ଥିଲା ତାହାର ଆତ୍ମାକୁ ବ୍ରାହ୍ମଣ ଯୁଗୀୟ ଋଷିମାନେ ବର୍ଜନ କରି ପାରି ନାହାଁନ୍ତି "। ତେଣୁ ରାଜାଙ୍କ ପକ୍ଷରେ ପ୍ରଜାମାନଙ୍କ ମନ ଭଂଗାଇବା ଅକର୍ତ୍ତବ୍ୟ ବୋଲି ବିବେଚିତ ହେଉଥିଲା ।

'ବୈଦିକ ସଂହିତା' ଯୁଗରେ ଗୋଟିଏ ପରିବାରର ଲୋକେ 'ପୁତ୍ର ପ୍ରପୌତ୍ର' କ୍ରମେ କେତେକ ଗୋଷ୍ଠୀର ରାଜା ହେବା କଥା ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ 'କୁତ୍ସୁ' ମାନଙ୍କର 'ବାଧ୍ୟଶ୍ୱ' ବୋଲି ଜଣେ ରାଜାଥିଲେ । ତାଙ୍କ ପରେ ତାଙ୍କ ପୁତ୍ର 'ଦିବୋଦାସ' ରାଜା ହେଲେ । ଦିବୋଦାସଙ୍କ ପରେ ତାଙ୍କ ପୁତ୍ର 'ପିଜବନ୍' ରାଜା ହେଲେ । 'ପିଜବନ୍'ଙ୍କ ପରେ ତାଙ୍କ ପୁତ୍ର 'ସୁଦାସ' ରାଜାହେଲେ । 'ସୁଦାସ'ଙ୍କ ବେଳକୁ 'କୁତ୍ସୁ ଓ ଭରତ' ଗୋଷ୍ଠୀ ମିଶି ଯାଇ ଗୋଟିଏ ଗୋଷ୍ଠୀରେ ପରିଣତ ହୋଇଗଲେ । ପ୍ରସିଦ୍ଧ ସୁଦାସ ଥିଲେ ଦାଶରାଜ୍ଞ ଯୁଦ୍ଧର ପ୍ରଧାନ ନାୟକ । ମାତ୍ର ଦେଖାଯାଏ ଜଣେ ରାଜାଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ସ୍ୱୀୟ ଯୋଗ୍ୟତା ବଳରେ ନିର୍ବାଚନ ପଦ୍ଧତିରେ ପ୍ରଜାମାନଙ୍କ ଦ୍ୱାରା ରାଜା ଭାବରେ ନିର୍ବାଚିତ ହୋଇପାରୁଥିଲେ । ବେଦରେ ନିର୍ବାଚନ ପଦ୍ଧତିରେ ରାଜା ଆସୁଥିବାର ଭୂରି ଭୂରି ପ୍ରମାଣ ରହିଅଛି ।

ବଳଦେବ ଉପାଧ୍ୟାୟ ଋଗ୍‌ବେଦର ଗୋଟିଏ ସୂକ୍ତ (୧୦/୧୭୩) ଓ ଅଥର୍ବ ବେଦର ଦୁଇଟି ସୂକ୍ତ (୭/୮୭-୮୮) ଉପରେ ଆଲୋଚନା କରି ପ୍ରମାଣ କରିଅଛନ୍ତି ଯେ ବୈଦିକ କାଳରେ ରାଜ ପଦ ସଂପୂର୍ଣ୍ଣ ନିର୍ବାଚନ ମୂଳକ ଥିଲା ।(୧୬) ଯେଉଁ ସଂସ୍ଥା ଏକ – ମତ ହୋଇ ରାଜାଙ୍କୁ ନିର୍ବାଚିତ କରୁଥିଲା ତାହାକୁ କୁହାଯାଉଥିଲା 'ସମିତି' । ଅଥର୍ବବେଦରେ କୁହାଯାଇଛି "ହେ ରାଜା,

ତୁମକୁ ତୁମ ପଦରେ ଦୃଢ ରଖିବା ପାଇଁ ସମିତି ଗ୍ରହିଁ ଥାଉ” ।(୧୭) ଋଗ୍‌ବେଦର ଦଶମ ମଣ୍ଡଳରେ ଗୋଟିଏ ସ୍ଥାନରେ ଆର୍ଯ୍ୟ ଋଷି ରାଜାଙ୍କ ପ୍ରସଙ୍ଗରେ କହିଛନ୍ତି, “ହେ ରାଜନ୍ ସମସ୍ତ ରାଜାମାନେ ତୁମକୁ ଗ୍ରହାନ୍ତୁ ।(ବିଶସ୍ତ୍ୱା ସର୍ବାବାଂଛନ୍ତୁ)” ଏହାର ତାତ୍ପର୍ଯ୍ୟ ହେଲା ରାଜାଙ୍କୁ ପ୍ରଜାମାନେ ସର୍ବସମ୍ମତି କ୍ରମେ ବାଛିବେ । ସବୁପ୍ରଜା ଏକତ୍ର ହୋଇ ରାଜାଙ୍କୁ ବାଛିବା ସମ୍ଭବ ହେଉ ନଥିବାରୁ ସେମାନଙ୍କ ପ୍ରତିନିଧିମାନଙ୍କ ଦ୍ୱାରା ଗଠିତ ସମିତି ରାଜାଙ୍କୁ ବାଛୁଥିଲା । ରାଜା ଓ ପ୍ରଜାଙ୍କ ମଧ୍ୟରେ ଏକ ପବିତ୍ର ଚୁକ୍ତିଥିଲା । (ଉଭୟ ଉଚ୍ଚାରିତ ଓ ଅନୁଚ୍ଚାରିତ) ତାହାକୁ ରାଜା ପାଳନ କରୁଥିଲେ । ଯେଉଁ ରାଜା ଏହା ପାଳନ କରୁନଥିଲେ ତାଙ୍କୁ ରାଜଗାଦି ଛାଡିବାକୁ ହେଉଥିଲା । ରାଜା ପ୍ରତିଜ୍ଞା ପାଳନ ନିମିତ୍ତ ପ୍ରତିଶ୍ରୁତି ବଦ୍ଧ ହେଉଥିଲେ । ତାଙ୍କୁ ପ୍ରଜାମାନେ ରାଜା ସ୍ୱରୂପ ବରଣ କରୁଥିଲେ । ସେତେବେଳେ ଅଥର୍ବ ବେଦର ଗୋଟିଏ ମନ୍ତ୍ରପାଠ କରାଯାଉଥିଲା । ତାହା ଥିଲା “ତୁମକୁ ପ୍ରଜାମାନେ ରାଜ୍ୟ ଶାସନ ଲାଗି ବରଣ କରିଛନ୍ତି ”।(୧୮) ଦେବୀ ସ୍ୱରୂପ ପାଞ୍ଚଦିଗ ବା ପାଞ୍ଚାଳ ତୁମକୁ ବରଣ କରିଅଛନ୍ତି । ଏହି ପରି ସମୟରେ ରାଜାଙ୍କୁ ପୁଣି ଥରେ ପ୍ରତିଶ୍ରୁତିବଦ୍ଧ ହେବାକୁ ପଡୁଥିଲା ବୋଲି ଅଥର୍ବ ବେଦରେ କୁହାଯାଇଛି ।(୧୯) ଏହି ସବୁ କାରଣରୁ ସ୍ପଷ୍ଟ ଅନୁମିତ ହୁଏଯେ ବୈଦିକ କାଳର ରାଜପଦ ନିର୍ବାଚିତ ଥିଲା ।

ବାହ୍ୟତ ରାଜାଥିଲେ ରାଜ୍ୟର ଶାସକ । ମାତ୍ର ପ୍ରକୃତ ଶାସକ ଥିଲା ଧର୍ମ । ସାରାମାନବ ଜାତିକୁ, ମାନବ ସମାଜକୁ ଯେଉଁ ଧର୍ମ ଧରି ରଖିଥିଲା ତାହା ବାସ୍ତବିକ ଥିଲା ବୈଦିକ ରାଷ୍ଟ୍ରର ଶାସନ କର୍ତ୍ତା । ରାଜା ଓ ପ୍ରଜା ତାହାର ଅଧିନସ୍ଥ ଥିଲେ । ସଂସାରର ସମସ୍ତଙ୍କର କିଭଳି ଉନ୍ନତି ଘଟିବ ତାହା ଥିଲା ରାଜା ପ୍ରଜା ସମସ୍ତଙ୍କର ଲକ୍ଷ୍ୟ । ଏଥିରେ ବାଧା ଦେଉଥିବା ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବାକୁ ପଡୁଥିଲା । ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ଯୁଗ୍ମ ନେତୃତ୍ୱରେ ଯୁଦ୍ଧ କରିବାକୁ ହେଉଥିଲା । ଆର୍ଯ୍ୟ ରାଜାମାନଙ୍କର ‘ଧର୍ମ ଯୁଦ୍ଧ’ ଓ ‘ଧର୍ମ ବିଜୟ’ ହିଁ ଥିଲା କାମ୍ୟ । ପ୍ରାଚୀନ ବୈଦିକ ଭାରତରେ ଧର୍ମ କିପରି ଶାସନ କରୁଥିଲା ତାହା ଶ୍ରୀ ଅରବିନ୍ଦ ନିମ୍ନୋକ୍ତ ମତେ ବର୍ଣ୍ଣନା କରିଅଛନ୍ତି । “ରାଜାଙ୍କ ଠାରୁ ଉଚ୍ଚ ଶାସନ କର୍ତ୍ତା ଥିଲା ଧର୍ମ । ଧର୍ମ ହିଁ ଏହି ଜାତିର ଧର୍ମ ସଂକ୍ରାନ୍ତ, ନୈତିକ, ସାମାଜିକ, ରାଷ୍ଟ୍ରିକ, ବିଗ୍ରହ ବିଷୟକ ଓ ଆଗ୍ରହ ମୂଳକ ବିଧିବିଧାନ ନିୟନ୍ତ୍ରିତ କରୁଥିଲା ; ପ୍ରାଣ ଯେପରି ଦେହକୁ ନିୟନ୍ତ୍ରଣ କରେ । ଏହି ଧର୍ମକୁ ଏକ ନୈର୍ବ୍ୟକ୍ତିକ ପ୍ରଭୁଶକ୍ତି ରୂପେ ଏବଂ ପବିତ୍ର ଓ ଶାଶ୍ୱତ ନିର୍ଦ୍ଦେଷ୍ଟା ରୂପେ ଗ୍ରହଣ କରାଯାଉଥିଲା । ଏହାର ସମଗ୍ର କ୍ଷେତ୍ର ନିଜର ବୈଶିଷ୍ଟ୍ୟ ହେତୁ ସର୍ବଦା ସମରୂପ ଥିଲା ”।(୨୦)

ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା ସେ ନିଜେ ଧର୍ମ ପାଳିବେ ଏବଂ ସମସ୍ତେ କିପରି ତାହା ପାଳିବେ ସେଥି ପ୍ରତି ଦୃଷ୍ଟିଦେବେ । ଅତଏବ ବୈଦିକ ରାଜାଥିଲେ ଧର୍ମର ସଂପୂର୍ଣ୍ଣ ଅଧୀନ । ବୈଦିକ ରାଷ୍ଟ୍ରଥିଲା ଧର୍ମ ଦ୍ୱାରା ଶାସିତ ଓ ପରିଚାଳିତ । ରାଜା ଏହି ରାଷ୍ଟ୍ରରେ ସ୍ୱୈରାଚାରୀ ବା ସ୍ୱେଚ୍ଛାଚାରୀ ନଥିଲେ । ଧର୍ମନୀତି ମାଧ୍ୟମରେ ରାଜଶକ୍ତିକୁ ସୀମାବଦ୍ଧ କରି ରଖା ଯାଉଥିଲା । ବୈଦିକ କାଳରେ ମଧ୍ୟ ପ୍ରଜାମାନେ କୁଶାସନକୁ ଖୁବ୍ ଭୟ ଓ ଘୃଣା କରୁଥିଲେ ଏବଂ ସୁଶାସନକୁ ସମାଦର କରୁଥିଲେ ।

**ପ୍ରଜାତନ୍ତ୍ର –**

ପ୍ରଜାତନ୍ତ୍ରେ ଶାସନ ବିଷୟରେ ପ୍ରତ୍ୟକ୍ଷ ଭାବରେ ବେଦରେ କୌଣସି ଠାରେ ଉଲ୍ଲେଖ ନାହିଁ । ଋଗ୍‌ବେଦରେ ଉଲ୍ଲିଖିତ ହୋଇଥିବା ‘ଗଣ, ଗଣପତି ଓ ଜ୍ୟେଷ୍ଠକ’ ଆଦି ଶବ୍ଦ ଗୁଡିକୁ ବିଗ୍ରହକୁ ନେଇ

ରାୟ ଚୌଧୁରୀ ମତ ଦିଅନ୍ତି "ଯେ ବୈଦିକ କାଳରେ ଏକ ପ୍ରକାର ପ୍ରଜାତନ୍ତ୍ର ଶାସନ ମଧ୍ୟ ଥିଲା" ।(୨୧) ପ୍ରଜାତନ୍ତ୍ର ଶାସନ ସଂପର୍କରେ ଋଗ୍‌ବେଦର ଗୋଟିଏ ମନ୍ତ୍ର ଖୁବ୍ ତାତ୍ପର୍ଯ୍ୟ ପୂର୍ଣ୍ଣ ।(୨୨) ତହିଁରେ ରାଜାମାନେ ଏକାଠି ସମିତିରେ ବସି ଆଲୋଚନା କରୁଥିବା କଥା ଉଲ୍ଲେଖ ଅଛି । ବୈଦିକ କାଳରେ ପ୍ରଜାତନ୍ତ୍ର ଶାସନରେ ଲୋକମାନଙ୍କ ଦ୍ୱାରା ନିର୍ବାଚିତ ପ୍ରତ୍ୟେକ ପ୍ରତିନିଧିମାନଙ୍କୁ ରାଜାବୋଲି କୁହାଯାଉଥିଲା । ଋଗ୍‌ବେଦର ବର୍ଣ୍ଣିତ ଏହି ମନ୍ତ୍ରରେ ଏକାଧିକ ରାଜାଙ୍କ ନାମୋଲ୍ଲେଖକୁ ଏହି ଅର୍ଥରେ ଗ୍ରହଣ କରାଯାଇପାରେ । ଏହା ବୈଦିକ କାଳରେ ପ୍ରଜାତନ୍ତ୍ର ଶାସନ ଚ୍ଲୁଥିବାର ଏକ ନିଦର୍ଶନ । 'ବାସମ୍'ଙ୍କ ମତ ମଧ୍ୟ ଏହାର ଯୌକ୍ତିକତା ସାଧନ କରିଥାଏ ।(୨୩) ଅବଶ୍ୟ ପ୍ରଜାତନ୍ତ୍ର ସଂପର୍କରେ ବୈଦିକ କାଳରେ କୌଣସି ପ୍ରତ୍ୟକ୍ଷ ପ୍ରମାଣ ନାହିଁ ।

**ଅଭିଷେକ ଓ ସିଂହାସନାରୋହଣ –**

ରାଜା ସର୍ବସମ୍ମତି କ୍ରମେ (ପୁରୁଷାନୁକ୍ରମିକ ହେଲେ ମଧ୍ୟ) ନିର୍ବାଚିତ ହେଉଥିବାରୁ ଏହି ନିର୍ବାଚନକୁ ମହତ୍ତ୍ୱପୂର୍ଣ୍ଣ ପବିତ୍ରତା ଦେବା ଲାଗି ଆର୍ଯ୍ୟଋଷିମାନେ ରାଜାଙ୍କ ପାଇଁ ଅଭିଷେକ ଓ ସିଂହସନାରୋହଣ ଉତ୍ସବର ବିଧାନ ଖଞ୍ଜିଥିଲେ । ଏହି ଅଭିଷେକ ଓ ସିଂହାସନାରୋହଣ ଲାଗି ବୈଦିକ ସାହିତ୍ୟରେ ଅନେକ ମନ୍ତ୍ର ରହିଅଛି । ସେହି ମନ୍ତ୍ର ଗୁଡିକ ଅନୁଧ୍ୟାନ କଲେ ନିମ୍ନ ଲିଖିତ ନିର୍ଣ୍ଣୟରେ ପହଞ୍ଚିବାକୁ ହୋଇଥାଏ । "(କ) ପ୍ରଜାମାନେ ରାଜାଙ୍କୁ ବାଛୁଥିଲେ ଏବଂ ଅତ୍ୟାଗ୍ରହୀ ରାଜାଙ୍କୁ ଗାଦିଚ୍ୟୁତ କରୁଥିଲେ । (ଖ) ପ୍ରଜାମାନେ ରାଜାଙ୍କ ଉପରେ ସାର୍ବଭୌମତ୍ୱ ନ୍ୟସ୍ତ କରି ତାହାର ପ୍ରତି ବଦଳରେ ତାଙ୍କ ପାଖରୁ ସୁରକ୍ଷା ଗ୍ରହୁଁଥିଲେ । (ଗ) ରାଜା ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ରାଜ ଧର୍ମ ପାଳନ କରିବା ପାଇଁ ପ୍ରତିଶ୍ରୁତି ବଦ୍ଧ ହେଉଥିଲେ । (ଘ) ପ୍ରଜାମାନେ ମଧ୍ୟ ରାଜାଙ୍କୁ ଷଡ୍‌ଭାଗୀ କରାଇବେ ବା କର ସ୍ୱରୂପ ଉତ୍ପନ୍ନ ଫସଲର ଛଅ ଭାଗରୁ ଭାଗେ ଦେବେ ବୋଲି ପ୍ରତିଶ୍ରୁତି ବଦ୍ଧ ହେଉଥିଲେ । (ଙ) ରାଜା ମାତୃଭୂମିର ସଦା କଲ୍ୟାଣ କରିବା ପାଇଁ ପ୍ରତିଜ୍ଞା କରୁଥିଲେ । (ଚ) ପ୍ରଜାମାନଙ୍କୁ ଭଲ ଭାବରେ ପାଳନ ନକଲେ ପୁତ୍ର, ପୌତ୍ର, ପ୍ରପୌତ୍ର କ୍ରମେ ତାଙ୍କର ସମଗ୍ର ପୁଣ୍ୟ ନଷ୍ଟ ହୋଇଯିବ ବୋଲି ସେ ପବିତ୍ର ଶପଥ ଗ୍ରହଣ କରୁଥିଲେ" ।(ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି- ବୈଦିକ ପର୍ବ ଚତୁର୍ଥ ଭାଗ ପଞ୍ଚମ ଖଣ୍ଡ ପୃ ୬୫ ଛାରୁ ଉଦ୍ଧୃତ ।)

ରାଜ୍ୟାଭିଷେକ ସମୟରେ ରାଜାକୁ ଅନେକ ନିୟମ ପାଳନ କରିବାକୁ ପଡୁଥିଲା । ପ୍ରଜାମାନଙ୍କ ଆଗରେ ରଜା ଏକ ପ୍ରତିଜ୍ଞା କରୁଥିଲେ । "ଯେଉଁ ରାତ୍ରିରେ ମୁଁ ଜନ୍ମଲାଭ କରିଛି ଓ ଯେଉଁ ରାତ୍ରିରେ ମୃତ୍ୟୁ ବରଣ କରିବି, ଏହି ଦୁଇ ରାତ୍ରି ମଧ୍ୟରେ ଯେତେ ଯଜ୍ଞାନୁଷ୍ଠାନ କରିଛି ବା କରିବି ସେହି ପୁଣ୍ୟରୁ, ସ୍ୱର୍ଗ ଲୋକରୁ, ମୋର ଜୀବନରୁ ଓ ମୋର ସନ୍ତାନ ସନ୍ତତିଙ୍କ ଠାରୁ ମୁଁ ବଞ୍ଚିତ ହେବି ଯଦି ମୁଁ ତୁମମାନଙ୍କ ସହିତ ବିରୁଦ୍ଧାଚରଣ କରିବି"। (ଅଭିନ୍ନ ଚନ୍ଦ୍ର ଦାଶଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି ପୃ ୧୪୦ରୁ ଉଦ୍ଧୃତ)

ଏହି ଘୋଷଣା କରି ରାଜା ବ୍ୟାଘ୍ରଚର୍ମ ଦ୍ୱାରା ଆଚ୍ଛାଦିତ କାଠର ଆସନରେ ବସୁଥିଲେ । ରାଜାଙ୍କ ସିଂହାସନଙ୍କୁ 'ଆସନ୍ଦୀ' ବୋଲି କୁହାଯାଉଥିଲା । ଐତରେୟ ବ୍ରାହ୍ମଣ ଅନୁସାରେ ତାହା

'ଉଦୁମ୍ବର' କାଠରେ ତିଆରି ହେଉଥିଲା । ମାତ୍ର 'ଶତପଥ ବ୍ରାହ୍ମଣ' ଅନୁସାରେ ଏହା 'ଶବର' କାଠରେ ତିଆରି ହେଉଥିଲା । ଏହି ଆସନଟି 'ମୁଞ୍ଜା ଘାସ'ରେ ବୁଣି ତିଆରି କରାଯାଉଥିଲା । ଏହା ଉପରେ ବାଘ ଛାଲଟିଏ ବିଛା ଯାଉଥିଲା । ବାଘ ହେଉଛି ପଶୁମାନଙ୍କର ରାଜା । ରାଜ ସିଂହାସନକୁ ପ୍ରଭୁତ୍ୱର ମର୍ଯ୍ୟଦା ଦେବାପାଇଁ ତାହା ଉପରେ ବାଘ ଛାଲ ବିଛା ଯାଉଥିଲା । ଏହି 'ଆସନ୍ଦୀ' ବା ସିଂହାସନକୁ ସାରା ରାଷ୍ଟ୍ରର ପ୍ରତୀକ ବୋଲି ଧରାଯାଇଥାଏ । ତେଣୁ କୁହାଯାଏ 'ଆସନ୍ଦୀ' ବା ରାଜ ସିଂହାସନ ହେଉଛି ରାଷ୍ଟ୍ର ।(୨୪)

ରାଜାଙ୍କ ଲାଗି ଅଭିଷେକୋତ୍ସବ ଥିଲା ଅପରିହାର୍ଯ୍ୟ । ବିନା ଅଭିଷେକରେ କେହି ରାଜା ହୋଇ ପାରୁ ନଥିଲେ । କୁରୁ ପାଞ୍ଚାଳ ଅଞ୍ଚଳରେ କିପରି ରାଜତ୍ୱ ଚାଲୁଥିଲା ସେ ସଂପର୍କରେ ଐତରେୟ ବ୍ରାହ୍ମଣରେ ଉଲ୍ଲେଖ ଅଛି ଯେ କୁରୁ ପାଞ୍ଚାଳ ଦେଶରେ ରାଜତନ୍ତ୍ର ଶାସନ ଦୃଢ଼ ଭାବରେ ପ୍ରତିଷ୍ଠିତ ଥିଲା । ସେଠାରେ ରାଜପଦ ପାଇବାକୁ ହେଲେ ରାଜାମାନଙ୍କୁ ଅଭିଷିକ୍ତ ହେବାକୁ ପଡୁଥିଲା । କୁରୁ ପାଞ୍ଚାଳ ଏକ ଆର୍ଯ୍ୟଭୂମି ଥିଲା । ରାଜକୀୟ ବିଧି ବିଧାନ ଏଠାରେ ପ୍ରଚଳିତ ଥିଲା । ଏହା କେବଳ କୁରୁପାଞ୍ଚାଳ ପାଇଁ ନୁହେଁ ସମଗ୍ର ଦେଶପାଇଁ ଏହା ପ୍ରଚଳିତ ଥିଲା ।

ରାଜାଙ୍କ ଅଭିଷେକୋତ୍ସବ ପ୍ରାରମ୍ଭରେ ସବିତା, ଅଗ୍ନି, ସୋମ, ବୃହସ୍ପତି, ଇନ୍ଦ୍ର, ରୁଦ୍ର, ମିତ୍ର ଓ ବରୁଣ ଇତ୍ୟାଦି ଅଷ୍ଟ ଦେବତାଙ୍କ ଉଦ୍ଦେଶ୍ୟରେ 'ହବିର୍ଦ୍ଦାନ' କରାଯାଉଥିଲା ।(୨୫) ଏମାନଙ୍କୁ 'ଦେବାସୁ' ଅର୍ଥାତ୍ ଖୁବ୍ ଶୀଘ୍ର ପ୍ରାଣ ଦେବା ଦେବତା କୁହାଯାଏ । ଏମାନେ ସମସ୍ତେ ଜଣକ ପରେ ଜଣେ ଆସି ରାଜାଙ୍କ ଠାରେ ସେମାନଙ୍କର ଗୁଣକୁ ଭରି ଦେବାପାଇଁ ପ୍ରାର୍ଥନା କରାଯାଏ । ଶେଷରେ 'ଋତୁ' ବା ଚିରନ୍ତନ ନିୟମର ରକ୍ଷକ 'ବରୁଣ'ଙ୍କୁ ଆବାହନ କରାଯାଇଥାଏ । ବରୁଣ 'ଧର୍ମପତି' ହୋଇଥିବାରୁ ରାଜା ଧର୍ମ ପତି ଭାବରେ ଧର୍ମ ରକ୍ଷା କରି ରାଜ୍ୟ ଶାସନ କରନ୍ତୁ ବୋଲି ମନ୍ତ୍ର ବୋଲାଯାଇଥାଏ । ବୈଦିକ ସମାଜରେ ଧର୍ମ ଠାରେ ପ୍ରକୃତ ସାର୍ବଭୌମତ୍ୱ ନ୍ୟସ୍ତଥିଲା । ରାଜାଥିଲେ ଦଣ୍ଡଧାରୀ, ଯେ ଏହି ଧର୍ମକୁ ରକ୍ଷା କରୁଥିଲେ । ଦେବତାମାନଙ୍କୁ ପ୍ରାର୍ଥନା କରାଯାଇ କୁହାଯାଇଥାଏ ସେମାନେ ରାଜାଙ୍କୁ 'ମହତେ ଜନରାଜ୍ୟାୟ' ବା ମହାନ୍ 'ଜନରାଜ୍ୟ' ଲାଗି ସେମାନଙ୍କର ଶକ୍ତି ଅର୍ପଣ କରନ୍ତୁ । ଏହି ଜନରାଜ୍ୟ ଶବ୍ଦରୁ ଜଣାପଡେ ରାଜାଙ୍କର ସାର୍ବଭୌମତ୍ୱ ଲୋକମାନଙ୍କ ଉପରେ ଥିଲା ।

ରାଜାଙ୍କ ଅଭିଷେକ ଜଳ ରାଜ୍ୟର ଅଂଚଳରୁ ସଂଗୃହୀତ ହେଉଥିଲା । ସର୍ବମୋଟ ସତର ପ୍ରକାର ଜଳର ବ୍ୟବହାର ଏଥିପାଇଁ ହେଉଥିଲା । ଏହି ଜଳ ମଧ୍ୟରେ ନଦୀ ଜଳ, ପୁଷ୍କରିଣୀ ଜଳ, କୂପଜଳ, ଶିଶିର ଓ ସମୁଦ୍ର ଜଳ ଅନ୍ତର୍ଭୁକ୍ତ । ବିଭିନ୍ନ ସ୍ଥାନରୁ ସଂଗୃହୀତ ଜଳରେ ଅଭିଷିକ୍ତ ହେବାର ତାତ୍ପର୍ଯ୍ୟ ହେଉଛି ରାଜା ସାରା ରାଜ୍ୟ ସହିତ ଏକୀଭୂତ ହୋଇଥାନ୍ତି । ଏହି ଜଳ 'ଉଦୁମ୍ବର' କାଠରେ ତିଆରି ହୋଇଥିବା ଏକ ପାତ୍ରରେ ସଂଗୃହୀତ ହୋଇଥାଏ । ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳରେ ଥିବାବେଳେ 'ସରସ୍ୱତୀ' ନଦୀର ଜଳ ଏବଂ ଅନ୍ୟ ସ୍ଥାନରେ 'ଗଙ୍ଗା ନଦୀ'ର ଜଳ ପବିତ୍ର ଅଭିଷେକ ଜଳ ରୂପରେ ବ୍ୟବହୃତ ହେଲା । ରାଜାର ଦୃଢ଼ତା, ବୀରତ୍ୱ, ବାକ୍‌ଶକ୍ତି ନିମିତ୍ତ ବ୍ରାହ୍ମଣମାନେ ରାଜାଙ୍କୁ ସାତଟି ପବିତ୍ର ନଦୀ ଜଳରେ ସ୍ନାନ କରାଉଥିଲେ । ରାଜା ମଧ୍ୟ ବ୍ରତ ଆଦି ସକଳ ନିୟମକୁ ପାଳନ କରୁଥିଲେ । ପୁରୋହିତ ୧୯୦ ବିଶିଷ୍ଟ ସୁନା ଥାଳିରେ ଅଭିଷେକ କରାଇ ଶୁକ୍ଳ ଯଜୁର୍ବେଦର କେତେକ ମନ୍ତ୍ର ପାଠ

କରୁଥିଲେ । ତାହା ପରେ ରାଜା ରାଜପଦ ଲାଭ କରୁଥିଲେ । ପୁରୋହିତ ରାଜାଙ୍କୁ ନିରପେକ୍ଷ ବିଗ୍ରହ କରିବା ପାଇଁ ପ୍ରତିଜ୍ଞା ବଦ୍ଧ କରାଉଥିଲେ ।

ରାଜା ଯେତେବେଳେ ସିଂହାସନରେ ବସୁଥିଲେ ସେତେବେଳେ ତାଙ୍କ ହାତରେ ଗୋଟିଏ ପତ୍ର ଥିବା 'ପଳାଶ ଦଣ୍ଡ' ଧରାଇ ଦିଆଯାଉଥିଲା । ଏହାକୁ 'ମଣି' ବୋଲି କୁହାଯାଏ । ଏହା ପଦବୀର ପ୍ରତୀକ ଥିଲା । ଏହା ଥିଲା ଜନସାଧାରଣଙ୍କର ସାର୍ବଭୌମତ୍ୱର ପ୍ରତୀକ । ରାଜା ଅତ୍ୟାଚାରୀ ହେଲେ ତାହାକୁ ପୁଣି ସେମାନେ ଛଡାଇ ନେଉଥିଲେ । କିନ୍ତୁ କାଳକ୍ରମେ ରାଜପଦ ପୁରୁଷାନୁକ୍ରମିକ ହୋଇଯିବା ପରେ ଜନସାଧାରଣଙ୍କର ଏହି କ୍ଷମତା ଖର୍ବ ହୋଇଗଲା । ବୈଦିକ ସମାଜରେ ଗଣତନ୍ତ୍ର ଓ ରାଜତନ୍ତ୍ରର ଏକ ମିଶ୍ରିତ ଶାସନ ଥିଲା । ଏହି 'ମଣି' ଗ୍ରହଣ ସମୟରେ ରାଜା ଏକ ମନ୍ତ୍ର ଉଚ୍ଚାରଣ କରିଥାନ୍ତି । ଏହାର ଅର୍ଥ ହେଲା "ହେ କୁଶଳୀ ଶିଳ୍ପୀମାନେ, ରଥକାରମାନେ, କର୍ମକାରମାନେ ଓ ମନସ୍ୱୀ ନାଗରିକମାନେ ! ତୁମେମାନେ ଏହି ମଣି ଦେଇ ମୋତେ ସମର୍ଥନ କର । ହେ ରାଜାମାନେ , ହେ ଶାସକମାନେ, ସୂତମାନେ ଓ ଗ୍ରାମୀଣମାନେ , ମୁଁ ତୁମ୍ଭମାନଙ୍କର ସାହାଯ୍ୟ ପ୍ରାର୍ଥନା କରୁଅଛି । ହେ ପଳାଶ ପତ୍ର ଏଠାରେ ଯେଉଁମାନେ ଉପସ୍ଥିତ ଅଛନ୍ତି ମତେ ତୁମେ ସମସ୍ତଙ୍କର ସମର୍ଥନ ଆଣି ଦିଅ "।(୨୬) ଏଥିରୁ ମନେ ହୁଏ ରାଜା ଶାସନ ପାଇଁ ପ୍ରଜାମାନଙ୍କର ଏବଂ ରାଷ୍ଟ୍ରର ମୁଖ୍ୟ ଅଧିକାରୀ ମାନଙ୍କର ସାହାଯ୍ୟ, ସହଯୋଗ ଓ ସମର୍ଥନ କାମନା କରୁଥିଲେ । ଚକ୍ରବର୍ତ୍ତୀ ରାଜାଙ୍କ ପକ୍ଷରେ ଏମାନଙ୍କ ବ୍ୟତୀତ ଅଧୀନସ୍ଥ ରାଜାମାନଙ୍କର ସାହାଯ୍ୟ, ସମର୍ଥନ ଓ ସହଯୋଗ ଲୋଡୁଥିଲେ । ଏଥିରୁ ଅନୁମାନ କରାଯାଏ ରାଜା ବା ସମ୍ରାଟ କେହି ଜଣେ ଯଥେଚ୍ଛାଚାରୀ ହେବାର ଅବକାଶ ନଥିଲା ।

ଏହି ଅଭିଷେକ ରାଷ୍ଟ୍ରର ଏଗାର ଜଣ ପ୍ରଧାନ ଅଧିକାରୀଙ୍କ ସମ୍ମୁଖରେ ଅନୁଷ୍ଠିତ ହେଉଥିଲା । ଏମାନଙ୍କ ସହିତ ରାଜାଙ୍କୁ ପରିଚିତ କରାଇ ଦିଆଯାଉଥିଲା । ସେମାନେ ହେଲେ "ପୁରୋହିତ, ସେନାପତି, ରାଣୀ, ସୂତ, ଛତ୍ରୀ, ଗ୍ରାମଣୀ, ସଂଗ୍ରହୀତା, ଭାଗଦୁପ, ଅକ୍ଷବାପ, ଗୋବିକର୍ତ୍ତା ଓ ପଲ୍‌ଗଳ । ପ୍ରାଥମିକ ଅବସ୍ଥାରେ ଏମାନଙ୍କ ମଧ୍ୟରୁ ଜଣକୁ ରାଜା ଭାବରେ ନିର୍ବାଚନ କରାଯାଉଥିଲା । ମାତ୍ର ରାଜପଦ ପୁରୁଷାନୁକ୍ରମିକ ହେବାରୁ ଏମାନେ ପ୍ରଧାନ ଅଧିକାରୀ ଭାବରେ ଅଭିଷେକୋତ୍ସବରେ ଯୋଗ ଦେଉଥିଲେ । ଏଥିପାଇଁ ଏମାନଙ୍କୁ ରାଜ୍ୟକର୍ତ୍ତା ବୋଲି କୁହାଯାଉଥିଲା । ଏମାନଙ୍କୁ 'ରତ୍ନୀ' ବୋଲି ମଧ୍ୟ କୁହାଯାଉଥିଲା । ରାଜା ଥିଲେ ରାଜ୍ୟର ରତ୍ନ ସ୍ୱରୂପ । ଏମାନେ ଏହି ରତ୍ନର ରକ୍ଷକ ସ୍ୱରୂପ ଥିବାରୁ ଏମାନଙ୍କୁ 'ରତ୍ନୀ' କୁହାଯାଉଥିଲା । ରାଜସୂୟ ଯଜ୍ଞରେ ଗୋଟିଏ ପ୍ରକାର ହବିର୍ଦାନ କରାଯାଉଥିଲା । ଯାହାକୁ କୁହାଯାଉଥିଲା 'ରତ୍ନହର୍ବ' । ରାଜ୍ୟାଭିଷେକ ପୂର୍ବରୁ 'ରତ୍ନୀ' ଙ୍କ ଘରକୁ ଯାଇ ସେଠାରେ ଜଣେ ଜଣେ ଦେବତାଙ୍କୁ ଆବାହନ ପୂର୍ବକ ତାଙ୍କୁ ହବିର୍ଦାନ କରାଯାଉଥିଲା ।

ରାଜାଙ୍କ କ୍ଷମତାକୁ କିପରି ନିୟନ୍ତ୍ରିତ କରାଯାଉଥିଲା ତାହା ଅଥର୍ବ ବେଦର ଗୋଟିଏ ମନ୍ତ୍ରରେ ଦେଖିବାକୁ ମିଳେ । ସେଥିରେ ବର୍ଣ୍ଣିତ ହୋଇଛି "ହେ ରାଜା ତୁମେ ମଣିଷମାନଙ୍କ ଭିତରେ ବାଘ ସମାନ । ତୁମେ ବର୍ତ୍ତମାନ ସିଂହାସନରେ ବସିଛ । ତୁମ ଶକ୍ତି ବଳରେ ତୁମେ ତିନି ଦିଗକୁ ଜୟ କର । ସକଳ ପ୍ରଜା ତୁମକୁ ଗ୍ରହୁଁ ଥାନ୍ତୁ "।(୨୭) ରାଜାଙ୍କୁ ବାଘ ସହିତ ତୁଳନା କରାଯାଇଛି । ତା ସହିତ ପ୍ରଜାମାନେ ତାଙ୍କୁ ଗ୍ରହିଁଥାନ୍ତୁ ବୋଲି କୁହାଯାଇଛି ।

ଅଭିଷେକୋତ୍ସବ ରାଜାଙ୍କ ଲାଗି ଏକ ପ୍ରକାର ନୂତନ ଜନ୍ମ ସଦୃଶ । ଏହି ସମୟରେ ତାଙ୍କୁ ନୂଆ ପୋଷାକ ପତ୍ର ପିନ୍ଧାଇ ଦିଆଯାଉଥିଲା । ଏହାର ସନ୍ତାନ ଜନ୍ମ ସହ ସାଂକେତିକ ସମ୍ବନ୍ଧ ରହୁଥିଲା । 'ତାର୍ପ୍ୟ' ନାମକ ଯେ ଏକ ଅନ୍ତର୍ବାସ ପିନ୍ଧୁଥିଲେ । ତାହା ଥିଲା ସୂକ୍ଷ୍ମ ଚର୍ମ ପରଦାର ସାଙ୍କେତିକ । ପାଣ୍ଡ୍ୱନାମକ ପଶମ ତିଆଶି ଥିଲା ଜରାୟୁର ସାଂକେତିକ । ତାହାରି ଉପରେ ଯେଉଁ ଅଧିବାସ ବା ଉତ୍ତରୀୟଟି ପଡୁଥିଲା ତାହା ଥିଲା ଯୋନି ର ପ୍ରତୀକ । ମୁଣ୍ଡରେ ପିନ୍ଧୁଥିବା ମୁକୁଟକୁ କୁହାଯାଉଥିଲା 'ଉଷ୍ଣୀଷ' । ଏହା ଥିଲା ନାଭିର ପ୍ରତୀକ । ଏହି ପୋଷାକ ପିନ୍ଧିବା ପରେ ପୁରୋହିତ ତାଙ୍କ ହାତରେ ଗୋଟିଏ ଧନୁ ଓ ତିନୋଟି ତୀର ଧରାଇ ଦେଉଥିଲେ । ତଦ୍ୱାରା ସେ ବଳ ପାଉଥିଲେ । 'ଶତପଥ ବ୍ରାହ୍ମଣ'ରେ ଏହି ଧନୁକୁ ରାଜାଙ୍କ ବୀର୍ଯ୍ୟ ବୋଲି କୁହାଯାଇଛି ।(୨୮) ଶତପଥ ବ୍ରାହ୍ମଣର ଅନ୍ୟ ଏକ ସ୍ଥାନରେ କୁହାଯାଇଛି 'ରାଜା ଅଭିଷିକ୍ତ ହୋଇଯିବା ପରେ ଜନସାଧାରଣଙ୍କର ଉଭୟ ପ୍ରଭୁ ଓ ସନ୍ତାନ ହୋଇଯାଆନ୍ତି '।(୨୯) ରାଜା ପ୍ରଭୁପଣ ଜାହିର କରିବା ସଂଗେ ସଂଗେ ଜନ ସାଧାରଣଙ୍କ ସେବାରେ ବ୍ରତୀ ହୁଅନ୍ତି ।

ଅଭିଷେକୋତ୍ସବ ଶେଷରେ ରାଜା ଜନ୍ମଭୂମି ପ୍ରତି ଆନୁଗତ୍ୟ ପ୍ରକାଶ କରି ତାହାକୁ 'ମା' ବୋଲି ସଂବୋଧନ କରି ଏକ ମନ୍ତ୍ର ବୋଲିଥାନ୍ତି । ଏହାର ଅର୍ଥ ହେଲା "ଆଗୋ ପୃଥିବୀ, ତୁମେ ମୋର ମାଆ ସମାନ, ତୁମେ ମତେ ଆଘାତ ଦେବନାହିଁ କିମ୍ବା ମୁଁ ମଧ୍ୟ ତୁମକୁ ଆଘାତ ଦେବି ନାହିଁ । ମାଆ କଦାପି ପୁଅକୁ ଆଘାତ ଦିଏ ନାହିଁ । ପୁଅବି କଦାପି ମାଆକୁ ଆଘାତ ଦିଏ ନାହିଁ "।(୩୦) ଐତରେୟ ବ୍ରାହ୍ମଣରେ ବୈଦିକ କାଳରେ କରାଯାଇଥିବା ବହୁ ଅଭିଷେକୋତ୍ସବ କଥା ଉଲ୍ଲେଖ ଅଛି ଏବଂ କେଉଁ କେଉଁ ପୁରୋହିତ କେଉଁ ରାଜାଙ୍କୁ ଅଭିଷିକ୍ତ କରାଇଥିଲେ ତାହା ବର୍ଣ୍ଣିତ ହୋଇଛି । ଏହି ଅଭିଷେକୋତ୍ସବ ମାଧ୍ୟମରେ ଦେଶରେ ଏକ ଧର୍ମ ନିଷ୍ଠ, ଜନ ମଙ୍ଗଳ ରାଷ୍ଟ୍ର ପ୍ରତିଷ୍ଠିତ କରିବାପାଇଁ ରାଜଶକ୍ତି ଓ ପ୍ରଜାଶକ୍ତି ମିଳିତ ହେଉଥିଲେ ଏବଂ ପ୍ରଜାଶକ୍ତି ଯେ ରାଜଶକ୍ତି ଠାରୁ ଅଧିକତର ବଳବାନ ତାହା ସଚେତନ କରାଇ ଦିଆଯାଉଥିଲା ।

"ରାଜା ମଧ୍ୟ ଶାସନ ରକ୍ଷା ନିମିତ୍ତ ଇନ୍ଦ୍ର, ବୃହସ୍ପତି, ଅଗ୍ନି ଆଦି ଦେବତାଙ୍କୁ ପ୍ରାର୍ଥନା କରୁଥିଲେ । ବୃକ୍ଷଲତା, କୃଷିକର୍ମ ଓ ଦଣ୍ଡ ବିଧାନ ନିମିତ୍ତ ପଶୁପତି, ରୁଦ୍ର, ମିତ୍ର, ବରୁଣ, ସତ୍ୟ, ଧର୍ମ ଆଦି ଦେବତାଙ୍କୁ ପ୍ରାର୍ଥନା କରୁଥିଲେ । ରାଜା ଈଶ୍ୱର ସୃଷ୍ଟ ବୋଲି ବେଦରେ ଉଲ୍ଲେଖ ଅଛି । ରାଜା ବାଜପେୟ ଓ ରାଜସୂୟ ଯଜ୍ଞକରି ପ୍ରଜାପତି ସହିତ ସମାନ ହେବା କଥା ମଧ୍ୟ ବେଦରେ ଉଲ୍ଲିଖିତ ହୋଇଅଛି । ଶତପଥ ବ୍ରାହ୍ମଣରେ ରାଜା ପ୍ରଜାପତିଙ୍କ ଦୃଶ୍ୟମାନ ପ୍ରତିନିଧି ସ୍ୱରୂପ । ଯଦିଓ ରାଜା ବୈଦିକ ସାହିତ୍ୟରେ ଦେବତାର ପଦଲାଭ କରିଛି, ରାଜାର ମାନବତ୍ୱ ମଧ୍ୟ ବର୍ଣ୍ଣିତ ହୋଇଅଛି । ରାଜାକୁ ରାଜ୍ୟ ଅର୍ପଣ କରାଯାଉଥିଲା । ଏହା ଦାନ ସ୍ୱରୂପ ନୁହେଁ ସଂରକ୍ଷଣର ବସ୍ତୁ ସ୍ୱରୂପ ଥିଲା । ରାଜ୍ୟ ରାଜାର ଭୋଗ୍ୟ ବସ୍ତୁ ନୁହେଁ । କୃଷିର ଉନ୍ନତି, ପ୍ରଜାଙ୍କର ଭୌତିକ, ଆଧ୍ୟାତ୍ମିକ ଉନ୍ନତି ତଥା ରାଜ୍ୟର ସକଳ ଉନ୍ନତି ରାଜାର କର୍ତ୍ତବ୍ୟ ଥିଲା । ରାଜା ଥିଲା ଦଣ୍ଡଧାରୀ ଅଦଣ୍ଡ୍ୟ । ଦରିଦ୍ର, ବ୍ରାହ୍ମଣ, ରୋଗୀ, କ୍ଷୁଧାତୁରଙ୍କୁ ପାଳନ କରିବା ଥିଲା ରାଜାର ଧର୍ମ "। ତୈତ୍ତିରୀୟ ବ୍ରାହ୍ମଣ ଅନୁସାରେ ରାଜାଙ୍କର ମନ୍ତ୍ରି ମଣ୍ଡଳରେ ୧୨ ଜଣ ସଭ୍ୟ ଥିଲେ । ସେମାନେ ହେଲେ (୧)ପୁରୋହିତ, (୨) ରାଜନ୍ୟ,

(୩) ପରିଭୃତ, (୪) ମହିଷୀ, (୫) ସୂତ, (୬) ସେନାନୀ, (୭) କ୍ଷତ୍ରିୟ, (୮) କୋଷାଧ୍ୟକ୍ଷ, (୯) ଅକ୍ଷବାପ ( ଦ୍ୟୁତ କ୍ରୀଡାର ଅଧିକାରୀ) (୧୦) ଭାଗଦୁହଂ (କର ଗ୍ରହଣର ଅଧିକାରୀ) (୧୧) ଗ୍ରାମଣୀ (୧୨) ଆଖେଟ ସହକାରୀ (ମୃଗୟା କ୍ରୀଡାବିନୋଦରେ ସାହାଯ୍ୟକାରୀ) । 'ମୈତ୍ରାୟଣୀ' ସଂହିତା ଅନୁସାରେ ରାଜାର ମନ୍ତ୍ରୀମଣ୍ଡଳ ସଂଖ୍ୟା ଥିଲା ୩୭ ।

ସେ କାଳର ରାଜାମାନେ ବେଦ ବେଦାଙ୍ଗ ଅଧ୍ୟୟନ କରୁଥିଲେ । ଆଧ୍ୟାତ୍ମିକ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । ପୁରୋହିତ ରାଜାଙ୍କ ଉପରେ ପ୍ରଭାବ ବିସ୍ତାର କରୁଥିଲେ । ଧାର୍ମିକ କର୍ମାନୁଷ୍ଠାନରେ ରାଜା ପୁରୋହିତ ଠାରୁ ଉପଦେଶ ଗ୍ରହଣ କରୁଥିଲେ । ରାଜା ସହିତ ପୁରୋହିତ ମଧ୍ୟ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । "ଅଶ୍ୱଳାୟଣ ଗୃହ୍ୟ ସୂତ୍ରରେ" ଯୁଦ୍ଧ ଆରମ୍ଭରେ ପୁରୋହିତ ରାଜାର ପଶ୍ଚିମ ଭାଗରେ ଠିଆ ହୋଇ ରାଜାର ହାତକୁ ଧନୁ ଓ ଶର ଅର୍ପଣ କରିବା ସମୟରେ ଋଗ୍‌ବେଦର ମନ୍ତ୍ର ପାଠ କରୁଥିଲେ । ଘୋଡାକୁ, ରଥକୁ ଲକ୍ଷ୍ୟ କରି ପୁରୋହିତ ମନ୍ତ୍ର ପାଠ କରିଥାନ୍ତି । ସେ ସମୟରେ ଅନେକ ଶ୍ରୋତ୍ରୀୟ ବ୍ରାହ୍ମଣ ଥିଲେ ! ମାତ୍ର ରାଜ୍ୟରେ ଜଣେ ମାତ୍ର ପୁରୋହିତ ଥିଲେ । ବ୍ରାହ୍ମଣମାନେ ମଧ୍ୟ ପରିଷଦ ଗଠନ କରୁଥିଲେ । ରାଜ୍ୟକୁ ଦ୍ୱିଧାତ୍ମକ ପରିସ୍ଥିତିରେ ନିୟମ ଓ ଉପଦେଶ ପ୍ରଦାନ କରିବା ଥିଲା ଏହି ପରିଷଦର ମୁଖ୍ୟ ଉଦ୍ଦେଶ୍ୟ । ଏହିପରିଷଦ ଧାର୍ମିକ, ରାଜନୈତିକ ଏବଂ ବିଗ୍ରହ ବିଭାଗୀୟ ଉପଦେଶ ପ୍ରଦାନ କରୁଥିଲା" । (ଅଭିନ୍ନ ଚନ୍ଦ୍ର ଦାସଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି ପୃ ୧୪୦ ଓ ୧୪୧ ରୁ ଉଦ୍ଧୃତ)

**ଶାସନ ପଦ୍ଧତି –**

ବୈଦିକ ରାଜାମାନେ ଯେଉଁ ମାନଙ୍କ ସାହଯ୍ୟରେ ରାଜ୍ୟ ଶାସନ କରୁଥିଲେ ସେମାନେ ହେଲେ –

**(କ) ପୁରୋହିତ** – ରାଜ୍ୟର ସର୍ବପ୍ରଧାନ ଅଧିକାରୀ ହେଲେ ପୁରୋହିତ । ସେ ସବୁବେଳେ ଆଗରେ ଥାଆନ୍ତି ଏବଂ ରାଜାଙ୍କୁ ଉପଦେଶ ଦିଅନ୍ତି । ରାଜାଙ୍କ ସୈନ୍ୟ ବାହିନୀକୁ ନୈତିକ ବଳ ଦିଅନ୍ତି । ଆବଶ୍ୟକ ପଡିଲେ ସେ ଲଢେଇ କରନ୍ତି । ସେ ସବୁ ବିଦ୍ୟାରେ ଧୁରନ୍ଧର । ବଶିଷ୍ଠ ଓ ବିଶ୍ୱାମିତ୍ର ଇତ୍ୟାଦି ହେଉଛନ୍ତି ଏହି ଧରଣର ପୁରୋହିତ । ଶୁକ୍ଳ ଯଜୁର୍ବେଦରେ ପୁରୋହିତମାନଙ୍କର ଗୁଣ ସଂପର୍କରେ କୁହାଯାଇଛି "ମୋଠାରେ ବ୍ରାହ୍ମଣତ୍ୱ ଅଛି । ମୋଠାରେ ବଳ ଅଛି । ମୋଠାରେ ବୀର୍ଯ୍ୟ ଅଛି । ମୋଠାରେ ବୀରତ୍ୱ ଅଛି । ମୁଁ ଯାହାଙ୍କର ପୁରୋହିତ, ତାଙ୍କ ମନରେ ମୁଁ ବିଜୟୀ ହେବାର ଅଭୀପ୍ସା ଜାଗ୍ରତ କରାଇଛି "।(୩୧) ତେଣୁ ଏଥିରୁ ମନେ ହୁଏ ପୁରୋହିତ ଥିଲେ ଯୁଗପତ୍ ଆଧ୍ୟାତ୍ମିକ ଓ ଶାରିରୀକ ବଳର ପ୍ରତୀକ । ତାଙ୍କ ଯୋଗୁ ରାଜା ଉଭୟ ଭୌତିକ ଓ ଆଧାତ୍ମିକ କ୍ଷେତ୍ରରେ ବିଜୟୀ ହେଉଥିଲେ । ଯଜୁର୍ବେଦ ମତରେ ପୁରୋହିତ ଥିଲେ ରାଷ୍ଟ୍ରର ଜାଗ୍ରତ ପ୍ରହରୀ ।(୩୨) ପୁରୋହିତ ଦିନ ରାତି ଜାଗ୍ରତ ରହିଥାନ୍ତି । ରାଷ୍ଟ୍ରର ମଙ୍ଗଳ ଲାଗି ତାଙ୍କ ପ୍ରାଣ ଉତ୍ସର୍ଗୀକୃତ । ପୁରୋହିତଙ୍କ ବିନା ରାଜା ଧର୍ମ ରକ୍ଷା କରିପାରିବେ ନାହିଁ । ରାଜ୍ୟରୁ ପୁରୋହିତ ଗ୍ଲଲିଗଲେ ଧର୍ମ ଗ୍ଲଲିଯାଏ । ଋଗ୍‌ବେଦ ୫/୨ ର ଗୋଟିଏ ଗଳ୍ପରେ ପୁରୋହିତ ବୃଶ ଓ ଇକ୍ଷ୍ୱାକୁ ବଂଶର ରାଜା 'ତ୍ରୈବୃଷ୍ଣ'ଙ୍କ ବିଷୟରେ ଏହା ବର୍ଣ୍ଣିତ ହୋଇଅଛି । ବୈଦିକ ପୁରୋହିତ

ମନ୍ତ୍ର ବଳରେ ଖୁବ୍ ବଳୀୟାନ ଥିଲେ । ଦେବଗଣଙ୍କୁ ଆବାହନ କରିବାର ଅଧିକାର କେବଳ ତାଙ୍କରି ହିଁ ଥିଲା । ଯଜମାନଙ୍କୁ ସେ ଇପ୍ସିତ ଫଳ ପ୍ରଦାନ କରୁଥିଲେ । ରାଜା ମଧ୍ୟ ପୁରୋହିତଙ୍କର ଅନୁଗ୍ରହ ପ୍ରାର୍ଥୀଥିଲେ । ତାଙ୍କୁ ଦେବତାଙ୍କର ଆସନ ଅର୍ପଣ କରାଯାଇଥିଲା । ଐତରେୟ ବ୍ରାହ୍ମଣରେ ପୁରୋହିତଙ୍କୁ ରାଷ୍ଟ୍ରଃ ଗୋପ ବା ରାଷ୍ଟ୍ରର ପାଳନ କର୍ତ୍ତା ବୋଲି କୁହାଯାଇଛି । ଐତରେୟ ବ୍ରାହ୍ମଣ ମତରେ "ଯେଉଁ ରାଜାଙ୍କର ରାଷ୍ଟ୍ରର ପାଳନ କର୍ତ୍ତା ଭାବରେ ବିଦ୍ୱାନ ବ୍ରାହ୍ମଣ ପୁରୋହିତ ଅଛନ୍ତି ସେ (ପୁରୋହିତଙ୍କ) କାର୍ଯ୍ୟରେ ବୀରମାନଙ୍କୁ ଜିଣି ପାରନ୍ତି ଏବଂ ତାଙ୍କ ବଳରେ ବଳୀୟାନ ହୁଅନ୍ତି । ସମସ୍ତ ପ୍ରଜା ଏକ ମନରେ ତାଙ୍କ ଆଡକୁ ମୁହାଁଇ ଥାଆନ୍ତି ଏବଂ ତାଙ୍କ କଥା ଚିନ୍ତା କରିଥାନ୍ତି ।(୩୩) କେବଳ ରାଜ୍ୟ ଜିଣିବା ପାଇଁ ନୁହେଁ ପ୍ରଜାମାନଙ୍କ ମଧ୍ୟରେ ସଂହତି ସ୍ଥାପନ କରାଇ ରାଜାମାନଙ୍କ ପ୍ରତି ଆନୁଗତ୍ୟ ପ୍ରଦାନ କରାଇବାରେ ପୁରୋହିତମାନେ ଅଗ୍ରଣୀ ଭୂମିକା ଗ୍ରହଣ କରୁଥିଲେ "।

ପୁରୋହିତଙ୍କୁ ସମ୍ମାନ ଦେଖାଇଲେ ଦେବତାମାନେ ସନ୍ତୁଷ୍ଟ ହୁଅନ୍ତି ବୋଲି ଆର୍ଯ୍ୟ ରାଜାମାନଙ୍କର ବିଶ୍ୱାସ ଥିଲା । 'ଦାଶରାଜ୍ଞ' ଯୁଦ୍ଧରେ ରାଜା 'ସୁଦାସ' ତାଙ୍କର ପରିପନ୍ଥୀ ଦଶ ଜଣ ରାଜାଙ୍କ ଉପରେ ଯେଉଁ ବିଜୟ ହାସଲ କରିଥିଲେ ସେଥିରେ ବଶିଷ୍ଠଙ୍କର ନିଷ୍ଠାପର ଉଦ୍ୟମ ଥିଲା । ଏ ବିଜୟ ଖୁବ୍ ଆଶ୍ଚର୍ଯ୍ୟ ଜନକ ଥିଲା ।

**(ଖ) ସେନାପତି –** ପୁରୋହିତଙ୍କ ତଳକୁ ଦ୍ୱିତୀୟ 'ରତ୍ନୀ' ସେନାପତିଙ୍କ ସ୍ଥାନ ଥିଲା । ବହିଃଶତ୍ରୁର ଆକ୍ରମଣରୁ ରାଜ୍ୟକୁ ରକ୍ଷା କରିବା ସହିତ ଅନ୍ୟ ରାଜ୍ୟକୁ ଜୟ କରିବାରେ ରାଜାଙ୍କୁ ସାହାଯ୍ୟ କରୁଥିଲେ । ମନ୍ତ୍ରବଳ ଭଳି କ୍ଷତ୍ରବଳ ମଧ୍ୟ ରାଜ୍ୟରେ ଗୋଟିଏ ବଳ ସ୍ୱରୂପ ଥିଲା । ସେନାପତି ସେନାବାହିନୀର ଅଧିନାୟକ ଭାବରେ ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲେ ।

**(ଗ) ମହିଷୀ ବା ରାଣୀ –** ରାଣୀ କେବଳ ରାଜାଙ୍କ ସ୍ତ୍ରୀ ନଥିଲେ । ସେ 'ରତ୍ନୀ' ମାନଙ୍କ ମଧ୍ୟରୁ ଜଣେ ଥିବାରୁ ତାଙ୍କୁ ନିର୍ଦ୍ଦିଷ୍ଟ କର୍ମ କରିବାକୁ ପଡୁଥିଲା । ରାଜାଙ୍କର ଅନେକ ସ୍ତ୍ରୀଙ୍କ ମଧ୍ୟରୁ ଜଣକୁ ମହିଷୀ ବା ରାଣୀ ମର୍ଯ୍ୟାଦା ଦିଆଯାଉଥିଲା । କାଳକ୍ରମେ ତାଙ୍କୁ ପାଟରାଣୀ କୁହାଯାଉଥିଲା । ସେ ରାଜ କାର୍ଯ୍ୟରେ ସାହାଯ୍ୟ କରିବା ଲାଗି ନାନା ଶାସ୍ତ୍ର ଅଧ୍ୟୟନ ସହିତ ଯୁଦ୍ଧ ବିଦ୍ୟା ଶିକ୍ଷା କରୁଥିଲେ । ଋଗ୍ ବେଦରେ ଗୋଟିଏ ମନ୍ତ୍ରରେ ରାଜା "ଖେଳଙ୍କ ରାଣୀ ବିଶ୍ପଳାଙ୍କ ସଂପର୍କରେ କୁହାଯାଇଛି ଯେ ସେ ଜଣେ ବୀରା ରମଣୀ ଥିଲା । ଖେଳ ଦସ୍ୟୁମାନଙ୍କ ସହିତ ଯୁଦ୍ଧ କରୁ କରୁ ନିହତ ହୋଇଥିଲେ । ବିଶପଳା ଯୁଦ୍ଧରେ ନେତୃତ୍ୱ ନେଇ ଏହାକୁ ଖୁଲୁ ରଖିଥିଲେ । ତାଙ୍କର ଗୋଟିଏ ଗୋଡ କଟି ଯାଇଥିଲା । ଦେବ ବୈଦ୍ୟ ଅଶ୍ୱିନୀକୁମାର ତାଙ୍କ ଗୋଡରେ ଗୋଟିଏ ଲୁହା ଗୋଡ ଲାଗାଇଥିଲେ । ସେହି ଲୁହା ଗୋଡ ଲଗାଇ ଯୁଦ୍ଧ କରି ଦସ୍ୟୁମାନଙ୍କ ଉପରେ ବିଜୟିନୀ ହୋଇଥିଲେ ।(୩୪) ସେ ମଧ୍ୟ ଆଉ ଥରେ ଦସ୍ୟୁମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରିଥିଲେ ।(୩୫) ରାଣୀଙ୍କୁ ରାଜ୍ୟ ଶାସନର ଏକ ଅବିଚ୍ଛେଦ୍ୟ ଅଂଗ ଭାବରେ ଗ୍ରହଣ କରାଯାଉଥିଲା । ରାଜସୂୟ ଯଜ୍ଞ ଓ ଅଶ୍ୱମେଧ ଯଜ୍ଞରେ ରାଣୀଙ୍କ ଲାଗି କେତେକ ନର୍ଦ୍ଦିଷ୍ଟ ବିଧିବିଧାନ ଖଞ୍ଜା ଯାଉଥିଲା । ତାଙ୍କ ବିନା ଅନ୍ୟ କେହି ଏ କାର୍ଯ୍ୟ କରିପାରୁନଥିଲେ ।

(ଘ) **ସୂତ** – ସୂତ ଶବ୍ଦର ଅର୍ଥ ସାରଥି ବୋଲି କୁହାଯାଏ । କ୍ଷତ୍ରିୟ ପୁରୁଷ ଓ ବ୍ରାହ୍ମଣ ସ୍ତ୍ରୀ ଙ୍କ ମଧ୍ୟରେ ପ୍ରତିଲୋମ ବିବାହ ଫଳରେ ଯେଉଁ ସନ୍ତାନ ଜାତ ହେଉଥିଲା ସେ ସୂତ ନାମରେ ଖ୍ୟାତ ହେଉଥିଲା ।(୩୬) ସୂତମାନେ ବର୍ଣ୍ଣ ଶଙ୍କର ହୋଇଥିବାରୁ ବେଦପାଠର ଅଧିକାରରୁ ବଞ୍ଚିତ ହେଉଥିଲେ । କିନ୍ତୁ ବେଦ ଅତିରିକ୍ତ ଅନ୍ୟ ସବୁ ବିଦ୍ୟାରେ ସେମାନେ ଧୂରୀଣ ଥିଲେ । ବୈଦିକ କାଳରେ ସୂତ ପଦବୀ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ରାଜ୍ୟର ଭଲ ମନ୍ଦ ସମସ୍ତ ଘଟଣା ଲିପିବଦ୍ଧ କରିବାର ଦାୟିତ୍ୱ ସେମାନଙ୍କର ଥିଲା । ଅତଏବ ଏଥିରୁ ଜଣାଯାଏ ଯେ ସୂତ ଥିଲେ ରାଷ୍ଟ୍ରୀୟ ଅଭିଲେଖାଗାରର ମୁଖ୍ୟ ଅଧିକାରୀ ।

(ଙ) **ଛତ୍ରୀ** – ରାଜଛତ୍ରର ଦାୟିତ୍ୱରେ ଥିବା ଅଧିକାରୀଙ୍କୁ 'ଛତ୍ରୀ' କୁହାଯାଉଥିଲା । ସିଂହାସନରେ ହେଉ ବା ଯୁଦ୍ଧ କ୍ଷେତ୍ରରେ ହେଉ ସର୍ବଦା ରାଜାଙ୍କ 'ଛତ୍ର' ଟଣାହୋଇ ରହୁଥିଲା । ଯୁଦ୍ଧ କ୍ଷେତ୍ରରେ ରାଜା ସମସ୍ତଙ୍କ ଆଗରେ ଗ୍ଲୁଥିବାରୁ ତାଙ୍କ 'ଛତ୍ର' ଦେଖି ସୈନ୍ୟମାନେ ଉତ୍ସାହ ଓ ମନୋବଳ ପାଉଥିଲେ । ତେଣୁ ଏ ଅଧିକାରୀଙ୍କ ଦାୟିତ୍ୱ ଗୁରୁତ୍ୱପୂର୍ଣ୍ଣ ଥିଲା ।

(ଚ) **ଗ୍ରାମଣୀ** – ଗାଁ ଓ ସହରର ମୁଖିଆଙ୍କୁ ଗ୍ରାମଣୀ କୁହାଯାଉଥିଲା । ବୈଦିକ କାଳରେ ଗାଁ ଓ ସହର ମଧ୍ୟରେ କିଛି ପ୍ରଭେଦ ନଥିଲା । ରାଜାଙ୍କ ରାଜଧାନୀରେ ସହର ଗଢି ଉଠୁଥିଲା । ସେତେବେଳେ ସହର କହିଲେ ରାଜାଙ୍କ ରାଜଧାନୀକୁ ବୁଝାଉଥିଲା । ବୈଦିକ କାଳରେ ରାଜ୍ୟର ଅର୍ଥନୀତି କୃଷିଭିତ୍ତିକ ଥିଲା । ତେଣୁ ଗ୍ରାମ୍ୟ ଶାସନ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହି ଦୃଷ୍ଟିରୁ ପ୍ରଜାମାନଙ୍କର ପ୍ରତିନିଧି ହିସାବରେ ଗ୍ରାମଣୀ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଅଧିକାର କରୁଥିଲା ।

(ଛ) **ସଂଗ୍ରହୀତା** – ସଂଗ୍ରହୀତା ହେଉଛନ୍ତି ଆଧୁନିକ ଅର୍ଥମନ୍ତ୍ରୀଙ୍କ ସହିତ ତୁଳନୀୟ । ଏହାଙ୍କର ଅନ୍ୟନାମ ଥିଲା 'ସନ୍ନିଧାତୀ' । ସେ ରାଷ୍ଟ୍ରର ଅର୍ଥ ଦାୟୀତ୍ୱରେ ଥିଲେ । ଏ ରାଷ୍ଟ୍ରର ମୁଖ୍ୟ ରାଜକୋଷ ଅଧିକାରୀ ଥିଲେ ।

(ଜ) **ଭାଗଦୁଘ** – ରାଜସ୍ୱ ବିଭାଗର ମୁଖ୍ୟଙ୍କୁ 'ଭାଗଦୁଘ' ବୋଲି କୁହାଯାଉଥିଲା । ସକାଳ ପ୍ରକାର ରାଜସ୍ୱ ଦାୟିତ୍ୱ ୟାଙ୍କ ଉପର ନ୍ୟସ୍ତ ଥିଲା । ସେତେବେଳେ ଉତ୍ପନ୍ନ ଫସଲର ଏକ ଷଷ୍ଠାଂଶ ରାଜାଙ୍କୁ ଦିଆଯାଉଥିଲା । ସେଥିପାଇଁ ରାଜାଙ୍କୁ 'ଷଡଭାଗଂ ଭୃତକ' ବା ପ୍ରଜାଙ୍କ ଠାରୁ ଏକ ଷଷ୍ଠାଂଶ କର ନେଇ ବଞ୍ଚିବା ଲୋକ ବୋଲି କୁହାଯାଉଥିଲା । ଏହି ରାଜସ୍ୱର ଦାୟିତ୍ୱରେ 'ଭାଗଦୁଘ' ରହୁଥିଲେ ।

(ଝ) **ଅକ୍ଷବାପ** – ବୈଦିକ କାଳରେ ଅକ୍ଷକ୍ରୀଡା ବା ପଶାଖେଳ ଖୁବ୍ ପ୍ରାଧାନ୍ୟ ଲାଭ କରିଥିଲା । ତାହାକୁ ନିୟନ୍ତ୍ରିତ କରିବା ପାଇଁ ଜଣେ ମୁଖ୍ୟ ଅଧିକାରୀ ରହୁଥିଲେ । ତାହାଙ୍କୁ କୁହାଯାଉଥିଲା 'ଅକ୍ଷବାପ' । ବୈଦିକ କାଳରେ ପଶାଖେଳ ଖୁବ୍ ଲୋକପ୍ରିୟ ଥିଲେ ମଧ୍ୟ ବେଦରେ ଅନେକତ୍ର ଏହାର ନିନ୍ଦା କରାଯାଇଛି । ମାତ୍ର ବୈଦିକ ଶାସନ ସଂସ୍ଥାରେ 'ଅକ୍ଷବାପ' ଥିଲେ ମୂଲ୍ୟବାନ ବସ୍ତୁ ରଖାଯାଉଥିବା ଭଣ୍ଡାର ଗୁଡିକର ପ୍ରଧାନ ଅଧିକାରୀ ।

(ଞ) **ଗୋବିକର୍ତ୍ତା** – ଜଙ୍ଗଲ ବିଭାଗରେ ମୁଖ୍ୟ ଅଧିକାରୀଙ୍କୁ କୁହାଯାଉଥିଲା 'ଗୋବିକର୍ତ୍ତା' । ଜଙ୍ଗଲ ଓ ଜଙ୍ଗଲରେ ଥିବା ଜୀବ ଜନ୍ତୁମାନଙ୍କର ସୁରକ୍ଷା ଥିଲା ଏମାନଙ୍କର ଦାୟିତ୍ୱ ।

**(ଟ) ପଲ୍‌ଗଳ –** 'ପଲ୍‌ଗଳ' ଥିଲେ ସାଧାରଣ ପ୍ରଜାମାନଙ୍କର ପ୍ରତିନିଧି । ପ୍ରଜାମାନଙ୍କ ପାଖକୁ ରାଜାଙ୍କ ଆଦେଶ ନେବାକୁ ଯେଉଁ କର୍ମଚାରୀମାନେ ନିଯୁକ୍ତ ହୋଇଥିଲେ ସେମାନଙ୍କର ମୁଖ୍ୟ ଥିଲେ 'ପଲ୍‌ଗଳ' । ଏ ନାଲି ପଗଡି ପିନ୍ଧୁଥିଲେ ବୋଲି ବେଦରେ ବର୍ଣ୍ଣନା କରାଯାଇଛି ।

ଏଥିରୁ ଅନୁମିତ ହୁଏ ବୈଦିକ କାଳରେ ମଧ୍ୟ ଅମଲାତନ୍ତ୍ର ପ୍ରତିଷ୍ଠିତ ହୋଇଥିଲା ଏବଂ ଶାସନ ସଂସ୍ଥାରେ ବିଭିନ୍ନ ବିଭାଗ ସୃଷ୍ଟି ହୋଇ ଜଣେ ଜଣେ ଅଧିକାରୀଙ୍କ ଦାୟିତ୍ୱରେ ରଖାଯାଉଥିଲା । ସେମାନେ ଖୁବ୍ ମର୍ଯ୍ୟାଦାପୂର୍ଣ୍ଣ ଆସନ ଅଧିକାର କରିଥିଲେ ଏବଂ ସେମାନଙ୍କ ବିନା ଅନୁମୋଦନରେ ରାଜା ନିର୍ବାଚିତ ହୋଇ ପାରୁନଥିଲେ ।

**ସଭା ଓ ସମିତି –** ବୈଦିକ ସାହିତ୍ୟରେ ବର୍ଣ୍ଣନା ହୋଇଛି ରାଜାଙ୍କୁ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଦୁଇଟି ସଂଘ ଥିଲା । ଗୋଟିକର ନାମ 'ସମିତି' ଓ ଅପରଟିର ନାମ ଥିଲା 'ସଭା' । ସମିତି ହେଲା 'ବିଶଃ' ବା ପ୍ରଜାମାନଙ୍କର ଏକ ସଂଘ । ଏହା ରାଷ୍ଟ୍ରୀୟ ଜୀବନ ସଂବନ୍ଧୀୟ ସାର୍ବଜନୀନ କାର୍ଯ୍ୟାବଳୀ ଦେଖା ଶୁଣା କରୁଥିଲା । ଏହା ଦ୍ୱାରା ରାଜା ନିର୍ବାଚିତ ହେଉଥିଲେ ଏବଂ ପ୍ରଜା ବିରୋଧି କାର୍ଯ୍ୟ କଲେ ବିତାଡିତ ହେଉଥିଲେ । ଏହି 'ସମିତି'ର ସଭ୍ୟମାନଙ୍କ ଠାରୁ ସାର୍ବଭୌମତ୍ୱର ପ୍ରତୀକ ସ୍ୱରୂପ 'ମଣି' ଗ୍ରହଣ କରୁଥିଲେ । ବହୁ ବର୍ଗର ଲୋକଙ୍କ ସମାଗମରୁ ଏହା ପ୍ରଜାମାନଙ୍କର ଏକ ପ୍ରତିନିଧି 'ସଭା' ବୋଲି କୁହାଯାଉଥିଲା ।

ସମିତିକୁ ଛାଡି ପ୍ରବୀଣ ଜ୍ଞାନୀମାନଙ୍କର ଆଉ ଗୋଟିଏ ସଂଘ ଥିଲା । ଯାହାକୁ କୁହାଯାଉଥିଲା 'ସଭା' । ସମସ୍ତେ ସଭାରେ ଆସନ ପାଇବାର ଯୋଗ୍ୟ ହେଉ ନଥିଲେ । କେବଳ ପଣ୍ଡିତ ଓ ଜ୍ଞାନୀମାନଙ୍କୁ ଏହି ମର୍ଯ୍ୟାଦା ମିଳୁଥିଲା । ସେଥିପାଇଁ ଶୁକ୍ଳ ଯଜୁର୍ବେଦରେ ଯୁବକଙ୍କୁ 'ସଭେୟ' ବା ସଭାର ଯୋଗ୍ୟ ହେବାପାଇଁ ପରାମର୍ଶ ଦିଆଯାଇଛି ।(୩୭) ମୈତ୍ରାୟଣୀ ସଂହିତାରୁ ଜଣାପଡେ 'ସ୍ତ୍ରୀମାନେ ସଭାରେ ଯୋଗ ଦାନ କରିବାର ସୁବିଧାରୁ ବଞ୍ଚିତ ଥିଲେ' । ଯଜୁର୍ବେଦ ସଂହିତାରେ 'ସଭାକୁ ଗ୍ରାମ୍ୟ ବିବାଦର ବିଚାରାଳୟ ରୂପେ ଗ୍ରହଣ କରାଯାଇଛି '। ଏଥିରୁ ଜଣାଯାଏ ସଭାରେ ରାଜନୈତିକ ଆଲୋଚନା ଅପେକ୍ଷା ବିଚାର କାର୍ଯ୍ୟ କରାଯାଉଥିଲା । ସାଧାରଣତଃ ସଭା ଏକ ଉଚ୍ଚ ନ୍ୟାୟପାଳିକା ସଂସ୍ଥା ଥିଲା ଏବଂ ଏହାର ପରାମର୍ଶ ଅନୁସାରେ ରାଜା ନ୍ୟାୟ ଶାସନ କରୁଥିଲେ । ସଭା ଓ ସମିତି ମଧ୍ୟରେ ଅଳ୍ପ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସଭାରେ ବ୍ରାହ୍ମଣ ଓ ମଘବାନ (ଧନୀ) ବ୍ୟକ୍ତିମାନେ ଅଂଶ ଗ୍ରହଣ କରୁଥିବା ବେଳେ 'ସମିତି'ରେ ପ୍ରାୟ ସାଧାରଣ ବ୍ୟକ୍ତି ଭାଗ ନେଉଥିଲେ । 'ସଭା'ରେ ରାଜ୍ୟର ବୃଦ୍ଧ ବ୍ୟକ୍ତିମାନେ ସ୍ଥାନ ଗ୍ରହଣ କରୁଥିଲେ । ( ନାସାସଭା ଯତ୍ର ନସନ୍ତି ବୃଦ୍ଧାଃ, ନାସାସଭା ଯତ୍ର ନସନ୍ତି ସଚ୍ଛାଃ) ସଭା ଉଚ୍ଚସ୍ତରର ନ୍ୟାୟାଳୟ କାର୍ଯ୍ୟ କରୁଥିବା ବେଳେ, ନିୟମ ପ୍ରଣୟନ ସମିତିର ମୁଖ୍ୟ କର୍ତ୍ତବ୍ୟ ଥିଲା ।

ଅଥର୍ବବେଦର ଗୋଟିଏ ମନ୍ତ୍ରରେ 'ସଭା ଓ ସମିତି'କୁ ପ୍ରଜାପତିଙ୍କ ଦୁଇ ଝିଅ ବୋଲି କୁହାଯାଇଛି ।(୩୮) ରାଜା ସ୍ୱୟଂ ସମିତିର ବୈଠକରେ ଉପସ୍ଥିତ ରହୁଥିଲେ ମଧ୍ୟ ଏହି ବୈଠକରେ ସଭାପତିତ୍ୱ କରୁ ନଥିଲେ । ଆଉ ଜଣେ ବ୍ୟକ୍ତି ସଭାପତିତ୍ୱ କରୁଥିଲେ । ଯାହାଙ୍କୁ କୁହାଯାଏ 'ଈଶାନ' । ଯଜୁର୍ବେଦ ସଂହିତାରେ ସଭାପତି ଶବ୍ଦର ଓ ତୈତ୍ତିରୀୟ ବ୍ରାହ୍ମଣ ଗ୍ରନ୍ଥରେ ସଭାପାଳ ଶବ୍ଦ ବ୍ୟବହୃତ

ହୋଇଛି । କେତେକ ଗବେଷକ ଏହି ଦୁଇଟି ଶବ୍ଦ ସଭାଗୃହର ପର୍ଯ୍ୟବେକ୍ଷକ ଅର୍ଥରେ ବ୍ୟବହୃତ ହୋଇଥାଇପାରେ ବୋଲି କହିଅଛନ୍ତି । ରାଜାଙ୍କୁ ସଭାପତିଙ୍କ ଠାରୁ ନିମ୍ନତର ଆସନ ଦିଆଯାଉଥିଲା । ଏହା ଦ୍ୱାରା ରାଜାଙ୍କ କ୍ଷମତାକୁ ସଂକୁଚିତ କରାଯାଇ ପ୍ରକୃତ କ୍ଷମତା ପ୍ରଜାମାନଙ୍କ ଠାରେ ପ୍ରଦାନ କରାଯାଉଥିଲା । ସେ ଯାହାହେଉ ରାଜାଙ୍କ ପାଇଁ ସମିତିରେ ଉପସ୍ଥିତ ରହିବା ଥିଲା ବାଧ୍ୟତାମୂଳକ । ସେଥିପାଇଁ ଋଗ୍‌ବେଦରେ କୁହାଯାଇଛି "ସତ୍ୟନିଷ୍ଠ ରାଜା ସମିତିକୁ ଯାଇଥାନ୍ତି । ସମିତିକୁ ଲଘି ଯିବାର ଶକ୍ତି ରାଜାଙ୍କର ନଥିଲା"। (୩୯) ସମିତିର ଏହି କ୍ଷମତା ପ୍ରସଙ୍ଗରେ ଅଥର୍ବ ବେଦରେ କୁହାଯାଇଛି ଏହାକୁ (ରାଜାଙ୍କୁ) ସମିତି ଗ୍ରହୁଁ ନାହିଁ ।(୪୦) ଏଥିରୁ ଅନୁମିତ ହୁଏ ରାଜାଙ୍କର କର୍ତ୍ତୃତ୍ୱ 'ସମିତି'ରେ ଇଛାଧୀନ ଥିଲା । ଉପନିଷଦ୍ ଯୁଗରେ ମଧ୍ୟ ସମିତିର କର୍ତ୍ତୃତ୍ୱ ଅଧିକ ଥିଲା ଏବଂ ରାଜା ସମିତିର ଉପସ୍ଥିତ ରହୁଥିଲେ । ବୈଦିକ ସମିତିରେ ରାଷ୍ଟ୍ର ସମ୍ବନ୍ଧୀୟ ପ୍ରସଙ୍ଗ ଗୁଡିକ ସହିତ ଆଧ୍ୟାତ୍ମିକ ବିଷୟବସ୍ତୁ ଉପରେ ମଧ୍ୟ ବିଗ୍ରହ ବିମର୍ଷ ହେଉଥିଲା ।(୪୧)

ସମିତିର ନିଷ୍ପତ୍ତି ସର୍ବ ସମ୍ମତିକ୍ରମେ ଗୃହୀତ ହେଉଥିଲା । ସମିତିର ସହମତି ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ ଜଣେ ଆର୍ଯ୍ୟ ଋଷି କହିଛନ୍ତି 'ସମିତିର ନୀତି ଏକ ହେଉ, ନିଷ୍ପତ୍ତି ଏକ ହେଉ । ଏମାନଙ୍କର ( ସମିତି ସଭ୍ୟମାନଙ୍କର) ମନ ଏକ ହେଉ' ।(୪୨) କେବଳ ସଭ୍ୟ ମାନଙ୍କ ମଧ୍ୟରେ ନୁହେଁ ରାଷ୍ଟ୍ରର ମଙ୍ଗଳ ପାଇଁ ରାଜା ଓ ସମିତି ମଧ୍ୟରେ ମଧ୍ୟ ସହମତି ଅଣାଯାଉଥିଲା । ଏଥିରୁ ଅନୁମିତ ହୁଏ ସମିତିର ସର୍ବ ସମ୍ମତି କ୍ରମେ ନିଷ୍ପତ୍ତି ଅଣାଯିବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ସମିତି ଭଳି ସଭା ମଧ୍ୟ ଏକ ନିର୍ବାଚିତ ପ୍ରତିନିଧି ସଂସ୍ଥା । କେତେକ ପଣ୍ଡିତଙ୍କ ମତରେ ଋଗ୍‌ବେଦର ସୃଷ୍ଟିର ଶେଷ ଆଡକୁ ସଭାର ସୃଷ୍ଟି ହୋଇଥିଲା ।(୪୩)

ବିଗ୍ରହ ଆଲୋଚନାର ପବିତ୍ରତା ପାଇଁ ଅଗ୍ନି ଦେବଙ୍କୁ ଏଠାରେ ସଂସ୍ଥାପିତ କରାଯାଉଥିଲା । ଏହି ଅଗ୍ନିଙ୍କୁ କୁହା ଯାଉଥିଲା 'ସଭ୍ୟ ବା ସଭାସ୍ଥ'। ଅଗ୍ନି ଦେବତାଙ୍କୁ ସାକ୍ଷୀ ରଖି ସଭାର ବିବରଣୀ ସମାହିତ ହେଉଥିଲା ।(୪୪) ସଭାର ନିଷ୍ପତ୍ତି ଥିଲା ଅଲଂଘନୀୟ ଏବଂ ସେଥି ପାଇଁ ଏହାର ଆଉ ଗୋଟିଏ ନାମ ଥିଲା 'ନରିଷ୍ଠା' ବା 'ଅଜେୟା' । ଏହା ଚୂଡାନ୍ତ ନ୍ୟାୟପାଳିକା ସଂସ୍ଥା ଥିବାରୁ ଏଥିରୁ ଅଭିଯୁକ୍ତ ବ୍ୟକ୍ତି ମୁକ୍ତି ପାଇବା ଏକ ପରମ ସୌଭାଗ୍ୟ ଥିଲା । ସଭା ପାଖରୁ ମୁକୁଳି ଯାଇ ଭଲ ନାଁ ନେଇ ଲୋକ ଫେରି ଆସିଲେ ତାର ବନ୍ଧୁମାନେ ଆନନ୍ଦ ଅନୁଭବ କରିଥାନ୍ତି ।(୪୫)

ସଭା ସମିତିର ସଭ୍ୟମାନଙ୍କ ଲାଗି ସ୍ୱତନ୍ତ୍ର ପୋଷାକ ପିନ୍ଧିବାର ବ୍ୟବସ୍ଥା ଥିଲା । 'ଈଶାନ' ନାମରେ ଖ୍ୟାତ ଥିବା ସଭାପତିଙ୍କୁ ଖୁବ୍ ମର୍ଯ୍ୟଦା ଦିଆଯାଉଥିଲା । ରାଜା ସମେତ ସମସ୍ତେ ସମ୍ମାନ ଦେଉଥିଲେ । 'ରୁଦ୍ର ସୂକ୍ତ'ରେ ସଭା ଓ ସଭାର ସଭାପତିଙ୍କ ଆଗରେ ମୁଣ୍ଡ ନୁଆଁଇବାର ଉପଦେଶ ଦିଆଯାଇଛି । ବୈଦିକ ଯୁଗର ରାଜ୍ୟ ଶାସନ ଧର୍ମ ମାର୍ଗରେ ଚାଲୁଥିଲା । 'ପାରସ୍କର ଗୃହ୍ୟ ସୂତ୍ର'ରେ ସଭାକୁ 'ନାଦି' ବୋଲି କୁହାଯାଇ ତାହା ଦ୍ୱାରା ଧର୍ମ ନିରୂପଣ କାର୍ଯ୍ୟ କରାଯାଉଥିବା କଥା କୁହାଯାଇଛି ।(୪୬) ଏଥିରୁ ଅନୁମିତ ହୁଏ ବୈଦିକ ସଭା ଥିଲା ଉଭୟ ନ୍ୟାୟପାଳିକା ଓ ଧର୍ମପାଳିକା ସଂସ୍ଥା । ବୈଦିକ ସଂହିତା ଓ ସଂହିତୋତ୍ତର ସାହିତ୍ୟରେ 'ସଭା' ବିଷୟ ବାରମ୍ବାର ଉଲ୍ଲିଖିତ ହୋଇଅଛି ।

ବୈଦିକ ସଭା ଓ ସମିତିକୁ ଛାଡି ଆଉ ଏକ ତୃତୀୟ ସଂସ୍ଥା ଥିଲା । ଯାହାକୁ କୁହାଯାଉଥିଲା 'ବିଦଥା' । ଏଥିରେ ସାଧାରଣତଃ ଧାର୍ମିକ ବିଷୟ ଓ ଯୁଦ୍ଧ ସଂପର୍କୀୟ ବିଗ୍ଭର ଆଲୋଚନା କରାଯାଉଥିଲା ।(୪୭) 'ବିଦଥା'ର ପରାମର୍ଶରେ ଯୁଦ୍ଧ ନିର୍ବାହ କରାଯାଉଥିବାରୁ ଏଥିରେ ବିଜୟ ଲାଭ କରିବା ରାଜାଙ୍କ ପକ୍ଷରେ ସହଜ ହେଉଥିଲା । ଏହିପରି ଭାବରେ ରାଜାଙ୍କର ଅସ୍ତ୍ର ଶକ୍ତିକୁ ମଧ୍ୟ ପ୍ରଜାମାନେ ନିୟନ୍ତ୍ରିତ କରିଥିଲେ । ଫଳରେ 'ବୈଦିକ ସମିତି ଓ ସଭା' ଲୋକପ୍ରିୟ ଗଣତାନ୍ତ୍ରିକ ସଂସ୍ଥା ହେବା ସଂଗେ ସଂଗେ ନିଜର ସାର୍ବଭୌମତ୍ୱ ରକ୍ଷାକରି ଦେଶରେ ଧର୍ମନିଷ୍ଠ ଓ ଜନମଙ୍ଗଳ ଶାସନ ପ୍ରତିଷ୍ଠା କରିବା ପାଇଁ ରାଜାଙ୍କୁ ସୁପରାମର୍ଶ ଦେବାରେ ସମର୍ଥ ହୋଇ ପାରିଥିଲା । ଆଉ ମଧ୍ୟ ଏହି ସଂସ୍ଥା ଦ୍ୱୟ ରାଜାଙ୍କୁ ସବୁବେଳେ ସଚେତନ କରାଇ ଦେଉଥିଲା ସେ କେବଳ ଶାସକ ନୁହଁନ୍ତି, ସେ ମଧ୍ୟ ହେଉଛନ୍ତି ଧର୍ମ ନୀତି ଦ୍ୱାରା ଶାସିତ । ( ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ପଞ୍ଚମ ଖଣ୍ଡ-ବୈଦିକ ପର୍ବ-ଚତୁର୍ଥ ଭାଗ ୮୩ ପୃଷ୍ଠାରୁ ଉଦ୍ଧୃତ) ।

**ରାଜଯଜ୍ଞ –** ରାଜାଙ୍କ ସିଂହାସନ ଆରୋହଣ ସହିତ କେତେକ ଯଜ୍ଞ ବିଧାନ ସଂପୃକ୍ତ ଥିଲା । ସେଗୁଡିକ ହେଲା – "ବାଜପେୟ, ରାଜସୂୟ, ଅଶ୍ୱମେଧ ଯଜ୍ଞ" ଇତ୍ୟାଦି । ଋଗ୍‌ବେଦର ପ୍ରାଥମିକ କାଳରେ ଏହି ଯଜ୍ଞ ବିଧାନର ସେପରି କିଛି ବିଧିବଦ୍ଧତା ନଥିଲା । 'ବ୍ରାହ୍ମଣ ଯୁଗ' ବେଳକୁ ଏହା ଏକ ବିଧିବଦ୍ଧ ଅନୁଷ୍ଠାନ ରୂପେ ପରିଣତ ହୋଇ ପାରିଥିଲା । ତେଣୁ କୌଣସି ରାଜା ଓ ସମ୍ରାଟ ଏହି ବ୍ୟବସ୍ଥାର ଉଲଙ୍ଘନ କରିପାରୁ ନଥିଲେ । 'ଗୋପଥ ବ୍ରାହ୍ମଣ' ଅନୁସାରେ ରାଜସୂୟ ଯଜ୍ଞ କରୁଥିବା ରାଜା 'ଏକରାଟ୍', ବାଜପେୟ ଯଜ୍ଞ କରୁଥିବା ରାଜା 'ସମ୍ରାଟ', ଅଶ୍ୱମେଧ ଯଜ୍ଞ କରୁଥିବା ରାଜା 'ସ୍ୱରାଟ୍' ପୁରୁଷ ମେଧ ଯଜ୍ଞ କରୁଥିବା ରାଜା 'ବିରାଟ' ଏବଂ ସର୍ବମେଧ ଯଜ୍ଞ କରୁଥିବା ରାଜ 'ସର୍ବରାଟ୍' ନାମରେ ପ୍ରସିଦ୍ଧି ଲାଭ କରୁଥିଲେ । ସ୍ୱରାଜ୍ୟ , ବୈରାଜ୍ୟ, ରାଜ୍ୟ, ଅଧିରାଜ୍ୟ ଆଦି ଶବ୍ଦର ପ୍ରୟୋଗରୁ ସେ କାଳରେ ସର୍ବତନ୍ତ୍ର, ସ୍ୱତନ୍ତ୍ର, ସ୍ୱାଧିପତ୍ୟ, ଆଦି ରାଜ୍ୟ ଥିବା ସୂଚିତ ହୁଏ ।

ଏହି ଯଜ୍ଞ ଗୁଡିକର ପ୍ରଭାବ ସୁଦୂର ପ୍ରସାରୀ ଥିଲା । ଏହା ଫଳରେ ରାଜାଙ୍କର ପ୍ରଭୁତ୍ୱ ବଢିଥିଲା ଏବଂ ଆଦିମ ବୈଦିକ କାଳରେ ଥିବା ରାଜା, ପ୍ରଜା ସଂପର୍କ ବ୍ୟାହତ ହୋଇଥିଲା । ଉଭୟେ ଉଭୟ ଠାରୁ ଦୂରେଇ ଯାଇଥିଲେ । କାଳକ୍ରମେ ଏହି ରାଜପଦ ପୁରୁଷାନୁକ୍ରମିକ ହୋଇ ଯିବାରୁ ଏହାର ଦୂରତ୍ୱ ଆହୁରି ବଢି ଯାଇଥିଲା । ପ୍ରାଥମିକ କାଳରେ ରାଜା ପ୍ରଜାମାନଙ୍କର ପ୍ରଭୁ ଓ ସନ୍ତାନ ହେବେ ବୋଲି ଅଭିଷେକୋତ୍ସବରେ ଯେଉଁ ଶପଥ କରୁଥିଲେ, ତାହା ପରବର୍ତ୍ତୀ କାଳରେ ଆଉ କାର୍ଯ୍ୟରେ ପରିଣତ ହେଲା ନାହିଁ ବରଂ ସନ୍ତାନ ହେବା ଅପେକ୍ଷା ଅଧିକ 'ପ୍ରଭୁ' ହୋଇ ଉଠିଲେ । ପୁରୋହିତ ଗୋଷ୍ଠୀ ରାଜାଙ୍କୁ ଏହି ଶକ୍ତି ଦେବାରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ । ମାତ୍ର ପରବର୍ତ୍ତୀ ଅବସ୍ଥାରେ ମୌଳିକ ଆର୍ଯ୍ୟ ମୂଲ୍ୟବୋଧ ଗୁଡିକରୁ ରାଜନ୍ୟବର୍ଗଙ୍କର ଆନ୍ତରିକତା ଓ ବିଶ୍ୱାସ କମି ଯିବାରୁ ସେମାନେ ଅଧିକ ପରାକ୍ରମୀ ହୋଇ ଉଠିଲେ । ଫଳରେ ପୁରୋହିତଙ୍କ କ୍ଷମତା କ୍ରମେ ହ୍ରାସ ପାଇବାକୁ ଲାଗିଲା । ସେତେବେଳେ ପୁରୋହିତ ସାଧାରଣ ରାଜକର୍ମଗ୍ଭରୀ ଭାବରେ ରାଜାନୁଗ୍ରହ ଲାଗି ପ୍ରାର୍ଥୀ ହୋଇ ଉଠିଲେ । ଏ ଦୃଷ୍ଟିରୁ ବିଗ୍ଭର କଲେ ରାଜଯଜ୍ଞର ବିବର୍ତ୍ତନ ଇତିହାସ ସହିତ ଜନସାଧାରଣ ପୁରୋହିତ – ରାଜାଙ୍କ

ସଂପର୍କରେ ବିବର୍ତ୍ତନର ଇତିହାସ ଯେ ଓତଃପ୍ରୋତ ଭାବରେ ଜଡ଼ିତ ଏଥିରେ ସନ୍ଦେହ ନାହିଁ । ସଂକ୍ଷେପରେ ଏହି ଯଜ୍ଞ ଗୁଡିକର ଭୂମିକା ସଂପର୍କରେ ନିମ୍ନରେ ପ୍ରଦତ୍ତ ହେଲା ।

**ରାଜସୂୟ** – ରାଜସୂୟ ଅର୍ଥ ହେଲା 'ରାଜା ସୃଷ୍ଟିକାରୀ । ଅର୍ଥାତ୍ ଯେଉଁ ଯଜ୍ଞ ରାଜାଙ୍କୁ ସୃଷ୍ଟି କରିଥାଏ ତାହା ରାଜସୂୟ ଯଜ୍ଞ ନାମରେ ନାମିତ ହୋଇଅଛି । ଜଣେ ରାଜା ହେବା ମାତ୍ରେ ଏହି ଯଜ୍ଞ କରିଥାଏ । ରାଜାଙ୍କ ପାଇଁ ଏହା ବାଧ୍ୟତା ମୂଳକ ଥିଲା । ରାଜସୂୟର ଅନ୍ୟ ନାମ ହେଉଛି 'ବରୁଣସବ' ବା 'ବରୁଣ ଯଜ୍ଞ' । ସେଥିପାଇଁ 'ବ୍ରାହ୍ମଣ' ଗ୍ରନ୍ଥରେ କୁହାଯାଇଛି ଯାହା 'ରାଜସୂୟ ଯଜ୍ଞ' ତାହା ହେଉଛି 'ବରୁଣ ଯଜ୍ଞ' (୪୮) ରାଜସୂୟ ଯଜ୍ଞକୁ ବରୁଣ ଯଜ୍ଞ କହିବାର ତାତ୍ପର୍ଯ୍ୟ ହେଉଛି ବରୁଣ ହେଉଛନ୍ତି ଋତା ବା ଚିରନ୍ତନ ନିୟମର ସ୍ରଷ୍ଟା ଓ ରକ୍ଷକ । ସେହିହିଁ ବିଶ୍ୱ ଜନୀନ ନୈତିକ ଧର୍ମକୁ ଧରି ରଖିଛନ୍ତି । ଅତଏବ ସେ ହେଉଛନ୍ତି 'ଧର୍ମପତି'। ରାଜା ମଧ୍ୟ ସେହି ପରି ଧର୍ମପତି । ସାରା ରାଜ୍ୟରେ କିପରି ଧର୍ମ ପ୍ରତିଷ୍ଠିତ ହେବ, ସେଥିପ୍ରତି ଦୃଷ୍ଟି ଦେଇଥାନ୍ତି । ତାଙ୍କର ଏହି 'ଧର୍ମପତି' ସ୍ୱଭାବ ପ୍ରତି ଗୁରୁତ୍ୱ ଆରୋପ କରି ରାଜସୂୟ ଯଜ୍ଞ ସମାହିତ ହୋଇଥାଏ । ଏହି ଯଜ୍ଞାନୁଷ୍ଠାନ ମଧ୍ୟରେ ସେ ଧର୍ମର ସଂସ୍ଥାପନା ଓ ସଂରକ୍ଷଣ ଲାଗି ଏକ ପବିତ୍ର ଶପଥ ଗ୍ରହଣ କରିଥାନ୍ତି ।(୪୯) ଐତରେୟ ବ୍ରାହ୍ମଣରେ ରାଜା ହରିଶ୍ଚନ୍ଦ୍ର କରିଥିବା ରାଜସୂୟ ଯଜ୍ଞ ବିଷୟରେ ଉଲ୍ଲେଖ ଅଛି । ଏଥିରେ ବିଶ୍ୱାମିତ୍ର ଥିଲେ 'ହୋତା, ଯମଦଗ୍ନି ଥିଲେ 'ଅଧ୍ୱର୍ଯ୍ୟୁ', ବଶିଷ୍ଠ ଥିଲେ 'ବ୍ରହ୍ମା' ଓ ଅୟାସ୍ୟ ଥିଲେ 'ଉଦ୍‌ଗାତା' ।(୫୦)

**ବାଜପେୟ** – 'ବାଜ' ହେଲା 'ବଳ' । (ନିରୁକ୍ତକାର ଯାସ୍କ) ଯେଉଁ ଯଜ୍ଞ ବଳ ପ୍ରଦାନ କରେ ତାହାକୁ କୁହାଯାଏ 'ବାଜପେୟ' । ଏହି ବଳ ଉଭୟ ଆଧ୍ୟାତ୍ମିକ ଏବଂ ଲୌକିକ । ସମ୍ରାଟଙ୍କୁ ବାଜପେୟ ଯଜ୍ଞ କରିବାକୁ ପଡିଥାଏ । ସେଥିପାଇଁ ଏହାକୁ 'ସମ୍ରାଟ ସବଃ' ବା 'ସମ୍ରାଟ ଯଜ୍ଞ' ବୋଲି କୁହାଯାଏ । ଶତପଥ ବ୍ରାହ୍ମଣରେ କୁହାଯାଇଛି "ଯାହା ବାଜପେୟ ଯଜ୍ଞ ତାହା ସମ୍ରାଟ ଯଜ୍ଞ" ।(୫୧) ସାରା ସାମ୍ରାଜ୍ୟରେ ଭୌତିକ ଓ ଆଧ୍ୟାତ୍ମିକ ସମୃଦ୍ଧି ପାଇଁ କାମନା କରି ସମ୍ରାଟମାନେ 'ବାଜପେୟ' ଯଜ୍ଞ କରୁଥିଲେ । ଏହି ଯଜ୍ଞ ଉଭୟ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ପାଇଁ କରଣୀୟ ଥିଲା । ବ୍ରାହ୍ମଣଙ୍କୁ ପୁରୋହିତ ପଦ ମିଳିବା ବେଳେ ଏହି ଯଜ୍ଞ କରୁଥିଲେ । ଏହି ଯଜ୍ଞ ସମୟରେ ଯଜ୍ଞ ବେଦୀ ଉପରେ ସତରଟି ଢୋଲ (ଦୁନ୍ଦୁରି) ରଖାଯାଉଥିଲା । ବ୍ରାହ୍ମଣମାନେ ଏହି ଢୋଲକୁ ବଜାଇ ମନ୍ତ୍ର ଉଚ୍ଚାରଣ କରୁଥିଲେ । ଏହି ସମୟରେ ରଥ ଦଉଡା ପ୍ରତିଯୋଗିତା କରାଯାଉଥିଲା । ଘୋଡାମାନଙ୍କ ଟାପୁ ଶବ୍ଦ ସହିତ ସମତାଳ ରଖି ଢୋଲ ଗୁଡିକୁ ଏକ ସଂଗରେ ବଜାଯାଉଥିଲା ।

**ଅଶ୍ୱମେଧ ଯଜ୍ଞ :-** 'ସାର୍ବଭୌମ ରାଜା' ବା 'ଚକ୍ରବର୍ତ୍ତୀ ରାଜା' ଅଶ୍ୱମେଧ ଯଜ୍ଞ କରିଥାନ୍ତି । ଚକ୍ରବର୍ତ୍ତୀ ରାଜାଙ୍କ ଆସନ ସମ୍ରାଟଙ୍କ ଆସନ ଉପରେ ବୋଲି ସେତେବେଳେ ପରିଗଣିତ ହେଉଥିଲା । 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି 'ଯଜ୍ଞମାନଙ୍କର ରାଜା ହେଉଛି ଅଶ୍ୱମେଧ'।(୫୨) 'ଶତପଥ ବ୍ରାହ୍ମଣ'ର ତ୍ରୟୋଦଶ କାଣ୍ଡରେ ଏହି ଯଜ୍ଞ ସଂପର୍କରେ ସବିଶେଷ ବର୍ଣ୍ଣନା ରହିଅଛି । ଅଶ୍ୱମେଧ ଯଜ୍ଞର ଫଳଶ୍ରୁତି ସ୍ୱରୂପ ଯଜମାନଙ୍କୁ ସବୁକିଛି ମିଳିଥାଏ । 'ଯେ ଅଶ୍ୱମେଧ ଯଜ୍ଞ କରନ୍ତି ସେ ସବୁ ପାଇଥାନ୍ତି । ତାଙ୍କର ସକଳ ପାପର ପ୍ରାୟଶ୍ଚିତ ହୋଇଥାଏ । ଏହା ସକଳ ରୋଗର ଔଷଧ ଭଳି'।(୫୩) ଏହାର ଅର୍ଥ ହେଲା ଅଶ୍ୱମେଧ ଯଜ୍ଞ କରିବା ଦ୍ୱାରା ଯଜମାନଙ୍କୁ ସକଳ ପ୍ରକାର ସିଦ୍ଧି ମିଳିଥାଏ ଏବଂ ତାଙ୍କର ସକଳ

ପାପକ୍ଷୟ ହୋଇଥାଏ । ଏଥିରୁ ଜଣାପଡେ ସାର୍ବଭୌମ ରାଜାଙ୍କ ଲାଗି ଉଭୟ ଲୌକିକ ଓ ପାରତ୍ରିକ ଅଭ୍ୟୁଦୟ ଅଣାଇବାରେ ଅଶ୍ୱମେଧ ଯଜ୍ଞ ସହାୟକ ହୋଇଥାଏ ।

ଏହି ଯଜ୍ଞ କରିବା ସହଜ ସାଧ୍ୟ ବ୍ୟାପାର ନଥିଲା । କେବଳ ପ୍ରତାପୀ ଏବଂ ପରାକ୍ରମୀ ରାଜାମାନେ ଏହି ଯଜ୍ଞ କରିପାରୁଥିଲେ । 'ଶତପଥ ବ୍ରାହ୍ମଣ'ରେ କେଉଁ କେଉଁ ରାଜାମାନେ ଏହି ଯଜ୍ଞ କରିଥିଲେ ତାହା ଉଲ୍ଲେଖିତ ।(୫୪) ଏହି ଯଜ୍ଞରେ ଯଜ୍ଞ ଅଶ୍ୱକୁ ସୁ ସଜ୍ଜିତ କରି ରାଜ୍ୟରୁ ରାଜ୍ୟକୁ ବୁଲିବା ପାଇଁ ଛାଡି ଦିଆଯାଏ । ଏହି ଅଶ୍ୱ ମୁକ୍ତ ଭାବରେ ଚତୁର୍ଦ୍ଦିଗରେ ବୁଲି ବିଭିନ୍ନ ରାଜ୍ୟ ମଧ୍ୟ ଦେଇ ଆସି ଥିବାରୁ ସେହି ରାଜ୍ୟମାନଙ୍କ ଉପରେ 'ସାର୍ବ ଭୌମ' ଶାସନ ସାବ୍ୟସ୍ତ କରାଯାଏ । ଯଦି କୌଣସି ରାଜ୍ୟ ଯାଜ୍ଞିକ ରାଜାଙ୍କ ବଶତା ସ୍ୱୀକାର କରିବାକୁ ଚାହେଁ ନାହିଁ ତାହାଲେ ସେ ଅଶ୍ୱକୁ ଅଟକାଇ ରଖନ୍ତି ଏବଂ ଯାଜ୍ଞିକ ରାଜା ଯୁଦ୍ଧ କରି ଉକ୍ତ ରାଜାଙ୍କ ହାତରୁ ଅଶ୍ୱକୁ ମୁକୁଳାଇବାକୁ ପଡିଥାଏ । ଯାଜ୍ଞିକ ରାଜା ତାହା କରି ନପାରିଲେ ଅଶ୍ୱମେଧ ଯଜ୍ଞ ମାରା ହୋଇଯାଏ ଏବଂ ସେ ସମସ୍ତ ଗୌରବରୁ ବଞ୍ଚିତ ହୁଅନ୍ତି ।

ରାଣୀଙ୍କ ଅନୁପସ୍ଥିତିରେ ରାଜା ଅଶ୍ୱମେଧ ଯଜ୍ଞ କରି ପାରୁନଥିଲେ । ସ୍ତ୍ରୀ ମରିଗଲେ ଜଣେ 'ଅଗ୍ନିହୋତ୍ର ଯଜ୍ଞ' କରିପାରିବେ କିନ୍ତୁ 'ଅଶ୍ୱମେଧ ଯଜ୍ଞ' କରି ପାରିବେ ନାହିଁ । ଯାହାର ଦୃଷ୍ଟାନ୍ତ ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ କରିବା ସମୟରେ ସୁନାର ସୀତା ମୂର୍ତ୍ତି ଗଢାଇ ଅଶ୍ୱମେଧ ଯଜ୍ଞ କରାଇଥିଲେ । ଅବିବାହିତ ବ୍ୟକ୍ତି ମଧ୍ୟ ଅଶ୍ୱମେଧ ଯଜ୍ଞ କରି ପାରିବେ ନାହିଁ । ଏହି ଯଜ୍ଞର ବିଧିବିଧାନରେ ରାଣୀମାନଙ୍କର ପ୍ରମୁଖ ଭୂମିକା ଥିଲା । ଏଥିରେ କେତେକ ବିକୃତ ଏବଂ ବିଭତ୍ସ କର୍ମ ବିଧି ମଧ୍ୟ ଖଞ୍ଜା ଯାଇଛି । ପାଟରାଣୀ 'ଯଜ୍ଞାଶ୍ୱ'କୁ ସ୍ୱାମୀ ସ୍ଥାନରେ ଆଲିଙ୍ଗନ କରନ୍ତି । ତାହାକୁ ସଜାଇ ଦିଅନ୍ତି ଏବଂ ତାହା ପାଖରେ ଶୁଅନ୍ତି । ଏହା ବୋଧହୁଏ ଆର୍ଯ୍ୟେତର ପ୍ରଭାବର ଫଳଶ୍ରୁତି । ସେ ଯାହାହେଉ ଅଶ୍ୱମେଧ ଯଜ୍ଞ ମାଧ୍ୟମରେ ସାର୍ବଭୌମ କ୍ଷମତା ଅଧିକାର କରିବା ଧାରଣାଟି ବୈଦିକ ଯୁଗରେ ବହୁପ୍ରାଚୀନ କାଳରୁ ପ୍ରସିଦ୍ଧି ଲାଭ କରି ଆସିଥିଲା ଏବଂ ବ୍ରାହ୍ମଣ କାଳରେ ଏହାକୁ ଏକ ସୁସଂହତ ଓ ବିଧିବଦ୍ଧ ବିଧାନର ଗଣ୍ଡି ମଧ୍ୟରେ ରଖାଯାଇଥିଲା । ବିଭିନ୍ନ ଶ୍ରେଣୀୟ ରାଜାଙ୍କୁ ଉଭୟ ଆଧ୍ୟାତ୍ମିକ ଓ ଭୌତିକ ଅଭ୍ୟୁଦୟ ଲାଗି ଉପରୋକ୍ତ ତିନି ପ୍ରକାର ଯଜ୍ଞ କରିବାର ପରମ୍ପରା ବହୁ ପ୍ରାଚୀନ କାଳରୁ ଗଡ଼ି ଆସୁଥିଲା । (ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ପଞ୍ଚମ ଖଣ୍ଡ ବୈଦିକ ପର୍ବ-ଚତୁର୍ଥଭାଗ ପୃଷ୍ଠା୭୭ରୁ ଉଦ୍ଧୃତ) ।

**ଶାସନ ବ୍ୟବସ୍ଥା –**

ବୈଦିକ ଭାରତରେ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର ଶାସନ ବ୍ୟବସ୍ଥା ପ୍ରଚଳିତ ଥିଲା । 'ଐତରେୟ ବ୍ରାହ୍ମଣ ଐନ୍ଦ୍ର ମହାଭିଷେକ'ର ବର୍ଣ୍ଣନାରୁ ନଅ ପ୍ରକାର ଶାସନ ବ୍ୟବସ୍ଥା ଥିବାର ଅନୁମାନ କରାଯାଏ । ତାହା ହେଲା ସାମ୍ରାଜ୍ୟ, ଭୌଜ୍ୟ, ସ୍ୱରାଜ୍ୟ, ବୈରାଜ୍ୟ, ପାରମେଷ୍ଠ୍ୟ, ରାଜ୍ୟ, ମହାରାଜ୍ୟ, ଆଧିପତ୍ୟମୟ ଓ ସାମନ୍ତପର୍ଯ୍ୟାୟୀ । ଏମାନଙ୍କ ସଂପର୍କରେ ନିମ୍ନରେ ବର୍ଣ୍ଣିତ ହେଲା –

**(କ) ସାମ୍ରାଜ୍ୟ –** 'ସାମ୍ରାଜ୍ୟ' ଶବ୍ଦ ଦ୍ୱାରା ବହୁତ ଗୁଡିଏ ରାଜ୍ୟକୁ ଏକ ଶାସନାଧୀନ କରାଇବା ଭାବ ସୂଚିତ ହେଉଛି । ବଳ ପ୍ରୟୋଗ ଦ୍ୱାରା ଏହି ରାଜ୍ୟ ଗୁଡିକୁ ଜୟ କରାଯାଇଥାଏ । ଉଭୟ ଆର୍ଯ୍ୟ ଏବଂ ଆର୍ଯ୍ୟେତର ରାଜ୍ୟ ଅନ୍ତର୍ଭୁକ୍ତ ହୋଇଥାଏ । ଆର୍ଯ୍ୟେତର ରାଜ୍ୟକୁ ନିଜ ସାମ୍ରାଜ୍ୟରେ ଅଙ୍ଗୀଭୂତ କରିବା

ଦ୍ୱାରା ଏହା ଆର୍ଯ୍ୟାନ୍ୱିତ ହେଉଥିଲା । ଏହି ପ୍ରକ୍ରିୟାରେ ଉଭୟେ ବ୍ରାହ୍ମଣ ଏବଂ ରାଜନ୍ୟ ଗୋଷ୍ଠୀ ସହଯୋଗ କରୁଥିଲେ । ପ୍ରଥମେ ବ୍ରାହ୍ମଣମାନେ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ପ୍ରବେଶ କରୁଥିଲେ ଏବଂ ତାହା ପରେ ରାଜନ୍ୟଗୋଷ୍ଠୀ ପ୍ରବେଶ କରୁଥିଲେ । ଏହି ପ୍ରକ୍ରିୟାରେ ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳରୁ କ୍ରମେ କ୍ରମେ ଭାରତର ପୂର୍ବ ଓ ଦକ୍ଷିଣ ଅଞ୍ଚଳରେ ବ୍ୟାପି ଯାଇଥିଲେ ।

**(ଖ) ଭୌଜ୍ୟ** — ପ୍ରାକୃତିକ ସୀମାକୁ ସମ୍ମାନ ଦେଖାଇ ଯେଉଁ 'ଭୂ ଭାଗ' ଠିଆ ହୋଇଥାଏ, ତାହାର ଶାସନ ବ୍ୟବସ୍ଥାକୁ ଭୋଜ୍ୟ କୁହାଯାଏ । ଆର୍ଯ୍ୟାବର୍ତ୍ତକୁ ଗୋଟିଏ ଉଦାହରଣ ସ୍ୱରୂପ ଗ୍ରହଣ କରାଗଲେ ଏହାର ଉତ୍ତରରେ ହିମାଳୟ ଓ ଦକ୍ଷିଣରେ ସମୁଦ୍ର ଏହାର ମର୍ଯ୍ୟଦାକୁ ସମ୍ମାନ ଦେଇ ଆସିଛି । ଦକ୍ଷିଣ ଦେଶରେ ସାତ୍ୱତମାନଙ୍କ ରାଜାଙ୍କର ଅଭିଷେକ 'ଭୋଜ୍ୟ' ଲାଗି କରାଯାଉଥିଲା । (ସୁରେନ୍ଦ୍ର ଶତପଥୀଙ୍କର ଭାରତୀୟ ସଂସ୍କୃତି — ପଞ୍ଚମ ଖଣ୍ଡ- ବୈଦିକ ପର୍ବ- ୪ର୍ଥ ଭାଗ- ପୃଷ୍ଠା ୮୪ରୁ ଉଦ୍ଧୃତ)

**(ଗ) ସ୍ୱରାଜ୍ୟ** — ନିଜେ ନିଜକୁ ଶାସନ କରିବାର ବ୍ୟବସ୍ଥାକୁ ସ୍ୱରାଜ୍ୟ ବୋଲି କୁହାଯାଏ ଏବଂ ତାହାର ଶାସକକୁ କୁହାଯାଏ 'ସ୍ୱରାଟ୍' । ଭାରତର ପଶ୍ଚିମାଞ୍ଚଳରେ ଏହି ବ୍ୟବସ୍ଥା ପ୍ରଚଳିତ ଥିଲା । ଆର୍ଯ୍ୟମାନେ ସେଠାକାର ଲୋକମାନଙ୍କୁ କହୁଥିଲେ 'ନୀଚ୍ୟ ବା ଅପାଚ୍ୟ' ଏମାନେ ପ୍ରଥମେ ଥିଲେ ଆର୍ଯ୍ୟେତର ଗୋଷ୍ଠୀର ଏବଂ ପରେ ଆର୍ଯ୍ୟ ଧର୍ମ ଗ୍ରହଣ କରିଥିଲେ । ନିର୍ବାଚନ ଜରିଆରେ ଏଠାର ରାଜାମାନେ ବଛା ଯାଉଥିଲେ । ଏହାକୁ 'ଜ୍ୟେଷ୍ଠକ' ବୋଲି କୁହାଯାଉଥିଲା । ଖ୍ରୀ.ପୂ. ୪ର୍ଥ ଶତାବ୍ଦୀ ବେଳକୁ କେତେକ କ୍ଷୁଦ୍ର ପ୍ରଜାତନ୍ତ୍ର ଥିବାର ସୂଚନା ମିଳିଥିବା କଥା ଐତିହାସିକମାନେ ମତଦେଇ ଥାନ୍ତି । ଏହି ଗଣତନ୍ତ୍ରମାନଙ୍କ ମଧ୍ୟରୁ 'କଠ' ହେଉଛି ଏକ ପ୍ରମୁଖ ଗଣତନ୍ତ୍ର । 'କଠ' ମାନଙ୍କ ଦ୍ୱାରା 'କଠ ଉପନିଷଦ୍' ରଚିତ ହୋଇଥିଲା । ସେତେବେଳକୁ ଏମାନେ ସଂପୂର୍ଣ୍ଣ ଭାବରେ ଆର୍ଯ୍ୟ ମହାସ୍ରୋତରେ ନିଜକୁ ମିଶାଇ ଦେଇ ସାରିଥିଲେ ।

**(ଘ) ବୈରାଜ୍ୟ** — ବୈରାଜ୍ୟର ଅର୍ଥ ହେଲା ରାଜାହୀନତା । ଯେଉଁ ଦେଶରେ ରାଜା ନଥାଇ ଶାସନ ବ୍ୟବସ୍ଥା ପ୍ରଚଳିତ ଥିଲା ତାହାକୁ ବୈରାଜ୍ୟ ବୋଲି କୁହାଯାଉଥିଲା । ଏହା ମଧ୍ୟ ସ୍ୱରାଜ୍ୟ ଭଳି ଏକ ଗଣତନ୍ତ୍ର ବ୍ୟବସ୍ଥା । ସ୍ୱରାଜ୍ୟ ଛୋଟ ଛୋଟ ଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ରହୁଥିଲା ବେଳେ ବୈରାଜ୍ୟ ବୃହତ୍ତର ରାଜ୍ୟକୁ ନେଇ ଗଠିତ ହେଉଥିଲା । ଉତ୍ତର କୁରୁ ଓ ଉତ୍ତର ମଦ୍ର ଅଞ୍ଚଳରେ ଏହି ବୈରାଜ୍ୟ ବ୍ୟବସ୍ଥା ପ୍ରଚଳିତ ଥିଲା । ପ୍ରଜାମାନଙ୍କର ପ୍ରତିନିଧି ସଭା ଦ୍ୱାରା ଏହି ରାଜ୍ୟ ଗୁଡିକର ଶାସନ ବ୍ୟବସ୍ଥା ପ୍ରଚଳିତ ଥିଲା । ଏହା ବୈଦିକ ଆର୍ଯ୍ୟମାନଙ୍କର ଏକ ପ୍ରାଚୀନ ପରମ୍ପରା ଥିଲା । ଏହାର ରାଜପଦ ସୃଷ୍ଟି ହେବାର ପୂର୍ବବର୍ତ୍ତୀ ଅବସ୍ଥା । ରାଜାପଦ କିପରି ସୃଷ୍ଟି ହେଲା ତାହା ପୂର୍ବରୁ ବର୍ଣ୍ଣନା କରାଯାଇଛି । ବୈରାଜ୍ୟ ବ୍ୟବସ୍ଥାର ପ୍ରାଚୀନତ୍ୱ ଅଥର୍ବ ବେଦରେ ସୂଚିତ ହୋଇଅଛି । ଅଥର୍ବ ବେଦରେ କୁହାଯାଇଛି 'ଏହା ପୂର୍ବରୁ ବିରାଟ ଥିଲା ବା କେହି ରାଜା ନଥିଲେ' ।(୫୭)

**(ଙ) ପାରମେଷ୍ଠ୍ୟ** — ପରମେଷ୍ଠୀ ହେଉଛନ୍ତି ସ୍ୱୟଂ ସୃଷ୍ଟି କର୍ତ୍ତା ଭଗବାନ । ସେ ହେଉଛନ୍ତି ସର୍ବନିୟନ୍ତା । ତାଙ୍କ ଅନୁଶାସନରେ ସାରା ବିଶ୍ୱ ପରିଚାଳିତ । ଭଗବାନଙ୍କୁ ରାଜ୍ୟର ରାଜା ବୋଲି ଭାବି ତାଙ୍କରି ପ୍ରତିନିଧି ଭାବରେ ଯେଉଁ ରାଜ୍ୟରେ ରାଜା ଶାସନ କରୁଥାନ୍ତି ସେ ପ୍ରକାର ଶାସନ ବ୍ୟବସ୍ଥାକୁ ପାରମେଷ୍ଠ୍ୟ

ବୋଲି କୁହାଯାଏ । ଏହି ରାଜ୍ୟରେ ଭୌତିକ ଅଭ୍ୟୁଦୟ ଠାରୁ ଆଧ୍ୟାତ୍ମିକ ଅଭ୍ୟୁଦୟ ଅଧିକ ହୋଇଥାଏ । ଏହି ଚିନ୍ତାଧାରାରୁ ପ୍ରତ୍ୟେକ ରାଷ୍ଟ୍ରରେ ଏକ ରାଷ୍ଟ୍ର ଦେବତାର ପରିକଳ୍ପନା କରାଯାଇଛି । ଖ୍ରୀଷ୍ଟପୂର୍ବ କାଳରେ କଳିଙ୍ଗରେ 'ଜିନାସନ' ରାଷ୍ଟ୍ର ଦେବତାଙ୍କ ସ୍ଥାନ ଅଧିକାର କରିଥିଲେ । ଖ୍ରୀଷ୍ଟ ପର କାଳରେ ଓଡିଶାରେ ଜଗନ୍ନାଥ ରାଷ୍ଟ୍ର ଦେବତା ଭାବରେ ପରିକଳ୍ପିତ । ବର୍ତ୍ତମାନ ଓଡିଶାକୁ ଜଗନ୍ନାଥ ଦେଶ ବୋଲି କୁହାଯାଏ । ବୈଦିକ କାଳର ପାରମେଷ୍ଠ୍ୟ ଶାସନର ପ୍ରଭାବ ଏହା ଉପରେ ପଡିଥିବା ଅନୁମାନ କରାଯାଏ ।

**(ଚ) ରାଜ୍ୟ –**

ଯେଉଁ ରାଜ୍ୟ ଜଣେ ରାଜାଙ୍କ ଶାସନାଧୀନରେ ରହିଥାଏ ସେହି ଶାସନ ବ୍ୟବସ୍ଥାର ନାମ ହେଉଛି 'ରାଜ୍ୟ'। ବୈଦିକ କାଳରେ ଭାରତର ମଧ୍ୟ ଦେଶରେ ଏ ପ୍ରକାର ଶାସନ ବ୍ୟବସ୍ଥା ଥିଲା । ଏହି ଅଞ୍ଚଳକୁ 'ଦୃଢ ପ୍ରତିଷ୍ଠା ଦିକ୍' ବା 'ଦୃଢଭାବରେ ପ୍ରତିଷ୍ଠିତ ଦିଗ' କୁହାଯାଇ ଥିଲା । ଏହି ଶାସନ ପଦ୍ଧତି ରାଜ୍ୟରେ ଦୃଢତା ଆଣି ପାରୁଥିଲା । କୁରୁ-ପାଞ୍ଚାଳ, ବଶ, ଉଶୀନର ଆଦିଅଞ୍ଚଳରେ ଏହି ପ୍ରକାର ଶାସନ ବ୍ୟବସ୍ଥା ଥିଲା ବୋଲି 'ଐତରେୟ ବ୍ରାହ୍ମଣ'ରେ କୁହାଯାଇଛି । ଅତି ଦୃଢ ଭାବରେ ଏହି ମଧ୍ୟ ଦେଶରେ କୁରୁ-ପାଞ୍ଚାଳ, ବଶ ଓ ଉଶୀନରମାନଙ୍କର ରାଜାମାନେ ଅଭିଷିକ୍ତ ହେବା ପରେ ସିଂହାସନରେ ବସୁ ଥିଲେ । ସେ ରାଜା ଅଭିଷେକ ସମୟରେ ପ୍ରଜାମାନଙ୍କର ସେବକ ଭାବରେ ରହିବେ ବୋଲି ପ୍ରତିଶ୍ରୁତିବଦ୍ଧ ହେଉଥିଲେ ।(୫୭) ରାଜ୍ୟ ଶାସନ ବ୍ୟବସ୍ଥାରେ ରାଜା ଯୁଗପତ ଶାସନ କରୁଥିଲେ । ତାଙ୍କର ପ୍ରଦତ୍ତ ପ୍ରତିଶ୍ରୁତି ଦ୍ୱାରା ସେ ଶାସିତ ହେଉଥିଲେ । ସେ ରାଜାଙ୍କଠାରେ ଶାସନତ୍ୱ ଓ ଶାସିତ୍ୱର ଏକ ସମନ୍ୱୟ ଘଟୁଥିଲା । ସେ ରାଜା ଏକଛତ୍ରବାଦୀ ନଥିଲେ ।

**(ଛ) ମହାରାଜ୍ୟ –** ଛୋଟ ଛୋଟ ରାଜ୍ୟ ଗୁଡିକ ମିଶି ମହାରାଜ୍ୟ ଗଢା ଯାଉଥିଲା । ଏଭଳି ଶାସନ ବ୍ୟବସ୍ଥାକୁ ମହାରାଜ୍ୟ ଶାସନ ବୋଲି କୁହାଯାଉଥିଲା । ରାଜ୍ୟର ଶାସକକୁ ମହାରାଜା ବୋଲି କୁହାଯାଉଥିଲା । ସମୟେ ସମୟେ ଛୋଟ ଛୋଟ ପ୍ରଜାତନ୍ତ୍ର ଗୋଷ୍ଠୀ ମିଳିତ ହୋଇ ଜଣକୁ ମହାରାଜା ବୋଲି ବାଛୁଥିଲେ । ରାଜତନ୍ତ୍ର ଶାସନରେ ଚକ୍ରବର୍ତ୍ତୀ ସମ୍ରାଟଙ୍କୁ ମଧ୍ୟ ମହାରାଜା ବୋଲି କୁହାଯାଉଥିଲା । କାରଣ ସେ ବିଭିନ୍ନ ରାଜ୍ୟ ଜୟ କରି ସେଗୁଡିକ ଏକ ଶାସନାଧୀନ କରୁଥିଲେ । ଏହି ବ୍ୟବସ୍ଥାର ଅଙ୍ଗୀଭୂତ ଥିବା ସମସ୍ତ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ମହାରାଜା କାମନା କରୁଥିଲେ ।

**(ଜ) ଆଧିପତ୍ୟମୟ –** ଖଣ୍ଡିତ ଭାବରେ ରହିଥିବା ରାଜ୍ୟ ଗୁଡିକର ସୁବ୍ୟବସ୍ଥା ଲାଗି ଏଗୁଡିକର ଅଧିକାରୀବୃନ୍ଦ ଜଣଙ୍କୁ ରାଜା ବୋଲି ବାଛୁଥିଲେ । ସେ ଏହି ରାଜ୍ୟ ଗୁଡିକର ନ୍ୟାୟପତି ଭାବରେ କାର୍ଯ୍ୟ କରୁଥିଲେ । ଏଥିରେ ରାଜା ପ୍ରଜା ସଂପର୍କ ଖୁବ୍ ଶିଥିଳ ଥିଲା । ବିଭିନ୍ନ ରାଜ୍ୟମାନଙ୍କ ଅଧିକାରୀମାନଙ୍କ ମଧ୍ୟରେ ସମନ୍ୱୟ ରଖିବା ଅସମ୍ଭବ ଥିଲା । ଏ ପ୍ରକାର ଶାସନ ବ୍ୟବସ୍ଥା ବେଶି ସମୟ ଧରି ସ୍ଥାୟୀ ହୋଇପାରି ନଥିଲା ।

**(ଝ) ସାମନ୍ତ ପର୍ଯ୍ୟାୟୀ** – ଏହାର ନାମ କରଣରୁ ଜଣା ପଡୁଛି ଏହା ସାମନ୍ତମାନଙ୍କ ଉପରେ ନିର୍ଭରଶୀଳ ଥିଲା । ରାଜ୍ୟକୁ କେତେ ଗୁଡିଏ ମଣ୍ଡଳରେ ବିଭକ୍ତ କରାଯାଇ ପ୍ରତ୍ୟେକ ମଣ୍ଡଳକୁ ଜଣେ ଜଣେ ସାମନ୍ତଙ୍କ ଦାୟିତ୍ୱରେ ରଖାଯାଉଥିଲା । ଏମାନଙ୍କୁ ମଣ୍ଡଳାଧିପତି ବୋଲି କୁହାଯାଉଥିଲା । ଏହି ମଣ୍ଡଳାଧିପତିଙ୍କର ରାଜାଙ୍କ ପ୍ରତି ଆନୁଗତ୍ୟ ରହୁଥିଲା । ମାତ୍ର ରାଜାମାନଙ୍କର ପ୍ରଜାମାନଙ୍କ ସହିତ ସୁସଂପର୍କ ରହିପାରୁ ନଥିଲା । କାରଣ ପ୍ରଜାମାନଙ୍କର ରାଜାମାନଙ୍କ ସହିତ ସିଧା ସଳଖ କିଛି ସଂପର୍କ ରହୁନଥିଲା । ଏ ପ୍ରକାର ଶାସନ ବ୍ୟବସ୍ଥାର ଦୃଢତା ସାମନ୍ତମାନଙ୍କର ରାଜ ଭକ୍ତି ଉପରେ ନିର୍ଭରଶୀଳ ଥିଲା । ଫଳରେ ପରବର୍ତ୍ତୀ କାଳରେ ବିଶେଷ ଦୃଢ ହୋଇ ପାରି ନଥିଲା ।

ଏହା ବ୍ୟତୀତ ଅଥର୍ବ ବେଦରେ ଅରାଜକ ସଂଘ ସଂପର୍କରେ ବର୍ଣ୍ଣିତ ହୋଇଛି ।(୫୮) ମାତ୍ର ଏଗୁଡିକ ସଂପର୍କରେ ବିସ୍ତୃତ ଆଲୋଚନା ଦେଖିବାକୁ ମିଳେ ନାହିଁ । ତେଣୁ ବୈଦିକ କାଳରେ ଏହାର ଅବସ୍ଥିତି ସଂପର୍କରେ ସଠିକ କଥା କହି ହେବନାହିଁ ।

**ରାଜା ପ୍ରଜା ସଂପର୍କ** – ବୈଦିକ ରାଜା ପ୍ରଜା ସଂପର୍କ ପାରସ୍ପରିକ ଦାନ ପ୍ରତିଦାନରେ ନିର୍ଭରଶୀଳ ଥିଲା । ରାଜାଙ୍କୁ କେବଳ କେତେକ ରାଜଧର୍ମ ପାଳନ କରିବାକୁ ପଡୁଥିଲା । ରାଜଧର୍ମ ସଂପର୍କରେ ବେଦରେ ଖଣ୍ଡିତ ଭାବରେ ବର୍ଣ୍ଣିତ । ତଥାପି ଏହା 'ଗୌତମ ଧର୍ମ ସୂତ୍ର'ରେ ଉଲ୍ଲିଖିତ । ଏହା ବେଦର ବହୁପରେ ରଚିତ ହୋଇଥିଲେ ମଧ୍ୟ ଏହା ବୈଦିକ ପରମ୍ପରାକୁ ଅନୁସରଣ କରିଅଛି । ଏଥିରେ ଯେଉଁ ରାଜଧର୍ମ ସଂପର୍କରେ କୁହାଯାଇଛି ସେଗୁଡିକ ହେଲା – (କ) ରାଜା ବ୍ରାହ୍ମଣଙ୍କ ବ୍ୟତୀତ ସମସ୍ତଙ୍କର ସ୍ୱାମୀ ହୋଇ ରହିବେ । (ଖ) ସେ ଭଲ କଥା କହିବେ ଓ ଭଲ କାମ କରିବେ । (ଗ) ସେ ନୀତି, ବେଦ ଓ ନ୍ୟାୟ ଶାସ୍ତ୍ରରେ ଅଭିଜ୍ଞ ହେବେ । (ଘ) ତାଙ୍କ ସଭାସଦ୍‌ମାନେ ନିର୍ମଳ ପ୍ରକୃତିର, ଗୁଣୀ ଓ ଜିତେନ୍ଦ୍ରିୟ ହେବେ । (ଙ) ସେ ପ୍ରଜା ହିତ ଲାଗି ମନୋନିବେଶ କରିବେ । (ଚ) ସେ ବର୍ଣ୍ଣାଶ୍ରମ ଧର୍ମକୁ ରକ୍ଷା କରିବେ । (ଛ) ସେ ଧର୍ମପତିମାନଙ୍କର ବା ବିଚାରପତି ମାନଙ୍କର ଧର୍ମ ବା କର୍ତ୍ତବ୍ୟ ସ୍ଥିର କରିବେ । (ଜ) ସେ ସତ୍‌କୁଳ ସଂପନ୍ନ ସୁଶୀଳ ଓ ପଣ୍ଡିତ ବ୍ରାହ୍ମଣଙ୍କୁ ପୁରୋହିତ ରୂପରେ ବରଣ କରିବେ । (ଝ) ପୁରୋହିତଙ୍କ ଆଦେଶାନୁସାରେ ସେ ଧର୍ମ କାର୍ଯ୍ୟ ସମାପନ କରିବେ । (ଞ) ଜ୍ୟୋତିଷ ବିଦ୍ୟା ଯୋଗକ୍ଷମ କାରକ ଥିବାରୁ ସେ ଜ୍ୟୋତିଷୀମାନଙ୍କର କଥା ଶୁଣିବେ ଓ ସେହି ଅନୁଯାୟୀ କାମ କରିବେ । (ଟ) ବେଦ, ଧର୍ମ ଶାସ୍ତ୍ର ସାମୟିକ ଆଚାର ଓ ପୁରାଣ ଅନୁସାରେ ସେ ନ୍ୟାୟ ବିଚାର କରିବେ । (ଠ) ସେ ବେଦଧର୍ମ, ଦେଶ ଧର୍ମ, ଜାତି ଧର୍ମ ଓ କୁଳଧର୍ମ ସବୁର ପ୍ରମାଣକୁ ମାନ୍ୟତା ଦେବେ । (୫୯)

ରାଜା ପ୍ରଜାମାନଙ୍କର କେବଳ ଶାସକ ନଥିଲେ । ସେ ମଧ୍ୟ ତାଙ୍କର ଅନୁରଂଜକ ଥିଲେ । ରାଜା ପ୍ରଜାମାନଙ୍କର ସେବକ ବୋଲି ନିଜକୁ ଭାବୁଥିଲେ । ତେଣୁ ସେ ଥିଲେ 'ଷଡ଼ଭାଗ ଭୃତକ' । ରାଜ୍ୟର ଧର୍ମ ରକ୍ଷା ଲାଗି ରାଜା ସର୍ବଦା ଉଦ୍ୟମଶୀଳ ଥିଲେ । ରାଜ୍ୟ କହିଲେ ବୈଦିକ କାଳରେ ଏକ ଧର୍ମନିଷ୍ଠ ରାଜ୍ୟ ବୋଲି ବୁଝାଉ ଥିଲା । ରାଜା ଓ ପ୍ରଜାମାନଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଥିଲା । ଉଭୟେ ଉଭୟଙ୍କ କର୍ତ୍ତବ୍ୟ ନିଷ୍ଠାର ସହିତ ପାଳନ କରୁଥିଲେ । ଛାନ୍ଦୋଗ୍ୟ ଉପନିଷଦ୍‌ରେ ରାଜା ଅଶ୍ୱପତି ନିଜ ରାଜ୍ୟର ସଂବୃଦ୍ଧି ସଂପର୍କରେ କହିଛନ୍ତି – 'ମୋ ରାଜ୍ୟରେ କେହି ଚୋର ତସ୍କର ନାହାଁନ୍ତି । କେହି ଖରାପ ଲୋକ ନାହାଁନ୍ତି, କେହି ମଦୁଆ ନାହାଁନ୍ତି, କେହି ଅଗ୍ନି ପୂଜା ନ କରୁଥିବା ଲୋକ ନାହାଁନ୍ତି,

କେହି ଚରିତ୍ରହୀନ ପୁରୁଷ ବା କେହି ଚରିତ୍ରହୀନା ସ୍ତ୍ରୀ ନାହାଁନ୍ତି ' ।(୬୦) ଏଥିରୁ ଜଣା ପଡୁଛି ରାଜ୍ୟକୁ ଏ ଅବସ୍ଥାକୁ ଆଣିବାରେ ରାଜାଙ୍କର ଏକ ସାଧୁ କର୍ତ୍ତବ୍ୟ ବୋଲି ସେମାନେ ମନେ କରୁଥିଲେ । ରାଜା ଅଭିଷେକ ସମୟରେ ପ୍ରଜାଙ୍କ ନିକଟରେ କି ପ୍ରକାର ଶପଥ ନେଉଥିଲେ ତାହା 'ଐତରେୟ ବ୍ରାହ୍ମଣ'ରେ ବର୍ଣ୍ଣିତ ହୋଇଛି । ଏଥିରୁ ରାଜା ପ୍ରଜାଙ୍କର ସଂପର୍କ କିଭଳି ଉପଯୁକ୍ତ ଥିଲା ତାହାର ସୂଚନା ମିଳିଥାଏ । ତାହା ହେଲା "ହେ ପ୍ରଜା, ଯଦି ମୁଁ ତୁମ ବିରୁଦ୍ଧରେ ବିଦ୍ରୋହ କରେ ତେବେ ମୋ ଜନ୍ମରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ, ଏହି ସମୟ ମଧ୍ୟରେ ମୁଁ ଯେଉଁ ଶୁଭକାମ କରିଛି, ସେଥିରୁ ସ୍ୱର୍ଗ ଲୋକରେ ମୋ ନିଜକୁ ଓ ମୋର ସନ୍ତାନମାନଙ୍କୁ ବଞ୍ଚିତ କରାଇବି "।(୬୧) ଏହା ଏକ କଠୋର ପ୍ରତିଜ୍ଞା ଥିଲା । ପ୍ରଜାଦ୍ରୋହ କଲେ ରାଜା ପରକାଳର ସୁଖରୁ ବଞ୍ଚିତ ହେବେ ବୋଲି ଶପଥ ନେଉଥିଲେ । ତଥାପି ପ୍ରଜାଦ୍ରୋହକୁ ଗର୍ହିତ ଓ ଦଣ୍ଡନୀୟ ବିଗ୍ରହ କରାଯାଉଥିଲା । ପରିସ୍ଥିତି ସୀମାତିକ୍ରାନ୍ତ କଲେ ରାଜା ପ୍ରଜାମାନଙ୍କ ଦ୍ୱାରା ଗାଦିଚ୍ୟୁତ ହେଉଥିଲେ । ରାଜା 'ଦୁଷ୍ଟରତ୍ନ ପୌଂସାୟନ' ପ୍ରଜାଦ୍ରୋହ ଅପରାଧରେ ଗାଦିଚ୍ୟୁତ ହେବା କଥା ଶତପଥ ବ୍ରାହ୍ମଣରେ ବର୍ଣ୍ଣିତ ।(୬୨) ଅଥର୍ବ ବେଦରେ ଜଣେ ରାଜା ପ୍ରଜାମାନଙ୍କ ଦ୍ୱାରା ଗାଦିଚ୍ୟୁତ ହେବା କଥା ବର୍ଣ୍ଣିତ ହୋଇଅଛି ।(୬୩) ଅଥର୍ବ ବେଦରେ ରାଜାଙ୍କ ଅଭିଷେକୋତ୍ସବରେ ତାଙ୍କୁ ସଂବୋଧନ କରି କୁହାଯାଇଛି 'ତୁମକୁ ରାଜ୍ୟର ଅଭିବୃଦ୍ଧି ଲାଗି ପ୍ରଜାମାନେ ବରଣ କରନ୍ତୁ' ।(୬୪) ରାଜା ନଥିଲେ ରାଜ୍ୟର ଅଭିବୃଦ୍ଧି ନାହିଁ ବୋଲି ବୈଦିକକାଳରେ ବିଶ୍ୱାସ ଥିଲା । ପ୍ରକୃଷ୍ଟ ଭାବରେ 'ଜାତ' ଯେ ସେ ହେଲେ ପ୍ରଜା । ରାଜ୍ୟରେ ପ୍ରଜାମାନେ ହେଉଛନ୍ତି ସର୍ବୋତ୍କୃଷ୍ଟ ସୃଷ୍ଟି । ଏଣୁ ରାଜାମାନଙ୍କର ପ୍ରଜାମାନଙ୍କର ରକ୍ଷଣ ସର୍ବପ୍ରଧାନ କର୍ତ୍ତବ୍ୟ ବୋଲି ଯଜୁର୍ବେଦରେ ବର୍ଣ୍ଣିତ ହୋଇଅଛି । ଏଠାରେ କୁହାଯାଇଛି "ଏ ଶରୀର ତୁମର ଯଜ୍ଞ ଲାଗି ଉଦ୍ଦିଷ୍ଟ ବା ଏହି ନିଃସ୍ୱାର୍ଥପର କର୍ମ ଲାଗି ଉଦ୍ଦିଷ୍ଟ ଯାହା ଫଳରେ କି ପ୍ରଜାମାନଙ୍କର ମଙ୍ଗଳ ହୋଇପାରିବ । ମୁଁ ପ୍ରାଣ ତ୍ୟାଗ କରିପାରେ କିନ୍ତୁ ମୁଁ ମୋ ପ୍ରଜାମାନଙ୍କୁ ଜମା ଛାଡିବି ନାହିଁ" । (୬୫) ତେଣୁ ଏଥିରୁ ଜଣାପଡେ ପ୍ରଜାମାନଙ୍କ ସୁଖ ଲାଗି ରାଜା କିପରି ନିଜକୁ ସମର୍ପି ଦେଉଥିଲେ ।

ପ୍ରଜାମାନଙ୍କର ବଳ ଯେ ରାଜାମାନଙ୍କର ବଳ, ଏହା ଶତପଥ ବ୍ରାହ୍ମଣରେ ସ୍ପଷ୍ଟ ଭାବରେ ବର୍ଣ୍ଣିତ । ଏଥିରେ କୁହାଯାଇଛି 'ପ୍ରଜା ଦ୍ୱାରା କ୍ଷତ୍ରିୟ ବଳବାନ ହୋଇଥାଏ' ।(୬୬) ଏଠାରେ କ୍ଷତ୍ରିୟ ଅର୍ଥ ରାଜା ବୋଲି ବୁଝିବାକୁ ହେବ । କାରଣ ରାଜ୍ୟ ଶାସନ ଏହି ଗୋଷ୍ଠୀ ହାତରେ ରହୁଥିଲା । ପ୍ରଜା ବିରୋଧ କଲେ ରାଜା ଦୁର୍ବଳ ହୋଇ ପଡୁଥିଲେ । ପ୍ରଜାଙ୍କ ସ୍ୱାର୍ଥ ବିରୋଧୀ କାର୍ଯ୍ୟ କିଛି କରୁନଥିଲେ । ଧର୍ମନିଷ୍ଠ ସାମାଜିକ କାର୍ଯ୍ୟ କରୁଥିଲେ । ବୈଦିକ କାଳରେ ରାଜଧର୍ମ ପାଳନ କରିବା ଲାଗି ରାଜାଙ୍କୁ ବାଧ୍ୟ କରି ପ୍ରଜାଙ୍କ ସମୂହ ସ୍ୱାର୍ଥ ସଂରକ୍ଷିତ ରଖା ଯାଉଥିଲା । ରାଜାଙ୍କୁ ଯଥେଚ୍ଛାଗ୍ରାହୀ ହେବାକୁ ଦିଆ ଯାଉ ନଥିଲା ।

**ନ୍ୟାୟ ଶାସନ –**

ବୈଦିକ ଆର୍ଯ୍ୟ 'ଋତ' ଦ୍ୱାରା ପରିଚାଳିତ ହେଉଥିଲେ । ମନୁଷ୍ୟ, ଦେବତା ଏହି 'ଋତ'ର ଅନୁବର୍ତ୍ତୀ ଥିଲେ । ବୈଦିକ ପରବର୍ତ୍ତୀ କାଳରେ ଏହି 'ଋତ' ର ପରିଭାଷା ଧର୍ମ ହୋଇଛି । ଋଗ୍‌ବେଦରେ ଏହି ଧର୍ମର ପ୍ରାୟ ୫୬ଥର ପ୍ରୟୋଗ ହୋଇଛି । ଯାହା ସମାଜକୁ ଧାରଣ କରି ରଖିଥାଏ ତାହା ହେଉଛି

ଧର୍ମ ।(୬୭) ବେଦୋତ୍ତର କାଳରେ ବିଭିନ୍ନ ନ୍ୟାୟ ଗ୍ରନ୍ଥମାନ ସୃଷ୍ଟି ହେଲା । ସମୟ କ୍ରମେ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଯେଉଁ ଯଜ୍ଞୀୟ ବିଧିବିଧାନମାନ ଉଲ୍ଲେଖ ଥିଲା ତାହା ପୁରୁଣା ହୋଇଗଲା ଏବଂ ଏକ ନୂଆ ସାହିତ୍ୟ ସୃଷ୍ଟି ହେଲା ଯାହାକୁ 'ସୂତ୍ର' କୁହାଗଲା । ବ୍ରାହ୍ମଣ ଗ୍ରନ୍ଥକୁ ବୁଝିବାକୁ ଯେଉଁ 'ସୂତ୍ର' ଗୁଡିକ ସୃଷ୍ଟି ହେଲା ତାହା 'ଶ୍ରୌତସୂତ୍ର' ନାମରେ ପରିଚିତ ହେଲା । ଏଗୁଡିକ 'ଶ୍ରୁତି'ରେ ଥିବା ବିଷୟ ଗୁଡିକୁ ବ୍ୟାଖ୍ୟା କଲା । ଏହାର କିଛି କାଳ ପରେ 'ଗୃହ୍ୟ ସୂତ୍ର' ସୃଷ୍ଟି ହେଲା । ସାମାଜିକ ଓ ପାରିବାରିକ ବିଧିବିଧାନମାନ ଏଥିରେ ସ୍ଥାନିତ ହେଲା । ଏହାପରେ ବ୍ୟକ୍ତିଗତ ଜୀବନକୁ ନିୟନ୍ତ୍ରିତ କରିବାକୁ 'ଧର୍ମ ସୂତ୍ର' ସୃଷ୍ଟି ହେଲା । ଏହି ତିନି ପ୍ରକାର 'ସୂତ୍ର' ସାହିତ୍ୟର ସମାହାରକୁ କୁହାଗଲା 'କଳ୍ପସୂତ୍ର' । ଏହି 'ଧର୍ମ ସୂତ୍ର' ଗୁଡିକ ହିନ୍ଦୁ ଆଇନର ମୌଳିକ ଉତ୍ସ ସ୍ୱରୂପ । ପ୍ରଥମୋକ୍ତ 'ତିନିସୂତ୍ର' ପଶ୍ଚିମ ଭାଗରେ ସୃଷ୍ଟ ହୋଇଥିଲା । 'ଆପସ୍ତମ୍ବ ଧର୍ମସୂତ୍ର' ଦକ୍ଷିଣ ଭାରତର ଉତ୍ତରାଞ୍ଚଳରେ ସୃଷ୍ଟି ହୋଇଥିଲା । ପ୍ରଥମେ ଏହା ଗଦ୍ୟ ଆକାରରେ ଥିଲା । ପରବର୍ତ୍ତୀ କାଳରେ ଏହା ପଦ୍ୟ ରୂପ ଧାରଣ କରିଥିଲା । ଏମାନଙ୍କୁ କୁହାଗଲା 'ଧର୍ମଶାସ୍ତ୍ର' । ମନୁଙ୍କ ଲିଖିତ ଧର୍ମ ଶାସ୍ତ୍ର 'ମନୁସ୍ମୃତି' ନାମରେ ପରିଚିତ । ଏ ସମସ୍ତ 'ଧର୍ମଶାସ୍ତ୍ର' ବେଦକୁ ଆଧାର କରି ରଚିତ । ବୈଦିକ ସଭା ଆଧୁନିକ ବିଚାରାଳୟ ଅନୁରୂପ ।

ବୈଦିକ କାଳରେ 'ଦଣ୍ଡ' ଖୁବ୍ କୋହଳ ଥିଲା । ଦଣ୍ଡର ଏକମାତ୍ର ଲକ୍ଷ୍ୟ ଥିଲା , ଯାହାର କ୍ଷତି ହୋଇଛି ତାହା ପୂରଣ କରିବା । ସାମାଜିକ ସ୍ଥିତିରେ ଯାହା ବର୍ଜନୀୟ ଥିଲା ସେଥିପାଇଁ ଦଣ୍ଡ ବିଧାନ କରାଯାଉଥିଲା । ରାଜା ଥିଲେ ଅଦଣ୍ଡ୍ୟ । 'ରାଜଧର୍ମ' ଅନୁସାରେ ସେ ଅପରାଧ ଠାରୁ ଦୂରରେ ରହୁଥିଲେ । ସ୍ଥାନୀୟ ଛୋଟ ଛୋଟ ବିବାଦମାନ ଗ୍ରାମଣୀ ତୁଟାଇ ଦେଉଥିଲେ । ରାଜା ଦୁଇ ପ୍ରକାର ଆରକ୍ଷୀ ରଖୁଥିଲେ । ଗୁପ୍ତ ଆରକ୍ଷୀମାନଙ୍କୁ କୁହାଯାଉଥିଲା 'ସ୍ପଶ', ସାଧାରଣ ଶାନ୍ତିରକ୍ଷା ଲାଗି ନିଯୁକ୍ତ ଆରକ୍ଷୀଙ୍କୁ କୁହାଯାଉଥିଲା 'ଜୀବ ଗୃଭ' କିଂବା 'ଉଗ୍ର' ।

ଋଗ୍‌ବେଦରେ ଋଣ ଶବ୍ଦର ଉଲ୍ଲେଖ ଅଛି । ଋଣ ପରିଶୋଧକୁ 'ଋଣ ସମ୍ନୀ' କୁହାଯାଉଥିଲା । ବୈଦିକ କାଳରେ ଋଣ ହିଁ ଥିଲା ଏକ ପ୍ରକାର ଚୁକ୍ତି । ପଶାଖେଳ ସମୟରେ ଏହି ଋଣ କରାଯାଉଥିଲା । ଋଣ ଗ୍ରହୀତା ଏହା ଶୁଝି ଦେଉଥିଲେ । ଋଣ ନ ଶୁଝିଲେ ଋଣ ଗ୍ରହୀତାଙ୍କୁ ଗୋଟିଏ ଖମ୍ବରେ ବାନ୍ଧି ରଖାଯାଉଥିଲା ଏବଂ ଋଣ ଶୁଝିବା ପାଇଁ ତାଙ୍କ ଉପରେ ଚାପ ପ୍ରୟୋଗ କରାଯାଉଥିଲା । ଏହି ଖମ୍ବର ନାମ ଥିଲା 'ଦ୍ରୁପଦ' । ଯଦି ଋଣ ଗ୍ରହୀତା ଋଣ ଶୁଝି ପାରୁନଥିଲା ତାହେଲେ ସେ ଋଣ ଦାତାଙ୍କ ଘରେ ମୂଲଲାଗି ତାହା ଶୁଝିବାକୁ ପଡୁଥିଲା । ଯଦିଓ ବେଦରେ ଋଣ ଉପରେ ସୁଧ ଆଦାୟ କରିବାକୁ ମନା ଅଛି ତଥାପି ସମୟେ ସମୟେ ସୁଧ ଆଦାୟ କରାଯାଉଥିଲା । ଋଣ ଭାରରେ ନଇଁ ପଡୁଥିବା ବ୍ୟକ୍ତିର କି ଦୁର୍ଦ୍ଦଶା ହୁଏ ତାହା ଋଗ୍ ବେଦରେ ବର୍ଣ୍ଣିତ ହୋଇଛି । ଏଥିରେ କୁହାଯାଇଛି "ବହୁ ସଂଖ୍ୟକ ଉଷା ମୋ ଲାଗି ଉଷା ନୁହଁନ୍ତି । ହେ ବରୁଣ ! ଆପଣ ଆଜ୍ଞା ଦିଅନ୍ତୁ ଏବଂ ଏହି ଉଷାମାନଙ୍କରେ ମୋତେ ଜୀବିତ ରଖନ୍ତୁ "।(୬୮) ଏହାର ତାତ୍ପର୍ଯ୍ୟ ହେଲା ଋଣ ଭାରରେ ବୁଡି ରହିବା ଲୋକ ଉଷାର ସୌନ୍ଦର୍ଯ୍ୟ ଉପଭୋଗ କରିପାରେ ନାହିଁ । ଉଷାର ପ୍ରଭାବ ତା ଉପରେ ପଡେ ନାହିଁ । ସେ ମୃତପ୍ରାୟ ପଡି ରହିଥାଏ । ଏହି ଉଷା ଲଗ୍ନରେ ତାହାର ମୃତ୍ୟୁ ଯେଭଳି ନହୁଏ ତାହାହିଁ ଏଠାରେ କାମ୍ୟ ।

ପୋଷ୍ୟପୁତ୍ର ପ୍ରଥା ପ୍ରଚଳିତ ଥିଲେ ମଧ୍ୟ (ଶୁନଃଶେପ ଉପାଖ୍ୟାନ - ଋଗ୍‌ବେଦ) ଏହାକୁ ଲୋକେ ବିରୋଧ କରୁଥିଲେ । ତଥାପି ପିତା ପୋଷ୍ୟପୁତ୍ର ଗ୍ରହଣ କରିପାରୁଥିଲେ ।

କେତେକ ବେଦବିତ୍ କୁହଁନ୍ତି ବୈଦିକ କାଳରେ ଶାସନ ପଦ୍ଧତି ଉନ୍ନତ ଧରଣର ନଥିଲା ଏବଂ ଏହା ଗ୍ରାମଣୀ ମାନଙ୍କ ଦ୍ୱାରା ସମାଧାନ ହେଉଥିଲା । ଗ୍ରାମଣୀ ରାଜନୈତିକ ତଥା ଯୁଦ୍ଧ ଜନିତ ସମସ୍ୟାକୁ ପରିଚାଳନା କରୁଥିଲେ । 'ସଂଗୃହୀତ୍ର' (କୋଷାଧ୍ୟକ୍ଷ) ଓ ଅକ୍ଷବାପ (ପଶାଖେଳର ଅଧ୍ୟକ୍ଷ) ରାଜାଙ୍କୁ ରାଜ୍ୟ ଶାସନରେ ସାହାଯ୍ୟ କରୁଥିଲେ । 'ସପ୍ତତି' ଶବ୍ଦରୁ ବିଚାର ପତି ଅର୍ଥ ସୂଚିତ ହେଉଥିଲା ।

**କର ଗ୍ରହଣ –** କର ଗ୍ରହଣ ସଂସ୍ଥା ଥିଲା ଶାସନ କଳର ପ୍ରଧାନ ଅଂଶ । ବନ୍ୟଜାତ ଦ୍ରବ୍ୟ, ଫସଲ ଲବ୍ଧ ପଦାର୍ଥ ଇତ୍ୟାଦିରୁ କର ଗ୍ରହଣ କରାଯାଉଥିଲା । କରଦେବା ବ୍ୟବସ୍ଥା ଭିନ୍ନ ଭିନ୍ନ ଥିଲା । ବ୍ରାହ୍ମଣ ଓ କ୍ଷତ୍ରିୟମାନେ ରାଜାଙ୍କୁ ଯୁଦ୍ଧରେ ସାହାଯ୍ୟ କରୁଥିବାରୁ ତାଙ୍କୁ କର ଦେବାକୁ ହେଉ ନଥିଲା । ରାଜା ପ୍ରଜାମାନଙ୍କର 'ପଣ୍ୟ' ରୁ ଏକ ଷଷ୍ଠାଂଶ ଗ୍ରହଣ କରୁଥିଲେ । ଜମିର ତାର-ତମ୍ୟରୁ କୃଷିଜାତ ପଦାର୍ଥର ଏକ ପଞ୍ଚମାଂଶ , ବାଣିଜ୍ୟର ବିଂଶ ଭାଗରୁ ଏକଭାଗ, ଫସଲ, ମହୁ, ମାଂସ, ଜାଳେଣିକାଠ ଇତ୍ୟାଦି ବନ ଜାତ ପଦାର୍ଥ ଓ ଉଦ୍ୟାନ ଜାତ ପଦାର୍ଥରୁ ଛଅ ଭାଗରୁ ଏକ ଭାଗ କର ଗ୍ରହଣ କରାଯାଉଥିଲା । ଶିଳ୍ପୀ ଓ ଅନ୍ୟାନ୍ୟ ଦୈହିକ କାମ କରୁଥିବା ବ୍ୟକ୍ତି ମାସରେ ଥରେ ରାଜା ଘରେ କାମ କରୁଥିଲେ । ସାମୁଦ୍ରିକ ବ୍ୟବସାୟ ଲବ୍ଧ ଦ୍ରବ୍ୟରୁ ଏକ ଦଶମାଂଶ ରାଜକୋଷକୁ ଯାଉଥିଲା । କେତେକ ଶ୍ରେଣୀର ଲୋକଙ୍କ ଠାରୁ ରାଜସ୍ୱ ଆଦାୟ ହେଉ ନଥିଲା । 'ଆପସ୍ତମ୍ବ ଧର୍ମ ସୂତ୍ରାନୁସାରେ' ଅବିବାହିତ କନ୍ୟା, ଚାକରରକ୍ଷୀ, ବିଧବା, ସନ୍ନ୍ୟାସୀ, ଛାତ୍ର, ଶିଶୁ, ବୃଦ୍ଧବ୍ୟକ୍ତି, ମୂକ ତଥା ରୋଗୀମାନେ କର ଦେଉ ନଥିଲେ ।

**ନିୟମ ଏବଂ ବିଚାରାଳୟ –**

ବୈଦିକ କାଳରେ କୌଣସି ଧରାବନ୍ଧା ନିୟମ ନଥିଲା । ପୁରୋହିତ ଓ ଅନ୍ୟାନ୍ୟ ନିୟମ ଉପଦେଷ୍ଟା ସାହାଯ୍ୟରେ ରାଜା ବିଚାର କରୁଥିଲେ । ଧର୍ମଶାସ୍ତ୍ରକୁ ବିଚାର ସମୟରେ ପ୍ରାଧାନ୍ୟ ଦିଆଯାଉଥିଲା । 'ଦଣ୍ଡ' ଦେବାପାଇଁ ବିଭିନ୍ନ ବ୍ୟକ୍ତି ମଧ୍ୟ ନିଯୁକ୍ତ ହେଉଥିଲେ । 'କଠକ' ସଂହିତାରେ ଉଲ୍ଲେଖ ଅଛି ଶୁଦ୍ରକୁ 'ଦଣ୍ଡ' ଦେବାପାଇଁ ଜଣେ ରାଜନ୍ୟ ବର୍ଗରୁ ନିଯୁକ୍ତ ହେଉଥିଲେ । ରାଜା ନିଜେ ହତ୍ୟା ଅପରାଧରେ ଅଭିଯୁକ୍ତ ବ୍ୟକ୍ତିଙ୍କୁ ଦଣ୍ଡ ଦେଉଥିଲେ ।

ଅପରାଧ ଭିତରେ ଚୋରୀ, ଡକାୟତି, ଅତ୍ୟଧିକ ମଦ୍ୟପାନ, ରାତିରେ ପଶୁ ଚୋରି, ଭାଇ ସହିତ ଭଉଣୀର ବିବାହ ଥିଲା ସାଧାରଣ ଅପରାଧ । ଅବୈଧ ପ୍ରଣୟ, ନାରୀ ଅପହରଣ, ଭ୍ରୁଣ ହତ୍ୟା, ନରହତ୍ୟା ଓ ବ୍ରହ୍ମ ହତ୍ୟା ଇତ୍ୟାଦିକୁ ଜଘନ୍ୟ ଅପରାଧ ଭାବରେ ଗ୍ରହଣ କରାଯାଉଥିଲା । ଗ୍ରାମ ଭିତରେ ଘଟୁଥିବା ଛୋଟ ଛୋଟ ଅପରାଧକୁ ରାଜା ନିଜେ ବିଚାର କରୁଥିଲେ । ବିଚାରରେ ସନ୍ଦେହ ହେଲେ ରାଜା 'ଶ୍ରୋତ୍ରିୟ' ବ୍ରାହ୍ମଣ ଠାରୁ ଉପଦେଶ ଗ୍ରହଣ କରୁଥିଲେ । ପରଶୁ ସାହାଯ୍ୟରେ ସେ ସମୟରେ ବିଚାର କରାଯାଉଥିଲା । ଅଭିଯୁକ୍ତ ବ୍ୟକ୍ତି ଉତ୍ତପ୍ତ ପରଶୁକୁ ସ୍ପର୍ଶ କରୁଥିଲା । ଏହି ପରଶୁ ସ୍ପର୍ଶରେ ପ୍ରକୃତ ଅପରାଧି ବ୍ୟକ୍ତିର କ୍ଷତି ହେଉଥିଲା । ଅଗ୍ନି ଓ ଜଳ ପରୀକ୍ଷା ଦ୍ୱାରା ଅଭିଯୁକ୍ତ ବ୍ୟକ୍ତିକୁ ଅପରାଧି କିମ୍ବା ନିରାପରାଧ ରୂପେ ବିବେଚନା କରାଯାଉଥିଲା । ଚକ୍ଷୁସ ପ୍ରମାଣ ସବୁ ଠାରୁ ବଡ଼

ପ୍ରମାଣ ରୂପେ ଗୃହୀତ ହେଉଥିଲା । ପରଶୁ ଓ ଅଗ୍ନି ପରୀକ୍ଷାରୁ ଜଣାପଡେ ସେ କାଳର ଲୋକ ସତ୍ୟସନ୍ଧ ଥିଲେ ।

ଅପରାଧ ସାବ୍ୟସ୍ତ ହେଲେ ଅଭିଯୁକ୍ତକୁ କଠୋର ଦଣ୍ଡ ପ୍ରଦାନ କରାଯାଉଥିଲା । ଚୋରକୁ ପ୍ରାଣଦଣ୍ଡ ଦିଆ ଯାଉଥିଲା କିମ୍ବା ତା ହାତ କାଟି ଦିଆଯାଉଥିଲା । ସାମାନ୍ୟ ଚୋରି ଅପରାଧରେ ଚୋରକୁ ଗୋଟିଏ ଖୁଣ୍ଟରେ ବାନ୍ଧି ଦିଆଯାଉଥିଲା । ଚୋର ଯଦି ଜିନିଷ ଫେରାଇ ଦେଉଥିଲା ତାହେଲେ ସେ ମୁକ୍ତି ପାଉଥିଲା । ଚୋରି ଅପରାଧରେ ଅଭିଯୁକ୍ତ ଶୂଦ୍ରକୁ ପ୍ରାଣ ଦଣ୍ଡ ଦିଆଯାଉଥିଲା । ଚୋରି ଅପରାଧରେ ବ୍ରାହ୍ମଣକୁ ଅନ୍ଧ କରି ଦିଆଯାଉଥିଲା । ଜଣେ ଜଣକୁ ଅପମାନିତ କରୁଥିଲେ ଜୋରିମାନା ଦେଉଥିଲା । ବ୍ରାହ୍ମଣ ଓ କ୍ଷତ୍ରିୟର ଜୋରିମାନାରେ ତାରତମ୍ୟ ଥିଲା । ବିନା ଅପରାଧରେ ସ୍ତ୍ରୀକୁ ଘରୁ ବାହାର କରି ଦେଉଥିଲେ, ସେହି ବ୍ୟକ୍ତିକୁ ଗଧ ଚର୍ମ ପିନ୍ଧି 'ଏହି ବ୍ୟକ୍ତି ସ୍ତ୍ରୀକୁ ଘରୁ ବାହାର କରି ଦେଇଛି ଏହାକୁ ଭିକ୍ଷା ଦିଅ' ଏପରି କହି ସାତ ଦ୍ୱାର ବୁଲି ଭିକ୍ଷା ମାଗିବାକୁ ପଡୁଥିଲା ଏବଂ ଭିକ୍ଷାଲବ୍ଧ ଧନରେ ଛ ମାସ ଜୀବିକା ନିର୍ବାହ କରୁଥିଲା । 'ଗୌତମ ଧର୍ମ ସୂତ୍ର' ଅନୁସାରେ ଯଦି କୌଣସି ବିଜ୍ଞ ବ୍ୟକ୍ତି ଅପରକୁ ଅପମାନିତ କରୁଥିଲା ସେ କଠୋର ଦଣ୍ଡରେ ଦଣ୍ଡିତ ହେଉଥିଲା ।

ସେ ସମୟରେ 'ବୈରଦେୟ' ପ୍ରଚଳିତ ଥିଲା । କ୍ଷତ୍ରିୟର ହତ୍ୟାରେ ଏକ ହଜାର ଗାଈ, ବୈଶ୍ୟର ହତ୍ୟାରେ ଏକ ଶତ ଗାଈ ଏବଂ ଶୂଦ୍ରର ହତ୍ୟାରେ ଦଶଗୋଟି ଗାଈ ଦେଇ ଅଭିଯୁକ୍ତ ବ୍ୟକ୍ତି ମୁକ୍ତି ଲାଭର ପ୍ରମାଣ 'ଆପସ୍ତମ୍ବ ଧର୍ମସୂତ୍ର'ରେ ଉଲ୍ଲେଖ ଅଛି । (୬୯) ଏହି ଗ୍ରନ୍ଥରେ ପରୀକ୍ଷା ଦ୍ୱାରା ଅପରାଧ ନିର୍ଣ୍ଣୟ କରା ଯିବା କଥା କୁହାଯାଇଛି । 'ଦ୍ୟୁତକ୍ରୀଡା'ରେ ଋଣ ଗ୍ରହଣ ବିଶେଷ ଭାବରେ ପ୍ରଚଳିତ ଥିଲା । ସେ ସମୟରେ ମହାଜନୀ ବ୍ୟବସାୟ ମଧ୍ୟ ଥିଲା । ଋଣ ନେଇ ଖାତକ ପରିଶୋଧ ନ କଲେ ମହାଜନ ନିକଟରେ ଖାତକ ଦାସ ହୋଇ ରହୁଥିଲା ।

ଜମିର ମାଲିକାନା ଓ ଖର୍ଦ୍ଦି ବିକ୍ରି ଓ ଜମି ବଣ୍ଟନ ଉପରେ ବୈଦିକ କାଳରେ କୌଣସି ନିର୍ଦ୍ଧାରିତ ନିୟମ ନଥିଲା । ଜମି କୁଟୁମ୍ବଗତ ଥିଲା । ଗୋଟିଏ କୁଟୁମ୍ବରେ ଛୋଟ ଛୋଟ ପରିବାର ରହୁଥିଲେ । ସେ ସମୟରେ ଏ ପ୍ରକାର କୋଠଗ୍ରସ୍ତ ଥିଲା । ଜମିର ଉତ୍ପାଦନକୁ ବାଣ୍ଟି କରି ନେଉଥିଲେ । 'ଦାୟ' ଶବ୍ଦର ଉଲ୍ଲେଖରୁ ପୁତ୍ର ବଂଶ ପରମ୍ପରା କ୍ରମେ ପିତାର ସମ୍ପତ୍ତିକୁ ଲାଭ କରୁଥିଲା । 'ଧର୍ମ ସୂତ୍ର' ସମୟରେ 'ଦାୟ' ବିଶେଷ ଭାବରେ ପ୍ରଚଳିତ ଥିଲା । ପିତାର ଜୀବିତାବସ୍ଥାରେ ପୁତ୍ରମାନଙ୍କ ମଧ୍ୟରେ ଜମି ବଣ୍ଟନ ହେଉଥିଲା । ସ୍ତ୍ରୀ ବିଧବା ହେବା ପରେ ସମ୍ପତ୍ତି ଉପରେ ତାର କୌଣସି ଅଧିକାର ରହୁ ନଥିଲା । କେବଳ ତା'ର ଅଳଙ୍କାର ଓ ବନ୍ଧୁମାନଙ୍କର ଉପହାର ବସ୍ତୁ ଉପରେ ତାର ଅଧିକାର ରହୁଥିଲା । 'ସପିଣ୍ଡ' ମଧ୍ୟରେ ଜମି ବଣ୍ଟନ ହେଉଥିଲା । 'ଆପସ୍ତମ୍ବ ଧର୍ମ ସୂତ୍ର' ଅନୁସାରେ ପୁତ୍ର, ଗୁରୁ ଓ ଛାତ୍ର ନଥିଲେ ଝିଅ ସଂପତ୍ତିର ଅଧିକାରିଣୀ ହେଉଥିଲା । ମାଲିକ ବର୍ଷକ ମଧ୍ୟରେ ଜମି ଅଧିକାର ନ କଲେ ତାର ଜମିକୁ ବାଜ୍ୟାପ୍ତି କରି ଦିଆ ଯାଉଥିଲା । ସେହି ଜମିକୁ ନିର୍ଣ୍ଣୟ କରିଥିବା ବ୍ୟକ୍ତିକୁ ଶତକଡା ୨୫ ଭାଗ ଦେଇ ରାଜା ଅଧିକାର କରୁଥିଲେ ।

ଜମିର ମାଲିକାନା ସ୍ୱତ୍ତ୍ୱ ପଟା, ସନନ୍ଦ, ସାକ୍ଷୀ ଓ ଦଖଲ ଦ୍ୱାରା ନିର୍ଦ୍ଧାରିତ ହେଉଥିଲା । ଉପରୋକ୍ତ ପ୍ରମାଣ ନମିଳିଲେ ବୟୋବୃଦ୍ଧ ବ୍ୟକ୍ତିଙ୍କ ଠାରୁ ସାକ୍ଷ୍ୟ ଗ୍ରହଣ କରାଯାଉଥିଲା । କେତେକ

ଶ୍ରେଣୀର ସମ୍ପତ୍ତି ଅନ୍ୟ କର୍ତ୍ତୃକ ଉପଯୁକ୍ତ ହେଉଥିଲେ ମଧ୍ୟ ବାଜ୍ୟାପ୍ତ ହେଉ ନଥିଲା । ଏହି ସମ୍ପତ୍ତିଗୁଡ଼ିକ ହେଲା – 'ଜିମା ଦିଆଯାଇଥିବା ପଦାର୍ଥ, ନାବାଳକର ସମ୍ପତ୍ତି, ଶ୍ରୋତ୍ରିୟ ବ୍ରାହ୍ମଣର ସଂପତ୍ତି । ଶିଳ୍ପୀ କିମ୍ବା ଗ୍ରାମର ଅନ୍ୟାନ୍ୟ କାରିଗରମାନେ ବର୍ଷକେ ଥରେ ବର୍ତ୍ତନ ବା ମଜୁରି ପାଉଥିଲେ '। (ଅଭିନ୍ନ ଚନ୍ଦ୍ର ଦାସଙ୍କର ବୈଦିକ ସାହିତ୍ୟ ଓ ସଂସ୍କୃତି ପୃ ୧୪୪ରୁ ଉଦ୍ଧୃତ) ।

**ବୈଦିକ ସମର ବିଦ୍ୟା –**

ବୈଦିକ ଆର୍ଯ୍ୟମାନଙ୍କ ଭଳି ଗୋଟିଏ ସଭ୍ୟ ଜାତି ସମର ବିଦ୍ୟା ପ୍ରତି ଗୁରୁତ୍ୱ ଦେବା ସ୍ୱାଭାବିକ । ବୈଦିକ ଆର୍ଯ୍ୟମାନେ ସମଗ୍ର ବିଶ୍ୱକୁ ଆର୍ଯ୍ୟଭୂମି ଭାବରେ ପରିଗଣିତ କରିବାକୁ ଇଛା ପ୍ରକାଶ କରିଥିଲେ । ସେମାନଙ୍କର ସ୍ଲୋଗାନ ଥିଲା 'କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟ ' ବା ଆମେ ସାରା ବିଶ୍ୱକୁ ଆର୍ଯ୍ୟାନ୍ୱିତ କରାଇ ଚ୍ଚଲିବୁ । ଏହି ପ୍ରତିଶ୍ରୁତିବଦ୍ଧତାକୁ କାର୍ଯ୍ୟକାରୀ କଲାବେଳେ ବହୁ ଆର୍ଯ୍ୟେତର ଗୋଷ୍ଠୀର ସମ୍ମୁଖୀନ ହୋଇଥିବେ । ସେମାନେ କେବଳ ଆର୍ଯ୍ୟ ଧର୍ମର ବିରୋଧି ଭିନ୍ନ ମତବାଦୀ ଗୋଷ୍ଠୀ ସହିତ ଯେ ଯୁଦ୍ଧ କରିଥିବେ ତାହା ନୁହେଁ ବରଂ ଅନେକ ସମୟରେ ଆର୍ଯ୍ୟେତର ଗୋଷ୍ଠୀ ସହିତ ଯୁଦ୍ଧ କରିଛନ୍ତି । 'ଦାଶ ରାଜ୍ଞ' ଯୁଦ୍ଧ ଏହାର ପ୍ରମାଣ । ଆର୍ଯ୍ୟମାନେ କେବଳ ସତ୍ୟନିଷ୍ଠ , ଆଧ୍ୟାତ୍ମିକବାଦୀ ତଥା ଶାନ୍ତିପ୍ରିୟ ଜାତି ଥିଲେ ବୋଲି କହି ହେବ ନାହିଁ । ସେମାନେ ମଧ୍ୟ ରକ୍ତର ଜବାବ ରକ୍ତରେ ଦେଉଥିଲେ । ଏହି ପ୍ରରିପ୍ରେକ୍ଷୀରେ ଆର୍ଯ୍ୟମାନଙ୍କ ମଧ୍ୟରେ ସମର ବିଦ୍ୟାର ଯେଉଁ କଳା କୌଶଳ ବିକାଶ ଲାଭ କରିଥିଲା ଏବଂ ଯେଉଁ କୂଟନୀତି, ଧର୍ମନୀତି ଓ ଶୀଳନୀତି ଆଦିରେ ଏହାକୁ ପରିଶୀଳିତ ଓ ପରିମାର୍ଜିତ କରା ଯାଉଥିଲା ସେ ଗୁଡ଼ିକର ଆଲୋଚନା ନିମ୍ନରେ କରାଗଲା:-

**(କ) ଧନୁର୍ବିଦ୍ୟା –**

ଅତି ପ୍ରାଚୀନ କାଳରୁ (ବୈଦିକ ସମୟରୁ) ହର୍ଷ ବର୍ଦ୍ଧନଙ୍କ ଶାସନ ପର୍ଯ୍ୟନ୍ତ 'ଧନୁ ଓ ଶର' ଆର୍ଯ୍ୟମାନଙ୍କର ପ୍ରମୁଖ ଯୁଦ୍ଧାସ୍ତ୍ର ଥିଲା । ବୈଦିକ କାଳରେ ଯେଉଁ ଯୁଦ୍ଧ ସମାହିତ ହେଉଥିଲା ତହିଁରେ ଧନୁ ଓ ଶର ପ୍ରମୁଖ ଭୂମିକା ଗ୍ରହଣ କରୁଥିଲା। ତେଣୁ ଯୁଦ୍ଧଶାସ୍ତ୍ରକୁ ସାଂକେତିକ ଭାଷାରେ 'ଧନୁର୍ବେଦ' ବୋଲି କୁହାଯାଉଥିଲା । ସେତେବେଳେ କେବଳ ଧନୁରେ ଯୁଦ୍ଧ କରାଯାଉନଥିଲା । ଧନୁର୍ବେଦରେ ଅନ୍ୟାନ୍ୟ ଅସ୍ତ୍ର ସମୂହ ଓ ସେମାନଙ୍କର ପ୍ରୟୋଗ ବିଧି ସଂପର୍କରେ ବର୍ଣ୍ଣିତ ହୋଇଅଛି । ଏହା ବ୍ୟତୀତ ମନ୍ତ୍ରୋଚ୍ଚାରଣ କରି କେତେକ ଶସ୍ତ୍ର ମଧ୍ୟ ପ୍ରୟୋଗ କରା ଯାଉଥିଲା । ଏହି ମନ୍ତ୍ର ଗୁଡ଼ିକର ଋଷି ବିଶ୍ୱାମିତ୍ର ସ୍ରଷ୍ଟା ଥିଲେ ବୋଲି କୁହାଯାଇଛି । ବିଶ୍ୱାମିତ୍ର ପ୍ରଥମେ କ୍ଷତ୍ରିୟ ଥିଲେ, ପରେ ଋଷି ହେଲେ । ଧନୁର୍ବେଦ ସୃଷ୍ଟି କରିବାର କ୍ଷମତା ତାଙ୍କ ଠାରେ ଥିଲା ।

ଯୁଦ୍ଧରେ ବ୍ୟବହୃତ ଅସ୍ତ୍ର ଗୁଡ଼ିକ ଉଭୟ ଆକ୍ରମଣ ଓ ଆତ୍ମରକ୍ଷା ଲାଗି ଉଦ୍ଦିଷ୍ଟ ଥିଲା । ଏଗୁଡ଼ିକ ପୁଣି ଚ୍ଚରି ଭାଗରେ ବିଭକ୍ତ - ଯଥା ମୁକ୍ତ, ଅମୁକ୍ତ, ମୁକ୍ତା ମୁକ୍ତ ଓ ଯନ୍ତ୍ର ମୁକ୍ତ । ମୁକ୍ତ ଅସ୍ତ୍ର ଯୋଦ୍ଧାର ହସ୍ତରୁ ମୁକ୍ତ ହୋଇ ଶତ୍ରୁ ଉପରେ ପଡ଼ିଥାଏ । ଶର ହେଉଛି ଏହି ଶ୍ରେଣୀର । ଅମୁକ୍ତ ଅସ୍ତ୍ରକୁ ହାତରେ ଧରି ଶତ୍ରୁ ଉପରେ ପ୍ରହାର କରିବାକୁ ପଡିଥାଏ । ଖଣ୍ଡା ହେଉଛି ଏହି ଶ୍ରେଣୀର । ଆଉ ଗୋଟିଏ ପ୍ରକାର ଅସ୍ତ୍ର ଥିଲା ଯାହା ଶତ୍ରୁ ଉପରକୁ ଫିଙ୍ଗା ଯିବା ସଂଗେ ସଂଗେ ହାତରେ ଧରି ଶତ୍ରୁକୁ

ଆଘାତ କରା ଯାଉଥିଲା । ଏହାକୁ 'ମୁକ୍ତାମୁକ୍ତ' ବୋଲି କୁହାଯାଏ । ବର୍ଚ୍ଛା ଏହି ଶ୍ରେଣୀର ଅସ୍ତ୍ର । ଆଉ ଗୋଟିଏ ପ୍ରକାର ଅସ୍ତ୍ର ଥିଲା, ଯାହାକୁ କି ଯନ୍ତ୍ରରୁ ଛଡା ଯାଉଥିଲା । ଏହାକୁ 'ଯନ୍ତ୍ରମୁକ୍ତ' ବୋଲି କୁହାଯାଉଥିଲା । ମନ୍ତ୍ର ପ୍ରୟୋଗ ପରେ ଯେଉଁ ଅସ୍ତ୍ରକୁ ପ୍ରୟୋଗ କରାଯାଉଥିଲା ତାହାକୁ 'ମନ୍ତ୍ରମୁକ୍ତ' ବୋଲି କୁହାଯାଉଥିଲା ।

ଧନୁ ମଧ୍ୟ ସେହିପରି ବିଭିନ୍ନ ପ୍ରକାରର ଥିଲା ଏବଂ ତାହାର ଆକୃତିର ଭିନ୍ନତା ନେଇ ତାହା ନାମିତ ହେଉଥିଲା । ସେଗୁଡିକ ହେଲା ଶାର୍ଙ୍ଗ, କୋଦଣ୍ଡ, ପିନାକ, କାର୍ମୁକ ଇତ୍ୟାଦି । ଋଗ୍‌ବେଦରେ 'ଇଷୁକାର' ବୋଲି ଗୋଟିଏ ଶିଳ୍ପୀ ଗୋଷ୍ଠୀର ନାମ ଉଲ୍ଲେଖ କରାଯାଇଛି । ଏହି ଗୋଷ୍ଠୀର ଲୋକ ଶର ତିଆରି କରୁଥିଲେ ।

ବୈଦିକ ଆର୍ଯ୍ୟମାନେ 'କର୍ମ ବଣ୍ଟନ' ପ୍ରକ୍ରିୟାରେ ଯୁଦ୍ଧ କରିବାର ଦାୟିତ୍ୱ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଲୋକଙ୍କ ଉପରେ ଛାଡି ଦେଇଥିଲେ । ସେମାନେ ହେଲେ ରାଜନ୍ୟ । ଏହି ରାଜନ୍ୟ ଗୋଷ୍ଠୀ ପରେ କ୍ଷତ୍ରିୟ ଭାବରେ ପରିଚିତି ହେଲେ । ଏହି କ୍ଷତ୍ରିୟ ଗୋଷ୍ଠୀ ସ୍ୱୀୟ ବଳ ଉପରେ ସର୍ବଦା ନିର୍ଭର କରୁଥିଲେ । କ୍ଷତ୍ରିୟର କାର୍ଯ୍ୟ କହିଲେ ଯୁଦ୍ଧକୁହିଁ ବୁଝାଉଥିଲା । 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି ଯୁଦ୍ଧ ହେଉଛି କ୍ଷତ୍ରିୟର ବୀର୍ଯ୍ୟ ସ୍ୱରୂପ ।(୭୦) କ୍ଷତ୍ରିୟମାନଙ୍କ ପାଇଁ ସନ୍ନ୍ୟାସ ଧର୍ମ ସଂପୂର୍ଣ୍ଣ ଭାବରେ ମନା ଥିଲା । ଭିକ୍ଷା କରିବା କ୍ଷତ୍ରିୟର ନୀତି ବିରୁଦ୍ଧ ଥିଲା । ଏହାର ଉଦ୍ଦେଶ୍ୟ ହେଉଛି ଦେଶକୁ ବହିଃ ଶତ୍ରୁର ଆକ୍ରମଣରୁ ରକ୍ଷା କରିବା ସହିତ ଦେଶ ମଧ୍ୟରେ ଅଶାନ୍ତିର ସଂଘର୍ଷକୁ ଦମନ କରିବା ।

'ଅଥର୍ବବେଦ ଓ ତୈତ୍ତିରୀୟ ବ୍ରାହ୍ମଣ'ରେ 'କ୍ଷତ୍ର' ଶବ୍ଦଟି ଶକ୍ତି ଅର୍ଥରେ ପ୍ରଯୁକ୍ତ ହୋଇଛି । ଏହି 'କ୍ଷତ୍ର' ରାଜନ୍ୟର ପରିଭାଷା ଭାବରେ ବ୍ୟବହୃତ ହୋଇଅଛି । ଏହାର ତାତ୍ପର୍ଯ୍ୟ ହେଲା କ୍ଷତ୍ରିୟ-ଗୋଷ୍ଠୀ ରାଷ୍ଟ୍ରର ଶକ୍ତି ରୂପରେ ପରିଗଣିତ ହେଉଥିଲେ ।(୭୧) ବ୍ରାହ୍ମଣଗୋଷ୍ଠୀ ମାନସିକ ଶକ୍ତିର ପ୍ରତୀକ ଥିବା ବେଳେ କ୍ଷତ୍ରିୟଗୋଷ୍ଠୀ ଦୈହିକ ଶକ୍ତିର ପ୍ରତୀକ ଥିଲେ । ମୁନି ଋଷି ଓ କ୍ଷତ୍ରିୟମାନଙ୍କ ପାରସ୍ପରିକ ସହଯୋଗ ଓ ସହାୟତାରେ ଦକ୍ଷିଣ ଭାରତରେ ଆର୍ଯ୍ୟ ସଂସ୍କୃତିର ବିସ୍ତାର ହୋଇଥିଲା । କ୍ଷତ୍ରିୟର ମୁକ୍ତି କ୍ଷେତ୍ର ହେଉଛି ଯୁଦ୍ଧ ଭୂମି । ଫଳରେ କ୍ଷତ୍ରିୟମାନେ ଯୁଦ୍ଧ କ୍ଷେତ୍ରରେ ବୀର ମୃତ୍ୟୁକୁ ବରଣ କରୁଥିଲେ । ସନ୍ଧ୍ୟା ପରେ ଯୁଦ୍ଧ ଯେତେବେଳେ ବନ୍ଦ ହୋଇ ଯାଉଥିଲା ମା'ମାନେ ଯୁଦ୍ଧ ଭୂମିକୁ ଆସି ଶବ ଗୁଡିକୁ ପରୀକ୍ଷା କରୁଥିଲେ । ଛାତିର ଶସ୍ତ୍ରାଘାତରେ ଯଦି ପୁଅର ମୃତ୍ୟୁ ଘଟିଛି ତା ହେଲେ ପୁଅ ବୀରମୃତ୍ୟୁ ବରଣ କରିଛି ବୋଲି ସେମାନେ ନିଜକୁ ଧନ୍ୟ ମନେ କରୁଥିଲେ । ପିଠିରେ ଶସ୍ତ୍ରାଘାତ ହୋଇ ଯଦି ପୁଅ ମରିଥାଏ ତାହେଲେ ସେ ଭୀରୁ ବୋଲି ମା ନିଜକୁ ନିନ୍ଦିତା କରୁଥିଲେ ।

ଋଗ୍‌ବେଦ ୭ମ ମଣ୍ଡଳରେ 'ଦାଶରାଜ୍ଞ' ଯୁଦ୍ଧର ବର୍ଣ୍ଣନା ହୋଇଅଛି । ଏଥିରେ ଭରତଙ୍କର ରାଜା 'ସୁଦାସ'ଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟାବଳୀ ବର୍ଣ୍ଣିତ ହୋଇଅଛି । ତହିଁରେ 'ସୁଦାସ'କୁ ଖୁବ୍ ପ୍ରଶଂସା କରାଯାଇଛି । ଏହି ବେଦରେ ଆର୍ଯ୍ୟ ଗୋଷ୍ଠୀ ଓ ଆର୍ଯ୍ୟେତର ଦାସ ଗୋଷ୍ଠୀ, ଦସ୍ୟୁ ଗୋଷ୍ଠୀ ଓ ଅସୁର ଗୋଷ୍ଠୀ ମଧ୍ୟରେ ବହୁ ସଂଗ୍ରାମର ବର୍ଣ୍ଣନା କରାଯାଇଛି । ସର୍ବତ୍ର ଆର୍ଯ୍ୟମାନଙ୍କର ପ୍ରଶଂସା କରାଯାଇଛି । ତୈତ୍ତିରୀୟ ବ୍ରାହ୍ମଣରେ କୁରୁ-ପାଞ୍ଚାଳ ରାଜାମାନେ ଶୀତ ଋତୁରେ ଯୁଦ୍ଧ ପାଇଁ ବାହାରିବା କଥାର ବର୍ଣ୍ଣନା ହୋଇଅଛି । ସେଥିରେ କୁହାଯାଇଛି "ସେହି ହେତୁରୁ କୁରୁ-ପାଞ୍ଚାଳର ରାଜାମାନେ ଶୀତ ଦିନରେ ଯୁଦ୍ଧ

ଯାତ୍ରାରେ ବାହାରନ୍ତି''।(୭୨) ବାସ୍ତବିକ ଭାରତ ଭୂମିରେ ଶୀତ ଦିନରେ ହିଁ ବହୁ ବଡ଼ ବଡ଼ ଯୁଦ୍ଧ ସଂଗଠିତ ହୋଇଅଛି ।

ବୈଦିକ ଯୁଦ୍ଧରେ ଇନ୍ଦ୍ରଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ତାଙ୍କୁ ଆର୍ଯ୍ୟମାନେ ଯୁଦ୍ଧର ଦେବତା ବୋଲି କଳ୍ପନା କରୁଥିଲେ । ଇନ୍ଦ୍ର ବୃତ୍ରାସୁରକୁ ସଂହାର କରିଥିଲେ । ତଦ୍ୱାରା ଆବଦ୍ଧ ଜଳ ରାଶି ଆର୍ଯ୍ୟମାନଙ୍କ ଲାଗି ମୁକ୍ତ ହୋଇଥିଲା । ବଜ୍ରାଘାତରେ ସେ ମେଘର ବୁକୁକୁ ବୀଦିର୍ଣ୍ଣ କରିଥିଲେ । ଇନ୍ଦ୍ର ଋଗ୍‌ବେଦରେ ଗୋଟିଏ ସ୍ଥାନରେ କହିଅଛନ୍ତି 'ମୁଁ ଆର୍ଯ୍ୟ ଲାଗି ଭୂମି ଆଣି ଦେଲି ଏବଂ ଯଜମାନ ମନୁଷ୍ୟ ଲାଗି ବୃଷ୍ଟି ଆଣି ଦେଲି'।(୭୩) ଆର୍ଯ୍ୟମାନେ ଭାରତ ଭୂମିକୁ ଇନ୍ଦ୍ରଙ୍କ ଦୟାରୁ ପାଇଥିଲେ । ଇନ୍ଦ୍ର ବୃଷ୍ଟିର ଦେବତା ବୋଲି ଆର୍ଯ୍ୟମାନଙ୍କର ବିଶ୍ୱାସ । ଇନ୍ଦ୍ରଙ୍କ ପିତା ଋଷି କାଶ୍ୟପ ଓ ମାତା ହେଲେ ଅଦିତି । କାଶ୍ୟପ ବୀର ସନ୍ତାନର ଜନକ ହେବାକୁ ଚାହୁଁ ଥିବାରୁ ଅଦିତି ଇନ୍ଦ୍ରଙ୍କୁ ତାଙ୍କ ଗର୍ଭରେ ଧାରଣ କରିଥିଲେ । ବେଦରେ କଥିତ ଅଛି ଇନ୍ଦ୍ରଙ୍କୁ ବହୁ ସହସ୍ର ମାସ ଓ ଅନେକ ଶୀତ ଋତୁ ଧରି ଅଦିତି ତାଙ୍କୁ ଗର୍ଭରେ ଧାରଣ କରିଥିଲେ । (୭୪) ଇନ୍ଦ୍ର ଜନ୍ମ ହେଲା ବେଳେ ଖୁବ୍ ତେଜସ୍ୱୀ ରୂପ ଧାରଣ କରିଥିଲେ । (୭୫) ଇନ୍ଦ୍ର ଜନ୍ମ ହେବା ମାତ୍ରେ ସୋମ ରସ ପାନ କରିଥିଲେ ।(୭୬) ଇନ୍ଦ୍ରଙ୍କର ଅନ୍ୟନାମ ହେଉଛି 'ଶକ୍ରେତୁ'। ସେ ଯମୁନା ନଦୀ ତୀରରେ ଗୋଟିଏ ସ୍ଥାନରେ ଶହେଟି ଯଜ୍ଞ କରିଥିଲେ । ତାଙ୍କରି ନାମାନୁସାରେ ସେ ସ୍ଥାନର ନାମ ହେଉଛି ଇନ୍ଦ୍ରପ୍ରସ୍ଥ । ଇନ୍ଦ୍ର ଯେଉଁ ରଥରେ ବସି ଆସୁଥିଲେ ତାହାକୁ 'ତ୍ୱଷ୍ଟ୍ର' ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ 'ତ୍ୱଷ୍ଟ୍ରା'ଙ୍କର ନାମ ବିଶ୍ୱକର୍ମା ହୋଇଥିଲା । ଇନ୍ଦ୍ରଙ୍କ ଘୋଡ଼ା ଥିଲେ ସବୁଜ ରଂଗର । ସେ ଖୁବ୍ ଲମ୍ବ ଓ ଓଜନଦାର ଧନୁ ଧରୁଥିଲେ । ଏହି ଧନୁର ମଝିରେ ସୁନା ଛାଉଣି କରା ଯାଇଥିଲା । ଋଗ୍‌ବେଦରେ ଏହି ହିରଣ୍ମୟ ଧନୁର ବର୍ଣ୍ଣନା ଅଛି ।(୭୭) ଇନ୍ଦ୍ର ଧନୁବ୍ୟତୀତ ଖଣ୍ଡା, ବର୍ଚ୍ଛା ଓ ଅନ୍ୟାନ୍ୟ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ରହୁଥିଲେ । ସେ ଦିଧୀଚିଙ୍କ ଅସ୍ଥିରେ ତିଆରି ବଜ୍ର ଧାରଣ କରୁଥିଲେ । ଯୁଦ୍ଧ କ୍ଷେତ୍ରରେ ଇନ୍ଦ୍ରଙ୍କର ସାହାଯ୍ୟ ନେଇ ଆର୍ଯ୍ୟମାନେ ସକଳ ଯୁଦ୍ଧରେ ବିଜୟୀ ହେଉଥିଲେ । ତେଣୁ ଇନ୍ଦ୍ର ଯୁଦ୍ଧରେ ଦେବତା ଭାବରେ ପ୍ରତିପନ୍ନ ହୁଅନ୍ତି । ଐତରେୟ ବ୍ରାହ୍ମଣରେ ବର୍ଣ୍ଣନା ଅଛି ଇନ୍ଦ୍ରଙ୍କୁ ବୃତ୍ରାସୁର ସଂଗ୍ରାମରେ ମରୁତ ଗଣ ସାହଯ୍ୟ କରିଥିବାରୁ ଇନ୍ଦ୍ର ସେମାନଙ୍କୁ ପୁରସ୍କୃତ କରିଥିଲେ ।(୭୮)

**ଯୁଦ୍ଧର ଲକ୍ଷ୍ୟ –**

ବୈଦିକ ଯୁଦ୍ଧ ଗୁଡିକ କେତେବେଳେ ଦେବାସୁର ମଧ୍ୟରେ, କେତେବେଳେ ଆର୍ଯ୍ୟ-ଦସ୍ୟୁ ମଧ୍ୟରେ, କେତେବେଳେ ଆର୍ଯ୍ୟ- ଦାସ ମଧ୍ୟରେ ସଂଘଟିତ ହୋଇଥିଲା । ଏହି ଯୁଦ୍ଧମାନଙ୍କରେ ଯେଉଁମାନେ ଆର୍ଯ୍ୟ ମୂଲ୍ୟବୋଧ ଗୁଡିକ ପ୍ରତି ମାନ୍ୟତା ପ୍ରଦର୍ଶନ କରୁ ନଥିଲେ ସେମାନଙ୍କୁ ବିନାଶ କରାଯାଉଥିଲା । ଏହି ଯୁଦ୍ଧଗୁଡିକ ବୃତ୍ର, ଶୁଷ୍ଣ, ଶମ୍ବର, ଚୁମୁରି, ନମୁଚି, ପିପ୍ରୁ, ମୃଗୟା ସ୍ତୁବିନ୍ଦ ଇତ୍ୟାଦିଙ୍କ ସହିତ ଘଟିଥିଲା । ଏହି ଯୁଦ୍ଧମାନଙ୍କର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ଥିଲା ଆର୍ଯ୍ୟ ଚିନ୍ତାଧାରା ଓ ମୂଲ୍ୟବୋଧ ଗୁଡିକୁ ପରାଜିତ ପକ୍ଷରେ ଗ୍ରହଣ କରାଇବା ଏବଂ ସ୍ୱୀୟ ଧର୍ମରେ ଦୀକ୍ଷିତ କରିବା । ସାରା ବିଶ୍ୱକୁ ଆର୍ଯ୍ୟ ବା ସଭ୍ୟ କରାଇ ନେବା ଥିଲା ସେମାନଙ୍କର ଲକ୍ଷ୍ୟ । ଆର୍ଯ୍ୟେତର ଗୋଷ୍ଠୀଙ୍କ ମଙ୍ଗଳ ସାଧନ ଆଧ୍ୟାତ୍ମିକ ଓ ଭୌତିକ ଅଭ୍ୟୁଦୟ କରାଇବା ଥିଲା ଆର୍ଯ୍ୟମାନଙ୍କର ଧର୍ମ । ଏହି ସଂପର୍କରେ ଋଗ୍‌ବେଦର

ଗୋଟିଏ ମନ୍ତ୍ରରେ କୁହାଯାଇଛି ଆମର ଯେତେ ଶକ୍ତି ଅଛି, ତାହା ପ୍ରୟୋଗ କରି ଆମେ ଶତ୍ରୁମାନଙ୍କୁ ପଦ ଦଳିତ କରିବୁ । କିନ୍ତୁ ଆମ ପ୍ରତି ଯେଉଁମାନେ ବନ୍ଧୁଭାବ ଦେଖାଇବେ ଆମେ ସେମାନଙ୍କର ବନ୍ଧୁହେବୁ ।(୭୯) ଶତ୍ରୁ ଯଦି ବନ୍ଧୁ ଭାବ ଦେଖାଇ ଆସିଲା ଆର୍ଯ୍ୟମାନେ ତାକୁ ବନ୍ଧୁ ଭାବରେ ଗ୍ରହଣ କରୁଥିଲେ । ଏଣୁ ମନେ ହୁଏ ଆର୍ଯ୍ୟ ଯୁଦ୍ଧଯାତ୍ରା ବିଶ୍ୱ କଲ୍ୟାଣ ଲାଗି ସହାୟକ ହୋଇଥିଲା । ବୈଦିକ ଆର୍ଯ୍ୟମାନେ ବଜୟକୁ ତିନି ଭାଗରେ ବିଭକ୍ତ କରିଥିଲେ । ତାହା ହେଲା ଧର୍ମ ବିଜୟ, ଆସୁର ବିଜୟ ଓ ଲୋଭ ବିଜୟ । ଆସୁର ବିଜୟ ହେଲା ବଳ ପ୍ରୟୋଗ କରି ଶତ୍ରୁକୁ କଷ୍ଟ ଦେବା । ଏହା ଥିଲା ଆର୍ଯ୍ୟମାନଙ୍କ ପାଇଁ ବର୍ଜନୀୟ । ଲୋଭ ପରବଶ ହୋଇ ଶତ୍ରୁ ଉପରେ ଆକ୍ରମଣ କରି ତା ଉପରେ ବିଜୟ ହାସଲ କରିବା ହେଉଛି ଲୋଭ ବିଜୟ । ଏଥିରେ ଶତ୍ରୁର ରାଜ୍ୟ ପ୍ରତି ବା ଧନ ପ୍ରତି ଲୋଭ ଦେଖା ଦେଇଥାଏ । ଏହା ମଧ୍ୟ ଥିଲା ଆର୍ଯ୍ୟମାନଙ୍କର ବର୍ଜନୀୟ । ଧର୍ମ ବିଜୟ ହେଲା ଧର୍ମ ରକ୍ଷା ଲାଗି ଯୁଦ୍ଧ କରି ଶତ୍ରୁଉପରେ ବିଜୟ ହାସଲ କରିବା । ଆର୍ଯ୍ୟମାନଙ୍କର ଏହି ଧର୍ମ ବିଜୟ ଥିଲା କାମ୍ୟ ।

**ଯୁଦ୍ଧରେ ଶାନ୍ତି ରକ୍ଷା –** ଧର୍ମ ଯୁଦ୍ଧ ଧର୍ମ ମାର୍ଗରେ ଆର୍ଯ୍ୟମାନେ କରୁଥିଲେ । ଯୁଦ୍ଧରେ କେତେକ ନିର୍ଦ୍ଦିଷ୍ଟ ନୀତି ଥିଲା । ଏହି ନୀତି ଗୁଡିକ ବିକ୍ଷିପ୍ତ ଭାବରେ ବେଦରେ ସନ୍ନିବେଶିତ ହୋଇଅଛି । ମହାଭାରତ ଯୁଦ୍ଧରେ ଏହି ବୈଦିକ ପରମ୍ପରା ଅନୁସୃତ ହୋଇଅଛି । ଭୀଷ୍ମ ଯୁଧିଷ୍ଠିରଙ୍କୁ ଯେଉଁ ରାଷ୍ଟ୍ର ନୀତି ସଂପର୍କରେ କହିଥିଲେ ତାହା ବୈଦିକ ପରମ୍ପରାର ଅନୁସରଣ କରିଅଛି । ସେଗୁଡିକ ହେଲା– '(କ) ଧର୍ମ ପକ୍ଷରେ ଥାଇ ରାଜାଙ୍କୁ ଯୁଦ୍ଧ କରିବାକୁ ହେବ । କେଉଁ ପକ୍ଷରେ ଧର୍ମ ଅଛି, ରାଜା ଯଦି ତାହା ଜାଣି ନପାରନ୍ତି, ତେବେ ତାଙ୍କୁ ଯୁଦ୍ଧରୁ ନିବୃତ୍ତ ହେବାକୁ ପଡିବ । ଏହାର ତାତ୍ପର୍ଯ୍ୟ ହେଲା ବରଂ ଯୁଦ୍ଧ ନହେବା ଶ୍ରେୟସ୍କର, କିନ୍ତୁ କୌଣସି ମତେ ଅଧର୍ମ ଯୁଦ୍ଧ କରିବାକୁ ହେବ ନାହିଁ । (ଖ) ଯୁଦ୍ଧ ପୂର୍ବରୁ ରାଜାଙ୍କୁ ଆପୋଷ ଆଲୋଚନା ମାଧ୍ୟମରେ ବିବାଦର ସମାଧାନ ଲାଗି ଚେଷ୍ଟା କରିବାକୁ ହେବ । ସେଭଳି ସମାଧାନ ସମ୍ଭବ ନହୋଇ ପାରିଲେ ଶେଷରେ ବାଧ୍ୟ ହୋଇ ଯୁଦ୍ଧ କରିବାକୁ ହେବ । (ଗ) ଶସ୍ତ୍ରହୀନ ଲୋକକୁ ଆକ୍ରମଣ କରିବାକୁ ହେବ ନାହିଁ । (ଘ) ଯାହାର ଅସ୍ତ୍ରଭାଙ୍ଗି ଯାଇଛି କିମ୍ବା ବାହନ ପଶୁ ମରିଯାଇଛି, ତାକୁ ହତ୍ୟା କରିବାକୁ ହେବ ନାହିଁ । (ଙ) ପରାସ୍ତ ହୋଇଥିବା ଲୋକକୁ କିମ୍ବା ଯୁଦ୍ଧ ଦେଖି ଡରି ଯାଉଥିବା ବ୍ୟକ୍ତିକୁ ଆକ୍ରମଣ କରିବାକୁ ହେବ ନାହିଁ । (ଚ) ଶରଣ ପଶିଥିବା ଲୋକକୁ ଆକ୍ରମଣ କରିବାକୁ ହେବ ନାହିଁ । (ଛ) ଯୁଦ୍ଧରେ 'ବିଷବୋଳା' ଅସ୍ତ୍ର ବ୍ୟବହାର କରାଯିବ ନାହିଁ । (ଜ) ଆହତ ଶତ୍ରୁକୁ ଶତ୍ରୁ ଶିବିରରେ ପହଞ୍ଚାଇ ଦେବାକୁ ହେବ କିମ୍ବା ନିଜ ଶିବିରକୁ ଆଣି ତାହାର ଚିକିତ୍ସା ବ୍ୟବସ୍ଥା କରିବାକୁ ହେବ । (ଝ) ସୂର୍ଯ୍ୟାସ୍ତ ପରେ ଯୁଦ୍ଧ କରିବାକୁ ହେବ ନାହିଁ । (ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ପଞ୍ଚମଖଣ୍ଡ - ବୈଦିକ ପର୍ବ - ଚତୁର୍ଥ ଭାଗ-ପୃଷ୍ଠା ୧୭୫-୧୭୬ ରୁ ଉଦ୍ଧୃତ) ଏଥିରୁ ଅନୁମିତ ହୁଏ ବୈଦିକ ଆର୍ଯ୍ୟମାନେ କେବଳ ଧର୍ମ ବିଜୟ ଚାହୁଁ ନଥିଲେ । ସେ ମଧ୍ୟ ଧର୍ମ ଯୁଦ୍ଧ ଚାହୁଁଥିଲେ । ଯୁଦ୍ଧରେ ସେମାନେ ମାନବିକ ମୂଲ୍ୟ ବୋଧ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ ।

**ଯୋଦ୍ଧାଙ୍କ ଶ୍ରେଣୀ ବିଭାଗ –**

ବୈଦିକ କାଳରେ ଅଶ୍ୱାରୋହୀ ବାହିନୀର ବ୍ୟବହାର ଆଦୌ ନଥିଲା ବୋଲି ବହୁ ବୈଦିକ ତତ୍ତ୍ୱବିତ୍ ମତ ପ୍ରଦାନ କରିଅଛନ୍ତି । ଋଗ୍‌ବେଦ ଦଶମ ମଣ୍ଡଳର ଗୋଟିଏ ମନ୍ତ୍ରରେ ଲଢୁଥିବା ଦୁଇଟି

ହାତୀଙ୍କୁ ଅଙ୍କୁଶ ସାହାଯ୍ୟରେ ବଶୀଭୂତ କରାଯାଇଥିବା କଥା ଉଲ୍ଲେଖ ଅଛି ।(୮୦) ମାତ୍ର ଏହା ଯୁଦ୍ଧରେ ବ୍ୟବହୃତ ହାତୀ କି ନାହିଁ ତାହା ନିଶ୍ଚିତ ହୋଇପାରୁ ନାହିଁ । ଏଥିରୁ ଅନୁମାନ କରାଯାଏ ବୈଦିକ ଆର୍ଯ୍ୟମାନେ ଯୁଦ୍ଧରେ ହସ୍ତୀଙ୍କୁ ବ୍ୟବହାର କରୁଥିଲେ କି ନାହିଁ ତାହା ବିଗ୍ରର ବିଷୟ । ତେଣୁ ବୈଦିକ କାଳରେ ଗଜାରୋହୀ ସୈନ୍ୟ ଥିଲେ କି ନାହିଁ ତାହା ଠିକ୍ ଭାବରେ କହିହେବ ନାହିଁ ; କିନ୍ତୁ ବୈଦିକ ଯୁଗରେ ଆର୍ଯ୍ୟମାନଙ୍କର ପଦାତିକ ବାହିନୀ ଓ ରଥୀ ବାହିନୀ ଉଭୟ ଥିଲେ । ଏମାନେ 'ପତ୍ତି' ଓ ରଥୀ ନାମରେ ଅଭିହିତ । ବୈଦିକ ସାହିତ୍ୟରେ ଏମାନଙ୍କର ବର୍ଣ୍ଣନା ଭରପୂର । ତୁଳନାତ୍ମକ ଦୃଷ୍ଟିରୁ ଦେଖିଲେ 'ପତ୍ତି' ଓ ରଥୀମାନଙ୍କ ମଧ୍ୟରେ ରଥୀମାନେ ଥିଲେ ଅଧିକ ଶକ୍ତିଶାଳୀ । ଆର୍ଯ୍ୟମାନଙ୍କର ରଥୀବାହିନୀ ଥିଲା ଦୁର୍ଦ୍ଧର୍ଷ ଓ ପ୍ରଚଣ୍ଡ ଗତିଶୀଳ । ତେଣୁ ଆର୍ଯ୍ୟେତର ଗୋଷ୍ଠୀ ଉପରେ ଆର୍ଯ୍ୟମାନେ ବିଜୟ ହାସଲ କରିବା ଖୁବ୍ ସହଜ ସାଧ୍ୟ ହେଉଥିଲା । ଅଗ୍ନିଙ୍କ ପ୍ରଶଂସା କରିବାକୁ ଯାଇ ଅଥର୍ବ ବେଦରେ ଗୋଟିଏ ସ୍ଥାନରେ କୁହାଯାଇଛି — 'ସମ୍ମୁଖରେ ପ୍ରତିଷ୍ଠିତ ଏହି ଅଗ୍ନି 'ରଥୀ ପତ୍ତି' ମାନଙ୍କୁ ପଦ ଦଳିତ କଲା ଭଳି ସର୍ବଶକ୍ତିମାନ ଶତ୍ରୁଙ୍କୁ ପରାସ୍ତ କରିଥିଲେ । (୮୧) ଏଥିରୁ ରଥୀମାନଙ୍କର ସବଳତା ସହଜରେ ଅନୁମେୟ । ତଥାପି ବୈଦିକ ସାହିତ୍ୟରେ ପଦାତିକ ସୈନ୍ୟମାନଙ୍କ ସଂପର୍କରେ କେତେକ ବର୍ଣ୍ଣନା ଦେଖିବାକୁ ମିଳେ । ଅଥର୍ବ ବେଦର ଗୋଟିଏ ମନ୍ତ୍ରରେ କିପରି ଜଣେ ପଦାତିକ ସୈନ୍ୟ ଅସ୍ତ୍ର ଶସ୍ତ୍ର ଓ ସାଞ୍ଜୁ ଆଦି ପିନ୍ଧି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିଲା ତାହାର ବର୍ଣ୍ଣନା ଅଛି । ସେଠାରେ ବୈଦିକ ଋଷି କହୁଛନ୍ତି 'ମୁଁ ତୁମ ଦେହର ଦୁର୍ବଳ ଅଂଶ ଗୁଡିକ ଏହି ବର୍ମ ଦ୍ୱାରା ଘୋଡାଇ ରଖୁଛି । ରାଜା ସୋମ ତୁମକୁ ଅମୃତରେ ଆବୃତ କରି ରଖନ୍ତୁ । ଯୁଦ୍ଧ କ୍ଷେତ୍ରରେ ବିଜୟ ଦିଆଇ ବରୁଣ ତୁମ ପାଇଁ ଉଚ୍ଚ ଆସନ ଅଣାନ୍ତୁ '।(୮୨) (କ) ବୈଦିକ ପଦାତିକ ବାହିନୀ ରଥୀମାନଙ୍କର ସହାୟକ ଥିଲେ ଏବଂ ସେମାନଙ୍କ ପଛେ ପଛେ ଗ୍ଲୁଥିଲେ । (ଖ) ଯୁଦ୍ଧକୁ ଯିବା ପୂର୍ବରୁ ପ୍ରତ୍ୟେକ ପଦାତିକ ବାହିନୀ ତାର ଶରୀରକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବାପାଇଁ 'ବର୍ମ' ଦ୍ୱାରା ସୁରକ୍ଷିତ କରୁଥିଲା । (ଗ) ଧନୁ ଓ ଶର ଥିଲା ତାହାର ପ୍ରଧାନ ଅସ୍ତ୍ର । ଏହା ଛଡା ସେ ଅତି ନିକଟରେ ହାତାହାତି ଯୁଦ୍ଧ ଲାଗି ଖଣ୍ଡା ଦ୍ୱାରା ସଜ୍ଜିତ ହେଉଥିଲା । (ଘ) ଧନୁର ଆକୃତି ଖୁବ୍ ବଡ ଥିଲା ଏବଂ ତାର ଉଚ୍ଚତା ସହିତ ସମାନ ଥିଲା । ଏହାକୁ ଭୂମି ଉପରେ ସିଧାରେ ରଖି ବା ଗୋଡର ଆଙ୍ଗୁଠିରେ ଚିପି ଧରିବାକୁ ପଡୁଥିଲା ଏବଂ ତା ପରେ କର୍ଣ୍ଣ ମୂଳ ଯାଏ ଏହାର ଗୁଣକୁ ଟାଣି ଶର ନିକ୍ଷେପ କରିବାକୁ ପଡୁଥିଲା । (ଙ) ଶରର ଆକାର ଖୁବ୍ ଦୀର୍ଘ ଥିଲା । (ଚ) ସେ ଯେତିକି ଉଚ୍ଚ ସେତିକି ଉଚ୍ଚର ଗୋଟିଏ ବଳଦ ଚମଡା ତିଆରି ଢାଲ ବ୍ୟବହାର କରୁଥିଲା । ଏହା ଅବଶ୍ୟ ତା ଦେହ ଓସାରର ନଥିଲା । ଏହାକୁ ସେ କ୍ଷିପ୍ର ଗତିରେ ଚତୁରତା ସହିତ ସଞ୍ଚାଳନ କରି ଶତ୍ରୁ ପକ୍ଷର ଆକ୍ରମଣରୁ ନିଜକୁ ରକ୍ଷା କରୁଥିଲା । (ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ପଞ୍ଚମ ଖଣ୍ଡ- ବୈଦିକ ପର୍ବ, ଚତୁର୍ଥ ଭାଗ ପୃଷ୍ଠା ୧୮୧-୧୮୨ରୁ ଉଦ୍ଧୃତ)

ବୈଦିକ ଆର୍ଯ୍ୟମାନେ ଯୁଦ୍ଧ କ୍ଷେତ୍ରରେ ରଥ ବ୍ୟବହାର କରୁଥିବାର କଥା ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି ।(୮୩) ଉଚ୍ଚ କୁଳର ବ୍ୟକ୍ତିମାନେ ରଥରେ ଚଢି ଯୁଦ୍ଧ କରୁଥିଲେ । ଅନ୍ୟମାନେ ପାଦରେ ଗ୍ଲି ଯୁଦ୍ଧ କରୁଥିଲେ । ସେମାନଙ୍କୁ 'ପତ୍ତି' ବା ପାଦରେ ଗ୍ଲିବା ଲୋକ ବୋଲି କୁହାଯାଉଥିଲା । ରଥୀଙ୍କ ଦୁଇ ପାଖରେ ଯେଉଁ ବୀର ଦୁଇଜଣ ବସୁଥିଲେ ସେମାନେ ଥିଲେ ତାଙ୍କର ଅଙ୍ଗ ରକ୍ଷୀ ସ୍ୱରୂପ । ଅଥର୍ବ ବେଦରେ ମଧ୍ୟ ସେହିଭଳି ରଥୀଙ୍କ ଦୁଇପଟେ ଦୁଇଜଣ ଅଙ୍ଗରକ୍ଷୀଥିବାର ବର୍ଣ୍ଣନା

ରହିଅଛି ।(୮୪) ସାଧାରଣତଃ ଘୋଡାମାନଙ୍କ ଦ୍ୱାରା ରଥ ଟଣା ଯାଉଥିଲା । ସାଧାରଣତଃ ଦୁଇଟି ଘୋଡା ରଥ ଟାଣୁ ଥିଲେ । ଋଗ୍‌ବେଦର ଗୋଟିଏ ସ୍ଥାନରେ ତିନୋଟି ଘୋଡା ରଥ ଟାଣୁଥିବା ବର୍ଣ୍ଣନା ରହିଅଛି ।(୮୫) 'କଠକ ସଂହିତା'ରେ ରଥ ପଞ୍ଚବାହୀ ଶବ୍ଦର ଉଲ୍ଲେଖରୁ ପ୍ରମାଣ ମିଳେ ଯେ ପାଞ୍ଚଟି ଘୋଡା ଦ୍ୱାରା ମଧ୍ୟ ସେତେବେଳେ ରଥ ଟଣା ଯାଉଥିଲା ।(୮୬) ସବିତା ଦେବଙ୍କ ରଥକୁ ସାତୋଟି ଘୋଡା ଟାଣୁଥାନ୍ତି ବୋଲି ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି । 'ଛାନ୍ଦୋଗ୍ୟ ଉପନିଷଦ୍'ରେ ଦୁଇ ଚକ ଥିବା ରଥ ବିଷୟ ଉଲ୍ଲିଖିତ ।(୮୭) ବେଦରେ ଆକାଶ ଯାନର ଉଲ୍ଲେଖ ଅଛି । ଋଗ୍‌ବେଦ କହିବା ଅନୁସାରେ ଥରେ ଭୁଜ୍ୟୁ ନାମକ ଜଣେ ଆର୍ଯ୍ୟ ବୀରଙ୍କୁ 'ତୁଗ୍ର' ନାମକ ଜଣେ ଆର୍ଯ୍ୟେତର ଗୋଷ୍ଠୀର ବ୍ୟକ୍ତି ପାଣିରେ ବୁଡାଇ ମାରି ଦେବାର ଉଦ୍ୟମ କରିଥିଲେ । ଅଶ୍ୱିନୀ କୁମାର ଦୟା କରି ଜଳକୁ ସ୍ପର୍ଶ କରୁ ନଥିବା ଗୋଟିଏ ଆକାଶଗ୍ୱରୀ ଯାନରେ ଆସି 'ଭୁଜ୍ୟୁ'ଙ୍କୁ ବୁଡିଯିବା ଅବସ୍ଥାରୁ ରକ୍ଷା କଲେ ।(୮୮) ଏହାକୁ କଳ୍ପନାର ବସ୍ତୁ କୁହାଯାଇ ପାରିବ ନାହିଁ । ଏହା ମଧ୍ୟ ବେଦରେ ଉଲ୍ଲିଖିତଯେ ଆର୍ଯ୍ୟମାନେ ଯେତେବେଳେ ମହାପ୍ରଳୟର ସୂଚନା ପାଇଲେ ସେତେବେଳେ ସେମାନଙ୍କ ମଧ୍ୟରୁ କେତେକ ଏକ ଅନ୍ତରୀକ୍ଷ ଯାନରେ ସପ୍ତସିନ୍ଧୁ ଅଞ୍ଚଳ ଛାଡି ଗ୍ରହାନ୍ତରକୁ ଗ୍ୱଲିଗଲେ ।

ଯୁଦ୍ଧରେ ଜୟ ଲାଭ କରିବାକୁ ହେଲେ ରଥୀମାନଙ୍କର ସାହାଯ୍ୟ ଥିଲା ଅପରିହାର୍ଯ୍ୟ । ତେଣୁ ରଥ, ଘୋଡାର ମହତ୍ତ୍ୱ ବୈଦିକ କାଳରେ ଅଧିକ ଥିଲା । ଯୁଦ୍ଧ ଭୂମିରେ ସହଜରେ ଗ୍ୱଲିବା ପାଇଁ ହାଲୁକା ଅଥଚ ଟାଣୁଆ ରଥର ଆବଶ୍ୟକତା ଥିଲା । ରଥ ଚଳାଉଥିବା ବ୍ୟକ୍ତିଙ୍କୁ ସାରଥି କୁହାଯାଉଥିଲା । ସେ ଯୁଦ୍ଧରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରୁ ନଥିଲେ । ସେ ନିରସ୍ତ୍ର ଥିଲେ । ଯୁଦ୍ଧର ନୀତି ଅନୁସାରେ ଶତ୍ରୁପକ୍ଷର କେହି ତାଙ୍କୁ ଆକ୍ରମଣ କରୁନଥିଲେ । ସେତେବେଳେ ରଥ ଚଳାଇବାକୁ ଛୋଟ କାମ ବୋଲି କୁହାଯାଉନଥିଲା । କ୍ଷତ୍ରିୟ ବୀର ତଥା ନାରୀମାନେ ରଥ ଚଳା କୌଶଳ ଆୟତ୍ତ କରିଥିଲେ । ଋଗ୍‌ବେଦର ବର୍ଣ୍ଣନା ଅନୁଯାୟୀ ରାଜା 'ଖେଳ' ଥରେ ଦାସମାନଙ୍କ ସହିତ ଯୁଦ୍ଧ କରୁଥିଲେ । ତାଙ୍କ ରାଣୀ 'ବିଶ୍‌ପଳା' ତାଙ୍କ ସାରଥି ଥିଲେ । ଖେଳ ମରି ଯିବା ପରେ 'ବିଶପଳା' ନିଜେ ଯୁଦ୍ଧ କରିଥିଲେ । ସେଥିରେ ତାଙ୍କର ଗୋଡ କଟିଯାଇଥିଲା । ଅଶ୍ୱିନୀ କୁମାର ତାଙ୍କ ଠାରେ ଗୋଟିଏ ଲୁହାର ଗୋଡ ଲଗାଇ ଦେଇଥିଲେ । ପରିଶେଷରେ ସେ ଯୁଦ୍ଧରେ ଜିତି ଦାସମାନଙ୍କୁ ପରାଭୂତ କରିଥିଲେ ।(୮୯)

ଘୋଡାକୁ ପାଳିବା ପୋଷିବା ଠାରୁ ତାହାକୁ ବିଭିନ୍ନ ବିଷୟରେ ତାଲିମ ଦେବା ଥିଲା ଅଶ୍ୱବିଦ୍ୟାର ଅନ୍ତର୍ଗତ । ଋଷି 'ଶାଳିହୋତ୍ର' ଏହି ବିଦ୍ୟାକୁ ସୃଷ୍ଟି କରିଥିଲେ ବୋଲି ପ୍ରାଚୀନ ଭାରତୀୟ ପରମ୍ପରା କହିଥାଏ । ସେଥିପାଇଁ ଏହି ବିଦ୍ୟାର ନାମ ହେଉଛି 'ଶାଳିହୋତ୍ରମ୍' । ଏଥିରୁ ଅନୁମିତ ହେଉଛି ଅଶ୍ୱବିଦ୍ୟା ପ୍ରାଚୀନ ବୈଦିକ କାଳରୁ ପ୍ରସିଦ୍ଧି ଲାଭ କରିଥିଲା ।

**ବୈଦିକ ଅସ୍ତ୍ର ଶସ୍ତ୍ର –**

ଶୁକ୍ଳ ଯଜୁର୍ବେଦର 'ଶତରୁଦ୍ରୀୟ' ସୂକ୍ତରେ ରୁଦ୍ର ସହସ୍ର ସହସ୍ର ଅସ୍ତ୍ର ବ୍ୟବହାର କରିଥିବାର ବର୍ଣ୍ଣନା ରହିଅଛି ।(୯୦) ସେ ହେଉଛନ୍ତି ଯୁଦ୍ଧର ଦେବତା, ଏଠାରେ କେତେକ ପ୍ରମୁଖ ଅସ୍ତ୍ରଶସ୍ତ୍ର ସଂପର୍କରେ ଆଲୋଚନା କରାଗଲା । **(କ) ପଟ୍ଟିଶ** - ଏହା ଏକ ଲମ୍ବା ଗ୍ୱବୁକ ଭଳି, **(ଖ) ଇଷୁ** - ଏହାର ଆକାର ଶର ଭଳି । ଏହା ହେଉଛି ଏକ ଛୋଟ ଖଣ୍ଡା, ଲମ୍ବାରେ ଏହା ହେଉଛି ଦୁଇହାତ । ଧନୁର୍ବେଦରେ

କୁହାଯାଇଛି . ଏହାକୁ ଚାରି ପ୍ରକାର ପ୍ରୟୋଗ କରି ହେବ । **(ଗ) ପରଶୁ** - ଏହା ଆଧୁନିକ ଫାର୍ସା ସହିତ ସମାନ । ଭୃଗୁବଂଶୀୟ ପରଶୁରାମ ଏହି ଅସ୍ତ୍ରର ସଫଳ ପ୍ରୟୋଗ କରି କ୍ଷତ୍ରିୟମାନଙ୍କୁ ନିଧନ କରିଥିଲେ । **(ଘ) ଗୋଶିରସ୍** - ଏହା ଗୋଟିଏ ଛୋଟ ବର୍ଚ୍ଛା ଆକୃତିର । ଏହା ଦୁଇଫୁଟ ଲମ୍ବା । ଦେଖିବାକୁ ଗାଇର ଶିଙ୍ଗ ଭଳି । ଏହାକୁ ଶତ୍ରୁ ଉପରକୁ ନିକ୍ଷେପ କରାଯାଏ । **(ଙ) ଅସିଧେନୁ** - ଏହା ପ୍ରାୟ ଦେଢ ଫୁଟ ଲମ୍ବର ଗୋଟିଏ ଛୁରୀ. ହାତାହାତି ଯୁଦ୍ଧରେ ଏହା ବ୍ୟବହୃତ ହେଉଥିଲା । **(ଚ) ଲବିତ୍ର** - ଏହା ଆଧୁନିକ ଗୟନ୍ତି ପରି । ଏହାର ଉଭୟ ପଟେ ଶତ୍ରୁକୁ ଆଘାତ କରା ଯାଉଥିଲା । **(ଛ) କୁନ୍ତ** - ଏହା ବିଶେଷ ଭାବରେ ତିଆରି ବର୍ଚ୍ଛା । ଯାହାର ଅଗରେ ଛଅଟି ମୁନ ଥିଲା । ଏହାର ଲମ୍ବ ଥିଲା ପ୍ରାୟ ଦଶ ହାତ । ଏହାଦ୍ୱାରା ଶତ୍ରୁକୁ ଦୂରରୁ ଆକ୍ରମଣ କରା ଯାଉଥିଲା ଏବଂ ପ୍ରତିହତ କରାଯାଉଥିଲା । (ଜ) ସ୍ଥୂଣ - ଅର୍ଥ ହେଉଛି ଖମ୍ବ । ଏହାର ଆକୃତି ଖମ୍ବ ଭଳି । ଏହାର ଆଗରେ ଗୋଲାକାର ଓଜନିଆ ଧାତୁ ଖଞ୍ଜା ଯାଇ ଶତ୍ରୁକୁ ଆଘାତ କରାଯାଉଥିଲା । **(ଝ) ପ୍ରାସ** - ଏହା କୁନ୍ତ ବା ଟେଣ୍ଟା ଭଳି । ଏଥିରେ ଗୋଟିଏ ମୁନ ଥିଲା । ଏହା ଥିଲା ଚାରି ହାତରୁ ସାତ ହାତ ପର୍ଯ୍ୟନ୍ତ ଲମ୍ବା । **(ଞ) ପିନାକ** - ଶିବଙ୍କର ଏହା ଅସ୍ତ୍ର । ଏହା ହେଉଛି ତ୍ରିଶୂଳ । ଏହାଦ୍ୱାରା ଶତ୍ରୁ ଦେହରେ ତିନି ଜାଗରେ ଗଭୀର ଆଘାତ କରାଯାଇଥାଏ । **(ଟ) ଗଦା**- ଏହା ଲୁହାରେ ତିଆରି ଏକ ଓଜନିଆ ଅସ୍ତ୍ର । ଏହାର ଅଗ୍ର ଭାଗରେ ଶହେଟି ତୀକ୍ଷ୍ଣ ଧାର ସମ୍ପନ୍ନ ବିନ୍ଦୁ ଥିଲା । ଏହାର ଆଘାତରେ ଶତ୍ରୁ ପ୍ରଚଣ୍ଡ ପୀଡା ପାଉଥିଲା । ଧନୁର୍ବେଦରେ ଏହାକୁ କୋଡିଏ ପ୍ରକାର ପ୍ରୟୋଗ କରିବାର ବିଧି ନିର୍ଦ୍ଦିଷ୍ଟ । **(ଠ) ମୁଦ୍‌ଗର** - ଏଥିରେ ନିହାଣରେ ପିଟି କାଠରେ କଣା କରାଯାଇଥାଏ । ଯୁଦ୍ଧରେ ବ୍ୟବହୃତ ମୁଦ୍‌ଗର ଲୁହାରେ ତିଆରି ହେଉଥିଲା । **(ଡ) ଶିର** - ଏହା ମଣିଷ ଉଚ୍ଚ ଥିଲା । ଏହାର ଅଗ୍ରଭାଗରେ ଗୋଟିଏ ପଟକୁ ବଙ୍କେଇ ଦୁଇଟି ଲୁହାର ଜିଭ ଲାଗିଥିଲା । ଏହାର ପ୍ରୟୋଗରେ ମାଂସ ଖଣ୍ଡ ବାହାରି ପଡୁଥିଲା । **(ଢ) ମୁଷଳ** - ଏହାର ଅଗ୍ରଭାଗଟି ଲୁହାରେ ତିଆରି ହେଉଥିଲା ଏବଂ ଏହାର ମୁଠା ଖଇରକାଠରେ ତିଆରି ହେଉଥିଲା । **(ଣ) ମୁଷ୍ଟିକ** - ଏହାକୁ ହାତ ମୁଠାରେ ଧରି ହାତାହାତି ଲଢେଇ କରିବାକୁ ପଡୁଥିଲା । **(ତ) ମୟୂଖୀ** -ଏହା ଗୋଟିଏ ଲମ୍ବା ଲାଠି । ଏହାର ଅଗରେ ଟଣ ଟଣ କରୁଥିବା ଘୁଙ୍ଗୁର ଲାଗିଥିଲା । **(ଥ) ଶତଘ୍ନି** - ଏହା ଗୋଟିଏ ଭୟଙ୍କର ଅସ୍ତ୍ର । ଏହାର ପ୍ରୟୋଗରେ ଏକା ବେଳକେ ଶହେ ଲୋକଙ୍କର ପ୍ରାଣ ଯାଉଥିଲା । ଏହା ଆଧୁନିକ କମାଣ ସହିତ ତୁଳନୀୟ । ଏହା ଏକ ଯାନ୍ତ୍ରିକ ଅସ୍ତ୍ର । **(ଦ) ଅସି** - ଏହା ହେଉଛି ଖଣ୍ଡା । ଏହା ସୈନିକର ପ୍ରଧାନ ଅସ୍ତ୍ରଥିଲା । (ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି ପଞ୍ଚମ ଖଣ୍ଡ ବୈଦିକ ପର୍ବ — ଚତୁର୍ଥ ଭାଗ ପୃ ଷ୍ଠା ୧୮୬ ରୁ ୧୮୯ ରୁ ଉଦ୍ଧୃତ) ଏଗୁଡିକ ଥିଲା ଶସ୍ତ୍ର ।

ଏହା ବ୍ୟତୀତ ବୈଦିକ ଯୁଦ୍ଧରେ ବହୁ ପ୍ରକାର ଅସ୍ତ୍ରର ମଧ୍ୟ ବ୍ୟବହାର କରାଯାଉଥିଲା । ଅସ୍ତ୍ର ହେଉଛି ଯନ୍ତ୍ର ଚାଳିତ. ଶସ୍ତ୍ର ହେଉଛି ମନୁଷ୍ୟ ଚାଳିତ । ବୈଦିକ ସାହିତ୍ୟରେ ଏହି ଅସ୍ତ୍ର ଗୁଡିକ ମନ୍ତ୍ର ଚାଳିତ ବୋଲି କୁହାଯାଇଛି । 'ଧନୁର୍ବେଦ'ରେ ଆମେ ବିଷ୍ଣୁ ଚକ୍ର. ବଜ୍ର . ବ୍ରହ୍ମାସ୍ତ୍ର. ନାରାୟଣାସ୍ତ୍ରବର୍ଣ୍ଣନା ଦେଖିବାକୁ ପାଇଥାଉ । ମନ୍ତ୍ର ହେଉଛି ଯନ୍ତ୍ରକୁ ଚଳାଇବାର ଗୋପନ ବିଦ୍ୟା । ଯାହା ନିର୍ଦ୍ଦିଷ୍ଟ କେତେଜଣ ବୀର ଆୟତ୍ତ କରିଥିଲେ । ବର୍ତ୍ତମାନର ପ୍ରଧାନ ପ୍ରଧାନ ଅସ୍ତ୍ରର ନିର୍ମାଣ କୌଶଳ ଓ ପ୍ରୟୋଗ ବିଧି ମଧ୍ୟ ବୈଦିକ କାଳରେ ଗୋପନ ରାଖାଯାଉଥିଲା । ତାହା କେତେକ ନିର୍ଦ୍ଦିଷ୍ଟ ଯୋଗ୍ୟ ବ୍ୟକ୍ତିଙ୍କୁ ଶିକ୍ଷା

ଦିଆଯାଉଥିଲା । ବେଦରେ ଏବଂ ବେଦୋତ୍ତର ଗ୍ରନ୍ଥମାନଙ୍କରେ ସାଙ୍କେତିକ ଭାଷାରେ ମନ୍ତ୍ରପୂତ ଅସ୍ତ୍ର ପ୍ରୟୋଗ ସଂପର୍କରେ କୁହାଯାଇଛି । ବୈଦିକ ଅସ୍ତ୍ର ଶସ୍ତ୍ର ସଂପର୍କରେ ଏହା ହେଉଛି ଏକ ସ୍ଥୂଳ ଧାରଣା ।

ଯୁଗେ ଯୁଗେ ବୀର ମାନଙ୍କୁ ପ୍ରୋତ୍ସାହନ ଓ ଅନୁପ୍ରେରଣା ଦେବା ଲାଗି ବୀରବାଦ୍ୟ ଚଳାଇବା ପ୍ରଥା ଚଳିଆସିଛି । ବୈଦିକ ସାହିତ୍ୟ ଅନୁଧ୍ୟାନ କଲେ ଆମେ ନାନା ପ୍ରକାର ବୀରବାଦ୍ୟ ସଂପର୍କରେ ଅବଗତ ହୋଇପାରିବା । **ବକୁର** ତୁରୀ ଭଳି ଏକ ବାଦ୍ୟ । ଆର୍ଯ୍ୟ ଓ ଦସ୍ୟୁମାନଙ୍କ ଯୁଦ୍ଧ ସମୟରେ ଅଶ୍ୱିନୀ କୁମାର ଏହାକୁ ବଜାଇଥିଲେ । ଋଗ୍‌ବେଦ ପ୍ରଥମ ମଣ୍ଡଳରେ ଏହା ବର୍ଣ୍ଣିତ । **ଦୁନ୍ଦୁଭି** ଏକ ବୀର ବାଦ୍ୟ । ଏହା ଆଧୁନିକ **ଧୁମସା** ସହିତ ତୁଳନୀୟ । ଏହା ଦୁଇ ପ୍ରକାର, ଗୋଟିଏ ରଣ ଦୁନ୍ଦୁଭି ଏବଂ ଅନ୍ୟଟି ଭୂମି ଦୁନ୍ଦୁଭି । ଦୁନ୍ଦୁଭିର ଉଲ୍ଲେଖ ଋଗ୍‌ବେଦ, ଅଥର୍ବ ବେଦ ଇତ୍ୟାଦିରେ ଦେଖିବାକୁ ମିଳେ ।(୯୧) ଦୁନ୍ଦୁଭି ବଳଦର ଚମଡାରେ ତିଆରି ହେଉଥିଲା ଏବଂ ବଳଦ ଲାଞ୍ଜରେ ପ୍ରହାର କରି ଏହାକୁ ବଜା ଯାଉଥିଲା । ଗୋଟାଏ ବଡ ଗାତ ଖୋଳା ଯାଇ ତାହା ଉପରେ ବଳଦ ଚମଡା ମଡାଇ ଦିଆଯାଉଥିଲା । ରାଷ୍ଟ୍ରକୁ ବିପଦ ଆସିଲେ ଏହି ଦୁନ୍ଦୁଭି ବଜାଯାଉଥିଲା । ଏହାର ଶବ୍ଦ ଖୁବ୍ ପ୍ରଚଣ୍ଡ ଥିଲା । ଋଗ୍‌ବେଦରେ ଦୁନ୍ଦୁଭିକୁ ଆବାହନ କରି ବହୁ ପ୍ରଶଂସା କରାଯାଇଛି । ଏଥିରେ କୁହାଯାଇଛି 'ହେ ଦୁନ୍ଦୁଭି, ତୁମେ ଏଇ ପୃଥିବୀ ଠାରେ ଆଶ୍ୱାସନା ଭରି ଦିଅ । ଆଉ ମଧ୍ୟ ଖସି ପଡୁଥିବା, ଭୟ ଆଣୁଥିବା ନକ୍ଷତ୍ର ଖଚିତ ଆକାଶଠାରେ ଆଶ୍ୱାସନା ଭରି ଦିଅ' ।(୯୨) ଏଥିରୁ ଅନୁମିତ ହେଉଛି ରାଷ୍ଟ୍ରକୁ ଯେତେବେଳେ ଯେଉଁ ଶତ୍ରୁ ଭୟ ଆସୁଥିଲା ସେଥିରୁ ରକ୍ଷା ପାଇବା ପାଇଁ ବୈଦିକ ଋଷି ଦୁନ୍ଦୁଭି ନାଦ ଉତ୍ସାହ ଓ ଉଦ୍ଦୀପନା ଭରି ଦେବାପାଇଁ ଏହି ମନ୍ତ୍ରଟିକୁ ରଚନା କରି ଅଛନ୍ତି ।

**ବୈଦିକ ଯୁଦ୍ଧ କାଳ –** ବୈଦିକ ଯୁଗରେ ଜଳବାୟୁ ଏବଂ ଅନ୍ୟାନ୍ୟ ସୁବିଧା ଅସୁବିଧାକୁ ଆଖି ଆଗରେ ରଖି ଯୁଦ୍ଧଯାତ୍ରାର କାଳ ନିର୍ଣ୍ଣୟ କରାଯାଉଥିଲା । ଆତ୍ମରକ୍ଷା ଲାଗି ଆବଶ୍ୟକ ଅନୁସାରେ ଯୁଦ୍ଧ କରିବାକୁ ପଡୁଥିଲା । ସେଥିପାଇଁ ସମୟର କିଛି ବାଛବିଚାର ନଥିଲା । ରାଜା ସୁଦାସଙ୍କର ଯେଉଁ ଦଶଜଣ ରାଜାଙ୍କ ସହିତ ଯୁଦ୍ଧ ହୋଇଥିଲା ତାହା ହେଉଛି ଶୀତ ଦିନ ।

ନିମ୍ନଲିଖିତ କାରଣରୁ ଶୀତ ଦିନେ ଭାରତରେ ଯୁଦ୍ଧ କରିବା ସୁବିଧା ଜନକ ବୋଲି ଯୁଦ୍ଧ ତତ୍ତ୍ୱବିତ୍‌ମାନେ କହିଥାନ୍ତି । (କ) ସେତେବେଳକୁ ଫସଲ ଆମଦାନୀ ସରି ଯାଇଥାଏ । (ଖ) ସୈନ୍ୟବଳ ସଂଗ୍ରହ କରିବା ପାଇଁ ଏହା ଥାଏ ସୁବିଧା ଜନକ ସମୟ । (ଗ) ପାଗ ଶୁଖିଲା ଥାଏ । (ଘ) ବର୍ଷା ହେବାର ସମ୍ଭାବନା କମ୍ ଥାଏ । (ଙ) ଉଭୟ ଜଳ ପଥ ଓ ସ୍ଥଳ ପଥରେ ଯାତାୟତର ସୁବିଧା ଥାଏ । (ଚ) କୌଣସି ସଂକ୍ରାମକ ରୋଗ ବ୍ୟାପିବାର ସମ୍ଭାବନା ନଥାଏ । ମନେହୁଏ ଏଇଥିପାଇଁ ବୈଦିକ ଆର୍ଯ୍ୟମାନେ ଶୀତ ଦିନେ ଯୁଦ୍ଧ କରିବାକୁ ସୁବିଧା ମନେ କରୁଥିଲେ । ତେଣୁ ସେମାନଙ୍କର ସମସ୍ତ ବଡ ବଡ ଯୁଦ୍ଧ ଏହି ସମୟରେ ସମାହିତ ହୋଇଥିଲା ।

**ବୈଦିକ ନଗର ଓ ଗ୍ରାମ –**

**ନଗର-** ବୈଦିକ ଆର୍ଯ୍ୟମାନଙ୍କର ସମାଜ ମୁଖ୍ୟତଃ କୃଷି କୈନ୍ଦ୍ରିକ ଥିଲା । କୃଷି କରିବା ଓ ଗୋଚାରଣ ପାଇଁ ବିସ୍ତୀର୍ଣ୍ଣ ଜମି ଓ ଜଙ୍ଗଲର ଆବଶ୍ୟକତା ପଡୁଥିଲା । ତେଣୁ ମୁଖ୍ୟତଃ ବୈଦିକ ଆର୍ଯ୍ୟମାନେ

ଗ୍ରାମରେ ରହୁଥିଲେ । ତଥାପି କେତେକ ସହର ମଧ୍ୟ ଥିଲା । ସାଧାରଣତଃ ରାଜାଙ୍କ ରାଜଧାନୀ ଗ୍ରରିପଟେ ସହର ଗଢି ଉଠୁଥିଲା । ସମୟେ ସମୟେ ବ୍ୟବସାୟ ବାଣିଜ୍ୟ କେନ୍ଦ୍ର ଅଥବା ବନ୍ଦର ମାନଙ୍କ ଗ୍ରରିପଟେ ସହର ଗଢି ଉଠୁଥିଲା । ସିନ୍ଧୁ ଏକ ନଗରନିଷ୍ଠ ସଭ୍ୟତା ଥିଲା । ମାତ୍ର ଋଗ୍‌ବେଦରେ କିମ୍ବା ଅନ୍ୟ ବେଦମାନଙ୍କରେ ନଗର ଶବ୍ଦର ସିଧା ସଳଖ ଉଲ୍ଲେଖ ନାହିଁ । ବରଂ ପୁର ଶବ୍ଦର ଉଲ୍ଲେଖ ଅଛି । ପୁରକୁ ପଣ୍ଡିତମାନେ ଦୁର୍ଗ ହିସାବରେ ଗ୍ରହଣ କରିଅଛନ୍ତି । ନଗର ଶବ୍ଦ ପରେ 'ତୈତ୍ତିରୀୟ ଆରଣ୍ୟକ'ରେ ମିଳେ ।(୯୩) ଐତରେୟ ବ୍ରାହ୍ମଣରେ ସିଧା ସଳଖ ନଗର ଶବ୍ଦଟି ବ୍ୟବହୃତ ନହୋଇ ବ୍ୟକ୍ତିବାଚକ ଅର୍ଥରେ ବ୍ୟବହୃତ ହୋଇଅଛି । ତହିଁରେ 'ନଗରୀ ଜାନ ଶ୍ରୋତୟ' ବୋଲି ଗୋଟିଏ ପଂକ୍ତି ଅଛି ଯାହାର ଅର୍ଥ ହେଉଛି 'ଜନ ଶ୍ରୁତି'ଙ୍କ ସନ୍ତାନ ।(୯୪) ସେହିପରି ଜୈମିନୀୟ ଉପନିଷଦ୍ ବ୍ରାହ୍ମଣରେ ନଗର ଶବ୍ଦ ସହିତ ଆଉ ଗୋଟିଏ ପଂକ୍ତି ଅଛି ଯାହା ହେଉଛି 'ନଗରୀ ଜାନ ଶ୍ରୁତେୟ କାଣ୍ଡିୟ' ।(୯୫) ରାମାୟଣ ଓ ମହାଭାରତରେ ବହୁଧା ନଗର ଶବ୍ଦର ବ୍ୟବହାର କରାଯାଇଛି । ଏହି ନଗର ଶବ୍ଦ ବୈଦିକ କାଳରେ ପୁର ରୂପରେ ବ୍ୟବହୃତ ହୋଇଅଛି ।

ବୈଦିକ ସାହିତ୍ୟରେ ପୁରର ବହୁଳ ବର୍ଣ୍ଣନା ରହିଅଛି । ଋଗ୍‌ବେଦରେ ଇନ୍ଦ୍ରଙ୍କ ସାହଯ୍ୟରେ ଆର୍ଯ୍ୟମାନେ ଦାସ, ଦସ୍ୟୁ ଓ ଅସୁର ମାନଙ୍କ ଉପରେ ବିଜୟ କରିବା କଥା ଉଲ୍ଲେଖ ହୋଇଅଛି । ଏହି ଯୁଦ୍ଧରେ ଇନ୍ଦ୍ର ଆର୍ଯ୍ୟ ବିରୋଧୀ ଗୋଷ୍ଠୀଙ୍କ ପୁରକୁ ଧ୍ୱଂସ କରି ଦେଇଥିଲେ ବୋଲି ତାଙ୍କୁ କୁହାଯାଇଥିଲା 'ପୁରଭିତ୍ ବା ପୁରନ୍ଦର' । ଋଗ୍‌ବେଦରେ ଲେଖା ଅଛି ଯଜମାନ 'ଦିବୋଦାସ'ଙ୍କ ଲାଗି ଇନ୍ଦ୍ର ଶହେଟି ପଥର ନିର୍ମିତ ପୁର ଧ୍ୱଂସ କରି ଦେଇଥିଲେ ।(୯୬) ଶହେ ସଂଖ୍ୟାର ପୁର କଥା ଏଠାରେ ଉଲ୍ଲେଖ ହୋଇଥିବାରୁ ତତ୍‌କାଳୀନ ଆର୍ଯ୍ୟାବର୍ତ୍ତରେ ବହୁ 'ପୁର'ଥିବ । ଋଗ୍‌ବେଦରେ ଗୋଟିଏ ସ୍ଥାନରେ 'ପୁର'ର କଥା ବର୍ଣ୍ଣିତ ହୋଇ କୁହାଯାଇଛି ଏହା ଥିଲା 'ଆୟସୀ' ବା ଲୁହାରେ ତିଆରି ଏବଂ ଏହାର ଆକାର ଥିଲା 'ଉର୍ବୀ' ବା ଖୁବ୍ ବିଶାଳ ।(୯୭) ଏଥିରେ ଲୁହାର ବଡ ବଡ ଫାଟକ ଏବଂ କବାଟ ମାନ ଥିବାରୁ ଏହାର ନାମ 'ଆୟସୀ' ପୁର ହୋଇଥିଲା । ଦସ୍ୟୁମାନଙ୍କର ପୁର 'ଶତଭୁଜୀ' ଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି ।(୯୮) ଶହେ ଫାଟକକୁ ଏଠାରେ ଶହେ ହାତ ବୋଲି ବୋଧହୁଏ କୁହାଯାଇଛି । ପୁରର ଏତେ ସଂଖ୍ୟକ ଫାଟକ ଥିବାରୁ ଏହାର ଆକାର ଖୁବ୍ ବିଶାଳ ହୋଇଥିବ । 'କଠକ ଉପନିଷଦ୍'ରେ ଏକାଦଶ ଦ୍ୱାର ଥିବା ପୁର କଥା ବର୍ଣ୍ଣିତ । ସେହପରି 'ଶ୍ୱେତା ଶ୍ୱେତର ଉପନିଷଦ୍'ରେ ନବ ଦ୍ୱାର ଥିବା ପୁର କଥା ବର୍ଣ୍ଣିତ ।(୯୯)

ଏହି ପୁରରେ ଗାଇ ମାନଙ୍କ ଲାଗି ସ୍ୱତନ୍ତ୍ର ସ୍ଥାନ ସଂରକ୍ଷିତ ହୋଇଥିବା କଥା ଜଣାପଡେ । ଏହାକୁ କୁହାଯାଉଥିଲା 'ଗୋମତୀ ପୁର'। ଏହା କଞ୍ଚା ଇଟାରେ ତିଆରି ହେଉଥିଲା ବୋଲି ଏହାର ଅନ୍ୟ ନାମ ଥିଲା 'ଅମାପୁର' ବା କଞ୍ଚା ଇଟାରେ ତିଆରିପୁର ।(୧୦୦) ଋଗ୍‌ବେଦରେ ରାଜା ବରୁଣଙ୍କ ବାସସ୍ଥାନ ସଂପର୍କରେ ଏକ ବର୍ଣ୍ଣନା ଅଛି । ରାଜା ବରୁଣଙ୍କ ନିବାସକୁ 'ସହସ୍ରସ୍ଥୁଣ' ବିଶିଷ୍ଟ ବୋଲି କୁହାଯାଇଛି ।(୧୦୧) ଏହି ଘରେ ଏକ ହଜାର ଖମ୍ବ ଥିଲା । ଏଥିରୁ ଅନୁମାନ କରାଯାଏ ରାଜାମାନେ ଖୁବ୍ ବଡ ମହଲ ମାନଙ୍କରେ ରହୁଥିଲେ । 'ହର୍ମ୍ୟ' ଶବ୍ଦର ଉଲ୍ଲେଖ ଋଗ୍‌ବେଦରେ ଅଛି । ଜଣେ ରାଜା ତାଙ୍କ ହର୍ମ୍ୟ ଉପରେ ଠିଆ ହୋଇ ଥିବା କଥା ଏଠାରେ ଉଲ୍ଲିଖିତ । ତାଙ୍କୁ ସେଠାରେ କୁହାଯାଇଛି

'ହର୍ମ୍ୟେଷ୍ଠା' ବା 'ହର୍ମ୍ୟ' ଉପରେ ଅବସ୍ଥିତି ।(୧୦୨) ଏଥିରୁ ଅନୁମାନ କରାଯାଏ ରାଜାଙ୍କର ରାଜଧାନୀ ବିରାଟ ଆକାର ଥିବ । ତେଣୁ ତାହା କୌଣସି ମତେ ଗ୍ରାମନିଷ୍ଠ ନହୋଇ ନଗର ନିଷ୍ଠ ହୋଇଥିବ । ବୈଦିକ ସାହିତ୍ୟରେ ନଗର ସଂପର୍କରେ ଏଭଳି ବର୍ଣ୍ଣନାଥିବାରୁ ଯେତେବେଳେ ଆର୍ଯ୍ୟମାନେ ନଗର ଜୀବନ ସହିତ ପରିଚିତ ଥିଲେ । ଏକଥା ନିଶ୍ଚିତ, ତତ୍‌କାଳୀନ ଆର୍ଯ୍ୟମାନେ ଉଭୟେ ନଗର ଏବଂ ଗ୍ରାମ୍ୟଜୀବନ ସହିତ ପରିଚିତ ଥିଲେ ।

ଗ୍ରାମ – ଜଙ୍ଗଲ କାଟି କୃଷି ଉପଯୋଗୀ ଜମି ତିଆରି କରି ଗ୍ରାମମାନ ବସୁଥିଲା । ପ୍ରତି ଗ୍ରାମକୁ ଲାଗି ବିସ୍ତୀର୍ଣ୍ଣ ଜଙ୍ଗଲ ଓ ଚାରଣ ଭୂମି ରହୁଥିଲା । ପ୍ରତି ଗ୍ରାମରେ ସ୍ୱତନ୍ତ୍ର ଚାରଣ ଭୂମି ଥିଲା । ଏହା ଦ୍ୱାରା ଗୋଟିଏ ଗ୍ରାମର ସୀମା ଅନ୍ୟ ଗ୍ରାମର ସୀମାକୁ ସ୍ପର୍ଶ କରୁନଥିଲା । ଲୋକ ସଂଖ୍ୟା ବୃଦ୍ଧି ଘଟିଲେ ଏହା ସଂପ୍ରସାରିତ ହୋଇ ଯାଉଥିଲା ଏବଂ ଗୋଟିଏ ଗ୍ରାମର ସୀମା ଅନ୍ୟ ଗ୍ରାମର ସୀମାକୁ ସ୍ପର୍ଶ କରୁଥିଲା । ଫଳରେ ଉଭୟ ଗ୍ରାମର ଚାରଣ ଭୂମି ପରସ୍ପର ସହ ଲାଗି ଗଲେ ଅନେକ ସମୟରେ କଳିଗୋଳ ସୃଷ୍ଟି ହେଉଥିଲା । ଏହାକୁ କୁହା ଯାଉଥିଲା ସଂଗ୍ରାମ ବା ଦୁଇ ଗ୍ରାମର ସୀମା ଏକାଠି ହେବାର ସ୍ଥିତି । ଏହା କେବଳ ଆର୍ଯ୍ୟ ଗ୍ରାମ ମାନଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିଲା ନାହିଁ । ବରଂ ଆର୍ଯ୍ୟ ଗ୍ରାମ ଏବଂ ଆର୍ଯ୍ୟେତର ଗ୍ରାମ ମଧ୍ୟରେ ବି ଏଭଳି ସୀମା ସଂଘର୍ଷ ଘଟୁଥିଲା । ପଣିମାନଙ୍କ ଦ୍ୱାରା ଆର୍ଯ୍ୟମାନଙ୍କର ଗୋଧନ ଅପହୃତ ହେଉଥିଲା । ଯାହାକି ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି ।(୧୦୩)

ଗ୍ରାମ ଗୁଡିକ କେହି କାହା ଉପରେ ନିର୍ଭରଶୀଳ ନଥିଲେ । ଲୋକଙ୍କ ଆହାର ଲାଗି କ୍ଷେତ୍ରରେ ଶସ୍ୟ ଉତ୍ପନ୍ନ ହେଉଥିଲା । ଗୋ ମହିଷାଦି ପଶୁମାନଙ୍କଠାରୁ କ୍ଷୀର ଓ କ୍ଷୀରଜାତ ଦ୍ରବ୍ୟ ମିଳୁଥିଲା । କପା କ୍ଷେତରୁ କପା ମିଳୁଥିଲା । ଏହା ଫଳରେ ପୁରୁଷ ଓ ନାରୀମାନଙ୍କ ପାଇଁ ବିଭିନ୍ନ ପ୍ରକାର ପୋଷାକ ତିଆରି ହେଉଥିଲା । ପାଠ ପଢିବା ପାଇଁ ଗାଁ ପାଖ ଜଙ୍ଗଲରେ ଗୁରୁକୁଳ ଥିଲା । ବୈଦିକ ଆର୍ଯ୍ୟମାନେ ମିତବ୍ୟୟୀ ଥିବାରୁ ସୀମିତ ସଂଖ୍ୟକ ଓ ସୀମିତ ପରିମାଣର ଦ୍ରବ୍ୟ ମାନଙ୍କର ଆବଶ୍ୟକ ହେଉଥିଲା । ତେଣୁ ଗୋଟିଏ ଗାଁ ଅନ୍ୟ ଗୋଟିଏ ଗାଁ ଉପରେ ନିର୍ଭର କରୁ ନଥିଲା ।

ଋଗ୍‌ବେଦ ସୃଷ୍ଟିର ପ୍ରାରମ୍ଭିକ କାଳରେ ଏଭଳି ଅବସ୍ଥା ଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଯେତେବେଳେ ଲୋକ ସଂଖ୍ୟା ବୃଦ୍ଧି ହେଲା ଆର୍ଯ୍ୟମାନେ ନୂତନ ବସତି ସ୍ଥାପନ ନିମିତ୍ତ ଆର୍ଯ୍ୟେତର ଗୋଷ୍ଠୀମାନଙ୍କ ସହିତ ମୁକାବିଲା କରିବାକୁ ଲାଗିଲେ । ଦାସ, ଦସ୍ୟୁ ପଣି ଓ ଅସୁରମାନେ ଥିଲେ ଆର୍ଯ୍ୟମାନଙ୍କର ବିରୋଧୀ । ଏମାନଙ୍କର ବିରୁଦ୍ଧରେ ଯୁଦ୍ଧ କରିବା ନିମିତ୍ତ ଆର୍ଯ୍ୟମାନେ ଏକଜୁଟ ହେଉଥିଲେ । ଗ୍ରାମ ଗ୍ରାମ ମଧ୍ୟରେ ଥିବା ବିଭେଦକୁ ଭୁଲି ଯାଉଥିଲେ । ଫଳରେ ପାରସ୍ପରିକ ସହଯୋଗ ପ୍ରତିଷ୍ଠା ହେବାକୁ ଲାଗିଲା । ସେମାନଙ୍କ ଲକ୍ଷ୍ୟ ହେଲା ଆର୍ଯ୍ୟ ସଂସ୍କୃତିର ବିସ୍ତାର । ସେମାନଙ୍କର ସ୍ଲୋଗାନ ହେଲା "କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍" ଅର୍ଥାତ୍ ଆମେ ସମସ୍ତେ ସାରା ବିଶ୍ୱକୁ ଆର୍ଯ୍ୟାନ୍ୱିତ ବା ସଭ୍ୟ କରାଇବା ।

ଆର୍ଯ୍ୟ ସଂସ୍କୃତି ଥିଲା ଏହି ଗ୍ରାମମାନଙ୍କର ଏକତାର ଯୋଗସୂତ୍ର । ସେମାନେ ଗୋଟିଏ ଭାଷାରେ କହୁଥିଲେ, ଗୋଟିଏ ଜୀବନ ଦର୍ଶନ ଓ ଦେବମଣ୍ଡଳ ଦ୍ୱାରା ସେମାନେ ପ୍ରଭାବିତ ହେଉଥିଲେ । ସମସ୍ତଙ୍କର ସାମାଜିକ ଚଳଣି ଗୋଟିଏ ପ୍ରକାର ଥିଲା । ସମସ୍ତେ କେତେକ ମୂଲ୍ୟବୋଧ ଦ୍ୱାରା ପରିଚାଳିତ

ହେଉଥିଲେ । ସାଂସ୍କୃତିକ ସ୍ତରରେ ଗୋଟିଏ ଗ୍ରାମ ଅନ୍ୟ ଗ୍ରାମଠାରୁ ଭିନ୍ନ ନ ଥିଲା । ଏହି ସଂସ୍କୃତିର ବନ୍ଧନ ସୂତ୍ରଟି ଦୃଢ଼ ଥିବାରୁ ସମସ୍ତେ ଏକ ହୋଇ ରହୁଥିଲେ ଏବଂ ଅନ୍ୟକୁ ଆପଣେଇ ମଧ୍ୟ ନେଇ ପାରୁଥିଲେ । ଗ୍ରାମ ଗ୍ରାମ ମଧ୍ୟରେ କେବଳ ଏକତା ରକ୍ଷା କରା ଯାଉନଥିଲା ବରଂ ଏହା ଗ୍ରାମର ସୀମାକୁ ଅତିକ୍ରମ କରି ସହର ବା ନଗର ମଧ୍ୟରେ ଏହାର ଯୋଗସୂତ୍ର ରକ୍ଷା କରୁଥିଲା ।

ବୈଦିକ ଗ୍ରାମର ସବୁ ଘର ଥିଲା କାଠ ବାଉଁଶରେ ତିଆରି ଗୃହଘର । ଛପର ଲାଗି ନଡା ଓ ଘାସ ବ୍ୟବହୃତ ହେଉଥିଲା । କାଁ ଭାଁ କେଉଁଠି ପୋଡ଼ା ଇଟା ବା ପଥରର ଘର ଦେଖିବାକୁ ମିଳୁଥିଲା । ନିର୍ମାଣ କୌଶଳ ବିଷୟରେ ଋଗ୍ ବେଦରୁ କିଛି ସୂଚନା ମିଳୁନାହିଁ । ଅଥର୍ବ ବେଦରେ ବର୍ଣ୍ଣିତ ହୋଇଛି ଯେଉଁଠି ପାଣି ଭୟ ସେତେ ବେଶି ନଥିଲା ସେଠାରେ କଞ୍ଚା ଇଟା ବ୍ୟବହାର କରାଯାଉଥିଲା । (କ) ଗୋଟିଏ ଭଲ ଉଚ୍ଚ ଜାଗା ଦେଖି କାଠ ଖମ୍ବ ପୋତା ଯାଉଥିଲା । ଏହି ଖମ୍ବକୁ କୁହାଯାଉଥିଲା 'ଉପମିତ୍' । ମଝି ଖମ୍ବ ଦିଓଟି ବଡ ଥିଲା ଏବଂ ଦୁଇ ପଟେ ଥିବା ଚାରିଗୋଟି ଖମ୍ବ ଛୋଟ ଥିଲା । (ଖ) ଏହି ଖମ୍ବ ଉପରେ କାଠ ଶେଣୀ ପକା ଯାଉଥିଲା । ଏହାକୁ କୁହାଯାଉଥିଲା 'ଉତିମିତ୍' । (ଗ) ତା ଉପରେ ଅର୍ଥାତ୍ ସେଣୀ ଉପରୁ ରୁଅ ତଳ ଖୁମ୍ବ ଉପରେ ପଡିଥିବା ସେଣୀ ଉପରେ ଯୋଗ କରାଯାଉଥିଲା । ଏହି ରୁଅକୁ କୁହାଯାଉଥିଲା 'ପ୍ରତିମିତ୍' । (ଘ) ରୁଅ ଉପରେ ଛୋଟ ଛୋଟ ବତାପକାଇ ତାହାକୁ ଦଉଡିରେ ବନ୍ଧା ଯାଉଥିଲା । ଏହାକୁ କୁହାଯାଉଥିଲା 'ଅକ୍ଷୁ' । (ଙ) ତାପରେ ନଡା ବା ଘାସ ଦ୍ୱାରା ଛପର କରାଯାଉଥିଲା । ଛାତର କାଠ ବାଉଁଶକୁ ବିଭିନ୍ନ ସ୍ଥାନରେ ବାନ୍ଧିବାକୁ ଭିନ୍ନ ଭିନ୍ନ ନାଁ ଦିଆଯାଉଥିଲା । ସେଗୁଡିକ ହେଲା—'ନହନ, ପ୍ରାଣାହ, ସନ୍ଦଂଶ, ଓ ପରିଷଞ୍ଜଲ୍ୟ' । ଏହି ବନ୍ଧନ ଗୁଡିକ ସାହାଯ୍ୟରେ ଛାତର ଛାଞ୍ଚଟିକୁ ତିଆରି କରାଯାଉଥିଲା ।(୧୦୪)

ଆବଶ୍ୟକତା ଅନୁସାରେ ଗୃହକୁ ବହୁତ କୋଠରୀରେ ବିଭକ୍ତ କରାଯାଉଥିଲା । ଏଗୁଡିକ ହେଲା - ଅଗ୍ନିଶାଳ, ହବିର୍ଧାନ, ପତ୍ନୀନାଂ ସଦନଂ, ସଦସ୍ । **(କ) ଅଗ୍ନିଶାଳ-** ଏ କୋଠରିରେ ଗାର୍ହପତ୍ୟ ଅଗ୍ନି ସଦାବେଳେ ପ୍ରଜ୍ୱଳିତ ହୋଇ ରହୁଥିଲେ ଏବଂ ଦେବତାମାନଙ୍କୁ ହୋମ ପ୍ରଦାନ ନିମିତ୍ତ ବିଭିନ୍ନ ଅଗ୍ନିକୁଣ୍ଡ ଥିଲା । **(ଖ) ହବିର୍ଧାନ –** ଏ ବଖରାରେ ଗୃହସ୍ଥର ଯାଗ ଯଜ୍ଞର ଉପକରଣ ଓ ନିତ୍ୟ ବ୍ୟବହାର୍ଯ୍ୟ ଉପକରଣ ରହୁଥିଲା । **(ଗ) ପତ୍ନୀ ସଦନ –** ଏ ବଖରାଟି ଭିତର ଆଡକୁ ଥିଲା । ଏଥିରେ ରହି ସ୍ତ୍ରୀମାନେ ଅନ୍ୟ ଗୃହର ସ୍ତ୍ରୀମାନଙ୍କ ସହିତ କଥୋପକଥନ କରି ପାରୁଥିଲେ ।(୧୦୫) ଏହାକୁ 'ପତ୍ନୀନାଂ ସଦନଂ' ବୋଲି କୁହାଯାଇଛି । ଆର୍ଯ୍ୟମାନେ ବହୁ ପତ୍ନୀକ ଥିବାରୁ ଏହି 'ପତ୍ନୀନାଂ ସଦନଂ' କ୍ରମବିକାଶ ଘଟି ରାଜାମାନଙ୍କର 'ରାଣୀ ମହଲ' ଧନୀ ଲୋକମାନଙ୍କର 'ସ୍ୱତନ୍ତ୍ର ନାରୀ ମହଲର' ଆବିର୍ଭାବ ଘଟିଥିଲା । 'ଶତପଥ ବ୍ରାହ୍ମଣ' ବେଳକୁ ପତ୍ନୀଙ୍କପାଇଁ ଉଦ୍ଦିଷ୍ଟ ଥିବା କୋଠରିକୁ କୁହାଯାଇଛି 'ପତ୍ନୀ ସଦନଂ', 'ପତ୍ନୀନାଂ ସଦନଂ' କିନ୍ତୁ ନୁହେଁ ।(୧୦୫କ) ନାରୀମାନେ ଅବଶ୍ୟ ଅନ୍ୟାନ୍ୟ ବଖରାରେ କାରବାର ହେଉଥିଲେ, ତଥାପି ଅନ୍ତଃପୁର ଅର୍ଥରେ 'ପତ୍ନୀ ସଦନ' ବ୍ୟବହୃତ ହୋଇଅଛି । ଏହି ମହଲରେ ନାରୀମାନେ ମୁକ୍ତ ଭାବରେ ବିଚରଣ କରୁଥିଲେ । ବାହାରକୁ ଆସିଲେ ଓଢଣା ଦେଇ ଆସୁଥିଲେ ।(୧୦୬) ବାହାରର କୌଣସି ପୁରୁଷ ଏଠାକୁ ଯା ଆସ କରିପାରୁ ନଥିଲେ । ଏହା ବୈଦିକ ଆର୍ଯ୍ୟମାନଙ୍କର 'ଅନ୍ଦର ମହଲ' ଥିଲା । ଋଗ୍‌ବେଦରେ ଗୋଟିଏ ସ୍ଥାନରେ କୁହାଯାଇଛି

'ଗୃହାଚରନ୍ତୀଯୋଷା' । (୧୦୭) ଏହାର ଅର୍ଥ ହେଲା ଅତି ଅନ୍ଦର ମହଲରେ ଚଳ ପ୍ରଚଳ କରୁଥିବା ସ୍ତ୍ରୀ ଲୋକ । **(ଘ) ସଦସ୍ -** ଏହା ହେଉଛି ଆଧୁନିକ ବୈଠକ ଶାଳା । ଏଠାରେ ଗୃହକର୍ତ୍ତା ଅନ୍ୟାନ୍ୟ ପୁରୁଷମାନଙ୍କ ସହିତ ବସି କଥା ବାର୍ତ୍ତା ହୁଅନ୍ତି । ଏହା ବ୍ୟତୀତ କଠୋରୀରେ ଅନ୍ୟାନ୍ୟ ଛୋଟ ଛୋଟ ବଖରା ମଧ୍ୟ ଥିଲା । ଗୃହ ପାଳିତ ପଶୁମାନଙ୍କ ପାଇଁ ଛୋଟ କୋଠରି ଥିଲା । ଯାଗ ଯଜ୍ଞ ପାଇଁ ନିମନ୍ତ୍ରିତ ବ୍ୟକ୍ତି ବିଶେଷ ବ୍ରାହ୍ମଣ ମାନଙ୍କ ପାଇଁ ସ୍ୱତନ୍ତ୍ର ବଖରା ଥିଲା । ତାହାକୁ 'ଆବସଥ ବା ଆବାସୀ ଅତିଥି ଶାଳା' କୁହାଯାଉଥିଲା ।(୧୦୮) ଏଥିରେ ଅତିଥିର ସୁବିଧା ନିମିତ୍ତ ବିଭିନ୍ନ ଉପକରଣ ମଧ୍ୟ ରାଖାଯାଉଥିଲା । 'ଆପସ୍ତମ୍ଭ ଶ୍ରୌତ ସୂତ୍ର' ତଥା ଧର୍ମ ସୂତ୍ରରେ ଏହାର ବିସ୍ତୃତ ବର୍ଣ୍ଣନା ମିଳେ ।

ଋଗ୍‌ବେଦରେ ବୈଦିକ ଗୃହକୁ 'ତ୍ରିଧାତୁ' ବୋଲି କୁହାଯାଇଛି ।(୧୦୯) ସାୟଣାଚାର୍ଯ୍ୟ 'ତ୍ରିଧାତୁ' ଶବ୍ଦର ବାଖ୍ୟା କରି 'ତ୍ରି ଭୂମିକା' ବା 'ତିନିଖଞ୍ଜା' ବୋଲି କହିଅଛନ୍ତି । ସାଧାରଣ ବୈଦିକ ଗୃହରେ ତିନିଗୋଟି ଖଞ୍ଜା ଥିଲା । ଏହାର ଗୃହର ବିଶାଳତା ବିଷୟରେ ସୂଚନା ଦେଇଥାଏ । ଗୃହ ଉପକରଣର ସୁନ୍ଦରତା ଯୋଗୁଁ ଏହି ତିନି ଖଞ୍ଜା ଗୃହ ନିର୍ମାଣ କରାଯାଉଥିଲା । ବୈଦିକ ଯୁଗରେ ଏହା ଉପଯୋଗୀ ଭୂମିର ପ୍ରାଚୁର୍ଯ୍ୟ ଥିଲା ।

ଗୃହକୁ ଯେଉଁ ଦେବତା ରକ୍ଷା କରୁଥିଲେ ତାଙ୍କୁ 'ବାସ୍ତୋଷ୍ପତି' ବୋଲି କୁହାଯାଉଥିଲା । ତାଙ୍କ ଉପଲକ୍ଷେ ଋଗ୍‌ବେଦରେ ଗୋଟିଏ 'ସ୍ତୁତି' ଅର୍ପଣ କରାଯାଇଅଛି । ଏଥିରେ କୁହାଯାଇଛି 'ହେ ବାସ୍ତୋଷ୍ପତେ' ଆମ ଘର ସୁନ୍ଦର ଏବଂ ରୋଗ ହୀନ ହେଉ । ଦୁଇ ଗୋଡିଆ ଓ ଚାରି ଗୋଡିଆ ପ୍ରାଣୀଙ୍କର ମଙ୍ଗଳ ହେଉ । ଗାଈ ଓ ଘୋଡା ମାନଙ୍କ ଦ୍ୱାରା ଆମ ସମୃଦ୍ଧିକୁ ତୁମେ ବଢାଅ । ସବୁବେଳେ ଆମେ ଯୁବକ ଥାଇ ତୁମ୍ଭର ମିତ୍ର ଭାବରେ ରହିଥାଉ ଏବଂ ବାପ ପୁଅକୁ ଗ୍ରହିଁଲା ଭଳି ତୁମେ ଆମ ପ୍ରତି ପ୍ରୀତିଯୁକ୍ତ ହୋଇ ରହିଥାଅ ।(୧୧୦)

'ଗୃହ୍ୟ ସୂତ୍ର'ରୁ ଜଣାପଡେ ଧନୀ, ଦରିଦ୍ର, ସମସ୍ତଙ୍କ ପାଇଁ ଗୃହ ନିର୍ମାଣ ଲାଗି ସ୍ଥାନ ନିର୍ବାଚନ ଠାରୁ ଆରମ୍ଭ କରି ଗୃହ ପ୍ରବେଶ ପର୍ଯ୍ୟନ୍ତ ବିଭିନ୍ନ ଧାର୍ମିକ ପୂଜା ବିଧାନ କରିବାକୁ ପଡୁଥିଲା । ଗୃହ ନିର୍ମାଣ ପାଇଁ ଭୂମିର କେଉଁ କେଉଁ ଗୁଣ ପ୍ରତି ଦୃଷ୍ଟି ଦେବାକୁ ପଡୁଥିଲା ତାହା 'ଆପ୍ତେ' କହିଛନ୍ତି- 'ଯେଉଁ ଜମିରେ ଗୃହ ନିର୍ମାଣ କରାଯିବ ତାହା ବିବାଦୀୟ ହୋଇ ନଥିବ । ଏହା ଲବଣ ହୀନ ସ୍ଥାନ ହୋଇଥିବ ଏବଂ ଏଠାରେ ବୃକ୍ଷ, ଔଷଧୀୟ ଗୁଳ୍ମଲତା ଅତିକମ୍‌ରେ ଘାସ ଥିବ । ଏହା ଖାଲୁଆ ହୋଇ ନଥିବ ।(୧୧୧) ଅଥର୍ବ ବେଦରେ ଉଲ୍ଲେଖ ଅଛି ଯେ ଘର ତିଆରି ବେଳେ ମାପ ଚୁପ କରାଯାଉଥିଲା । (୧୧୨) ଏଥିରୁ ଅନୁମାନ କରାଯାଉଛି ସେତେବେଳେ 'ବାସ୍ତୁଶିଳ୍ପ'ର ଉଦ୍ଭବ ହୋଇଥିଲା ଏବଂ ସେଥିରେ ପ୍ରଣୀତ ନୀତି ଗୁଡିକର ଅନୁସରଣ କରି ଘର ତିଆରି ହେଉଥିଲା । ଦେବତାମାନଙ୍କର ବାସ୍ତୁଶିଳ୍ପୀ ଥିଲେ 'ବିଶ୍ୱକର୍ମା' ଓ ଅସୁରମାନଙ୍କର 'ମୟ' ।

ବୈଦିକ ଗ୍ରନ୍ଥମାନଙ୍କରେ ଆମ ଘରର ବିଭିନ୍ନ 'ନାମ' ଦେଖିବାକୁ ପାଇଥାଉ । ସେତେବେଳେ ବିଭିନ୍ନ ଘର ତିଆରି ହେଉଥିଲା ଏବଂ ସେମାନଙ୍କର ନାମ ଭିନ୍ନ ଥିଲା । ଏହି ନାମ ଗୁଡିକ ହେଲା— 'ଗୃହ, ଆୟତନ, ପସ୍ତ୍ୟା, ବାସ୍ତୁ, ହର୍ମ୍ୟ, ଦୁରୋଣ' ଇତ୍ୟାଦି । ଭଲ ଘରକୁ କୁହାଯାଉଥିଲା 'ସୁବାସ୍ତୁ' । ଆଉ ମଧ୍ୟ ଭଲ ଘର ଯେଉଁଠି ତିଆରି ହେଉଥିଲା ତାହାର ନାମ 'ସୁବାସ୍ତୁ' । ଦୁରୋଣ ଶବ୍ଦଟି

ବହୁବାର ଋଗ୍ ବେଦରେ ବର୍ଣ୍ଣିତ ହୋଇଅଛି । ଏହି ଘର ଦ୍ୱାର ଯୁକ୍ତ ଥିବାରୁ ଏହାର ନାମ ଦୁରୋଣ ହୋଇ ଅଛି ।(୧୧୩) 'ପସ୍ତ୍ୟା' ଶବ୍ଦଟି ମଧ୍ୟ ବହୁବାର ଋଗ ବେଦରେ ଉଲ୍ଲିଖିତ ।(୧୧୪) ଅଗ୍ନିଙ୍କର ଘର ତିନି ଜାଗାରେ ଥିବାରୁ ତାଙ୍କୁ 'ତ୍ରିପସ୍ତ୍ୟ ବୋଲି' ଋଗ୍ ବେଦରେ ବର୍ଣ୍ଣିତ ହୋଇଅଛି ।(୧୧୫) ଏହି ତିନି ଜାଗା ହେଲା ପୃଥିବୀ, ଆକାଶ ଓ ସମୁଦ୍ର । ପୃଥିବୀରେ ସାଧାରଣ ଅଗ୍ନି ଭାବରେ, ଆକାଶରେ ସୂର୍ଯ୍ୟ ଭାବରେ ଏବଂ ସମୁଦ୍ରରେ ବାଡ଼ବାଗ୍ନି ଭାବରେ ସେ ବିଦ୍ୟମାନ । 'ପସ୍ତ୍ୟା'ର ଅନ୍ୟ ଗୋଟିଏ ଅର୍ଥ ହେଉଛି ଜଳଧାରା । ଚ଼ୂରିପଟେ ଜଳାଧାରା ଥିବା ଗୃହକୁ ପସ୍ତ୍ୟା କୁହାଯାଉଥିଲା । ଋଗ୍‌ବେଦର ଗୋଟିଏ ସ୍ଥାନରେ 'ମଧ୍ୟେ ପସ୍ତ୍ୟାନା' ପଂକ୍ତିଟି ପ୍ରୟୋଗ କରାଯାଇଛି ।(୧୧୬) ଏଥିରୁ ଅନୁମାନ କରାଯାଏ ପାଣି ଘେର ମଧ୍ୟରେ ଥିବା ଘରକୁ 'ପସ୍ତ୍ୟା' କୁହାଯାଉଥିଲା । ଏଥିରୁ ଅନୁମିତ ହୁଏ ଯେ ବୈଦିକ ଆର୍ଯ୍ୟମାନେ ଘର ତିଆରି ଲାଗି ପୋଡା ଇଟା ଓ ପଥରର ବ୍ୟବହାର ଜାଣିଥିଲେ । ତେଣୁ ସେମାନେ ପାଣି ଘେରି ପୋଖରୀ ବା ଗଡ଼ଖାଇ ମଧ୍ୟରେ ସଦୃଢ଼ ଗୃହ ନିର୍ମାଣ କରିପାରୁଥିଲେ । 'ହର୍ମ୍ୟ' ଶବ୍ଦର ବ୍ୟବହାର ମଧ୍ୟ ଆମେ ବୈଦିକ ଗ୍ରନ୍ଥମାନଙ୍କରେ ଦେଖିବାକୁ ପାଇଥାଉ । ଅଥର୍ବ ବେଦରେ ଏହାକୁ ଯମଙ୍କର ଗୋଟିଏ ପ୍ରାସାଦ ଅର୍ଥରେ ବ୍ୟବହାର କରାଯାଇଛି । ଋଗ୍‌ବେଦରେ ମଧ୍ୟ ସେହି ଅର୍ଥରେ ପ୍ରଯୁକ୍ତ ହୋଇଛି । ସେଠାରେ ଏହା ବର୍ଣ୍ଣିତ ହୋଇଛି ଏକ ପାଚେରୀ ଘେରା ବଡଘର ଭାବରେ । ଏହି ଘରେ ଉଭୟେ ମନୁଷ୍ୟ ଏବଂ ଗୋ ମହିଁଷିଆଦି ଗୃହପାଳିତ ପଶୁ ରହିବା କଥା ଉଲ୍ଲିଖିତ ହୋଇଛି ।(୧୧୭)

**ଯାନବାହାନ ଓ ରାସ୍ତା —**

ଋଗ୍‌ବେଦରେ କଣ୍ଟକ ଶୂନ୍ୟ ଓ ସିଧାସଳଖ ରାସ୍ତା ଲାଭ ନିମିତ୍ତ ପ୍ରାର୍ଥନା କରାଯାଇଛି । ବିପଦ ଶୂନ୍ୟ ରାସ୍ତା ନିମିତ୍ତ ଇନ୍ଦ୍ରଙ୍କୁ ପ୍ରାର୍ଥନା କରାଯାଇଛି । ଜଣାପଡେ ସେ ସମୟର ରାସ୍ତା ସିଧା ଥିଲା । ମାତ୍ର ଗାଁର ରାସ୍ତାଗୁଡିକ ଧୂଳିଆ ଥିଲା । ପୋଲ ଓ ଛକର ମଧ୍ୟ ଉଲ୍ଲେଖ ମିଳେ । ରଥ ଥିଲା ସେ କାଳର ପ୍ରଧାନ ଯାନ । ରଥକୁ ବଳଦ, ଗଧ ଓ ଘୋଡାମାନେ ଟାଣୁଥିଲେ । ବାହନ ଅନୁସାରେ ରଥର ଭିନ୍ନ ଭିନ୍ନ ନାମ ଦେଖାଯାଏ; ବୃଷ, ରଥ, ଷତଶ୍ୱ, ପଞ୍ଚବାହୀ ଇତ୍ୟାଦି । ସେହିପରି ରଥାଙ୍ଗ ଅନୁସାରେ ରଥର ଭିନ୍ନ ଭିନ୍ନ ନାମ ଥିଲା । ସେଗୁଡିକ ହେଲା ତ୍ରିବନ୍ଧୁର, ଅକ୍ଷବନ୍ଧୁର, ସପ୍ତଚକ୍ର, ହିରଣ୍ୟଚକ୍ର ଇତ୍ୟାଦି । ବୈଦିକ ସାହିତ୍ୟରେ ରଥ ସବୁ ଯାନ ଠାରୁ ଅଧିକ ଆଦର ଲାଭ କରୁଥିଲା । ଯାତାୟତ ଓ ଯୁଦ୍ଧ କ୍ଷେତ୍ରରେ ରଥ ବ୍ୟବହୃତ ହେଉଥିଲା । ଏ ସମୟରେ ରଥ ନିର୍ମାଣ କୌଶଳ ଉଚ୍ଚକୋଟିର ଥିଲା ।

ରଥ ବ୍ୟତୀତ 'ଅନସ' ଯାନର ଉଲ୍ଲେଖ ମଧ୍ୟ ବୈଦିକ ସାହିତ୍ୟରେ ମିଳିଥାଏ । ଏହା ଗାଡି ଅର୍ଥରେ ବ୍ୟବହୃତ ହୋଇଛି । ତାହାକୁ ବଳଦ ଓ ଗାଈ ମଧ୍ୟ ଟାଣୁ ଥିଲେ । ସେହି ଯାନରେ 'ଡାଟି' ବ୍ୟବହୃତ ହେଉଥିଲା । ଗାଡି ଟାଣୁଥିବା ପଶୁକୁ 'ଧୂର୍ଷଦ' କୁହାଯାଇଛି । ଗାଡି ମନୁଷ୍ୟବାହୀ ଓ ଭାରବାହୀ । ଶସ୍ୟ ପ୍ରଭୃତି ବୋହିବା ଗାଡ଼ିକୁ ଶକଟ(ଶଗଡ଼) ଓ ଛୋଟ ଗାଡ଼ିକୁ 'ଗୋଲିଙ୍ଗ' କୁହାଯାଉଥିଲା । ଅଥର୍ବ ବେଦରେ 'ବି-ପଥ' ନାମକ ଅନ୍ୟ ଏକ ଯାନର ବର୍ଣ୍ଣନା ମିଳେ । ତାହା ଅସୁବିଧା ରାସ୍ତାରେ ଯାଉଥିଲା । ହାତୀ, ଘୋଡା, ଓଟ, ପିଠିରେ ବସି ଲୋକେ ଯାତ୍ରା କରୁଥିଲେ । ଜିନିଷ ପତ୍ର ମଧ୍ୟ ଏଥିରେ ନବା ଆଣିବା ହେଉଥିଲା । ସାଧାରଣତଃ ଲୋକେ ପାଦରେ ଯିବା ଆସିବା

କରୁଥିଲେ । ଜଳ ଯାନ 'ନୌକାର' ଉଲ୍ଲେଖ ମିଳେ । ନାବକୁ 'ଅରିତ୍ର' ଓ ନାବିକକୁ 'ଅରିତ୍ର' କହୁଥିଲେ । ପରବର୍ତ୍ତୀ ବୈଦିକ ସାହିତ୍ୟରେ ବାଣିଜ୍ୟ ନୌକା, ଯୁଦ୍ଧ ନୌକା, କ୍ରୀଡା ନୌକା ଆଦି ବିଭିନ୍ନ ଜଳଯାନର ଉଲ୍ଲେଖ ଅଛି ।(ଅଭିନ୍ନ ଚନ୍ଦ୍ର ଦାସଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି ପୁସ୍ତକର ପୃ ୧୩୮ରୁ ଉଦ୍ଧୃତ) ।

ବର୍ଷ ସାରା ନାନା ଉତ୍ପାଦନ କର୍ମରେ ଲୋକେ ବ୍ୟସ୍ତ ରହୁଥିଲେ । କୃଷି କର୍ମ ବ୍ୟତୀତ ଘରୋଇ ଶିଳ୍ପ ଯଥା କମାର କାମ, କୁମ୍ଭାର କାମ, ବଢ଼େଇ କାମ, ଲୁଗା ବୁଣିବା ଆଦି କାମରେ ନିଜକୁ ନିୟୋଜିତ କରୁଥିଲେ । ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଗ୍ରାମଗୁଡିକ କର୍ମମୁଖର ହୋଇ ରହୁଥିଲା । ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି 'ପ୍ରେମ ମୟୀ ମା' ନିଜ ପୁଅପାଇଁ ଲୁଗା ବୁଣି କରି ପିନ୍ଧାଉଥିଲେ ।(୧୧୮) ସ୍ତ୍ରୀମାନେ ସାଧାରଣତଃ ଲୁଗାବୁଣିବା କାମରେ ନିଯୁକ୍ତା ଥିଲେ । ଘରେ ମା' ଭଉଣୀମାନଙ୍କୁ ଏହି କାର୍ଯ୍ୟ କରିବାକୁ ପଡୁଥିଲା । ଅପେକ୍ଷାକୃତ ବୟସ୍କା ସ୍ତ୍ରୀଲୋକମାନଙ୍କୁ ସହଜ କାମ କରିବାକୁ ହେଉଥିଲା । ତୁଳା ଭିଣିବା, କପାରୁ ମଞ୍ଜି ଛଡାଇବା କାମ ତହିଁର ଅନ୍ତର୍ଗତ । ଲୁହା କାମ କରୁଥିବା ଲୋକଙ୍କୁ 'କର୍ମାର' କୁହାଯାଉଥିଲା । ସେମାନେ ଲଙ୍ଗଳ ଲୁହା, ଅନ୍ୟାନ୍ୟ ଘରୋଇ ବ୍ୟବହାରରେ ଲାଗୁଥିବା ଲୁହାର ଜିନିଷମାନ ତିଆରି କରୁଥିଲେ । କୁଲାଳ ହେଉଛି ଆଜିକାଲି କୁମ୍ଭାର ନାଁର ପ୍ରତିଶବ୍ଦ । କୁଲାଳର କାମ ଥିଲା ହାଣ୍ଡି ମାଠିଆ ଆଦି ମାଟି ଜିନିଷ ତିଆରି କରିବା । ପାଣି କିମ୍ବା ମହୁ ରଖିବା ପାଇଁ ଲୋକେ ଚମଡ଼ାର ପାତ୍ର ତିଆରି କରୁଥିଲେ । ଏହାର ନାମ ଥିଲା 'ଦୃତି' । ଏହା ଥିଲା 'ଚର୍ମମ୍ନ'ର ନାମ । ଏ 'ଚର୍ମମ୍ନ' ଆଜିକାଲିର ଚମାର ସହିତ ତୁଳନୀୟ ହେବେ । ଗାଁ ବଇଦ ମାନଙ୍କୁ କୁହାଯାଉଥିଲା 'ଭିଷକ୍ '।(୧୧୯) ଏହିପରି ୭୦ ପ୍ରକାର କାରିଗରଙ୍କ ନାମ 'ବାଜସନେୟି ସଂହିତା'ରେ ଉଲ୍ଲିଖିତ ।(୧୨୦) ବୈଦିକ ଆର୍ଯ୍ୟମାନେ କୃତ୍ରିମ ଉପାୟରେ ଜଳ ଧାରା ସୃଷ୍ଟି କରି କୃଷି କ୍ଷେତ୍ରରେ ବ୍ୟବହୃତ କରୁଥିଲେ । ଏ ପ୍ରକାର ଜଳାଧାରାକୁ 'କୁଲ୍ୟା' କୁହାଯାଉଥିଲା । ଯାହାର ଉଲ୍ଲେଖ ବେଦରେ ମିଳିଥାଏ ।(୧୨୧) ଏହା ଛଡା କୃତ୍ରିମ କୂପମାନ ଖନନ କରି କୃଷି କ୍ଷେତ୍ରକୁ ଜଳସେଚିତ କରୁଥିଲେ । ଏହା ମଧ୍ୟ ବେଦରେ ଉଲ୍ଲିଖିତ ।(୧୨୨)

ଆଜି କାଲି ଭଳି ଗ୍ରାମରେ ଦାରିଦ୍ର୍ୟ ସେତେବେଳେ ନଥିଲା । ଗ୍ରାମ ଗୁଡିକ ସମସ୍ତ ଆବଶ୍ୟକ ବସ୍ତୁରେ ପରିପୂର୍ଣ୍ଣ ଥିଲା । ଏହି ପରିବେଶରେ ସେମାନେ ଆନନ୍ଦ ପାଉଥିଲେ । ତେଣୁ ଏ ପରିବେଶରୁ ସୃଷ୍ଟ ବୈଦିକ ସାହିତ୍ୟରେ 'ନିରାଶ୍ୟ ବା ବିଷାଦ' ନାହିଁ । ମୃତ୍ୟୁ ଚେତନା ବୈଦିକ ଋଷିଙ୍କୁ ସ୍ପର୍ଶ କରିପାରୁ ନଥିଲା । ଗ୍ରାମ୍ୟ ସଂସ୍କୃତିର ଆଲୋକ ସେତେବେଳେ ନଗର ଜୀବନକୁ ଆଲୋକିତ କରୁଥିଲା । ଗ୍ରାମୀଣ ପରିବେଶର ମୁନିଋଷିମାନେ ରାଜନ୍ୟ ବର୍ଗଙ୍କର ପଥ ପ୍ରଦର୍ଶକ ଥିଲେ । ତତ୍କାଳୀନ ମଣିଷର ସହଜାତ ଗୁଣ ଥିଲା 'ଦିବତ୍ୱ' ଫଳରେ ସେମାନେ ସାରା ବିଶ୍ୱକୁ ଏକ ଆଧ୍ୟାତ୍ମିକ ସୂତ୍ରରେ ବାନ୍ଧି ରଖିବାର ପ୍ରୟାସ କରିଥିଲେ ।

**ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ –**

ବୈଦିକ ଆର୍ଯ୍ୟମାନେ ଯେଉଁ ଘରୋଇ ଆସବାସ ପତ୍ର ବ୍ୟବହାର କରୁଥିଲେ ସେ ସଂପର୍କରେ ନିମ୍ନରେ ଆଲୋଚନା କରାଗଲା –

'ଯଜ୍ଞ' କାର୍ଯ୍ୟ ସମାହିତ କରିବା ପାଇଁ 'କୁଶ'ର ଆସନ ତିଆରି କରି ବ୍ୟବହାର କରାଯାଉଥିଲା । ସେ ଗୁଡିକର ନାମ ଥିଲା 'ପ୍ରସ୍ତର, ବର୍ହି, କୂର୍ଚ୍ଚ'। ଏହି କୂର୍ଚ୍ଚ ଶବ୍ଦରୁ କୁର୍ଚ୍ଚୀ ଶବ୍ଦର ଉଦ୍ଭବ ହୋଇ ପାରିଥାଏ । ବସା ଉଠା କରିବାପାଇଁ ବେତର 'ଚଟାଇ' ତିଆରି କରା ଯାଉଥିଲା । ଏହାକୁ 'କଶିପୁ' ବୋଲି କୁହାଯାଉଥିଲା । ଧନୀ ଲୋକମାନେ ବେଳେ ବେଳେ ସୁନାର ଝାଲର ଦେଉଥିଲେ । ସେତେବେଳେ ଏହାକୁ 'ହିରଣ୍ୟ କଶିପୁ' କୁହାଯାଉଥିଲା । ଅଶ୍ୱମେଧ ଯଜ୍ଞ ବେଳେ ରାଜା 'ହିରଣ୍ୟ କଶିପୁ'ରେ ବସିବାର ବିଧି ଥିଲା ।

**ତଳ୍ପ** – ଆଉ ଗୋଟିଏ ବସ୍ତୁକୁ 'ତଳ୍ପ' କୁହାଯାଉଥିଲା । ସେତେବେଳେ ଅନ୍ତଃପୁରରେ ସ୍ତ୍ରୀମାନଙ୍କ ଦ୍ୱାରା ଆସନ ବିଛଣା ବ୍ୟବହୃତ ହେଉଥିବାର ପ୍ରମାଣ ମିଳେ । 'ତଳ୍ପ , ପ୍ରୋଷ୍ଠ ଓ ବହ୍ୟ' ଉପରେ ଶୋଇ ସୁଖ ଅନୁଭବ କରୁଥିବା ସ୍ତ୍ରୀ ମାନଙ୍କର ଉଲ୍ଲେଖ ବୈଦିକ ସାହିତ୍ୟରୁ ମିଳୁଅଛି । ବରବଧୂଙ୍କର ଶୁଭ ମିଳନ 'ତଳ୍ପ' ଉପରେ ହେଉଥିଲା । ଅଥର୍ବ ବେଦ 'ବିବାହ ସୂକ୍ତ'ରେ ବଧୂକୁ ପ୍ରସନ୍ନ ଚିତ୍ତ ହୋଇ 'ତଳ୍ପ' ଆରୋହଣ କରି ପତି ନିମିତ୍ତ ସନ୍ତାନ ଉତ୍ପନ୍ନ କରିବା ରୂପ କଲ୍ୟାଣ କର ବୋଲି କୁହାଯାଇଛି । ଏଥିରେ କୁହାଯାଇଛି ତୁମେ ପ୍ରସନ୍ନ ଚିତ୍ତରେ 'ତଳ୍ପ' ଉପରକୁ ଉଠ ଏବଂ ପତିଙ୍କ ଲାଗି ସନ୍ତାନ ଜନ୍ମ କର ।(୧୨୩) 'ଶତପଥ ବ୍ରାହ୍ମଣ'ରେ ମଧ୍ୟ ଏହି ବାଣୀ ଅନୁରଣିତ ।(୧୨୪) ସେଠାରେ କୁହାଯାଇଛି ଯେ 'ତଳ୍ପ' ଶୟନରୁ ଜାତ ସନ୍ତାନ ବୈଧ । ତେଣୁ ତାହାକୁ କୁହାଯାଏ 'ତଳ୍ପ୍ୟ ବା ତଳ୍ପ ଜାତ' । ଏଥିରୁ ଅନୁମାନ କରାଯାଉଛି 'ତଳ୍ପ' ହେଉଛି ବିବାହରେ ବ୍ୟବହୃତ ହେଉଥିବା ପଲଙ୍କ । 'ତଳ୍ପ' ଉପରେ ସେତେବେଳେ ପବିତ୍ରତା ଆରୋପ କରାଯାଇଛି । ଏଥିରେ ଶୋଇବାର ଅଧିକାର କେବଳ ପବିତ୍ର ବିବାହ ବନ୍ଧନରେ ବାନ୍ଧି ହୋଇ ଥିବା ବର ବଧୂଙ୍କର ଥିଲା । ଋଗ୍‌ବେଦରେ ମଧ୍ୟ ଏହି 'ତଳ୍ପ' ଉଲ୍ଲେଖ ଦେଖିବାକୁ ମିଳେ ।(୧୨୫) ପବିତ୍ର 'ଉଦୁମ୍ବର' ଗଛର କାଠରେ ଏହି 'ତଳ୍ପ' ତିଆରି କରାଯାଉଥିଲା ।

**ପ୍ରୋଷ୍ଠ** – ବଡ଼ ବଡ଼ ପ୍ରାସାଦ ଭିତରେ 'ପ୍ରୋଷ୍ଠ' ଉପରେ ସୁଖରେ ଶୟନ କରୁଥିବା ନାରୀମାନଙ୍କର ଉଲ୍ଲେଖ ମିଳେ । ଏଥିରୁ ଅନୁମାନ ହେଉଛି ହର୍ମ୍ୟବାସିନୀ ଧନୀ ଘରର ସ୍ତ୍ରୀମାନେ ଏଥିରେ ଶୟନ କରୁଥିଲେ । ବେଦମନ୍ତ୍ରରେ ଏହି ସ୍ତ୍ରୀ ଲୋକମାନଙ୍କୁ 'ପ୍ରୋଷ୍ଠଶୟା' (ପ୍ରୋଷ୍ଠରେ ଶୋଇଥିବା ସ୍ତ୍ରୀ) ବୋଲି କୁହାଯାଇଛି । ଏହାର ଗଠନ ପ୍ରଣାଳୀ ସୁନ୍ଦର । ଏହାର ଦୁଇଟି ପାଦ ଥାଏ । ଅଥର୍ବ ବେଦରେ ଗୋଟିଏ ମନ୍ତ୍ରରୁ ଜଣାପଡେ ବଧୂକୁ ପତିଗୃହକୁ ଯିବା ସମୟରେ ତକିଆ ଓ ତେଲ ସହିତ 'କୋଶ'(ଏକ ପ୍ରକାର ଖଟ) ଦିଆଯାଉଥିଲା । ବୋଧହୁଏ ସେହି 'କୋଶ' ହେଉଛି ଆଲୋଚ୍ୟ 'ପ୍ରୋଷ୍ଠ' । ତେବେ ଏହା 'ହର୍ମ୍ୟ'ରେ ବ୍ୟବହୃତ ହେଉଥିବା ଏକ ପ୍ରକାର ମୂଲ୍ୟବାନ ଶଯ୍ୟା ।

**ବହ୍ୟ –**

ବହ୍ୟ ଶବ୍ଦରୁ ଜଣାପଡେ ଏ ଆସନ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଆ ଯାଇ ପାରୁଥିଲା । ବଧୂ ଶ୍ରାନ୍ତ ବା ଅବସନ୍ନ ହୋଇ ପଡୁଥିଲେ ବହ୍ୟରେ ବସି ପଡୁଥିଲା । ଏହି 'ବହ୍ୟ' କାଠ ଦ୍ୱାରା ନିର୍ମିତ ହେଉଥିଲା ଓ ବିଶେଷ କାରୁକାର୍ଯ୍ୟ ବିଶିଷ୍ଟ ଥିଲା । ବିବାହ ଉତ୍ସବରେ 'ବହ୍ୟ' ଶବ୍ଦର ଉଲ୍ଲେଖ ମିଳେ ।

ଏହି କାରୁକାର୍ଯ୍ୟ ଖଚିତ ବହ୍ୟରେ ବିବାହ ପରେ ବରବଧୂ ଶୟନ କରୁଥିଲେ ।(୧୨୬) ଋଗ୍‌ବେଦରେ ସ୍ତ୍ରୀମାନଙ୍କର ଶଯ୍ୟା ଅର୍ଥରେ 'ବହ୍ୟ' ଶବ୍ଦର ଉଲ୍ଲେଖ ଅଛି ।(୧୨୭)

ଆସନ୍ଦୀ –

ବ୍ରାହ୍ମଣ ଗ୍ରନ୍ଥରୁ ଜଣାପଡେ ଆସନ୍ଦୀ ହେଉଛି ରାଜା ବା ଧନୀବ୍ୟକ୍ତିଙ୍କ ଦ୍ୱାରା ବ୍ୟବହୃତ ହେଉଥିବା 'ଗଦି ବା ଚୌକି' ବିଶେଷ । ଏହା ବସିବା ଓ ଶୋଇବା ଉଭୟ କାମପାଇଁ ବ୍ୟବହୃତ ହେଉଥିଲା । 'ଆସନ୍ଦୀ' ପ୍ରାୟ ରାଜ ସିଂହାସନ ପରିଥିଲା । ଅଥର୍ବ ବେଦରୁ ଜଣାପଡେ 'ଆସନ୍ଦୀ'ର ଚାରୋଟି ଗୋଡ ଥିଲା ।(୧୨୮) ଏହା ତନ୍ତ ଦ୍ୱାରା ବୁଣା ଯାଉଥିଲା । 'ଆସନ୍ଦୀ' ଉପରେ ଗୋଟିଏ ଚଦର (ଆସ୍ତରଣ) ପଡୁଥିଲା । ତିକିଆ (ଉପ ବର୍ହଣ) ଗଦି ( ଆସାଦ) ଏବଂ ଆରାମ କରିବା ନିମିତ ଉପଶ୍ରୟ ବ୍ୟବହୃତ ହେଉଥିଲା । ସାଧାରଣ ଲୋକମଧ୍ୟ 'ଆସନ୍ଦୀ' ବ୍ୟବହାର କରୁଥିଲେ । ଏହାର ଉଲ୍ଲେଖ ବହୁଳ ଭାବରେ 'ଅଥର୍ବ ବେଦ ଓ ବାଜସନେୟୀ' ସଂହିତାରେ ଦେଖିବାକୁ ମିଳିଥାଏ ।(୧୨୯) 'ଶତପଥ ବ୍ରାହ୍ମଣ'ରେ ଜନ୍ମେଜୟ ରାଜାଙ୍କ ରାଜନଗରର ଉପାଧି ଥିଲା ଆସନ୍ଦୀବନ୍ତ ସିଂହାସନ ଥିବା ବାଲା ।(୧୩୦) ଜନ୍ମେଜୟ ରାଜାଙ୍କ ଆସନ ଖୁବ୍ ମୂଲ୍ୟବାନ ଥିଲା । ତେଣୁ ତାଙ୍କ ରାଜ ନଗରକୁ ଲୋକେ ସିଂହାସନରେ ଭରପୂର ବୋଲି ନାମ ଦେଇ ଥିଲେ ।

**କଳଶ** – ଘରର ନାନାଦି ବ୍ୟବହାର୍ଯ୍ୟ ଜିନିଷ ମଧ୍ୟରେ କଳଶ ଅନ୍ୟତମ । ଏହା ଉଭୟ ମାଟି ଓ ଲୁହାରେ ତିଆରି ହେଉଥିଲା । ଋଗ୍‌ବେଦର ପ୍ରାଥମିକ କାଳରେ 'କଳଶ' ମାଟିରେ ନିର୍ମିତ ହେଉଥିଲା । ମାତ୍ର ସେମାନଙ୍କର ପୂର୍ବାଭିମୁଖ ଗତି ଫଳରେ ସେମାନେ ଲୁହାର ସନ୍ଧାନ ଯେତେବେଳେ ପାଇଥିବେ ସେତେବେଳେ ସେମାନେ ଲୁହାର 'କଳଶ' ତିଆର କରିଥିବେ । ତେଣୁ କଳଶ ଉଭୟ ମାଟି ଓ ଲୁହାରେ ଥିଲା ।(୧୩୧)

**ଦ୍ରୋଣ** – କାଠରେ ତିଆରି ଦ୍ରୋଣ ମଧ୍ୟ ବ୍ୟବହୃତ ହେଉଥିଲା । ଏହା ଏକ ମାପକ ଥିଲା । ଏଥିରେ ଧାନ, ଚାଉଳ, ଓ ଅନ୍ୟାନ୍ୟ ଶସ୍ୟ ମପା ଯାଉଥିଲା । **ଦୃତି** ହେଉଛି ଚମଡାରେ ତିଆରି ଏକ ଥଳୀ । ଏଥିରେ ତରଳ ପଦାର୍ଥ ରହୁଥିଲା ।ଏହାର ବର୍ଣ୍ଣନା ବେଦ ଏବଂ ବେଦୋତ୍ତର ଗ୍ରନ୍ଥରେ ଦେଖିବାକୁ ମିଳିଥାଏ ।(୧୩୨) ତରଳ ପଦାର୍ଥ ଏଥିରେ ରହିଲେ ଏହା ଫୁଲି ଯାଉଥିଲା । ତେଣୁ ଋଗ୍ ବେଦରେ ଏହାକୁ 'ଧ୍ମାତ' ବୋଲି କୁହାଯାଇଛି ।(୧୩୩) ଧ୍ମାତ ଅର୍ଥ ହେଉଛି ଫୁଲିଲା ଆକାର ବିଶିଷ୍ଟ । ଦୁଧ, ସୋମରସ, ଆଦି ତରଳ ପଦାର୍ଥ ଏହି 'ଦୃତି'ରେ ରଖାଯାଉଥିଲା । ଧନୀ ଲୋକମାନଙ୍କ ମଧ୍ୟରେ ସୁନା ଓ ରୂପାର ବାସନ ବ୍ୟବହୃତ ହେଉଥିଲା । ଯଜ୍ଞରେ ଅନ୍ନପାକ ନିମିତ୍ତ ଘରେ **'ସ୍ଥାଳି'** (ଥାଳି) ବ୍ୟବହୃତ ହେଉଥିଲା । କାଠ ଓ ପଥରର ପିଟଣା ଓ ଚୁଲୁଣୀର ବ୍ୟବହାର ସେମାନଙ୍କୁ ଜଣାଥିଲା । ବର୍ତ୍ତମାନ ପିଆଲାକୁ ସେତେବେଳେ **'ଚଷକ'** କୁହାଯାଉଥିଲା । ଧନୀଲୋକମାନେ ସୁନା ଓ ରୂପାର 'ଚଷକ' ବ୍ୟବହାର କରୁଥିଲେ । କାଠର ତିଆରି **'ଉଲୁଖଳ'** ଓ **'ମୁସଳ'**ରେ ଚେରମୂଳି ଓ ସୋମଲତା କୁଟାଯାଉଥିବାର ପ୍ରମାଣ ବେଦରେ ଦେଖିବାକୁ ମିଳିଥାଏ ।(୧୩୪) ଲୁହାର ଆବିଷ୍କାର ପରେ 'ଉଲୁଖଳ-ମୁସଳ' ଲୁହାରେ ତିଆରିହେଲା । ଏହା ବ୍ୟତୀତ ଅନ୍ୟ ଏକ ପାତ୍ର ଥିଲା ତାହାକୁ କୁହାଯାଉଥିଲା

'ଉର୍ଦର' । ଋଗ୍ ବେଦରେ ଏହି ଶବ୍ଦର ବ୍ୟବହାର ଦେଖିବାକୁ ମିଳେ ।(୧୩୫) ଏହି ମନ୍ତ୍ରରେ କୁହାଯାଇଛି ଲୋକ 'ଉର୍ଦର'ରେ ଅନ୍ନ ଭରିଲା ଭଳି ଇନ୍ଦ୍ରଙ୍କୁ ସୋମରସ ଭରି କରି ଦିଆ ଯାଇଥାଏ । ଆଜିକାଲି ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ଏହି 'ଉଦର'ର ବ୍ୟବହାର ଅଛି । ଏହା ବାଉଁଶ ପାତିଆରେ ତିଆରି ହୋଇଥାଏ ।

ଅଥର୍ବ ବେଦରେ 'ଶିକ୍ୟ' ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ ।(୧୩୬) ଏହା ଓଡ଼ିଆ ଭାଷାରେ ବ୍ୟବହୃତ 'ଶିକା' ଶବ୍ଦ ସହ ତୁଳନୀୟ । ଏହାକୁ ଦଉଡ଼ିରେ ତିଆରି କରି ଉପରୁ ତଳକୁ ଝୁଲା ଯାଇଥାଏ । ଏହା ଘରର 'ଓରା' ବା କାଛରେ ବାଉଁଶ, କାଠ ପକାଇ ଝୁଲାଯାଏ । ପାତ୍ର ମଧ୍ୟରେ ଦୁଧ ଦହି ଆଦି ଖାଦ୍ୟ ଦ୍ରବ୍ୟ ରଖି ଶିକାରେ ରଖି ଝୁଲାଇ ଦିଆଯାଉଥିଲା । ସୁନା ରୁପା ଆଦି ମୂଲ୍ୟବାନ ଧାତୁକୁ ମଧ୍ୟ ମାଟି ପାତ୍ରରେ ପୂରାଇ ବେଳେବେଳେ ଏହି ଶିକାରେ ରଖା ଯାଉଥିଲା ।

ଉପରୋକ୍ତ ଆଲୋଚନାରୁ ଜଣାପଡେ ବୈଦିକ ଆର୍ଯ୍ୟମାନେ ସେମାନଙ୍କ ଜୀବନକୁ ଉପଭୋଗ କରିବା ନିମିତ୍ତ ସକଳ ପ୍ରକାର ସାମଗ୍ରୀର ବ୍ୟବସ୍ଥା କରିଥିଲେ । ଅନ୍ନ, ବସ୍ତ୍ର, ଓ ଆଶ୍ରୟ କୌଣସିଥିରେ ସେମାନଙ୍କର ଅଭାବ ନଥିଲା । ସେମାନେ ଏକ ଶୃଙ୍ଖଳିତ ସାମାଜିକ ଜୀବନ ଯାପନ କରୁଥିଲେ ଏବଂ ଆଧିଭୌତିକ ଅଭିଳାଷ ପୂରଣ କରିବା ସଂଗେ ସଂଗେ ଆଧିଦୈବିକ ଓ ଆଧ୍ୟାତ୍ମିକ ଅଭିଳାଷ ପୂରଣ ଦିଗରେ ଆଗେଇ ଚାଲିଥିଲେ । ସେମାନଙ୍କ ସାମାଜିକ ଜୀବନ ଜୀବନ୍ତ ଓ କର୍ମମୁଖର ଥିଲା ।

**ସାଧାରଣ ସ୍ୱାସ୍ଥ୍ୟ ଓ ଔଷଧ –**

ବେଦରେ ଆଶ୍ଚର୍ଯ୍ୟ ଜନକ ଚିକିତ୍ସାର ଉଲ୍ଲେଖ ଅଛି । ଅଶ୍ୱିନୀ କୁମାର ଦୁଇଜଣ ତାଙ୍କର ଅଦଭୁତ ଚିକିତ୍ସା ଓ ଅସ୍ତ୍ରୋପଚାର ଲାଗି ବେଦରେ ଉଚ୍ଚ ପ୍ରଶଂସିତ ହୋଇଅଛନ୍ତି । ସାଧାରଣ ଅସୁସ୍ଥତାକୁ ଯକ୍ଷ୍ମା କୁହାଯାଉଥିଲା । ବୋଧହୁଏ ତାହା ସାଧାରଣ ଜଖମକୁ ବୁଝାଇଥାଏ । ରୋଗ ନିବାରଣ ନିମିତ୍ତ ଔଷଧକୁ 'ସ୍ତୁତି' କରାଯାଇଛି । ଦେବ ବୈଦ୍ୟ ଅଶ୍ୱିନୀ କୁମାର ଚକ୍ଷୁ ଚିକିତ୍ସା, ସାଧାରଣ ଚିକିତ୍ସାରେ ନିପୁଣଥିଲେ । ଋଷି 'ଚ୍ୟବନ'ଙ୍କୁ ଅଶ୍ୱିନୀ କୁମାର ପୁନଃ ଯୌବନ ଦେବା କଥା ବର୍ଣ୍ଣିତ ହୋଇଅଛି । 'ଜଳ ମଗଧ'ଋଷି 'ଭେଭ'ଙ୍କୁ ସେ ଦୁହେଁ ଉଦ୍ଧାର କରିଥିଲେ । 'ଅଶ୍ୱିନୌ' ଅନ୍ଧକୁ ଚକ୍ଷୁଦାନ ଓ ବିଶପଳାଙ୍କୁ ଲୁହାର ଜଙ୍ଘ ପ୍ରଦାନ କରିଥିଲେ । 'ବିଶପଳା' ଯୁଦ୍ଧରେ ଜଙ୍ଘ ହରାଇଥିଲେ ।

ପରବର୍ତ୍ତୀ ସଂହିତା କାଳରେ ଅଶ୍ୱିନୀକୁମାର ଦ୍ୱୟଙ୍କର ଲୋକପ୍ରିୟତା ଆସ୍ତେ ଆସ୍ତେ କମିଆସିଥିଲା । ଅଥର୍ବ ବେଦରେ ନାନା ପ୍ରକାର ରୋଗର ଉଲ୍ଲେଖ ଦେଖିବାକୁ ମିଳିଥାଏ । ଅଥର୍ବବେଦରେ 'ତକମ୍' (ଏକ ପ୍ରକାର ଜ୍ୱର) ବହୁବାର ଉଲ୍ଲିଖିତ ହୋଇଅଛି । ନାଳରକ୍ତ ଝାଡା, ବଥ, ଫୁଲା, ମୁଣ୍ଡବ୍ୟଥା, ହଳଦିଆ ପାଣ୍ଡୁ, ଚକ୍ଷୁରୋଗ, ଜଖମ୍, ଆଘାତ, ସର୍ପ ତଥା ବିଷାକ୍ତ କୀଟ ଦଂଶନ, କୁଷ୍ଠ, ସାଧାରଣ ବିଷ ଜନିତ ରୋଗ, ପାଗଳାମି, ଗଣ୍ଠିବାତ ଇତ୍ୟାଦିର ଉଲ୍ଲେଖ ଏଥିରୁ ମିଳିଥାଏ । ବୈଦିକ ଆର୍ଯ୍ୟର ଚିକିତ୍ସାରେ ପ୍ରାଥମିକ ସ୍ଥାନ ଥିଲା । ଚିକିତ୍ସା ପ୍ରଣାଳୀ ଇଣ୍ଡୋ -ଇଉରୋପୀୟ ପଦ୍ଧତି ଥିଲା । ପିଲାଙ୍କୁ 'ଶଙ୍ଖ' ରୋଗ ହେଉଥିଲା । ଗର୍ଭାବସ୍ଥାରେ ସୁଖ ପ୍ରସବ ନିମିତ୍ତ ବିଶେଷ ଯତ୍ନ ନିଆ ଯାଉଥିଲା । ଗୃହ୍ୟ ସୂତ୍ରରେ ପରିଷ୍କାର ପରିଚ୍ଛନ୍ନତା ପ୍ରତି ବିଶେଷ ମହତ୍ୱ ଦିଆଯାଇଛି । ପ୍ରତ୍ୟକ ଦିନ ସ୍ନାନ କରିବା

ଏବଂ ପାଣି ଦ୍ୱାରା ଘର ସଫା କରିବାର ନିର୍ଦ୍ଦେଶ ଦିଆଯାଇଛି । ଗୋବର ଦ୍ୱାରା ଘର ଲିପିବା ଓ ଘରେ ପାଣି ଛିଞ୍ଚିବା ପ୍ରତି ବିଶେଷ ମହତ୍ତ୍ୱ ଦିଆଯାଇଛି । ଅଲଗା ସ୍ଥାନରେ ଝାଡୁଆ ବା ମଇଳା ପକାଇବାର ନିର୍ଦ୍ଦେଶ ରହିଅଛି ।(ଅଭିନ୍ନ ଚନ୍ଦ୍ର ଦାଶଙ୍କ ବୈଦିକ ସାହିତ୍ୟ ଓ ସଂସ୍କୃତି ପୃଷ୍ଠା ୧୩୨-୧୩୩ରୁ ଉଦ୍ଧୃତ) ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ବୈଦିକ ଆର୍ଯ୍ୟମାନେ ସେମାନଙ୍କ ଜୀବନ ଚର୍ଯ୍ୟାରେ ପରିବେଶ ଓ ପରିସ୍ଥିତିକୁ ଦୃଷ୍ଟିରେ ରଖି ସକଳ ପ୍ରକାର ସାମଗ୍ରୀର ବ୍ୟବସ୍ଥା କରୁଥିଲେ । ଜୀବନର ତିନି ମୁଖ୍ୟ ଆବଶ୍ୟକତା ଯଥା, ଅନ୍ନ, ବସ୍ତ୍ର ଓ ଆଶ୍ରୟ କୌଣସି ଥିରେ ସେମାନଙ୍କର ଅଭାବ ନଥିଲା । ସମସ୍ତ ପ୍ରାଚୁର୍ଯ୍ୟ ମଧ୍ୟରେ ଜୀବନ ଅତିବାହିତ କରୁଥିଲେ ମଧ୍ୟ ସେମାନେ ଏକ ଶୃଙ୍ଖଳିତ ଜୀବନ ଯାପନ କରୁଥିଲେ । ସେମାନେ ଆଧିଭୌତିକ ଅଭିଳାଷ ପୂରଣ କରିବା ସଂଗେ ସଂଗେ ଆଧିଦୈବିକ ଓ ଆଧ୍ୟାତ୍ମିକ ଅଭିଳାଷ ପୂରଣ ଦିଗରେ ସଯତ୍ନ ଥିଲେ । ସେମାନଙ୍କର ଜୀବନ ଅତିମାତ୍ରାରେ ଜୀବନ୍ତ ଥିଲା ।



# ସପ୍ତମ ପରିଚ୍ଛେଦ

# ବୈଦିକ ସଂସ୍କୃତି ଓ କର୍ମକାଣ୍ଡ

## (କ) ବୈଦିକ ସଂସ୍କୃତି –

ସହସ୍ର ସହସ୍ର ବର୍ଷତଳର ଭାରତୀୟ ସଂସ୍କୃତି କହିଲେ ଆମେ ବୈଦିକ ସଂସ୍କୃତି ବୁଝିଥାଉ । ଏହାର ଅତୁଳନୀୟ ପ୍ରାଣଶକ୍ତି ଏହାକୁ ଏ ପର୍ଯ୍ୟନ୍ତ ବଞ୍ଚାଇ ରଖିଅଛି । ହିନ୍ଦୁ ସଂସ୍କୃତି, ବୌଦ୍ଧ ସଂସ୍କୃତି, ଜୈନ ସଂସ୍କୃତି, ଶିଖ ସଂସ୍କୃତିର ମୂଳ ଉତ୍ସ ହେଉଛି ବୈଦିକ ସଂସ୍କୃତି । ସଂସ୍କୃତି କହିଲେ ଏହା ହେଉଛି ବ୍ୟକ୍ତି ଶିଖିଥିବା ସକଳ ଆଚାର, ବିଚାର ,ବ୍ୟବହାର, ଚାଲି ଚଳଣ ଓ ଧର୍ମ ଯାହା କିଛି ପରମ୍ପରାରୁ ଆଣିଥାଏ ବା ନୂତନ ପରମ୍ପରା ସୃଷ୍ଟି କରିଥାଏ । ତାହା ହେଉଛି ସଂସ୍କୃତିର ମୂଳତତ୍ତ୍ୱ । 'କୃ' ଧାତୁରୁ ଭୂଷଣ ଅର୍ଥରେ 'ସୁଟ୍' ଆଗମ କରାଯାଇ ତହିଁରେ 'କ୍ତିନ୍' ପ୍ରତ୍ୟୟ ହେଲେ ସୃଷ୍ଟି ହୁଏ 'କୃତି' ଶବ୍ଦଟ । ତାହା 'ସମ୍' ଉପସର୍ଗ ଯୁକ୍ତ ହେଲେ ଆସେ 'ସଂସ୍କୃତି' ଶବ୍ଦଟି । ମନୁଷ୍ୟର ଭୂଷଣ ସ୍ୱରୂପ ବିଦ୍ୟମାନ ସକଳ ଉଦ୍ୟମ ହେଲା ସଂସ୍କୃତି । ଏ ଉଦ୍ୟମର କ୍ଷେତ୍ର ଯେତେ ବଡ଼ ସଂସ୍କୃତିର କ୍ଷେତ୍ର ସେତେ ବ୍ୟାପକ । ତେଣୁ ଭଲ ଚିନ୍ତା, ଭଲ କାମ, ଭଲ ଆଚାର ବ୍ୟବହାର , ଭଲ ଚେଷ୍ଟା ଆଦି ହେଲା ସଂସ୍କୃତିର ଅନ୍ତର୍ଭୁକ୍ତ । ତେଣୁ କୁହାଯାଏ ସଂସ୍କୃତି ଅନ୍ତର୍ମୁଖୀ ହେଲା ବେଳେ ସଭ୍ୟତା ହେଉଛି ବହିର୍ମୁଖୀ । ସଭ୍ୟତାକୁ ସଂସ୍କୃତିର ଅଭିମୁଖୀ ନକରାଇଲେ ତାହା ଶେଷରେ ମାନବ ସମାଜକୁ ଅପସଂସ୍କୃତି ଆଡକୁ ଟାଣି ନେଇଥାଏ । ତୁଳନାତ୍ମକ ଦୃଷ୍ଟିରୁ ବିଚାର କଲେ ଦେଖିବା ଯେ ସଂସ୍କୃତି ହେଉଛି ଆଚାରନିଷ୍ଠ । ଅନ୍ୟ ପକ୍ଷରେ ସଭ୍ୟତା ହେଉଛି ବିଚାରନିଷ୍ଠ । ସଂସ୍କୃତିର ସୃଷ୍ଟି ଅନୁଭବରୁ ମାତ୍ର ସଭ୍ୟତାର ସୃଷ୍ଟି ଜ୍ଞାନରୁ । ଅନୁଭବ ଲବ୍ଧ ଜ୍ଞାନ ଥାଏ ନିତ୍ୟ । ଅଥଚ ବୁଦ୍ଧି ଲବ୍ଧ ଜ୍ଞାନ ଥାଏ ପରିବର୍ତ୍ତନଶୀଳ । ମନୁଷ୍ୟର ବୌଦ୍ଧିକ ବିକାଶ ସଂଗେ ସଂଗେ ଜ୍ଞାନର ପରିବର୍ତ୍ତନ ଓ ବିକାଶ ଘଟିଥାଏ । ତେଣୁ ସଂସ୍କୃତି ଚିରନ୍ତନ ଥିଲା ବେଳେ ସଭ୍ୟତା ଥାଏ ପରିବର୍ତ୍ତନ ଶୀଳ । ଏହି ଚିରନ୍ତନତାକୁ ସଂସ୍କୃତିର ଆତ୍ମା କୁହାଯାଏ । ତେଣୁ ଏହା ଅନ୍ତର୍ନିହିତ ଅଭିବୃଦ୍ଧିକୁ ବୁଝାଏ । ଏହା ଅନ୍ୟ ପାଖରେ ସହଜ ଓ ସରଳ ଭାବରେ ବୁଝିପାରିବା ଭଳି ଅବସ୍ଥାରେ ଉପସ୍ଥାପିତ କରିବାର ଶକ୍ତିକୁ ବୁଝାଇବ । ଅତଏବ ପରସ୍ପରକୁ ଠିକଣା ଭାବରେ ବୁଝିବା ଲାଗି ଉଦ୍ୟମ ହେଉଛି ସାଂସ୍କୃତିକ ଦୃଷ୍ଟି ଭଂଗୀ ।

ହଜାର ହଜାର ବର୍ଷର ପୁରାତନ ସଂସ୍କୃତି ହେଉଛି ବୈଦିକ ସଂସ୍କୃତି । ଋଗ୍ ବେଦରେ କୁହାଯାଇଛି "ଯେଉଁ ପୂର୍ବଜ ଋଷିମାନେ ଆମକୁ ଆଗରୁ ବାଟ ଦେଖାଇ ଯାଇଅଛନ୍ତି ଆମେ ଏହି ପ୍ରଣାମ ସେମାନଙ୍କ ପାଇଁ ଢାଳୁଛୁ"।(୧) ଏଥିରୁ ମନେହୁଏ ଋଗ୍‌ବେଦ ପୂର୍ବରୁ ଅନେକ ଋଷିଥିଲେ ଏବଂ ସେମାନେ ଉତ୍ତର ପୁରୁଷମାନଙ୍କ ଲାଗି ବାଟ ଦେଖାଇ ଯାଇଅଛନ୍ତି । ସେମାନଙ୍କର ବାଣୀର ପରମ୍ପରା ଋଗ୍‌ବେଦରେ ଅନୁରଣିତ ହୋଇଛି ।

ବୈଦିକ ଆର୍ଯ୍ୟମାନଙ୍କର ଲକ୍ଷ୍ୟ ଥିଲା "କୃଣ୍ୱନ୍ତୋବିଶ୍ୱମାର୍ଯ୍ୟମ୍" ବା ସାରା ବିଶ୍ୱକୁ ଆର୍ଯ୍ୟ କରାଇବା (୨) ଏଠାରେ ଆର୍ଯ୍ୟ ଶବ୍ଦକୁ ଏକ ଜାତି ଅର୍ଥରେ ପ୍ରୟୋଗ କରାଯାଇ ନାହିଁ । ଏହାକୁ ଏକ ଜୀବନ ଦର୍ଶନ ଓ ଜୀବନ ଧାରା ବୋଲି କୁହାଯାଉଥିଲା । ତେଣୁ ଏହାର ଅନୁବର୍ତ୍ତୀ ଲୋକଙ୍କୁ କୁହାଯାଉଥିଲା

ଆର୍ଯ୍ୟ ଓ ଏହାର ବିରୁଦ୍ଧାଚରଣ କରୁଥିବା ଲୋକଙ୍କୁ କୁହାଯାଉଥିଲା ଅନାର୍ଯ୍ୟ । ଆର୍ଯ୍ୟ ସଂସ୍କୃତି ସଂରକ୍ଷଣ ଓ ପରିପ୍ରସାର ଲାଗି ବୈଦିକ ଆର୍ଯ୍ୟ ଥିଲେ ପ୍ରତିଶ୍ରୁତି ବଦ୍ଧ । ଏହି ସଂସ୍କୃତିର ସଂରକ୍ଷଣ ଲାଗି ଆର୍ଯ୍ୟମାନଙ୍କୁ ଦସ୍ୟୁ, ଦାସ, ଅସୁର ଓ ପଣିମାନଙ୍କ ସହିତ ସଂଘର୍ଷ କରିବାକୁ ହେଉଥିଲା ।

ଚ୍ରିଆଡୁ ଭଲ ଚିନ୍ତାକୁ ଗ୍ରହଣ କରିବା ବୈଦିକ ଆର୍ଯ୍ୟମାନଙ୍କର ନୀତି ଥିଲା । ସେଥିପାଇଁ ଋଗ୍‌ବେଦରେ କୁହାଯାଇଛି "ବିଶ୍ୱର ଚ୍ରିଆଡୁ ଆମ ଲାଗି ଭଲ ଚିନ୍ତାମାନ ଅସନ୍ତୁ ।(୩) ଏଥିରୁ ଅନୁମାନ କରାଯାଏ ବୈଦିକ ଆର୍ଯ୍ୟମାନେ ଅତ୍ୟନ୍ତ ଗୁଣଗ୍ରାହୀ ଥିଲେ । ଏତଦ୍ ବ୍ୟତୀତ ଅନାର୍ଯ୍ୟମାନଙ୍କୁ ଆର୍ଯ୍ୟାନ୍ୱିତ କରିବା ପାଇଁ ଶିକ୍ଷା ଦେଉଥିଲେ । ଏହି ଶିକ୍ଷା ଫଳରେ କେତେକ ଆର୍ଯ୍ୟେତର ଜାତିର ବ୍ୟକ୍ତି ଖୁବ୍ ପ୍ରଜ୍ଞାଶୀଳ ହୋଇ ଋଷିଙ୍କ ମର୍ଯ୍ୟଦା ପାଇ ପାରିଥିଲେ । 'କବଶ ଐଳୁଶ' ହେଉଛନ୍ତି ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଋଗ୍‌ବେଦର ୧୦ମ ମଣ୍ଡଳସ୍ଥ ଅନେକ ସୂକ୍ତ ରଚନା କରି ଅଛନ୍ତି । ସେ ଥିଲେ ଜଣେ ଦାସପୁତ୍ର । 'ଐତରେୟୀ ଓ କୌଷିତକୀ' ବ୍ରାହ୍ମଣମାନେ ମଧ୍ୟ ଥିଲେ ଆର୍ଯ୍ୟେତର ଗୋଷ୍ଠୀର । ଏହିପରି ଭାବରେ ଆର୍ଯ୍ୟସଂସ୍କୃତି ଓ ଆର୍ଯ୍ୟେତର ସଂସ୍କୃତିର ସମ୍ମିଶ୍ରଣରେ ବୈଦିକ ସଂସ୍କୃତି ଉଦ୍ଭବ ହୋଇଥିଲା । ବୈଦିକ ସଂସ୍କୃତିର ଅନ୍ୟ ଏକ ଉଲ୍ଲେଖନୀୟ ଦିଗ ହେଉଛି ଜାତୀୟ ସଂହତି । ଏହାର ନମୁନା ବେଦରେ ବର୍ଣ୍ଣିତ 'ଦାଶରାଜ୍ଞ' ଯୁଦ୍ଧରୁ ଅନୁମିତ ହୁଏ ।

**ବୈଦିକ ସଂସ୍କୃତିର ସୃଷ୍ଟି –**

ବୈଦିକ ସଂସ୍କୃତିର ସୃଷ୍ଟି ସହସ୍ର ସହସ୍ର ବର୍ଷ ଧରି ଥିଲା ବ୍ୟାପ୍ତ । ଦୀର୍ଘକାଳ ଧରି ବହି ଚ୍ଲିଥିବା ଧାରାରେ ବହୁ ସଂସ୍କୃତିର ଉପଧାରାମାନ ମିଳିତ ହେବା ସ୍ୱାଭାବିକ । ଆର୍ଯ୍ୟ, ଦାସ, ଦସ୍ୟୁ, ଅସୁର, ପଣି ସମସ୍ତ ମିଶି ବୈଦିକ ସଂସ୍କୃତି ସୃଷ୍ଟି କରିଅଛନ୍ତି । 'ଅସୁର' ଦେବତାଙ୍କ ପ୍ରାଣ ଦାୟିନୀ ଶକ୍ତି ଉପରେ ଆର୍ଯ୍ୟମାନଙ୍କର ଗଭୀର ବିଶ୍ୱାସ ଥିବାରୁ ସେମାନେ ଦେବ ମଣ୍ଡଳରେ ଏହି 'ଅସୁରତ୍ୱ' ଆରୋପ କରିଥିଲେ । ସେଥିପାଇଁ ଋଗ୍ ବେଦରେ କୁହାଗଲା 'ଦେବତାମାନଙ୍କ ଠାରେ ବଡ ଅସୁର ପଣିଆ ଅଛି '।(୪) ଋଗ୍‌ବେଦରେ ଆଉ ଗୋଟିଏ ସ୍ଥାନରେ ବରୁଣ, ରୁଦ୍ର, ସୂର୍ଯ୍ୟ ଓ ଅଗ୍ନିଙ୍କୁ ସ୍ପଷ୍ଟ ଭାବରେ ଅସୁର ବୋଲି ସଂବୋଧନ କରାଯାଇଛି ।(୫) ଅଥର୍ବ ବେଦ ଓ ତୈତ୍ତିରୀୟ ସଂହିତାରେ ମଧ୍ୟ ଅସୁରମାନଙ୍କୁ ଦେବତା ଶ୍ରେଣୀ ଭୁକ୍ତ କରାଯାଇଛି । ବୈଦିକ ଦେବମଣ୍ଡଳ ଉପରେ ଅସୁର ସଂସ୍କୃତିର ଯେଉଁ ପ୍ରଭାବ ପଡିଥିଲା ଏହା ହେଉଛି ତାହାର ଫଳଶ୍ରୁତି ।(୬) ଆର୍ଯ୍ୟ ଓ ଆର୍ଯ୍ୟେତର ଗୋଷ୍ଠୀର ଲୋକେ ବହୁବର୍ଷ ଧରି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ଅବଲମ୍ବନ କରି ରହିବା ଫଳରେ ସେମାନଙ୍କର ସାମାଜିକ ଏକତା କ୍ରମେ ଘନୀଭୂତ ହେଲା । ଉଭୟଗୋଷ୍ଠୀ ମଧ୍ୟରେ ବିବାହ ବନ୍ଧନ ମଧ୍ୟ ସଂସ୍ଥାପିତ ହେଲା । ଯାହାର ଦୃଷ୍ଟାନ୍ତ ହେଉଛି ଅସୁର ରାଜ 'ବୃଷପର୍ବା'ଙ୍କ କନ୍ୟା ଶର୍ମିଷ୍ଠାଙ୍କର ଆର୍ଯ୍ୟ ରାଜା ଯଯାତିଙ୍କ ସହିତ ବିବାହକୁ ଗୋଟିଏ ନିଦର୍ଶନ ସ୍ୱରୂପ ଗ୍ରହଣ କରାଯିବ । ଏହିପରି ଭାବରେ ଆର୍ଯ୍ୟେତର ଗୋଷ୍ଠୀର ସାମାଜିକ ଚଳଣି ମଧ୍ୟ ଆର୍ଯ୍ୟଗୋଷ୍ଠୀ ମଧ୍ୟରେ ପ୍ରବେଶ କଲା । ଆର୍ଯ୍ୟମାନଙ୍କର ବିବାହ ପଦ୍ଧତି ମଧ୍ୟରେ ଅସୁର ବିବାହ, ରାକ୍ଷସ ବିବାହ ଏବଂ ପୈଶାଚ ବିବାହ ପଦ୍ଧତି ଅନ୍ତର୍ଭୁକ୍ତ ହେଲା । (୭) ଆର୍ଯ୍ୟେତର ସଂସ୍କୃତିକୁ ଆର୍ଯ୍ୟ ସଂସ୍କୃତିର ମହାସ୍ରୋତରେ ମିଶାଇବାକୁ ବିଶ୍ୱାମିତ୍ର, ଅଗସ୍ତ୍ୟ, ଲୋପାମୁଦ୍ରା, ଆଦି ଋଷି ଓ ଋଷିକାମାନେ ପ୍ରବଳ ଉଦ୍ୟମ କରିଥିଲେ । ବିଶ୍ୱାମିତ୍ର ନିଜ ଆଶ୍ରମରେ ଆର୍ଯ୍ୟେତର

ଗୋଷ୍ଠୀର ଶିଷ୍ୟମାନଙ୍କୁ ଆର୍ଯ୍ୟ ସଂସ୍କୃତି ଓ ଆର୍ଯ୍ୟ ଜୀବନ ଧାରା ବିଷୟରେ ଶିକ୍ଷା ଦେଉଥିଲେ । ତାଙ୍କ ସୃଷ୍ଟ 'ଗାୟତ୍ରୀ ମନ୍ତ୍ର' ମଧ୍ୟ ଆର୍ଯ୍ୟେତର ଗୋଷ୍ଠୀର ଲୋକମାନେ ଜପ କରିବାର ସୁଯୋଗ ପାଇଥିଲେ । ବେଦରେ ଦାସମାନଙ୍କୁ କର୍ମ ଏବଂ ଗୁଣ ଅନୁସାରେ ବେଳେ ବେଳେ ବ୍ରାହ୍ମଣ ବୋଲି କୁହାଯିବାକୁ ଲାଗିଲା । ବେଦରେ କୁହାଯାଇଛି 'ଏ ଦାସମାନେ ବ୍ରାହ୍ମଣ, ଏ କେଉଟ ମାନେ ବ୍ରାହ୍ମଣ ଏବଂ ଏ କୁହୁକ ଦେଖାଉଥିବା ଲୋକମାନେ ବି ବ୍ରାହ୍ମଣ'(୭) କର୍ମ ଗୁଣ ଯୋଗୁ ଆର୍ଯ୍ୟେତର ଗୋଷ୍ଠୀର ଲୋକମାନେ ଆର୍ଯ୍ୟମାନଙ୍କର ଶ୍ରେଷ୍ଠ ବର୍ଣ୍ଣ ବ୍ରାହ୍ମଣର ମର୍ଯ୍ୟଦା ପାଇଲେ । ଋଷି ଅଗସ୍ତ୍ୟ ଓ ତାଙ୍କ ପତ୍ନୀ ଲୋପାମୁଦ୍ରା ଦକ୍ଷିଣ ଭାରତରେ ଆର୍ଯ୍ୟେତର ଗୋଷ୍ଠୀମଧ୍ୟରେ ଆର୍ଯ୍ୟ ଧର୍ମର ପ୍ରଚାର କରିଥିଲେ ।

ଭାରତୀୟ ସଂସ୍କୃତି ଅନ୍ୟ ସଂସ୍କୃତିକୁ ନିଜ ସହିତ ମିଶାଇ ଦେବାର ଅପୂର୍ବ କ୍ଷମତା ରହିଅଛି । ଏ ଦେଶକୁ ଅନେକ ଜାତି ଆସିଛନ୍ତି । ସେମାନେ କାଳକ୍ରମେ ମହାଭାରତୀୟ ସ୍ରୋତରେ ନିଜକୁ ମିଶାଇ ଦେଇଥିଲେ । ଏହି ପରି ଭାବରେ ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ସମନ୍ୱୟରେ ବୈଦିକ ସଂସ୍କୃତି ଗଢି ଉଠିଥିଲା ।

**ଇହଲୋକ ଓ ପରଲୋକ –**

ବୈଦିକ ଆର୍ଯ୍ୟମାନଙ୍କର ନିକଟରେ ଜୀବନ ଥିଲା ଆନନ୍ଦମୟ । ଜୀବନକୁ ସେମାନେ ମୂଲ୍ୟହୀନ, ଜଂଜାଳ ମୟ ବୋଲି ଭାବୁନଥିଲେ । ବୈଦିକ ଋଷି କେବେ ମୃତ୍ୟୁ ଚିନ୍ତାରେ ଅଧୀର ହେଉ ନଥିଲେ । ଦେବତାମାନଙ୍କ ଅଶୀର୍ବାଦରେ ସୁଖ ସମୃଦ୍ଧିମୟ ଦୀର୍ଘ ଜୀବନ ଯାପନ କରିହେବ ବୋଲି ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଅତି କମ୍‌ରେ ସେମାନେ ଶହେ ବର୍ଷ ବଞ୍ଚିବେ ବୋଲି ବିଶ୍ୱାସ କରୁଥିଲେ । (ଜୀବେମଃ ଶରଦଃ ଶତଂ ପଶ୍ୟେମଃ ଶରଦ ଶତ) ବୈଦିକ ପଂକ୍ତି ଏହାର ଉଦାହରଣ ।

ପୃଥିବୀ ଏକ ମାୟା ଏବଂ ବ୍ରହ୍ମ ହିଁ ଏକମାତ୍ର ସତ୍ୟ ବୋଲି ବୈଦିକ ସଂସ୍କୃତି ସ୍ୱୀକାର କରୁଥିଲା । ବ୍ରହ୍ମ ସତ୍ୟ ହେଲେ ମଧ୍ୟ ପୃଥିବୀର ସତ୍ୟତା ଅଛି ; ଏକଥା ମଧ୍ୟ ସେମାନେ ବିଶ୍ୱାସ କରୁଥିଲେ । 'ଛାନ୍ଦୋଗ୍ୟ ଉପନିଷଦ୍' ରେ ଗୁରୁ ଶିଷ୍ୟଙ୍କୁ ବ୍ରହ୍ମଙ୍କ ସ୍ଥିତି ସଂପର୍କରେ 'ଯେଉଁ ପାଣିରେ ଲୁଣ ପକାଇବା' ଆଖ୍ୟାନର ବର୍ଣ୍ଣନା ରହିଅଛି ସେଥିରେ ବ୍ରହ୍ମ ଦେଖା ଯାଉ ନଥିଲେ ମଧ୍ୟ ତାଙ୍କ ସ୍ଥିତି ଜଗତରେ ଯେ ଅଛି ତାହା ପ୍ରମାଣିତ ହୋଇଛି । ତେଣୁ ବୈଦିକ ଆର୍ଯ୍ୟମାନେ ଇହଲୋକକୁ ଏକ ଆଶାବାଦୀ ଦୃଷ୍ଟି କୋଣରୁ ଦେଖୁଥିଲେ ଏବଂ ସର୍ବତ୍ର ମଙ୍ଗଳ ଓ ଆନନ୍ଦ ସଭାକୁ ଉପଲବ୍ଧି କରି ପାରିଥିଲେ । 'ଉପନିଷଦ୍' କାଳରେ ଆତ୍ମାର ଘଟରୁ ଘଟାନ୍ତରକୁ ଗମନ ବିଷୟ ପୂର୍ଣ୍ଣାଙ୍ଗ ଦାର୍ଶନିକ ତତ୍ତ୍ୱର ବିକାଶ ଘଟିଥିଲା । ନରକର ନାମଗନ୍ଧ ବେଦରେ ନାହିଁ । ଭଲ କାମ କଲେ ପରଲୋକରେ ଉତ୍ତମ ଗତି ହେବ ବୋଲି ବେଦରେ କୁହାଯାଇଛି । ଜୀମାତ୍ମାକୁ ତାର କର୍ମ ଫଳ ଭୋଗ କରିବା ପାଇଁ ଘଟରୁ ଘଟାନ୍ତର ଯାଇ ବାରମ୍ବାର ଜନ୍ମ ଗ୍ରହଣ କରିବାକୁ ପଡିବ ବୋଲି କୁହାଯାଇଛି । ଶଙ୍କରାଚାର୍ଯ୍ୟ କହିଛନ୍ତି ଜୀବାତ୍ମାର ସଂପୂର୍ଣ୍ଣ ମୁକ୍ତି ନହେବା ପର୍ଯ୍ୟନ୍ତ ତାକୁ ଏହି ସଂସାର ଚକ୍ରରେ ଘୁରିବାକୁ ପଡିବ ।(୮) ଉପନିଷଦ୍ ଓ ଗୀତାରେ ଏହାକୁ ଜନ୍ମ ମୃତ୍ୟୁ ଚକ୍ର ବୋଲି କୁହାଯାଇଛି ।

'ସ୍ୱର୍ଗ' ସଂପର୍କରେ ନିର୍ଦ୍ଦିଷ୍ଟ ଭାବରେ ବେଦରେ ବର୍ଣ୍ଣନା ନଥିଲେ ମଧ୍ୟ ଏହା ଯେ ଏକ ଆନନ୍ଦମୟ ଧାମ ଏକଥା ବେଦରେ ବର୍ଣ୍ଣିତ । ଋଗ୍‌ବେଦ ଅନୁସାରେ ପିତୃଲୋକର ରାଜା ଥାଆନ୍ତି ଯମ ଏବଂ ସେଠାରେ ବହୁସୂର୍ଯ୍ୟ ଉଦ୍‌ଭାସିତ ହେଉଥାଆନ୍ତି । ତାହା ହେଉଛି ସ୍ୱର୍ଗ ।(୯) ଋଗ୍‌ବେଦରେ ସ୍ପଷ୍ଟ ଭାବରେ କୁହାଯାଇଛି ଯେଉଁ ବ୍ୟକ୍ତି କଠିନ ତପସ୍ୟା କରନ୍ତି କିମ୍ବା ଯେଉଁ ବୀର ନିଜ ପ୍ରାଣର ଲୋଭ ଛାଡି ଯୁଦ୍ଧ କରନ୍ତି ତାଙ୍କର ସ୍ୱର୍ଗ ପ୍ରାପ୍ତି ହୁଏ ।(୧୦) 'ଅଥର୍ବ ବେଦ'ର ବର୍ଣ୍ଣନା ଅନୁସାରେ ସେଠାରେ ସର୍ବଦା ସୁସ୍ୱରରେ ବୀଣା ବାଜୁଥାଏ ଏବଂ ଏହି ଅଞ୍ଚଳ ଘିଅ ମହୁରେ ଭାସୁଥାଏ । ଏହାର ତାତ୍ପର୍ଯ୍ୟ ହେଲା ସକଳ ପ୍ରକାର ସୁଖ ସେଠାରେ ମିଳୁଥାଏ ।(୧୧) ବୈଦିକ ଆର୍ଯ୍ୟମାନଙ୍କର ଜୀବାତ୍ମା ଓ ପରମାତ୍ମା ସଂପର୍କୀୟ ଏକ ସ୍ଥୁଳ ଧାରଣ ଥିଲା । ଋଗ୍‌ବେଦର 'ଦ୍ୱାସୁପର୍ଣ୍ଣା' ମନ୍ତ୍ରଟି ଏହାର ନିଦର୍ଶନ । ଋଗ୍‌ବେଦୀୟ ଗୋଟିଏ ଗଳ୍ପରେ (ଅଶ୍ୱତ୍ଥ) ଅଗ୍ନି ଅଶ୍ୱ ରୂପରେ ଅଶ୍ୱତ୍ଥ ଗଛରେ ଥିବା କଥାର ବର୍ଣ୍ଣନା ହୋଇଅଛି । 'ବୃହଦାରଣ୍ୟକ ଉପନିଷଦ୍'ରେ ଋଷି କହିଅଛନ୍ତି 'ସେ ପରମାତ୍ମା ହେଉଛନ୍ତି 'ପୂର୍ଣ୍ଣ' ଏ ଜୀବାତ୍ମା ମଧ୍ୟ 'ପୂର୍ଣ୍ଣ'। 'ପୂର୍ଣ୍ଣ'ଙ୍କ ଠାରୁ ହୋଇଛି 'ପୂର୍ଣ୍ଣ'ଙ୍କର ସୃଷ୍ଟି ଏବଂ ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ଅବଶେଷ ପୂର୍ଣ୍ଣ ହିଁ ରହିବ ।(୧୨) ଏହିଭଳି ଭାବରେ ଅନେକ ଦାର୍ଶନିକ ବାଣୀ 'ଉପନିଷଦ'ର ପୃଷ୍ଠାକୁ ମଣ୍ଡନ କରିଅଛି । 'ବୈଦିକ ସଂହିତା' ସାହିତ୍ୟରେ ଜୀବାତ୍ମା ଓ ପରମାତ୍ମା ସଂପର୍କୀୟ ଆଦ୍ୟ ଚେତନା ଉପନିଷଦ୍ ଯୁଗରେ ଭୂୟୋବିକାଶ ଘଟି ଏହାକୁ ଦାର୍ଶନିକ ଭିତ୍ତି ଭୂମିରେ ପ୍ରତିଷ୍ଠିତ କରି ପାରିଥିଲା ।

ବୈଦିକ ଆର୍ଯ୍ୟମାନଙ୍କ ନିକଟରେ ମୃତ୍ୟୁ ଥିଲା ଦୁଇ ଜନ୍ମ ମଧ୍ୟରେ ଏକ ପରଦା ସଦୃଶ ; ଜୀବନର ଅନନ୍ତ ପଥରେ ବିଶ୍ରାମାଗାର । ଐହିକ ଓ ଆଧ୍ୟାତ୍ମିକ ଉଭୟ ଜୀବନ ମଧ୍ୟରେ ସମନ୍ୱୟ ସ୍ଥାପନ ଥିଲା ବୈଦିକ ସଂସ୍କୃତିର ଲକ୍ଷ୍ୟ । ହେତୁବାଦୀ ବୌଦ୍ଧିକ ଚିନ୍ତାଧାରା ଓ ଅନୁଭୂତିଲବ୍ଧ ଆଧ୍ୟାତ୍ମିକ ଚିନ୍ତାଧାରା ପରସ୍ପରର ପରିପନ୍ଥୀ ନହୋଇ ପରସ୍ପର ଯେ ପରିପୂରକ ହୋଇପାରନ୍ତି ଭାରତୀୟ ସଂସ୍କୃତି (ବୈଦିକ ସଂସ୍କୃତି) ହେଉଛି ତାହାର ନିଦର୍ଶନ । ସତ୍ୟ, ଶିବ, ସୁନ୍ଦରର ଉପଲବ୍ଧି ଯେ ଜୀବ ଦଶାରେ ଏ ସଂସାରରେ ଏବଂ ମୃତ୍ୟୁ ପରେ ପରଲୋକରେ ସମ୍ଭବ ଏହି ଧାରଣା ବୈଦିକ ଆର୍ଯ୍ୟମାନଙ୍କର ଥିଲା ଏବଂ ସେହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ଜୀବନର ସିଦ୍ଧି ପଥରେ ଅଗ୍ରସର ହେଉଥିଲେ । ସାରା ଜଗତରେ ଯେ ଶାଶ୍ୱତଙ୍କର ସ୍ପନ୍ଦନ ଅନୁରଣିତ, ଶାଶ୍ୱତଙ୍କର ସତ୍ତା ଅନ୍ତଃସ୍ୟୂତ, ଏଧାରଣା ଓ ବିଶ୍ୱାସ ସେମାନଙ୍କର ଥିଲା ।

"ମନୁଷ୍ୟ ମୁକ୍ତ ଭାବରେ ଜନ୍ମ, ସେ ଜୀବନ୍ମୁକ୍ତ ! କିନ୍ତୁ ସଂସାରରେ ବଦ୍ଧ ହୋଇ ରହିଥାଏ । ଏହି ବନ୍ଧନରୁ ମୁକୁଳି ଯିବାର ଅନୁଭୂତି ଯେତେବେଳେ ତାର ଆସିଥାଏ , ସେ ହୋଇଥାଏ ମୁକ୍ତ । ଏହା ହେଲା ଜୀବନ୍ମୁକ୍ତି । ଏ ଦେହଟିକୁ ଧାରଣ କରି ମଧ୍ୟ ମନୁଷ୍ୟ ମୁକ୍ତିର ସ୍ୱାଦ ଗ୍ରହି ପାରିଥାଏ । ମୁକ୍ତିର ଆନନ୍ଦରେ ସ୍ନାନ କରି ପାରିଥାଏ" ।(୧୩) ଋଗ୍‌ବେଦର ଗୋଟିଏ ମନ୍ତ୍ରରେ କୁହାଯାଇଛି ବିଷ୍ଣୁ ବା ଭଗବାନଙ୍କର ସେହି ପରମ ପଦକୁ ସର୍ବଦା ଜ୍ଞାନୀ ଲୋକମାନେ ଦେଖିପାରନ୍ତି ।(୧୪) ଏହି ଦେଖି ପାରିବା କର୍ମଟି ସର୍ବଦା ଅନ୍ତଶ୍ଚକ୍ଷୁରେ ହୋଇଥାଏ । ଅବଶ୍ୟ ମନୁଷ୍ୟ ବଞ୍ଚି ରହି ଯେ ସ୍ୱର୍ଗ ସୁଖ ଲାଭ କରିପାରିବ ଏବଂ ମୁକ୍ତି ପାଇ ପାରିବ ଏହା ଥିଲା ବୈଦିକ ବିଶ୍ୱାସ ।

**ଜ୍ଞାନ ଓ କର୍ମ –**

ଜ୍ଞାନର ଆଲୋକ ସାହଯ୍ୟରେ ଆର୍ଯ୍ୟଋଷି ଦିବ୍ୟତମ ସତ୍ତାର ଅନୁଭବ ଆଣି ପାରୁଥିଲେ ଏବଂ ଦିବ୍ୟଦୃଷ୍ଟି ପାଇ ପାରୁଥିଲେ । ଏହି ଆଲୋକ ଲାଗି ତାଙ୍କ ପ୍ରାଣ ସଦା ବ୍ୟାକୁଳ ଥିଲା । ମାନସିକ ସ୍ତରରେ ଏହି ଆଲୋକମୟ ସ୍ଥିତିକୁ ବୈଦିକ ଋଷିମାନେ କହୁଥିଲେ 'ସ୍ୱର', ଯାହାକି ଥିଲା ଏହି ଜଗତରେ ଉପଲଭ୍ୟ । ପ୍ରକୃତରେ 'ସ୍ୱର' ଏବଂ ମୋକ୍ଷ ଥିଲା ଏକାର୍ଥ ବୋଧକ । ଆଲୋକର ସଂଧାନ ଦିବ୍ୟ ଦୃଷ୍ଟି ବଳରେ କରାଯାଉଥିଲା । ଏହି ଦିବ୍ୟ ଦୃଷ୍ଟିକୁ ବେଦରେ କୁହାଯାଇଛି 'ଧୀଃ' । ସେଥିପାଇଁ ବିଶ୍ୱମିତ୍ର ଗାୟତ୍ରୀ ମନ୍ତ୍ରରେ କହିଛନ୍ତି 'ଧୀୟୋ ଯୋନଃ ପ୍ରଚୋଦୟାତ୍' । ଏହି ଦିବ୍ୟ ଶକ୍ତି ଗୁଡିକୁ ଋଗ୍‌ବେଦରେ କୁହାଯାଇଛି 'ଉକ୍‌ଥବାହ' ବୋଲି । (୧୫) ଏହାର ତାତ୍ପର୍ଯ୍ୟ ହେଲା ପ୍ରାର୍ଥନା ବାଣୀ । ଏମାନଙ୍କୁ ଜିଜ୍ଞାସୁଙ୍କ ପାଖକୁ ବହନ କରି ଆଣିଥାଏ । ଚୈତ୍ୟସ୍ତରରେ ଜ୍ଞାନଦୀପ୍ତ ଦୃଷ୍ଟି ଅଣାଇ ଜିଜ୍ଞାସୁଙ୍କୁ ଉପଯୁକ୍ତ ମନ୍ତ୍ର ଉଚ୍ଚାରଣ କରିବାକୁ ହୋଇଥାଏ ଏବଂ ତାହା ଫଳରେ ସେ ଦିବ୍ୟଜ୍ଞାନର ଅଧିକାରୀ ହୋଇଥାଏ ।

ଜ୍ଞାନ ଭଳି କର୍ମକୁ ମଧ୍ୟ ବେଦରେ ସମଧିକ ଗୁରୁତ୍ୱ ଦିଆଯାଇଛି । ଜ୍ଞାନ ଓ କର୍ମ ମଧ୍ୟରେ ସମନ୍ୱୟ ଲକ୍ଷ୍ୟ ନେଇ କର୍ମକାଣ୍ଡୀ ଶୁକ୍ଳ ଯଜୁର୍ବେଦର ଶେଷରେ 'ଈଶା ବାସ୍ୟୋପନିଷଦ୍' ନାମକ ଏକ ଉପନିଷଦ୍ ଯୁକ୍ତ ହୋଇ ଜ୍ଞାନ କର୍ମ ମଧ୍ୟରେ ସମନ୍ୱୟ ଅଣାଇବା ଲାଗି ଉପଦେଶ ଦିଆଯାଇଛି । ଯଜ୍ଞର ଅର୍ଥ ହେଉଛି ନିସ୍ୱାର୍ଥପର କର୍ମ । ଏହି ଭଳି କର୍ମ ଉପରେ ଗୁରୁତ୍ୱ ଦେବା ଲାଗି ବିଭିନ୍ନ ପ୍ରକାର ଯଜ୍ଞର ପ୍ରତୀକ ବେଦରେ ବର୍ଣ୍ଣିତ ହୋଇଅଛି । ବେଦରେ ଉଭୟ ଜ୍ଞାନ କାଣ୍ଡ ଓ କର୍ମ କାଣ୍ଡ ଉପରେ ଗୁରୁତ୍ୱ ଦିଆଯାଇଛି । 'ବ୍ରାହ୍ମଣ ଗ୍ରନ୍ଥ' ଗୁଡିକ କର୍ମକାଣ୍ଡ ଉପରେ ଗୁରୁତ୍ୱ ଦେଉଥିବା ବେଳେ 'ଆରଣ୍ୟକ ଓ ଉପନିଷଦ୍ ଗ୍ରନ୍ଥ' ଗୁଡିକ ଜ୍ଞାନକାଣ୍ଡ ଉପରେ ଅଧିକ ଗୁରୁତ୍ୱ ଦେଇଅଛନ୍ତି । 'କର୍ମ କାଣ୍ଡ' ଓ 'ଜ୍ଞାନ କାଣ୍ଡ' ବ୍ୟତୀତ 'ଭକ୍ତି କାଣ୍ଡ' ବୋଲି ଆହୁରି ଏକ କାଣ୍ଡ ଅଛି । ଏଥିରୁ ଅନୁମିତ ହୁଏ ଯେ କର୍ମ , ଭକ୍ତି ଓ ଜ୍ଞାନ ଏହି ତିନି ମାର୍ଗର ସମନ୍ୱୟ ବେଦମନ୍ତ୍ର ଗୁଡିକରେ ଅଣାଯାଇଛି । ବେଦମନ୍ତ୍ର ଗୁଡିକର ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଏହି ଭଳି ଯେଉଁ ତିନି ପ୍ରକାର ଅର୍ଥ ବିଦ୍ୟମାନ ତାହା ଉପରୋକ୍ତ ତିନି କାଣ୍ଡ ସହିତ ସଂପୃକ୍ତ । ଆଧିଭୌତିକ ଅର୍ଥ କର୍ମକାଣ୍ଡ ସହିତ, ଆଧିଦୈବିକ ଅର୍ଥ ଭକ୍ତି କାଣ୍ଡ ସହିତ ଏବଂ ଆଧ୍ୟାତ୍ମିକ ଅର୍ଥ ଯାହାକୁ କି ବେଦର 'ନିନ୍ୟା ବଚାଂସି' ବା 'ଗୋପନ ବାଣୀ' ସମୂହ ବୋଲି ଆର୍ଯ୍ୟ ଋଷି କହିଛନ୍ତି ଏହା ସମସ୍ତଙ୍କ ଦ୍ୱାରା ଉପଲବ୍ଧ ନୁହେଁ । କେବଳ ଦିବ୍ୟଦୃଷ୍ଟି ପାଇଥିବା ବ୍ୟକ୍ତି ହିଁ ଏହାକୁ ପାଇ ପାରନ୍ତି । ଏହା ହେଲା ବେଦ ମନ୍ତ୍ରର ଅନ୍ତର୍ନିହିତ ଆଧ୍ୟାତ୍ମିକ ଅର୍ଥ । ଏ ସବୁ ମାର୍ଗର ଚରମ ଲକ୍ଷ୍ୟ ହେଲା ଦୁଃଖ ଦୂର କରିବା ଏବଂ ସୁଖ ଦେବା ।

**ବୈଦିକ ଜୀବନ ଦର୍ଶନ –**

ବୈଦିକ ଗ୍ରନ୍ଥମାନ ଅନୁଧ୍ୟାନ କଲେ ଆମେ ଦେଖି ପାରିବା ଯେ ବୈଦିକ ଆର୍ଯ୍ୟମାନଙ୍କର ଜୀବନାଦର୍ଶ କେତେକ ମୌଳିକ ଭିତ୍ତି ଉପରେ ପ୍ରତିଷ୍ଠିତ ଥିଲା । ଏହି ନୀତି ଗୁଡିକ ମଧ୍ୟ ଭାରତୀୟ ସଂସ୍କୃତିକୁ ସମାଚ୍ଛନ କରିଅଛି । ଏହି ନୀତି ଗୁଡିକ ହେଲା –'(କ) ସ୍ୱୀୟ ଅନୁଭୂତି ବଳରେ ବ୍ୟକ୍ତି

ଭୌତିକ ଜଗତର ବାହାର ଜଗତ୍ ବିଷୟରେ ଜ୍ଞାନ ଆହରଣ ।(ଖ) ସାରା ବିଶ୍ୱ ବ୍ରହ୍ମାଣ୍ଡରେ ଏକ ସର୍ବଶକ୍ତିମାନ ଓ ସର୍ବବ୍ୟାପୀ ସତ୍ତା ଥିବାର ବିଶ୍ୱାସ । (ଗ) ଅନନ୍ତ ଜୀବନ ଉପରେ ବିଶ୍ୱାସ, (ଘ) କର୍ମ ଫଳ ଓ ପୁନର୍ଜନ୍ମ ଉପରେ ବିଶ୍ୱାସ, (ଙ) କର୍ମ ଫଳ ଅନୁସାରେ ପୁନର୍ଜନ୍ମ ହେଉଥିବା ଉପରେ ବିଶ୍ୱାସ .(ଚ) ନିଜକୁ ବିଶ୍ୱାତ୍ମା ସହିତ ପରିଚିତ କରିବା ପାଇଁ ଉଦ୍ୟମ ଏବଂ ସାରା ବିଶ୍ୱ ଯେଉଁ ଏକତାର ମହା ସୂତ୍ରରେ ଅନ୍ତଃସ୍ୟୁତ ତାହାର ଆବିଷ୍କାର, (ଛ) ମାନବ ଜୀବନରେ ଦିବ୍ୟ ଜୀବନର ସନ୍ଧାନ, ଏବଂ ମାନବଠାରେ ଦେବତାର ଆବିଷ୍କାର (ଜ) ଆତ୍ମଜଗତ ଓ ଜଡ଼ ଜଗତ ମଧ୍ୟରେ ଥିବା ସମନ୍ୱୟ ସୂତ୍ରଟିର ଆବିଷ୍କାର । (ଝ) ଜୀବନର କ୍ରମିକ ଆଧ୍ୟାତ୍ମିକ ଉତ୍ତରଣ ଉପରେ ଆସ୍ଥା ଓ ବିଶ୍ୱାସ । (ଞ) ସତ୍ୟର ଉପାସନା , (ଟ) ଧର୍ମ ମାର୍ଗରେ ସର୍ବଦା ଚଳିବା ପାଇଁ ଉଦ୍ୟମ, (ଠ) ଦେବତାମାନଙ୍କ ଦୈବୀଶକ୍ତି ଦ୍ୱାରା ଯେ ସାରା ବିଶ୍ୱ ନିୟନ୍ତ୍ରିତ ଏ ବିଷୟରେ ଧାରଣା, (ଡ) ଦେବତା ଓ ମନୁଷ୍ୟ ମାନଙ୍କର ପାରସ୍ପରିକ ନିର୍ଭରଶୀଳତା ବିଷୟରେ ଧାରଣା । (ମନୁଷ୍ୟମାନେ ଯଜ୍ଞ କରି ଦେବତାମାନଙ୍କୁ ଶକ୍ତିଶାଳୀ କରାଇବେ ଏବଂ ଦେବତାମାନେ ବର ଦେଇ ମନୁଷ୍ୟମାନଙ୍କୁ ସୁଖୀ କରାଇବେ) । (ଢ) ଜ୍ଞାନ ଯୋଗ, ଭକ୍ତି ଯୋଗ ଏବଂ କର୍ମଯୋଗ ମଧ୍ୟରେ ଥିବା ଶାଶ୍ୱତ ସମନ୍ୱୟ ବିଷୟଟିକୁ ସମ୍ୟକ ଭାବରେ ଅବଧାରଣା କରିବା । (ଣ) ଧ୍ୟାନଯୋଗରେ ବୈଜ୍ଞାନିକ ବିଶ୍ଳେଷଣ କରିବା ଏବଂ (ତ)ସାରା ବିଶ୍ୱକୁ 'ଭୂଃ, ଭୁବଃ, ସ୍ୱ' ଆଦି ସାତ ଗୋଟି ଅଞ୍ଚଳ ବା ସ୍ତରରେ ବିଭକ୍ତ କରିବା' (ସୁରେନ୍ଦ୍ରନାଥ ଶତପଥୀଙ୍କ ଭାରତୀୟ ସଂସ୍କୃତି, ବୈଦିକ ପର୍ବ - ତୃତୀୟ ଭାଗ- ପୃ୧୬୪-୧୬୫ରୁ ଉଦ୍ଧୃତ)

ଉପରୋକ୍ତ ମୌଳିକ ନୀତିଗୁଡିକ ଆର୍ଯ୍ୟମାନଙ୍କ ବ୍ୟକ୍ତିଗତ ଜୀବନ, ପାରିବାରିକ ଜୀବନ ଓ ସାମାଜିକ ଜୀବନକୁ ନିୟନ୍ତ୍ରିତ କରୁଥିଲେ ଏବଂ ଏହା ଦ୍ୱାରା ଉଭୟ ଐହିକ ଓ ପାରତ୍ରିକ ସୁଖ ମିଳୁଥିଲା । ଅଦିବ୍ୟତା ମନୁଷ୍ୟର ସ୍ୱଭାବ ବିରୁଦ୍ଧ ଏବଂ ଦିବ୍ୟତା'ର ସ୍ୱଭାବ ବୋଲି ଆର୍ଯ୍ୟମାନଙ୍କର ଧାରଣା ଥିଲା । ତେଣୁ ସାରା ବିଶ୍ୱକୁ ସେମାନେ ଆର୍ଯ୍ୟାନ୍ୱିତ କରିବା ପାଇଁ ଉଦ୍ୟମ କରିଥିଲେ । ବୈଦିକ ସଂସ୍କୃତିର ଅଧିକାରୀମାନେ ସଂକୀର୍ଣ୍ଣମନା ନଥିଲେ । ସେମାନେ ବିଶ୍ୱର ସବୁ କୋଣରୁ ଭଲ ଚିନ୍ତାଆସୁ ବୋଲି କାମନା କରୁଥିଲେ ।(୧୬) ସବୁବେଳେ ଭଗବାନଙ୍କ ଆଶୀର୍ବାଦ ବଳରେ ଭଲ ଯଶ ଓ ପ୍ରତିଷ୍ଠା କିପରି ମିଳୁ ତାହା ଥିଲା ବୈଦିକ ଆର୍ଯ୍ୟମାନଙ୍କର କାମ୍ୟ । ସେଥିପାଇଁ ଋଗ୍‌ବେଦରେ କୁହାଯାଇଛି 'ହେ ପ୍ରଭୋ ତୁମେ ଆମ ପାଇଁ ଅତୁଳ ଯଶ ଆଣି ଦିଅ !(୧୭) ତୁମେ ଆମ୍ଭମାନଙ୍କୁ ପାପରୁ ରକ୍ଷା କର ।(୧୮) ଆର୍ଯ୍ୟମାନେ ମାନବ ସମାଜକୁ ସ୍ନେହ ଓ ଶ୍ରଦ୍ଧା କରୁଥିଲେ । ସେଥିପାଇଁ ସେ କହୁଥିଲେ ମନୁଷ୍ୟମାନେ ଆମକୁ ଘୃଣା ନ କରନ୍ତୁ ।(୧୯) ଭଲ କାମର ଭଲ ଫଳ ଓ ଖରାପ କାମର ଖରାପ ଫଳ ମିଳେ ବୋଲି ସେମାନଙ୍କର ବିଶ୍ୱାସ । ସେଥିପାଇଁ ଋଗ୍ ବେଦରେ ଋଷି କହିଅଛନ୍ତି 'ଭଗବାନ ମନୁଷ୍ୟର ହୃଦୟରେ ଥାଇ ଭଲ ମନ୍ଦ ସବୁ କାମକୁ ସାକ୍ଷୀ ହୋଇ ଦେଖୁଥାନ୍ତି ।(୨୦) ଭଲ ମଣିଷଟିଏ ହେବାପାଇଁ ବୈଦିକ ଆର୍ଯ୍ୟମାନଙ୍କର ଏହା ଥିଲା ବିଶ୍ୱାସ । ଏହି ମାର୍ଗରେ ଗଲେ ଜୀବନରେ ସୁଖ ଓ ଆନନ୍ଦ ମିଳି ପାରିବ ।

ଆମେ ଯାହାକୁ ହିନ୍ଦୁ ସଂସ୍କୃତି କହୁଛେ ତାହା ବୈଦିକ ସଂସ୍କୃତିର ରୂପାନ୍ତର ମାତ୍ର । ହିନ୍ଦୁ ସଂସ୍କୃତି ବହୁ ସଂସ୍କୃତିର ମିଳନରେ ସମୃଦ୍ଧ ହୋଇଅଛି । ଆର୍ଯ୍ୟ, ଅନାର୍ଯ୍ୟ, ଦାସ, ଦସ୍ୟୁ, ଦ୍ରାବିଡ,

କିରାତ, ଇହୁଦୀ, ପାର୍ସି, ଖ୍ରୀଷ୍ଟିୟାନ, ମୁସଲମାନ, ଆଦି ସଂସ୍କୃତିର ଧାରାମାନ ଏହା ସହିତ ମିଶିଅଛି । ହିନ୍ଦୁ ସଂସ୍କୃତି ହେଉଛି ପିତୃକଳ୍ପ ବୈଦିକ ସଂସ୍କୃତି ଭଳି ଏକ ସମନ୍ୱୟ ସଂସ୍କୃତି । ହିନ୍ଦୁ ଧର୍ମ ଅନ୍ୟ ଧର୍ମରେ ଅନୁସୃତ ପ୍ରଥା ଓ ପନ୍ଥା ପ୍ରତି ଗୁରୁତ୍ୱ ଓ ମାନ୍ୟତା ଦେଇ ଆସିଛି । ଏହା ମାଧ୍ୟମରେ ପ୍ରକୃତ ସତ୍ୟକୁ ଆବିଷ୍କାର କରିବାର ପ୍ରୟାସ କରିଅଛି । ଲକ୍ଷରେ ପହଞ୍ଚିବା ପାଇଁ ଯେତେ ଯେତେ ପନ୍ଥାମାନ ଅଛି ହିନ୍ଦୁ ସଂସ୍କୃତି ତାହା ପ୍ରତି ସମଧିକ ସଚେତନ ରହିଅଛି ।

**ବୈଦିକ ସଂସ୍କୃତିରେ 'ଋତ୍' –**

'ଋତ୍' ଶବ୍ଦଟି କେବଳ ବୈଦିକ ସଂହିତାରେ ବ୍ୟବହୃତ ହୋଇଅଛି । ସଂହିତୋତ୍ତର ସାହିତ୍ୟରେ ଏହାର ବ୍ୟବହାର ନାହିଁ । ଏହା ସ୍ଥାନରେ 'ସତ୍ୟ'ର ବ୍ୟବହାର ଦେଖିବାକୁ ମିଳେ । 'ବୈଦିକ ସଂହିତା' ସାହିତ୍ୟରେ ଉଭୟ 'ଋତ ଏବଂ ସତ୍ୟ' ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ଏଥିରୁ ନିଷ୍ପନ୍ନ ଶବ୍ଦ ହେଉଛି 'ଋତ' ଅର୍ଥାତ୍ 'ଋ' ଧାତୁ ହେଉଛି ଗତ୍ୟାର୍ଥ ବୋଧକ । ଏଥିରୁ ନିଷ୍ପନ୍ନ ଶବ୍ଦ 'ଋତ' ଅର୍ଥାତ ଶାଶ୍ୱତଗତି ବା ଶାଶ୍ୱତ ନିୟମର ଧାରା । ଏହାକୁ ଅନୁସରଣ କରି ସୂର୍ଯ୍ୟ ଉଦୟ ଓ ଅସ୍ତ ହୁଅନ୍ତି । ଏହାକୁ ଅନୁସରଣ କରି ଋତୁମାନେ ଆସନ୍ତି ଓ ଯାଆନ୍ତି । ଏହାକୁ ଅନୁସରଣ କରି ବେଙ୍ଗମାନେ ରାବ କରନ୍ତି । 'ସତ୍ୟ' ଶବ୍ଦଟି ରହିବା ଅର୍ଥ ବୋଧକ 'ଅସ୍' ଧାତୁରୁ ନିଷ୍ପନ୍ନ । ଏହାର ଅର୍ଥ ରହିବାର ଭାବ ବା ସ୍ଥିତିର ସତ୍ୟତା । ଏହି ସତ୍ୟର ଗତିଶୀଳ ସ୍ୱଭାବ ହେଉଛି 'ଋତ୍' । ଏ ଅର୍ଥରେ ବେଦରେ କୁହାଯାଇଛି ସତ୍ୟର ସୃଷ୍ଟି ହୋଇଛି 'ଋତ୍'ରୁ । ଏହା ଏକ ଚେତନା ଯାହା ଭୌତିକ ଜଗତରେ 'ଅନ୍ତଃସ୍ୟୁତ', ଯାହା ବିନା ଭୌତିକ ଜଗତର ସ୍ଥିତି ଅସମ୍ଭବ । ବୈଦିକ 'ଋତ୍'କୁ ଆର୍ଯ୍ୟ ଋଷିମାନେ 'ଚୈତ' ସ୍ତରରେ ସାକ୍ଷାତ୍ କରିଥିଲେ । ବେଦରେ ୧୫୦ଟି ସ୍ଥାନରେ 'ଋତ୍' ବ୍ୟବହୃତ ହୋଇଛି । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ କୁହାଯାଇଛି 'ଦ୍ୟୁଲୋକର କନ୍ୟା ସମାନ ଜ୍ୟୋତିର୍ମୟ ବସନ ପିନ୍ଧିଥିବା ଏବଂ ସମସ୍ତଙ୍କ ପ୍ରତି ସଦ୍‌ଭାବନା ରଖିଥିବା ଉଷା ଦେବୀ ଆମ ଆଗରେ ଦେଖାଯାଉଛନ୍ତି । ଏ ସତ୍ୟର ମାର୍ଗରେ ସବୁବେଳେ ବୁଝି ଗ୍ଭଲନ୍ତି ଏବଂ କେବେ ହେଲେ ନିଜ ନିୟମକୁ ଅତିକ୍ରମ କରନ୍ତି ନାହିଁ' । (୨୧) ଏଠାରେ ଭୌତିକ ଉଷାକୁ 'ଦିବ୍ୟ ଆଲୋକ' ଅର୍ଥରେ ଗ୍ରହଣ କରାଯାଇଛି । ଉଷାର ଆଗମନ ଏକ ଶାଶ୍ୱତ ନିୟମକୁ ଅନୁସରଣ କରିଥାଏ । ସେହି ନିୟମାକୁ ଉଷା ଏଡାଇ ପାରେ ନାହିଁ । 'ଚୈତ' ସ୍ତରରେ ଦିବ୍ୟ ଆଲୋକର ଉଦୟ ହେଲେ ବ୍ୟକ୍ତି ଦେଖି ପାରିବେ ଯେ ସାରା ବିଶ୍ୱ 'ଋତ୍'ରେ ବନ୍ଧା । ଏହି 'ଋତ୍' ହେଉଛି ସତ୍ୟର ସତ୍ୟ । ଋଗ୍‌ବେଦରେ କୁହାଯାଇଛି ଆମକୁ ବାଟ ଖୋଜି ଖୋଜି ଯିବାକୁ ହେବ । ଯେପରି କି ଆମେ 'ସତ୍ୟ ଓ ଅମୃତ'ରେ ପହଞ୍ଚି ପାରିବା ।(୨୨) ଚେତନା ସ୍ତରରେ 'ଋତ୍'ର ଅନୁଭବ ବ୍ୟକ୍ତିକୁ ଅମୃତତ୍ୱ ପ୍ରଦାନ କରିଥାଏ । 'ଋତ୍'ର ବିପରୀତାର୍ଥବୋଧକ ଶବ୍ଦ ହେଲା 'ଅନୃତ' । ଏ ସଂସାରରେ ଉଭୟ 'ଋତ୍' ଏବଂ 'ଅନୃତ' ଅଛନ୍ତି । ଋଗ୍‌ବେଦରେ ମିଥ୍ୟାକୁ ଘୃଣା କରାଯାଇଛି ଏବଂ ଏଥି ପ୍ରତି ସାବଧାନ ହେବାକୁ ବ୍ୟକ୍ତିକୁ କୁହାଯାଇଛି ।(୨୩) ତାକୁ 'ଋତ୍' କୁ ଆବିଷ୍କାର କରିବାକୁ କୁହାଯାଇଛି ।(୨୪) 'ଋତ୍'ର ସଦନକୁ ଆବିଷ୍କାର କରି ପାରିଲେ ସେ 'ସତ୍ୟଋତଂ ବୃହତ୍'ର ସନ୍ଧାନ ପାଇପାରିବ ।(୨୫) ସେତେବେଳେ ସେ ସତ୍ୟ ଓ 'ଋତ୍'ର ବିଶାଳତା ଉପଲବ୍ଧି କରିପାରିବ । ସେତେବେଳେ ସେ ହୋଇ ଉଠିବ 'ଋତ୍‌ଚିତ୍ତ' ବା ଋତ୍ ସଂପର୍କରେ ସଚେତନ । ଏହି 'ଋତ୍‌ଚିତ୍ତ' ଅବସ୍ଥା ବିଷୟରେ ଋଗ୍‌ବେଦରେ ଉଲ୍ଲେଖ କରାଯାଇଛି ।(୨୬)

ଋଗ୍‌ବେଦରେ ଅନ୍ୟତ୍ର 'ଋତ୍' ସଂପର୍କରେ କୁହାଯାଇଛି ଏହା ହେଉଛି ସକଳ ପ୍ରକାର ସୁଖ ଶାନ୍ତିର ମୂଳ ଉତ୍ସ ।(୨୭) ଏହାର ଆଶ୍ରୟ ନେଲେ ସକଳ ପାପ କ୍ଷୟ ହୋଇଥାଏ । ଏହା ମନୁଷ୍ୟମାନଙ୍କୁ 'ଉଦ୍‌ବୋଧିତ' ଓ ପ୍ରକାଶମାନ କରିବାରେ ସମର୍ଥ । ସାରା ସୃଷ୍ଟିରେ ଏହି 'ଋତ୍' ମୂର୍ତ୍ତିମାନ । ସହିଂତାତ୍ତୋର ସାହିତ୍ୟରେ 'ଋତ୍' ପରିବର୍ତ୍ତେ 'ସତ୍ୟର' କଥା କୁହାଯାଇଛି । 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି ଯେଉଁ ବ୍ୟକ୍ତି ସତ୍ୟର ମହତ୍ତ୍ୱ ବୁଝି ପାରି ସତ୍ୟର ଆଚରଣ କରନ୍ତି ସେ ଯଶ ଲାଭ କରନ୍ତି ।(୨୮) 'ତାଣ୍ଡ୍ୟ ବ୍ରାହ୍ମଣ' ଅନୁସାରେ ଯେଉଁ ବ୍ୟକ୍ତି ସତ୍ୟର ଆଚରଣ କରନ୍ତି ସେ ସ୍ୱର୍ଗ ପ୍ରାପ୍ତ ହୁଅନ୍ତି ।(୨୯) 'କଠ ଉପନିଷଦ୍' ରେ ସତ୍ୟର ମହିମା ସଂପର୍କରେ କୁହାଯାଇଛି । 'ଏହି ସତ୍ୟକୁ ବାକ୍ୟରେ ପ୍ରକାଶ କରି ହେବ ନାହିଁ କିମ୍ବା ମନରେ ଚିନ୍ତା କରିହେବ ନାହିଁ କିମ୍ବା ଆଖିରେ ଦେଖି ହେବ ନାହିଁ' ।(୩୦)

ବୈଦିକ ଆର୍ଯ୍ୟମାନଙ୍କର ଏହି 'ଋତ୍' ସିଦ୍ଧାନ୍ତରେ ପ୍ରଭାବ ଥିଲା ସୁଦୂର ପ୍ରସାରୀ । ଏହା ଫଳରେ ସେମାନେ ଏକ ସାର୍ବଜନୀନ ମାନବ ଧର୍ମ ସୃଷ୍ଟି କଲେ । ଯାହାର ନାମ ହେଲା 'ସନାତନ ଧର୍ମ' । ଏହି ଧର୍ମ ଅତୀତରେ ଥିଲା, ବର୍ତ୍ତମାନ ଅଛି ଏବଂ ଭବିଷ୍ୟତରେ ରହିବ । 'ଋତ୍' ସିଦ୍ଧାନ୍ତକୁ ଅନୁସରଣ କରି ବୈଦିକ ଆର୍ଯ୍ୟମାନଙ୍କର ଏକ ମାନବବାଦୀ ସଂସ୍କୃତି ଗଢି ଉଠିଥିଲା । ଏହାର ଲକ୍ଷ୍ୟ ଥିଲା ସାରା ବିଶ୍ୱର ମଙ୍ଗଳ । ସେଥିପାଇଁ ବୈଦିକ ଋଷି କହୁଥିଲେ 'ସମସ୍ତେ ସୁଖୀ ହୁଅନ୍ତୁ । ସମସ୍ତେ ନୀରୋଗ ହୁଅନ୍ତୁ । ସମସ୍ତେ ଭଲ କଥା ଦେଖନ୍ତୁ ଏବଂ କେହି ହେଲେ ଜଣେ ଦୁଃଖୀ ନ ହୁଅନ୍ତୁ '।(୩୧) ବିଶ୍ୱର ସାଂସ୍କୃତିକ ଇତିହାସରେ ଏହା ଏକ ବିରଳ ଚେତନା ଓ ଅନନ୍ୟ ଅନୁଭୂତି ।

**ବୈଦିକ ସଂସ୍କୃତିରେ ସମାଜବାଦ –**

ବୈଦିକ ସଂସ୍କୃତି ଥିଲା ସମାଜବାଦୀ ଚିନ୍ତାଧାରାର ପରିପୂରକ । ସମାଜବାଦୀ ଶବ୍ଦଟି ଅର୍ବାଚୀନ ହେଲେ ମଧ୍ୟ ଏହାର ମୌଳିକ ନୀତି ବେଦରେ ଗୁମ୍ଫିତ ହୋଇଥିଲା । ରାଷ୍ଟ୍ରୀୟ ସଂପତ୍ତିର ସମବଣ୍ଟନ, ଆବଶ୍ୟକତା ଅନୁଯାୟୀ ଉପଭୋଗର ସୁଯୋଗ ପ୍ରଦାନ, ସମସ୍ତଙ୍କୁ ସମାନ ଅଭିବୃଦ୍ଧିର ସୁଯୋଗ ପ୍ରଦାନ କେତେକ ସମାଜବାଦୀ ମୌଳିକ ନୀତିର କଥା ବୈଦିକ ସାହିତ୍ୟରେ ଉଲ୍ଲିଖିତ ହୋଇଛି । ଏହି ସମାନତାର ଜ୍ଞାନ ଉଦ୍ରେକ ହୋଇଛି ଯଜ୍ଞରୁ । ଯଜ୍ଞର ଅର୍ଥ ହେଉଛି ଅନ୍ୟର ମଙ୍ଗଳ ଲାଗି ନିଜକୁ ଉତ୍ସର୍ଗ କରି କରାଯାଉଥିବା କର୍ମ । ଏହାକୁ କୁହାଗଲା ଯଜ୍ଞାର୍ଥ କର୍ମ । ଏହାର ବିପରୀତାର୍ଥ କର୍ମ ହେଉଛି ପୁରୁଷାର୍ଥ କର୍ମ । ସେଥିରେ ନିଜ ପାଇଁ ଧର୍ମ, ଅର୍ଥ, କାମ, ମୋକ୍ଷ, ଆଦି ଚତୁର୍ବର୍ଗ ଫଳ ମିଳେ । 'ଶତପଥ ବ୍ରାହ୍ମଣ'ରେ ଯଜ୍ଞକୁ ବିଷ୍ଣୁ ବୋଲି କୁହାଯାଇଛି । ଏହାର ଅର୍ଥ ହେଲା ଯାହାର ଯେତେ ଯଜ୍ଞାର୍ଥ କର୍ମ ସେ ସେତେ ଭଗବାନଙ୍କର ନିକଟତର ହୋଇଛି । ବୈଦିକ ଆଦର୍ଶ ହେଲା ଯାହାର ଧନ ଅଛି ସେ ଅନ୍ୟକୁ ତହିଁରେ ଭାଗୀଦାର କରାଇବ । ଯାହାର ବଳ ଅଛି ତାହା ଅନ୍ୟକୁ ରକ୍ଷା କରିବାକୁ ବିନିଯୁକ୍ତ ହେବ । ଯାହାର ଜ୍ଞାନ ଅଛି ସେ ଅନ୍ୟକୁ ବିତରଣ କରିବ । ଏହି ଦୃଷ୍ଟିରୁ ବୈଦିକ ଯଜ୍ଞାର୍ଥ କର୍ମ ବୈଦିକ ସମାଜରେ ସମାଜବାଦ ଅଣାଇବାରେ ସହାୟକ ହୋଇ ପାରିଥିଲା । 'ଶୁକ୍ଳ ଯଜୁର୍ବେଦ'ର ୪୦ତମ ଅଧ୍ୟାୟରେ 'ଈଶା ବାସ୍ୟୋପନିଷଦ୍'ର ପ୍ରଥମ ମନ୍ତ୍ରରେ କୁହାଯାଇଛି 'ଏହି ସଂସାରରେ ଯାହା କିଛି ଚଳନଶୀଳ, ସର୍ବତ୍ର ଈଶ୍ୱରଙ୍କ ସତ୍ତା ବିଦ୍ୟମାନ । ତେଣୁ ତୁମେ ତାହାକୁ ତ୍ୟାଗ କରି ଭୋଗ କର,

କାହାର ଧନକୁ ଲୋଭ କର ନାହିଁ’ ।(୩୨) ଏହାର ଅର୍ଥ ହେଲା ତ୍ୟାଗର ଭାବ ନେଇ ଏ ସଂସାରରେ ଭୋଗ କରିବାକୁ ହେବ । ଅନ୍ୟ ଧନ ପ୍ରତି ଲୋଭ ଛାଡିଲେ କେବଳ ହେବ ନାହିଁ ନିଜ ଧନରେ ଅନ୍ୟକୁ ଭାଗୀଦାର କରିବାକୁ ହେବ । ଋଗ୍‌ବେଦରେ କୁହାଯାଇଛି ‘ଯେ ଅନ୍ୟକୁ ନ ଦେଇ ନିଜେ ଖାଏ ସେ ହେଉଛି ମହାପାପୀ ’।(୩୩) ଅର୍ଥାତ୍ ନିଜ ଧନରେ ଅନ୍ୟମାନଙ୍କୁ ଭାଗୀଦାର କରିବା ହେଉଛି ଏହାର ମୂଳ ଲକ୍ଷ୍ୟ । ‘ଋଗ୍ ବେଦ ’ରେ ବହୁ ଚର୍ଚ୍ଚିତ ଗୋଟିଏ ମନ୍ତ୍ରରେ ଆମେ ସମାଜବାଦୀ ଚେତନାର ଅନୁରଣନ ଶୁଣିଥାଉ । ତାହା ହେଲା ‘ହେ ମନୁଷ୍ୟ ମାନେ ! ତୁମ୍ଭେମାନେ ପରସ୍ପର ସହିତ ମିଳିମିଶି ଚାଲ । ଏକ ସାଥିରେ ମିଶି ସ୍ତୋତ୍ର ପାଠ କର ଏବଂ ତୁମ ସମସ୍ତଙ୍କ ମନ ଗୋଟିଏ ହେଉ ; ଯେମିତି ଦେବତା ମାନେ ଏକାଠି ହୋଇ ନିଜ ନିଜ ଭିତରେ ଏକମନ ହୋଇ ହବିର୍ଭାଗ ଗ୍ରହଣ କରିଥିଲେ ତୁମ୍ଭେମାନେ ସମସ୍ତେ ସେମିତି ନିଜର ପ୍ରାପ୍ୟ ଗ୍ରହଣ କର’ ।(୩୪) ମନୁଷ୍ୟମାନଙ୍କୁ ବିବାଦ ନ କରି ନିଜ ପ୍ରାପ୍ୟ ଗ୍ରହଣ କରିବା ନିମିତ୍ତ ସେଥିରେ କୁହାଯାଇଛି । ରାଷ୍ଟ୍ରୀୟ ସଂପତ୍ତି ବଣ୍ଟନ ବେଳେ କାହାକୁ ପ୍ରତିବାଦ କରି ଅଧିକ ଲୋଭ ରଖିବା ଉଚିତ୍ ନୁହେଁ । ଏହା ସମାଜବାଦୀ ଚିନ୍ତାଧାରାର ଅନ୍ୟ ଏକ ନିଦର୍ଶନ । ଋଗ୍‌ବେଦରେ ଗୋଟିଏ ସ୍ଥାନରେ ପୁରୋହିତମାନେ ଯଜମାନ ପ୍ରତି ସମ୍ବୋଧନ କରି କହୁଅଛନ୍ତି ‘ତୁମମାନଙ୍କର ଅଧ୍ୟବସାୟ ଏକ ହେଉ । ହୃଦୟ ଏକ ହେଉ, ଏବଂ ମନ ଏକ ହେଉ, ତୁମ୍ଭେମାନେ ଏକାଠି ମିଳି କରି ରୁହ ’।(୩୫) ଏ ପ୍ରକାର ଚିନ୍ତାଧାରା ବୈଦିକ ଆର୍ଯ୍ୟମାନଙ୍କ ମଧ୍ୟରେ ପାରସ୍ପରିକ ଭାତୃଭାବ ସୃଷ୍ଟି କରାଇବା ସଂଗେ ସଂଗେ ସାମୂହିକ ଅଭିବୃଦ୍ଧିପାଇଁ ପାରସ୍ପରିକ ସହଯୋଗର ବାତାବରଣ ଲାଗି ଅନୁକୂଳ ପବନ ବୁହାଉଥିଲା । ଏହା ଦ୍ୱାରା ଗୋଟିଏ ସହଯୋଗୀ ସମାଜ ଗଢି ଉଠିଥିଲା । ଏହି ଚିନ୍ତାଧାରାରେ ବାହାର ଲୋକଙ୍କ ପ୍ରତି ସମଦୃଷ୍ଟି ରଖୁଥିଲା । ଏହା ସାରା ମାନବ ଜାତିକୁ ସ୍ପର୍ଶ କରୁଥିଲା । ସେଥିପାଇଁ ଅଥର୍ବ ବେଦରେ କୁହାଯାଇଛି– ‘ହେ ପ୍ରଭୁ ମୋଠାରେ ଏଭଳି ଦୟା କର ଯେପରି କି ମୁଁ ମନୁଷ୍ୟ ପ୍ରତି, ତାଙ୍କୁ ଦେଖି-ଥାଏ ବା ନଦେଖି ଥାଏ, ସଦ୍ ଭାବନା ରଖିବାରେ ସମର୍ଥ ହୋଇ ପାରିବି ।(୩୬) ଏହା ହେଉଛି ଏକ ସାର୍ବଜନୀନ ମାନବବାଦୀ ଚିନ୍ତାଧାରା ।

ପାରସ୍ପରିକ ଏକତା ଓ ନିର୍ଭରଶୀଳତା ବେଦର ଅନେକ ସ୍ଥାନରେ ଦେଖିବାକୁ ମିଳେ । ‘ଯଜୁର୍ବେଦ ’ରେ ଗୋଟିଏ ସ୍ଥାନରେ କୁହାଯାଇଛି ‘ତୁମେ ମୋତେ ଦିଅ, ମୁଁ ତୁମକୁ ଦେଉଛି, ତୁମେ ମୋ ଲାଗି ଉତ୍ତମ ଗୁଣ ଧାରଣ କର । ମୁଁ ତୁମ ଲାଗି ଉତ୍ତମ ଗୁଣ ଧାରଣ କରୁଛି । ମୁଁ ଏହା ନେଉଛି, ତୁମେ ଏହା ନିଅ’(୩୭) ପରସ୍ପର ଦିଆ ନିଆରେ ସମାଜ ଚାଲିବ । ଏହା ଥିଲା ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ । ଏହା ଫଳରେ ସମସ୍ତଙ୍କ ମନରେ ଭାତୃ ଭାବ ଜାଗ୍ରତ ହେଉଥିଲା । ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ହେଉଅଛି ଯେ ବୈଦିକ ରାଷ୍ଟ୍ରରେ ସମାଜବାଦୀ ବ୍ୟବସ୍ଥା ଦୃଢଥିଲା । ବୈଦିକ ଆର୍ଯ୍ୟମାନଙ୍କର ଏହି ଉଦାର ଦୃଷ୍ଟିଭଂଗୀ ଯୁଗ ଯୁଗ ଧରି ଭାରତୀୟ ସଂସ୍କୃତିକୁ ପ୍ରଭାବିତ କରି ଆସିଅଛି ।

**ବୈଦିକ ଋଷି –**

ବୈଦିକ ଋଷିମାନେ ଥିଲେ ମନ୍ତ୍ର ଦ୍ରଷ୍ଟା । (ଋଷୟ ମନ୍ତ୍ର ଦ୍ରଷ୍ଟାରଃ) ଋଗ୍ ବେଦରେ ସେମାନଙ୍କୁ ସତ୍ୟଶ୍ରୁତଃ ବା ସତ୍ୟ ଶ୍ରବଣକାରୀ ସମୂହ ବୋଲି କୁହାଯାଇଛି । ସମଗ୍ର ଆର୍ଯ୍ୟ ସଂସ୍କୃତିକୁ ତେଣୁ ‘ଋଷି ସଂସ୍କୃତି’ ବୋଲି କୁହାଯାଇଛି । ଭୌତିକ ତଥା ଆଧ୍ୟାତ୍ମିକ ଅଭ୍ୟୁଦୟ ଆଣିବାରେ ଋଷିମାନେ ଥିଲେ

ଦିଗ୍‌ଦର୍ଶକ । ବେଦର ଅନ୍ତର୍ନିହିତ ବାଣୀକୁ ଋଷିମାନେ କହୁଥିଲେ 'ନିନ୍ୟାବଚ୍‌ଂସି' ବା 'ଗୋପନ ବାଣୀ ସମୂହ' । ଅଧିକାରୀ ଭେଦରେ ଋଷିମାନେ ବିଭିନ୍ନ ଲୋକଙ୍କ ପାଇଁ ଭିନ୍ନ ଭିନ୍ନ ଅର୍ଥ ପ୍ରକଟିତ କରୁଥିବା ମନ୍ତ୍ରମାନଙ୍କର ଅବତାରଣା କରିଛନ୍ତି । ଏଥିରେ ଉଭୟ 'ଐହଲୌକିକ ଓ ପାରଲୌକିକ' ଅଭିବୃଦ୍ଧି ଲାଗି ସନ୍ଦେଶ ରହିଅଛି । ସେମାନଙ୍କ ମତରେ ଆଧ୍ୟାତ୍ମିକ ଜୀବନର ଚରମ ସୀମାକୁ ଉନ୍ନୀତ ହେବାକୁ ହେଲେ ଏହି ଧୂଳି ମାଟିର ସଂସାର ସହିତ ସଂପର୍କ ରଖିବାକୁ ହେବ । ଜୀବନ ଧର୍ମୀ ସଂସ୍କୃତି ଉପରେ ସେମାନେ ଗୁରୁତ୍ୱ ଆରୋପ କରୁଥିଲେ । ସେମାନେ କୁହନ୍ତି ଜୀବନକୁ ସୁନ୍ଦର ଭାବରେ ଉପଭୋଗ କରିବାକୁ ହେବ । ତାଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା ଆନନ୍ଦ ପାଇବା । ଏହା କେବଳ ଆଧ୍ୟାତ୍ମିକତାର ଚରମ ସୋପାନରେ ଆରୋହଣ କରିବା ଦ୍ୱାରା ସମ୍ଭବ ହୋଇଥାଏ ।

ଶ୍ରୀ ଅରବିନ୍ଦଙ୍କ ଭାଷାରେ 'ଏହି ଆଧ୍ୟାତ୍ମିକସ୍ତରକୁ ସମସ୍ତଙ୍କୁ ପରିଶେଷରେ ଉନ୍ନୀତ ହୋଇ ଉଠିବାକୁ ହେବ । 'ଜୀବନ ଓ ଧର୍ମର ପ୍ରାଥମିକ ବ୍ୟବହାରିକ ଭିତ୍ତି ଉପରେ ପ୍ରତିଷ୍ଠିତ ସାଧନା ଦ୍ୱାରା ସେହି ଆଦର୍ଶ ନିକଟରେ ପହଞ୍ଚିବା ସମ୍ଭବପର ହୋଇଥିଲା । ଆଧ୍ୟାତ୍ମିକ ଭାବଧାରାହିଁ ଏହି ମହାନ ସଂସ୍କୃତିର ଅନ୍ତର୍ଗତ ସକଳ ଅଧିବାସୀଙ୍କ ଜୀବନର ଅନ୍ୟ ସକଳ ପ୍ରକାର ଉଦ୍ଦେଶ୍ୟ ଓ ପ୍ରେରଣାକୁ ପରିଚାଳିତ ଓ ଆଲୋକିତ କରୁଥିଲା ଏବଂ ସେଗୁଡିକୁ ନିଜ ଆୟତ୍ତାଧିନ କରୁଥିଲା '।(୩୮) ବୈଦିକ ଋଷିମାନେ ଆଧ୍ୟାତ୍ମିକ ଜୀବନ ଯେ ଶ୍ରେଷ୍ଠ ଜୀବନ ଓ ଆଧ୍ୟାତ୍ମିକ ଜ୍ଞାନ ଯେ ଶ୍ରେଷ୍ଠ ଜ୍ଞାନ ଏଥିରେ ବିଶ୍ୱାସ ରଖିଥିଲେ । ସେମାନଙ୍କର ସକଳ କର୍ମ ମାନବ ଜୀବନର ପରମ ଲକ୍ଷ୍ୟ ମୋକ୍ଷ ପ୍ରତି ଧାବମାନ ଥିଲା ।

ବୈଦିକ ଋଷିମାନେ ଉପନିଷଦ ଓ ପୁରାଣ ଯୁଗର ଋଷିମାନଙ୍କ ଠାରୁ ପୃଥକ ଥିଲେ । ଉପନିଷଦର ଋଷିମାନେ ସଂସାରର ମାୟା ଛାଡି ବଣ ଜଙ୍ଗଲରେ ରହୁଥିଲେ । ଶାନ୍ତ ଆରଣ୍ୟକ ପରିବେଶରେ ରହି ଜ୍ଞାନ ଚର୍ଚ୍ଚା କରୁଥିଲେ । ସେମାନେ ବ୍ରହ୍ମବାଦୀ ଥିଲେ । ବ୍ରହ୍ମ ବିଷୟକ ଚିନ୍ତନ ଥିଲା ସେମାନଙ୍କର କର୍ମ । ଅନ୍ୟ ପକ୍ଷରେ ବୈଦିକ ଋଷିମାନେ ଐହିକ ଓ ପାରତ୍ରିକ ଉଭୟ ସୁଖ ଲାଗି ଆଗ୍ରହୀ ଥିଲେ ଏବଂ ସେମାନେ ସ୍ତ୍ରୀ ପୁତ୍ର ଆଦିଙ୍କ ସହିତ ଏକ ସୁଖୀ ପାରିବାରିକ ଜୀବନ ଯାପନ ଲାଗି ଦେବତା ମାନଙ୍କୁ ପ୍ରାର୍ଥନା କରୁଥିଲେ । ପୁରାଣ ଯୁଗରେ ମଧ୍ୟ ଋଷି ପରମ୍ପରା ଥିଲା । କିନ୍ତୁ କେହି ସନ୍ନ୍ୟାସ ଜୀବନ ନେଉ ନଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ପିଲାପିଲିଙ୍କୁ ନେଇ ରହୁଥିଲେ । 'ବୈଶମ୍ପାୟନ' ହେଉଛନ୍ତି ଏହି ଧରଣର । ଯେକି ରାଜା ପରୀକ୍ଷିତ ଓ ଜନ୍ମେଜୟଙ୍କର ସମସାମୟିକ । ବୈଦିକ ଯୁଗର ଋଷି ପରମ୍ପରା ପୁରାଣ ଯୁଗରେ ଶେଷ ହୋଇ ଯାଇଥିଲା ।

**ବୈଦିକ ସଂସ୍କୃତିରେ ଆଶାବାଦ –**

ବୈଦିକ ଋଷିମାନଙ୍କ ନିକଟରେ ସାରା ସଂସାର ଥିଲା ସୁନ୍ଦର । ସର୍ବତ୍ର ସତ୍ୟ, ଶିବ ଓ ସୁନ୍ଦରଙ୍କର ସତ୍ତା ଯେ ବିଦ୍ୟମାନ ଏ ଦୃଢ଼ ଧାରଣା ସେମାନଙ୍କର ଥିଲା । ସଂସାରର ଦୁଃଖର ଧାରଣା ବୈଦିକ ଚିନ୍ତାର ପରିପନ୍ଥୀ । ଆର୍ଯ୍ୟମାନେ କଠିନ ପରିଶ୍ରମ ଉପରେ ବିଶ୍ୱାସ ରଖିଥିଲେ । ସେମାନେ ଋଗ୍‌ବେଦୀୟ ଋଷିଙ୍କ ଭାଷାରେ ଭାବୁଥିଲେ ।(ନେରତେ ଶ୍ରାନ୍ତସ୍ୟ ସଖାୟଦେବାଃ) ଅର୍ଥାତ୍ ଯେଉଁ ବ୍ୟକ୍ତି କଠିନ ପରିଶ୍ରମ କରନ୍ତି ତାଙ୍କୁ ହିଁ ଭଗବାନ ଭଲ ପାଆନ୍ତି ଓ ରକ୍ଷା କରନ୍ତି । ଶ୍ରମଶୀଳ ବ୍ୟକ୍ତି ସର୍ବଦା ଶ୍ରମସର ବିଷୟରେ ଆଶାବାଦୀ ହେବା ଉଚିତ୍ । ଏହି କର୍ମର ଦକ୍ଷତା ଉପରେ ବୈଦିକ ଯୁଗରୁହିଁ ଗୁରୁତ୍ୱ

ଦିଆଯାଇ ଆସୁଥିଲା । ଗୀତାରେ କୁହାଯାଇଛି କର୍ମର କୌଶଳ ବା 'କୃଷ୍ଟି' ହେଉଛି ଯୋଗ । ଏହା ଦ୍ୱାରା ମନୁଷ୍ୟ ତାର ଚରମ ଲକ୍ଷ୍ୟ ମୁକ୍ତି ପଦକୁ ଧୀରେ ଧୀରେ ଆଗେଇ ନେଇଥାଏ । ଏହି କର୍ମର ଗୁରୁତ୍ୱ ଗୀତା ଯୁଗ ପର୍ଯ୍ୟନ୍ତ ରହିଥିଲା । ବୈଦିକ ଋଷି କହୁଥିଲେ 'ଆମେ ଶହେବର୍ଷ (ସେତେବେଳେ ବର୍ଷ ଆରମ୍ଭ ଶରତ ଋତୁରୁ ହେଉଥିଲା ) ଦେଖିବା । ଆମର ଦୃଷ୍ଟି ଶକ୍ତି ଶହେ ବର୍ଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥିବ । ଆମେ ଶହେ ବର୍ଷ ବଞ୍ଚିବା । ଆମେ ଶହେ ବର୍ଷ ଧରି କଥା କହିବା ଏବଂ ଶହେ ବର୍ଷ ଆମ ବାକ୍ ଶକ୍ତି ଅକ୍ଷୁର୍ଣ୍ଣ ରହିବ । ଶହେ ବର୍ଷ କାଳ ଆମେ ଦରିଦ୍ର ହେବା ନାହିଁ । ପୁଣି ଆଉ ଶହେ ବର୍ଷ ଆମେ ଏମିତି ଥିବା '।(୩୯) 'ଶୁକ୍ଳ ଯଜୁର୍ବେଦ'ରେ ଠିକ୍ ସେହିପରି କୁହାଯାଇଛି 'ଆମେ ଶହେ ବର୍ଷ କାଳ ଆନନ୍ଦରେ ରହିବା । ଆମେ ଶହେ ବର୍ଷ ଧରି ସୁଖ କରିବା । ଆମେ ଶହେ ବର୍ଷ କାଳ ରହିବା । ଆମେ ଶହେ ବର୍ଷ କାଳ ଅପରାଜିତ ହୋଇ ରହିବା '।(୪୦) ଏହି ଭଳି ଅନେକ ପଂକ୍ତି ବେଦର ଛତ୍ରେ ଛତ୍ରେ ଗ୍ରଥିତ ହୋଇଅଛି । ଜୀବନକୁ ଦୁଃଖ ଭରା ବୋଲି ଯଦି ସେମାନେ ଭାବି ଥାନ୍ତେ ତାହାହେଲେ ଦୁଇ ଶହ ବର୍ଷ ବଞ୍ଚିବାକୁ ସେମାନେ ଚାହିଁ ନଥାନ୍ତେ । ଏହା ସେମାନଙ୍କର ଆଶାବାଦୀ ଦୃଷ୍ଟିଭଂଗୀର ପରିଚାୟକ ।(୪୧) କିଏ କେତେ ବର୍ଷ ବଞ୍ଚିଲା ସେଥିରୁ ସୁଖ ଦୁଃଖ ନିର୍ଣ୍ଣୟ କରିହେବ ନାହିଁ । କିଏ କିପରି ବଞ୍ଚିଲା ତାହା ହେଉଛି ବଡ କଥା ।

ବୈଦିକ ଆର୍ଯ୍ୟମାନେ ସକଳ କ୍ଷେତ୍ରରେ ଥିଲେ ବିଜୟଗାମୀ । ଏ ବିଜୟ ସେମାନେ ଉଭୟେ ମାନସିକ ଓ ଦୈହିକ କ୍ଷେତ୍ରରେ କାମନା କରୁଥିଲେ । ସେଥିପାଇଁ ସେମାନେ ସ୍ୱୀୟ ଶରୀର ଶିଳା ଭଳି କଠିନ ହେଉ ବୋଲି କାମନା କରୁଥିଲେ । ଯଜୁର୍ବେଦରେ କୁହାଯାଇଛି ଆମ୍ଭମାନଙ୍କର ଶରୀର 'ଶିଳା' ଭଳି କଠିନ ହେଉ ।(୪୨) ଏହି ବିଜୟ ପାଇଁ ସେ ସର୍ବଦା ଉଦ୍ୟମଶୀଳ ଥିଲେ ।

**ଉପନିଷଦ୍ ଗୁଡିକର ତର୍କନିଷ୍ଠ ସଂସ୍କୃତି –**

'ଉପନିଷଦ୍' ହେଉଛି ତର୍କ ପ୍ରଧାନ ଗ୍ରନ୍ଥ । ଏହା ସଂପୂର୍ଣ୍ଣ ବେଦ ଉପରେ ଆଧାରିତ । ବିଷୟ ଦୃଷ୍ଟିରୁ ବେଦକୁ ତିନି ଭାଗରେ ବିଭକ୍ତ କରାଯାଇଛି । ସେ ବିଭାଗ ଗୁଡିକ ହେଲା– 'କର୍ମ, ଉପାସନା ଓ ଜ୍ଞାନ' । କର୍ମ ବିଷୟଟିର ପ୍ରତିପାଦନ କରାଯାଇଛି 'ସଂହିତା ଏବଂ ବ୍ରାହ୍ମଣ' ଗ୍ରନ୍ଥ ଗୁଡିକରେ । ଉପାସନାର ପ୍ରତିପାଦନ କରାଯାଇଛି ସଂହିତା ଏବଂ ଆରଣ୍ୟକ ଗ୍ରନ୍ଥ ଗୁଡିକରେ । ଜ୍ଞାନର ପ୍ରତିପାଦନ କରାଯାଇଛି 'ଉପନିଷଦ୍' ଗୁଡିକରେ । ବେଦର ଏହି ଦର୍ଶନକୁ ବେଦର ସାର ବା ବେଦାନ୍ତ ବୋଲି କୁହାଗଲା । 'ବେଦାନ୍ତ ଦର୍ଶନ' ରେ ଚୂଡ଼ାନ୍ତ ଜ୍ଞାନ ଅବଧାରିତ । ଏହି ତର୍କର ଆଧାର ହେଲା 'କ୍ଷର ଅକ୍ଷର, ନିତ୍ୟ ଅନିତ୍ୟ, ଶ୍ରେୟ ପ୍ରେୟ, ସତ୍ୟ ଅସତ୍ୟ, ଧର୍ମ ଅଧର୍ମ, ଚେତନ ଅଚେତନ, ଜୀବାତ୍ମା ପରମାତ୍ମା ଏବଂ ବ୍ରହ୍ମ ମାୟା' ଇତ୍ୟାଦି ।

ଉପନିଷଦରେ ଆତ୍ମାକୁ ଅଜନ୍ମା, ନିତ୍ୟ, ଶାଶ୍ୱତ ଓ ପୁରାତନ ବୋଲି କୁହାଯାଇଛି । ଯମ ରାଜ 'କଠୋପନିଷଦ'ର ନଚିକେତାଙ୍କୁ ଆତ୍ମା ସଂପର୍କରେ ଉପଦେଶ ଦେଇ କହିଅଛନ୍ତି – 'ମେଧାବୀ ଆତ୍ମା ଜନ୍ମ ହୁଏ ନାହିଁ କିମ୍ବା ମରେ ନାହିଁ । ଏ କୌଣସି କାରଣରୁ ଜନ୍ମ ହୁଏ ନାହିଁ କିମ୍ବା କେଉଁଠି ହେଲେ ଜନ୍ମ ହୁଏ ନାହିଁ । ଏ ଅଜନ୍ମା, ନିତ୍ୟ ଓ ପୁରାତନ । ଶରୀରର ବିନାଶ ହେଲେ ବି ଏହାର ବିନାଶ ନାହିଁ' ।(୪୩) ତର୍କନିଷ୍ଠ ବିଚାର ଓ ନିର୍ଣ୍ଣୟ ଉପରେ ଉପନିଷଦୀୟ ଋଷିମାନେ ଗୁରୁତ୍ୱ ଆରୋପ

କରୁଥିଲେ । ଏହା 'ବୃହଦାରଣ୍ୟକ' ଉପନିଷଦରେ ଯାଜ୍ଞବଳକ୍ୟ ତାଙ୍କ ସ୍ତ୍ରୀ ମୈତ୍ରେୟୀଙ୍କୁ କହିଛନ୍ତି 'ଏହି ଆତ୍ମା ବିଷୟରେ ତୁମେ ଶୁଣ, ଜାଣ, ମନନ କର ଓ ନିଦିଧ୍ୟାସନ କର ।(୪୪) ଗୁରୁ ପ୍ରଥମେ ଶିଷ୍ୟଙ୍କୁ ଉପଦେଶ ଦେଇଥାନ୍ତି । ତାର ପ୍ରଥମ କର୍ତ୍ତବ୍ୟ ହେଲା ଶ୍ରଦ୍ଧାନ୍ୱିତ ହୋଇ ଏହି ଉପଦେଶ ଶୁଣିବା । ଖାଲି ଶୁଣି ଦେଲେ ଚଳିବ ନାହିଁ । ଏ ବିଷୟଟିକୁ ତାକୁ ଭଲ ଭାବରେ ଜାଣିବାକୁ ହେବ । ଜାଣି ଦେଲେ ହେବ ନାହିଁ । ଏ ବିଷୟରେ ତାକୁ ଉପଯୁକ୍ତ ଭାବରେ 'ମନନ' କରିବାକୁ ହେବ । 'ନିଦିଧ୍ୟାସନ' ହେଲା ବୈଜ୍ଞାନିକ ଦୃଷ୍ଟିରେ ସୂକ୍ଷ୍ମ ପରୀକ୍ଷା କରିବା । ଏ ପରୀକ୍ଷାରେ ସ୍ଥିର ନିଷ୍ଚୟ ହେଲେ, ଶିଷ୍ୟ ଆତ୍ମା ସଂପର୍କରେ ଅବହିତ ହୋଇଥାନ୍ତି । (ପାଣିରେ ଲୁଣ ପକାଇ ଆତ୍ମା ସଂପର୍କରେ ସଚେତନ କରିବା ଗଳ୍ପଟି ଏଠାରେ ଉଲ୍ଲେଖ ଯୋଗ୍ୟ) ଯୁକ୍ତିବାଦୀ ଦିଗଟି ଉପରେ ଉପନିଷଦ୍ ଗୁରୁତ୍ୱ ଦେଇଥିଲା । ଯାହା ଯୁକ୍ତି ସିଦ୍ଧ ନୁହେଁ ତାହାକୁ ପରିତ୍ୟାଗ କରିବାକୁ ପଡୁଥିଲା ।

ବୈଦିକ ଆର୍ଯ୍ୟମାନଙ୍କ ଠାରେ ଦୁଇଟି ପ୍ରତିଭା ନିହିତ ଥିଲା । ଗୋଟିଏ ହେଲା 'ତୀକ୍ଷ୍ଣ ଧୀଶକ୍ତି' ଅପରଟି ହେଲା 'ସହଜାତ ଜ୍ଞାନ'। ଧୀଶକ୍ତି ବଳରେ ସେମାନେ ପ୍ରକୃତିର ନିଗୂଢ଼ ରହସ୍ୟ ଉଦ୍‌ଘାଟନ କରୁଥିଲେ ଏବଂ ସହଜାତ ଜ୍ଞାନ ବଳରେ ଗୋଟିଏ ଆଲୋକମୟ ପଥରେ ସେମାନେ ଅଗ୍ରସର ହେବାକୁ ସମର୍ଥ ହୋଇ ପାରୁଥିଲେ । ଦର୍ଶନ ହେଉଛି ଅନ୍ତଃଦୃଷ୍ଟି ଯାହା ଫଳରେ କି ପ୍ରକୃତ ସତ୍ୟକୁ ଅବଧାରଣା କରିହୁଏ । ବୈଦିକ ଋଷିମାନେ ସ୍ୱୀୟ ସହଜାତ ଜ୍ଞାନ ବଳରେ ବେଦମନ୍ତ୍ରର ଅନ୍ତର୍ନିହିତ ଅର୍ଥକୁ ଜାଣି ପାରିଥିଲେ । ଏହି ମନ୍ତ୍ର ଗୁଡିକର 'ନିନ୍ୟା ବିଗ୍ଂସି' ବା ଗୋପନ ବାଣୀ ସମୂହର ତାତ୍ପର୍ଯ୍ୟ ସେମାନଙ୍କ ଠାରେ ସହଜରେ ଧରା ଦେଇଥିଲା । ସେମାନଙ୍କର ଜ୍ଞାନ ଥିଲା ତେଣୁ ସଂପୂର୍ଣ୍ଣ ଅନୁଭୂତି ଲବ୍ଧ ।

**ବୈଦିକ ଧର୍ମ ନିଷ୍ଠ ସଂସ୍କୃତି –**

ବୈଦିକ ଆର୍ଯ୍ୟମାନଙ୍କର ଧର୍ମ ଉପରେ ଗଭୀର ନିଷ୍ଠା ଓ ବିଶ୍ୱାସ ଥିଲା । ଉଭୟ ପାରତ୍ରିକ ଓ ଐହିକ ସୁଖ ଲାଗି ଧର୍ମ ସହାୟକ ଥିଲା । ଶବକୁ ଚିତାଗ୍ନିରେ ରଖି ମଧ୍ୟ ସେମାନେ କହୁଥିଲେ 'ଗଛ ଧର୍ମେଣା' ଅର୍ଥାତ ତୁମେ ଧର୍ମ ସାହାଯ୍ୟରେ ଯାଅ । ଏହାର ତାତ୍ପର୍ଯ୍ୟ ହେଲା ଧର୍ମର ବଳ ଆତ୍ମାକୁ ସ୍ୱର୍ଗକୁ ନେଇ ଯିବ । ଧର୍ମ ମଣିଷକୁ ପଦେ ପଦେ ସାହାଯ୍ୟ କରିବ । ଏପରିକି ମୃତ୍ୟୁ ପରେ ମଧ୍ୟ ତାର ଆତ୍ମାକୁ ଧର୍ମ ମାର୍ଗରେ ଗ୍ଲିବାକୁ ହେବ । 'ତୈତ୍ତିରୀୟ ଆରଣ୍ୟକ'ରେ କୁହାଯାଇଛି 'ତୁମେ ସତ କୁହ ଏବଂ ଧର୍ମାଚରଣ କର' ।(ସତ୍ୟବଦ ଧର୍ମଂଚର) ବୈଦିକ ସାହିତ୍ୟର ଏହି ଧର୍ମ ନିଷ୍ଠତାକୁ ପୁରାଣ ଗୁଡିକ ଗ୍ରହଣ କରି ନେଲେ । ସମସ୍ତ ପୁରାଣ ଏବଂ ଉପପୁରାଣମାନଙ୍କରେ ଆମେ ଧର୍ମ ଉପରେ ଗୁରୁତ୍ୱ ଦିଆ ଯିବାର ନିଦର୍ଶନ ପାଇଥାଉ ।

ବୈଦିକ ସଂସ୍କୃତିର ତିନି ଗୋଟି ମହାନ୍ ପରମ୍ପରାର ପ୍ରଭାବ ସର୍ବଦା ଭାରତୀୟ ସଂସ୍କୃତି ଉପରେ ପ୍ରଭାବ ବିସ୍ତାର କରିଆସିଛି ଏବେ କରୁଛି ମଧ୍ୟ । 'ତାହା ହେଲା ମନୁଷ୍ୟଙ୍କୁ ଅନ୍ତର୍ନିହିତ ଜୀବନର ଚର୍ଯ୍ୟା କରିବାକୁ ହେବ ଏବଂ ତାହା ଫଳରେ ସେ ଆଧ୍ୟାତ୍ମିକ ସମ୍ପତ୍ତିର ମାଲିକ ହୋଇ ପାରିବ । ଯାହାକି ତା ଜୀବନର ହେଉଛି ଚରମ ଲକ୍ଷ୍ୟ ଓ ଚରମ ଉଦ୍ଦେଶ୍ୟ । ଦ୍ୱିତୀୟରେ ତାକୁ ନାସ୍ତିବାଦୀ ଦୃଷ୍ଟି କୋଣ ପରିହାର କରିବାକୁ ହେବ ଏବଂ ସଂସାର ଯେ ପବିତ୍ର ଏବଂ ଏହି ଦେହ ଯେ ଅଧ୍ୟାତ୍ମାଙ୍କର

ଦେବାଳୟ ତାହା ଉପଲବ୍ଧ କରି ଜୀବନରେ ପୂର୍ଣ୍ଣତା ଆଣିବା ପାଇଁ ଉଦ୍ୟମ କରିବାକୁ ହେବ । ତୃତୀୟରେ ତାକୁ ସାରା ଜୀବଜଗତ ପ୍ରତି ସମ୍ବେଦନଶୀଳ, ସହାନୁଭୂତିଶୀଳ ଓ ସାନୁକମ୍ପ ହେବାକୁ ହେବ' ।(ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତିର ବୈଦିକ ପର୍ବ - ତୃତୀୟ ଭାଗ, ପୃଷ୍ଠା ୨୦୮ ଓ ୨୦୯ ରୁ ଉଦ୍ଧୃତ ) ।

**(ଖ) ବୈଦିକ କର୍ମ କାଣ୍ଡ –**

ବୈଦିକ ଆର୍ଯ୍ୟମାନଙ୍କର ଧର୍ମର ଦୁଇଟି ଦିଗ ଥିଲା । ଗୋଟିଏ ହେଉଛି ତାତ୍ତ୍ୱିକ, ଅନ୍ୟଟି ହେଉଛି ବ୍ୟବହାରିକ । ବ୍ୟାବହାରିକ ଦିଗ ସଂପର୍କରେ ନିର୍ଦ୍ଦିଷ୍ଟ ବିଭିନ୍ନ ଉପଦେଶ ମାନଙ୍କୁ କିପରି କାର୍ଯ୍ୟରେ ପରିଣତ କରିବାକୁ ହେବ ସେଥିପାଇଁ ବିଭିନ୍ନ ବିଧି ବିଧାନ ଖଞ୍ଜା ଯାଇଥିଲା । ଏହା ଅତି ପ୍ରାଞ୍ଜଳ ଭାବରେ ଦର୍ଶାଯାଇଛି । ତାହା କର୍ମକାଣ୍ଡ ନାମରେ ଖ୍ୟାତ । ଯଦ୍ୱାରା ଏହି କର୍ମକାଣ୍ଡର ଉଦ୍ଦେଶ୍ୟ ମହତ୍ତ୍ୱ ଓ ତାତ୍ପର୍ଯ୍ୟ ସଂପର୍କରେ ଜ୍ଞାନ ଲାଭ କରି ହେଉଥିଲା ତାହାକୁ କୁହା ଯାଉଥିଲା ଜ୍ଞାନକାଣ୍ଡ । ସେହି ଉପଦେଶମାନଙ୍କ ମଧ୍ୟରୁ ଗୋଟିଏ ହେଲା ଦେବତାମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞ କର । ବେଦଗୁଡିକ ଅଧ୍ୟୟନ କର ଏବଂ ସନ୍ତାନ ଉତ୍ପାଦନ କର । (ଯଜ ଦେବାନ୍ ଅଧୀଷ୍ୱ ବେଦାନ୍ ପ୍ରଜାମୁତ୍ପାଦୟ ) ଏହି ବାଣୀ ହେଲା ଜ୍ଞାନ କାଣ୍ଡର ଅନ୍ତର୍ଗତ । ଏହାକୁ କିପରି ଭାବରେ କାର୍ଯ୍ୟକାରୀ କରାଯିବ ସେଥିପାଇଁ ବିଧିମାନ ଖଞ୍ଜା ଯାଇଛି । ଅଗ୍ନିଙ୍କୁ ସର୍ବ ଦେବତାଙ୍କ ମୁଖ ବୋଲି ଧରା ଯାଇ ବିଭିନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ମନ୍ତ୍ର ପାଠ ପୂର୍ବକ ଅଗ୍ନିରେ ଆହୂତି ଦେବାର ବ୍ୟବସ୍ଥା ରହିଛି । ସେହିପରି ବେଦାଧ୍ୟୟନ କରିବାକୁ ଗଲେ ଗୁରୁ ଗୃହକୁ ଯିବାକୁ ହେବ । ସେଥିପାଇଁ 'ଉପନୟନ ଓ ବ୍ରହ୍ମଚର୍ଯ୍ୟ'ର ନିର୍ଦ୍ଦିଷ୍ଟ ବିଧି ବିଧାନମାନ ଖଞ୍ଜା ଯାଇଛି । ପରିଶେଷରେ ବିବାହ ଅନୁଷ୍ଠାନ ମାଧ୍ୟମରେ ସନ୍ତାନ ଉତ୍ପାଦନ କରିବାକୁ ହେବ । ସେଥିପାଇଁ ବିବାହ, ଗର୍ଭାଧାନ ଆଦି ସଂପର୍କରେ ନିର୍ଦ୍ଦିଷ୍ଟ କେତେକ ସାଂସାରିକ କର୍ମ କରିବାର ବ୍ୟବସ୍ଥା ରଖା ଯାଇଛି । ଏହି ଗୁଡିକ ହେଲା କର୍ମ କାଣ୍ଡ । (ସୁରେନ୍ଦ୍ର ଶତପଥୀଙ୍କ ଭାରତୀୟ ସଂସ୍କୃତିର ବୈଦିକ ପର୍ବ- ତୃତୀୟ ଭାଗ, ପୃ ୭୭ରୁ ଉଦ୍ଧୃତ) ।

ଜ୍ଞାନ କାଣ୍ଡ ଓ କର୍ମ କାଣ୍ଡ ଉଭୟେ ହେଉଛନ୍ତି ପରସ୍ପରର ପରିପୂରକ । କର୍ମ କାଣ୍ଡ ଲାଗି ଏଭଳି ବିଧିବିଧାନ ଖଞ୍ଜା ଯାଇଛି ତା ନହେଲେ ମଣିଷକୁ ପାପୀ ବୋଲି କୁହାଯାଉଥିଲା । 'ଐତରେୟ ବ୍ରାହ୍ମଣ'ରେ କୁହାଯାଇଛି, 'ଯେଉଁ ବ୍ୟକ୍ତି ଦେବତାମାନଙ୍କୁ, ପିତୃମାନଙ୍କୁ ଓ ମନୁଷ୍ୟମାନଙ୍କୁ ପୂଜା କରନ୍ତି ନାହିଁ ସେ ହେଉଛନ୍ତି 'ଅନଷ୍ଠା ବା ଅସତ୍ୟ ପୁରୁଷ' । ଏମାନେ ମହାପାପୀ, ତାଙ୍କ ଜୀବନ ବୃଥା ।(୪୫) ଦେବତାମାନଙ୍କର ପୂଜା କରିବାକୁ ହେବ ଯଜ୍ଞ ମାଧ୍ୟମରେ । ପିତୃ ପୁରୁଷଙ୍କୁ ପୂଜା କରିବାକୁ ହେବ ଶ୍ରାଦ୍ଧ ମାଧ୍ୟମରେ ଏବଂ ମନୁଷ୍ୟମାନଙ୍କୁ ପୂଜା କରିବାକୁ ହେବ ଆତିଥେୟତା ମାଧ୍ୟମରେ । ଏହି ତିନୋଟି କର୍ତ୍ତବ୍ୟ ହେଲା ଆର୍ଯ୍ୟମାନଙ୍କ ଲାଗି ଉଦ୍ଦିଷ୍ଟ । ପଞ୍ଚ ଯଜ୍ଞର ଅନ୍ତର୍ଭୁକ୍ତ, ଅନ୍ୟ ଦୁଇଟି ଯଜ୍ଞ ହେଲା ଋଷି ଯଜ୍ଞ (ବିଦ୍ୟାଧ୍ୟୟନ କରିବା) ଓ ଭୂତ ଯଜ୍ଞ, (ଜୀବମାନଙ୍କ ଲାଗି ଅନ୍ନାଦି ବଳି ସ୍ୱରୂପ ଅର୍ପଣ କରିବା )।

ବୈଦିକ ନିର୍ଦ୍ଦେଶ ନାମାକୁ ଛାଡି ଆଉ କେତେକ କାରଣରୁ ଆର୍ଯ୍ୟମାନେ ଯଜ୍ଞ ପ୍ରାର୍ଥନା ଆଦି ବିଭିନ୍ନ କର୍ମ କାଣ୍ଡରେ ଲିପ୍ତ ରହୁଥିଲେ । କୃଷି କ୍ଷେତ୍ରରେ କିପରି ସମୃଦ୍ଧି ଘଟିବ ସେଥିପାଇଁ ଦେବତାମାନଙ୍କ

ପ୍ରତି ଯଜ୍ଞ-ହବି ଅର୍ପଣ କରୁଥିଲେ । ଏହି ସମୃଦ୍ଧି ଉଭୟ ଇହକାଳ ଓ ପରକାଳ ଲାଗି ଉଦ୍ଦିଷ୍ଟ ଥିଲା । ଦେବତାଙ୍କୁ ଖୁସି କରାଇଲେ ସୁଫଳ ମିଳିବ ବୋଲି ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଫଳରେ ସ୍ତୁତି ମୂଳକ ମନ୍ତ୍ର ଗୁଡିକରେ ବେଦ ଗୁଡିକ ଭରପୁର ହୋଇଛି । ଏହି ମନ୍ତ୍ରର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି 'ମନନାତ୍ ତ୍ରାୟତେ ଇତି ମନ୍ତ୍ର' ଅର୍ଥାତ୍ 'ମନନ କରିବା ମାତ୍ରେ ଯେ ତ୍ରାଣ କରେ ତାହାକୁ ମନ୍ତ୍ର କୁହାଯାଏ'। ଏହି ଉଦ୍ଦେଶ୍ୟ ରଖି ସେମାନେ ଯଜ୍ଞାଦି ବିଭିନ୍ନ ଅନୁଷ୍ଠାନ କରୁଥିଲେ । ବୈଦିକ ମନ୍ତ୍ରର ଏହା ହେଲା ଗୋଟିଏ ଦିଗ କିନ୍ତୁ ଏହାର ଆଉ ଗୋଟିଏ ଦିଗ ଥିଲା ଯାହାକି 'ହଠ ବିଦ୍ୟା' ଉପରେ ଆଧାରିତ । ଏହା ପରବର୍ତ୍ତୀ ଯୁଗରେ 'ତନ୍ତ୍ର' ନାମରେ ବିକଶିତ ହୋଇ ବହୁ ଲୋକପ୍ରିୟତା ଅର୍ଜନ କରିଥିଲା । 'ତନ୍ତ୍ର' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି 'ତନୋତି ଅଙ୍ଗ ଇତି ତନ୍ତ୍ରଃ' ଅର୍ଥାତ୍ ଯାହା ଅତି ସହଜରେ ଜନ ସମାଜରେ ବିସ୍ତାର ଲାଭ କରିଥାଏ ତାହାକୁ କୁହାଯାଏ 'ତନ୍ତ୍ର'। 'ତନ୍ତ୍ର' ସାହାଯ୍ୟରେ ବଳ ପୂର୍ବକ ସୁଫଳ ଅଣାଯାଏ । ଅଥର୍ବ ବେଦରେ ଥିବା 'ଗୁଣିଗାରେଡି, ମନ୍ତ୍ର, ତନ୍ତ୍ର' ଆଦି ଏହାର ଅନ୍ତର୍ଗତ । ରୋଗ ଭଲ କରିବା, ବଶୀକରଣ, ସମ୍ମୋହନ, ମାରଣ ଆଦି ବିଷୟରେ ଅର୍ଥବ ବେଦରେ ବହୁ ମନ୍ତ୍ର ରହିଅଛି । ଅତଏବ ମନ୍ତ୍ର ଓ ତନ୍ତ୍ର ଉଭୟ ସମ୍ମିଶ୍ରଣରେ ବୈଦିକ କର୍ମକାଣ୍ଡ ଗଢି ଉଠିଥିଲା ।

କର୍ମକାଣ୍ଡ ସଂପର୍କରେ ନିମ୍ନ ଲିଖିତ ବୈଦିକ ଗ୍ରନ୍ଥମାନଙ୍କରେ ବର୍ଣ୍ଣନା ରହିଅଛି । ସେଗୁଡିକ ହେଲା – (କ) ଋଗ୍‌ବେଦ ସଂହିତା, (ଖ) ଅଥର୍ବ ବେଦ ସଂହିତା, (ଗ) ସାମବେଦ ସଂହିତା, (ଘ) ଯଜୁର୍ବେଦ ସଂହିତା, (ଙ) ବ୍ରାହ୍ମଣ ଗ୍ରନ୍ଥ ସମୂହ, (ଚ) କଳ୍ପ ସୂତ୍ର ସମୂହ (ଉଭୟ ଶ୍ରୌତ୍ର ଓ ଗୃହ୍ୟ) । କର୍ମକାଣ୍ଡ ବିଷୟରେ କି ପ୍ରକାର ବର୍ଣ୍ଣନା ରହିଅଛି ତାହାର ବର୍ଣ୍ଣନା ନିମ୍ନରେ ଦିଆଗଲା ।

**ଋଗ୍‌ବେଦ ସଂହିତା –**

ଋଗ୍‌ବେଦରେ ପୃଥକ୍ ଭାବରେ ଜ୍ଞାନ ଓ କର୍ମକୁ ଗ୍ରହଣ କରାଯାଇଛି । ସେଥିପାଇଁ ଋଗ୍‌ବେଦ ବିଶେଷ ଭାବରେ ଯଜ୍ଞ ସହିତ ସଂପର୍କିତ । ଏଥିରେ ଇନ୍ଦ୍ର ଓ ଅଗ୍ନି ଙ୍କ ଉଦ୍ଦେଶ୍ୟରେ ବହୁ 'ସୂକ୍ତ' ଦେଖିବାକୁ ମିଳେ । ଅନ୍ତରୀକ୍ଷ ସ୍ତରର ଦେବତା ହେଲେ ଇନ୍ଦ୍ର ଏବଂ ପୃଥିବୀ ସ୍ତରର ଦେବତା ହେଲେ ଅଗ୍ନି । ପୃଥିବୀ ଏବଂ ଅନ୍ତରୀକ୍ଷ ସ୍ତରର ଦେବତାମାନଙ୍କର ଫଳଶ୍ରୁତି ନିମ୍ନସ୍ତରର ଥିଲା । ଏମାନେ ଜାଗତିକ ସୁଖ ସମୃଦ୍ଧି ଆଣି ଦେଉଥିଲେ ବୋଲି ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ଋଗ୍ ବେଦର ଗୋପନ ବାଣୀ ଖୁବ୍ କମ୍ ଲୋକ ଜାଣିଥିଲେ; ଏହି ଗୋପନ ବାଣୀ ହେଉଛି 'ଜ୍ଞାନ'। ଏହି ଗୋପନ ବିଦ୍ୟାର ନାମ ଥିଲା ମଧୁ ବିଦ୍ୟା । ଯାହାକି ଋଷି "ଦଧ୍ୟଙ୍‌ ଅଥର୍ବଣ" ଜାଣିଥିଲେ । ଇନ୍ଦ୍ର ଏହି ବିଦ୍ୟା ଋଷି-ଅଥର୍ବଣଙ୍କ ଠାରୁ ଶିକ୍ଷା କରିବାକୁ ଚାହିଁ ଥିଲେ । ମାତ୍ର ତାହା ପ୍ରାପ୍ତ ନ ହେବାରୁ ଇନ୍ଦ୍ର ଅଭିଶାପ ଦେଇଥିଲେ ଯେ ଏହି ବିଦ୍ୟା ସେ ଯଦି କାହାକୁ ଜଣାନ୍ତି ତାହେଲେ ତାଙ୍କ ମୁଣ୍ଡ ଫାଟିଯିବ । ମାତ୍ର ଏ ବିଦ୍ୟା ଅଶ୍ୱିନୀକୁମାର ଦ୍ୱୟ ଶିକ୍ଷା କରିଥିଲେ । ଋଷି ଘୋଡ଼ା ମୁଣ୍ଡ (ତାଙ୍କ ମୁଣ୍ଡରେ ଯୋଡ଼ା ଯାଇଥିବା ଘୋଡ଼ା ମୁଣ୍ଡ) ସାହାଯ୍ୟରେ ଏ ବିଦ୍ୟା ଶିକ୍ଷା ଦେଇଥିଲେ । ଏହି 'ଦଧ୍ୟଙ୍‌ ଋଷି' ହେଉଛନ୍ତି ଜ୍ଞାନମୟ । ଏଥିରୁ ମନେ ହୁଏ ଋଗ୍‌ବେଦ ସମୟରୁ ଜ୍ଞାନ କାଣ୍ଡ ଓ କର୍ମ କାଣ୍ଡ ଦୁଇଟି ସମାନ୍ତରାଳ ଭାବରେ ଭାରତ ଭୂମିରେ ବହି ଆସିଛି । ଋଗ୍‌ବେଦର ଖୁବ୍ କମ୍ ସଂଖ୍ୟକ ମନ୍ତ୍ର ଯଜ୍ଞ ଉଦ୍ଦେଶ୍ୟରେ

କିମ୍ବା 'ହଠ ବିଦ୍ୟା' ସାଧନ ଉଦ୍ଦେଶ୍ୟରେ ସୃଷ୍ଟ ହୋଇଥିଲା ଏବଂ ଅଧିକାଂଶ ମନ୍ତ୍ର ଥିଲା ଯଜ୍ଞ ଅତିରିକ୍ତ । ମାତ୍ର କାଳ କ୍ରମେ ସେହି ମନ୍ତ୍ରଗୁଡ଼ିକ ଯଜ୍ଞ ସମୟରେ ବୋଲାଗଲା ।

ମାତ୍ର କେତେକ ମନ୍ତ୍ର ଯଜ୍ଞ ଆରମ୍ଭରୁ ଉଦ୍ଦିଷ୍ଟ ଥିଲା । ଋଗ୍ ବେଦର ପଞ୍ଚମ ମଣ୍ଡଳସ୍ଥ 'ବୈଶ୍ୱଦେବ' ସଂପର୍କୀୟ ମନ୍ତ୍ରରାଶି ଉଲ୍ଲେଖନୀୟ । ଆଉ ମଧ୍ୟ ପ୍ରଥମ ମଣ୍ଡଳସ୍ଥ 'ଅଗ୍ନି ଷ୍ଟୋମ୍ ଯଜ୍ଞ' ସଂପର୍କୀୟ କେତେକ ମନ୍ତ୍ରର ଉଦାହରଣ ଏଠାରେ ନିଆଯାଇପାରେ ।(୪୬) ଅଗ୍ନିଷ୍ଟୋମ ଯଜ୍ଞରେ ଅଗ୍ନି ଓ ସୋମଦେବତାଙ୍କ ଉଦ୍ଦେଶ୍ୟରେ ହବି ସ୍ୱରୂପ ଛେଳିଟିଏ ଅର୍ପଣ କରାଯାଇଥାଏ । ଏହି ହବିର୍ଦାନ ସମୟରେ କେତେଗୁଡିଏ ମନ୍ତ୍ର ବୋଲା ଯାଇଥାଏ । ସେଗୁଡିକୁ 'ଅନୁବାକ୍ୟ' ବୋଲି କୁହାଯାଏ । ଏହି 'ଅନୁବାକ୍ୟ' ମଧ୍ୟ ଋଗ୍ ବେଦରେ ରହିଅଛି । ତାହା ଛଡା ଯଜ୍ଞ ସମୟରେ ଯେଉଁ ହାଣ୍ଡିଏ ଦହି ଅର୍ପଣ କରାଯାଏ ସେତେବେଳେ ମଧ୍ୟ 'ଅନୁବାକ୍ୟ' ଉଚ୍ଚାରଣ କରାଯାଏ । ତାହା ମଧ୍ୟ ଋଗ୍‌ବେଦରେ ଉଲ୍ଲିଖିତ ।(୪୭) ସୂର୍ଯ୍ୟଙ୍କ କନ୍ୟା ସୂର୍ଯ୍ୟାଙ୍କ ବିବାହ ସମୟରେ ଯେଉଁ ମନ୍ତ୍ରମାନ ପାଠ କରାଯାଉଥିଲା ତାହା ଋଗ୍‌ବେଦରେ ବର୍ଣ୍ଣିତ । ସେହି ମନ୍ତ୍ର ଗୁଡିକ ବର୍ତ୍ତମାନ ସାଧାରଣ ବିବାହ ବେଦୀରେ ମଧ୍ୟ ପାଠ କରାଯାଏ ।(୪୮) କନ୍ୟାଙ୍କୁ ଉପଦେଶ ଦେବା ଅନୁକ୍ରମରେ ବେଦର ଗୋଟିଏ ସ୍ଥାନରେ କୁହାଯାଇଛି "ହେ ଇନ୍ଦ୍ର, ଏହି କନ୍ୟାଙ୍କୁ ତୁମେ ଦଶ ପୁତ୍ର ଆଣି ଦିଅ ଏବଂ ଏହାଙ୍କ ପତିଙ୍କୁ ଏକାଦଶ ପୁତ୍ର କରାଅ"।(୪୯) ଏହାର ଅର୍ଥ ହେଲା ଦଶ ପୁଅ ହୋଇ ସାରିଲା ପରେ ଆଉ ଅଧିକ ପୁତ୍ର ହେବା ପାଇଁ ସ୍ୱାମୀ ସ୍ତ୍ରୀ ଉଦ୍ୟମ କରିବେ ନାହିଁ । ସେତେବେଳେ ସେମାନଙ୍କର ପାରସ୍ପରିକ ସଂପର୍କ ମାତା ପୁତ୍ରଙ୍କ ସଂପର୍କ ଭଳି ହେବ । ପୁନର୍ବାର ଅନ୍ୟତ୍ର କୁହାଯାଇଛି ତୁମେ ମୃତ ପତିଙ୍କ ଆଶା ଛାଡି ଜୀବିତ ଲୋକଙ୍କ ମଧ୍ୟରୁ ଆଉ ଜଣଙ୍କୁ ପତି ରୂପେ ଗ୍ରହଣ କର ।(୫୦) ଏହି ଉପଦେଶଟି ସ୍ୱାମୀଙ୍କ ଚିତାନଳ ପାଖରେ ସ୍ତ୍ରୀ କୁ ଦିଆଯାଇଛି । ଅନ୍ୟ ଏକ ସ୍ଥାନରେ କୁହାଯାଇଛି ସ୍ୱାମୀ ସନ୍ତାନ ଜନ୍ମ କରାଇବାରେ ଅସମର୍ଥ ହେଲେ ସ୍ତ୍ରୀକୁ ଅନ୍ୟ ପୁରୁଷ ସହିତ 'ନିୟୋଗ' ପ୍ରକ୍ରିୟାରେ ସନ୍ତାନ ଜନ୍ମ କରିବା ଲାଗି ଉପଦେଶ ଦେଇ ପୁରୁଷ କହୁଛି "ମୋ ଦ୍ୱାରା ସନ୍ତାନ ଉତ୍ପାଦନ ସମ୍ଭବ ହେବ ନାହିଁ । ହେ ସୁଭଗେ ତେଣୁ ତୁମେ ଅନ୍ୟ ପତି ଗ୍ରହଣ କର"।(୫୧)

ବୈଦିକ ଆର୍ଯ୍ୟମାନେ ଏକାଧିକ ପତ୍ନୀ ଗ୍ରହଣ କରୁଥିଲେ । ତେଣୁ ପ୍ରତ୍ୟେକ ପତ୍ନୀ ପତିଙ୍କୁ ଅକ୍ତିୟାରରେ ରଖିବା ପାଇଁ ଚେଷ୍ଟା କରୁଥିଲା । ତେଣୁ ସେ ଅନ୍ୟ ପତ୍ନୀମାନଙ୍କ ସହିତ ପ୍ରତିଯୋଗିତା କରୁଥିଲା । ଏହି ବିଜୟ ପାଇଁ ସେ 'ହଠ ଯୋଗ'ର ସାହାଯ୍ୟ ନେଉଥିଲା । ଋଗ୍‌ବେଦରେ ଦୁଇଟି ଏହି 'ହଠ ଯୋଗ' ମୂଳକ ସୂକ୍ତର ଅବତାରଣା କରାଯାଇଛି । ଆର୍ଯ୍ୟମାନେ ଏହି ସୂକ୍ତର ଅବତାରଣାରେ ସପତ୍ନୀ ପରାଭୂତ ହେବାର ବିଶ୍ୱାସ କରୁଥିଲେ ।(୫୨) ସ୍ତ୍ରୀ ଗର୍ଭବତୀ ଥିଲେ ଗର୍ଭପାତ ନହୋଇ ସୁଖ ପ୍ରସବ ସମ୍ଭବ ହେବା ନିମିତ୍ତ ବିଭିନ୍ନ ମନ୍ତ୍ର ଋଗ୍‌ବେଦରେ ରହିଅଛି । ଆର୍ଯ୍ୟମାନେ ବିଶ୍ୱାସ କରୁଥିଲେ ଦୁଷ୍ଟ ଭୂତ ପ୍ରେତଙ୍କ ଯୋଗୁ ଅସୁଖ ପ୍ରସବ ହୋଇଥାଏ । ତେଣୁ ସେମାନଙ୍କ ଦମନାର୍ଥେ ଏବଂ ନିରାକରଣାର୍ଥେ ଉକ୍ତ ମନ୍ତ୍ର ଗୁଡିକୁ ଉଚ୍ଚାରଣ କରିବାର ବ୍ୟବସ୍ଥା ହେଉଥିଲା ।(୫୩)

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ମାନଙ୍କ ବ୍ୟକ୍ତିଗତ ଶୁଦ୍ଧତା ରକ୍ଷା କରିବା ଲାଗି ଷୋଳଗୋଟି ସଂସ୍କାର (କ) ଗର୍ଭାଧାନ, (ଖ) ପୁଂସବନ, (ଗ) ସୀମନ୍ତୋନୟନ, (ଘ)ଜାତକର୍ମ, (ଙ) ନାମକରଣ,

(ଚ) ନିଷ୍କ୍ରମଣ, (ଛ) ଅନ୍ନପ୍ରାଶନ, (ଜ) ଚୂଡାକର୍ମ, (ଝ) କର୍ଣ୍ଣବେଧ, (ଞ) ଉପନୟନ, (ଟ) ବ୍ରତାଦେଶ (ଠ) ବେଦ - ସ୍ୱାଧ୍ୟାୟ (ଡ଼) କେଶାନ୍ତ (ଢ଼) ସମାବର୍ତ୍ତନ, (ଣ) ବିବାହ, (ତ) ଅଗ୍ନି ପରିଗ୍ରହ ମଧ୍ୟ ଦେଇ ଗତି କରିବାକୁ ପଡୁଥିଲା । ଗର୍ଭାଧାନ ଠାରୁ ଆରମ୍ଭ ପରେ ଗୃହାଗ୍ନିର ଦାୟିତ୍ୱ ଗ୍ରହଣ କରିବା ପର୍ଯ୍ୟନ୍ତ ଏହି ଷୋଡ଼ଶ ସଂସ୍କାର ସୀମାବଦ୍ଧ । ଏହି ସଂସ୍କାର ଗୁଡିକ ସମାହିତ କଲାବେଳେ ଭିନ୍ନ ଭିନ୍ନ ବୈଦିକ ମନ୍ତ୍ରମାନ ବୋଲିବାର ବ୍ୟବସ୍ଥା ରହିଅଛି । ଏହାର ମୁଖ୍ୟ ଉଦ୍ଦେଶ୍ୟ ବ୍ୟକ୍ତିଗତ ଶୁଦ୍ଧତା ରକ୍ଷା କରିବା, ମାତ୍ର ଏହା ବ୍ୟତୀତ ଏହା ପାରିବାରିକ ତଥା ସାମାଜିକ ଶୁଦ୍ଧତାର ରକ୍ଷା କରିବାରେ ସହାୟକ ହେଉଥିଲା । ଏହା ଫଳରେ ଆର୍ଯ୍ୟ ଜୀବନ ଆଧ୍ୟାତ୍ମିକତାର ସୋପାନ ଆରୋହଣ କରିବାରେ ସମର୍ଥ ହେଉଥିଲା । ସଂସ୍କାରର ଅନ୍ତର୍ନିହିତ ଲକ୍ଷ୍ୟ ଥିଲା ବ୍ୟକ୍ତି ବିଶେଷକୁ ଉପଯୁକ୍ତ କର୍ମ ପାଇଁ ସମର୍ଥ କରିବା ।

ଆଜି ମଧ୍ୟ ଏହି ଷୋଡ଼ଶ ସଂସ୍କାର ଅଧିକାଂଶ ହିନ୍ଦୁମାନଙ୍କ ଦ୍ୱାରା ପାଳିତ ହେଉଛି । ତନ୍ମଧ୍ୟରୁ ବିବାହ ଓ ଉପନୟନ ଆଦି ପ୍ରଧାନ । ଋଗ୍ ବେଦ କାଳରେ ଉଭୟ ପୁଅ ଝିଅଙ୍କର ଉପନୟନ କର୍ମ କରାଯାଉଥିଲା । ବୈଦିକ କାଳରେ 'କପୋତଟିଏ ଘର ଗୃହରେ ବାଟେଇ ହୋଇଗଲେ ତାହାକୁ ଅଶୁଭ ଲକ୍ଷଣ ବୋଲି ଧରାଯାଉଥିଲା'। ଋଗ୍ ବେଦ କାଳରେ ଆର୍ଯ୍ୟମାନଙ୍କର ଏ ପ୍ରକାର ବିଶ୍ୱାସ ଥିଲା । କପୋତ ବାଟେଇ ହୋଇଗଲେ କେଉଁ ମନ୍ତ୍ର ଗୁଡିକ ପାଠ କରିବାକୁ ହେବ ତାହା ଋଗ୍ ବେଦରେ ବର୍ଣ୍ଣନା କରାଯାଇଛି ।(୫୪) ଆଉ କେତେକ ସ୍ଥାନରେ ଯକ୍ଷ୍ମା ରୋଗ ଓ କାମଳ ରୋଗରୁ କିପରି ରକ୍ଷା ପାଇବାକୁ ହେବ ସେଥିପାଇଁ ମନ୍ତ୍ର ପଠନ ପୂର୍ବକ ପ୍ରତି ବିଧାନର ବ୍ୟବସ୍ଥା କରାଯାଇଛି ।(୫୫)

ଋଗ୍‌ବୈଦିକ ଆର୍ଯ୍ୟମାନେ ମୁଖ୍ୟତଃ କାଠ ବାଉଁଶର ଘରେ ରହୁଥିଲେ । ଏହି ଘରକୁ ଅଗ୍ନି ଭୟ ଓ ଦସ୍ୟୁ ଭୟ ଥିଲା । ଫଳରେ ଘରର ଜଣେ କାଳ୍ପନିକ ରକ୍ଷକଙ୍କ କଥା ଚିନ୍ତା କରିଥିଲେ ଏବଂ ତାଙ୍କ ନାମ ଦେଇଥିଲେ 'ବାସ୍ତୋଷ୍ପତି'। ଏହି 'ବାସ୍ତୋଷ୍ପତି' ଙ୍କୁ ତୁଷ୍ଟ କରିବା ନିମିତ୍ତ ମାନ୍ତ୍ରିକ ବ୍ୟବସ୍ଥା ଖଞ୍ଜା ଯାଇଥିଲା ।(୫୬) ଅନୁରୂପ ଭାବରେ ଅଧିକ ଶସ୍ୟ ଉତ୍ପାଦନ କରିବା ନିମିତ୍ତ ବିଭିନ୍ନ କୃଷି କର୍ମ ସମୟରେ କ୍ଷେତ୍ରପତି (ବିଲର ଠାକୁର) ହଳଲଙ୍ଗଳ, ବଳଦ, ଲଙ୍ଗଳ ଶିଆର (ସୀତା) ଆଦିଙ୍କ ଉଦ୍ଦେଶ୍ୟରେ ସ୍ତୁତି ଅର୍ପଣ କରିବାର ବ୍ୟବସ୍ଥା ମଧ୍ୟ ଋଗ୍‌ବେଦରେ ଅଛି ।(୫୭) ଗାଈମାନେ ସହଜରେ ଚରିବା ଲାଗି ଯିବା ସମୟରେ ଏବଂ ଆସିବା ସମୟରେ ବିଭିନ୍ନ ମନ୍ତ୍ର ପାଠ କରାଯାଇଥାଏ ।(୫୮)

**ଅଥର୍ବ ବେଦ ସଂହିତା –**

ଅଥର୍ବ ବେଦ ହେଉଛି ମନ୍ତ୍ର, ତନ୍ତ୍ର, ଗୁଣି ଗାରେଡିର ଜନକ । ଅଥର୍ବ ବେଦର ପ୍ରଥମ ନାମ ଥିଲା 'ଅଥର୍ବାଙ୍ଗିରସଃ' । ଜଣେ ହେଲେ ଅଥର୍ବନ ଓ ଅନ୍ୟ ଜଣେ ହେଲେ ଅଙ୍ଗିରସ । ଅଥର୍ବନ ଯେଉଁ ମନ୍ତ୍ର ଗୁଡିକ ରଚନା କରିଛନ୍ତି ତାହା ବିଶେଷ କରି ସ୍ତୁତି ମୂଳକ ଏବଂ ସେଗୁଡିକରେ ଦୀର୍ଘାୟୁ ହେବା ଲାଗି, ରୋଗ ଭଲ ହେବା ଲାଗି, ଗୋସମ୍ପଦର ବୃଦ୍ଧି ଲାଗି ଏବଂ ଅନ୍ୟାନ୍ୟ ଜନ ହିତକର କାର୍ଯ୍ୟ ଲାଗି ପ୍ରାର୍ଥନା କରାଯାଇଛି । ଏଥିରେ କାହାର କ୍ଷତି ହେବା ଚିନ୍ତା କରା ଯାଇନାହିଁ । ଏହାଛଡା ବିବାହ, ରାଜାଙ୍କ ଅଭିଷେକ, ରାଜ୍ୟ ଶାସନ ଇତ୍ୟାଦି ବିଷୟ ମଧ୍ୟ ବର୍ଣ୍ଣିତ ହୋଇଅଛି । ଅପର ପକ୍ଷରେ

'ଅଙ୍ଗିରସ'ଙ୍କ ଦ୍ୱାରା ସୃଷ୍ଟ ମନ୍ତ୍ର ଗୁଡିକ ଅନ୍ୟର କ୍ଷତି କରି ନିଜର ଅଭିବୃଦ୍ଧି ଲାଗି ଅଭିପ୍ରେତ । ତାରଣ, ମାରଣ, ବଶୀକରଣ, ଉଚ୍ଚାଟନ ଆଦି ଏଥିରେ ଅନ୍ତର୍ଗତ । ବୈଦିକ ସାହିତ୍ୟରେ 'ଅଙ୍ଗିରସ'କୁ ଖୁବ୍ କଳା ରଙ୍ଗର ଜଣେ ଋଷି ବୋଲି ବର୍ଣ୍ଣନା କରାଯାଇଛି । ବୈଦିକ ଆର୍ଯ୍ୟମାନେ ଆବଶ୍ୟକ ସ୍ଥଳେ ଏଗୁଡିକର ପ୍ରୟୋଗ କରୁଥିଲେ ।

ଅଥର୍ବ ବେଦରେ ଯଜ୍ଞନିଷ୍ଠତା ଆଦୌନାହିଁ କହିଲେ ଚଳେ ; ଅର୍ଥାତ୍ ଏହାର ମନ୍ତ୍ର ଗୁଡିକ ଯଜ୍ଞ ବେଦୀରେ ବୋଲା ଯାଉନଥିଲା । ତାହା ସତ୍ତ୍ୱେ ଋଗ୍‌ବେଦର ପ୍ରାୟ ସମସ୍ତ ଦାର୍ଶନିକ ମନ୍ତ୍ର ଅଥର୍ବ ବେଦରେ ଦେଖିବାକୁ ମିଳିଥାଏ । ସ୍ତ୍ରୀକୁ ଉପଦେଶ ଦେବା ଉଦ୍ଦେଶ୍ୟରେ ସେଠାରେ କୁହାଯାଇଛି "ହେ ସ୍ତ୍ରୀ ତୁମେ ପତି ବା ଦେବରଙ୍କୁ ଦୁଃଖ ଦିଅ ନାହିଁ । ଗୃହସ୍ଥାଶ୍ରମରେ ରହି ଜନ୍ତୁମାନଙ୍କ ପ୍ରତି ଦୟାକର । ନ୍ୟାୟ ଓ ଧର୍ମର ନିୟମମାନ ପାଳନ କର । ସର୍ବଶାସ୍ତ୍ରଜ୍ଞ ଓ ବିବିଧ ବିଦ୍ୟା ଯୁକ୍ତ ହୁଅ । ଉତ୍ତମ ବୀରସୁର ପୁତ୍ର ପୌତ୍ରାଦି ସମ୍ପାଦନ କର । ନିୟୋଗ ବିଧି କ୍ରମେ ଦେବରଙ୍କୁ କାମନା କର । ତାହାଙ୍କୁ ସୁଖ ଦିଅ । ପତି ବା ଦେବରଙ୍କୁ ପ୍ରାପ୍ତ ହୋଇ ସର୍ବଦା ହୋମ କର । ଯାହାକି ଗୃହସ୍ଥାଶ୍ରମର ମୂଳ କର୍ତ୍ତବ୍ୟ"।(୫୯) ସେହିଭଳି ଗୋଟିଏ ସ୍ଥାନରେ ରାଜାଙ୍କୁ ପ୍ରଜାମାନଙ୍କର ସମିତି ନିର୍ବାଚିତ କରିବା ପରେ ଅଭିଷେକୋତ୍ସବ ସମୟରେ ମନ୍ତ୍ର ପାଠ କରି କହିଥାନ୍ତି – "ସବୁ ଦିଗ ତୁମ ପାଇଁକି ସୁଖକର ହେଉ । ସମିତି ତୁମକୁ ଚିରଦିନ ସିଂହାସନରେ ବସିବା ପାଇଁ ନିର୍ବାଚନ କରନ୍ତୁ" ।(୬୦) ଉକ୍ତ ବେଦରେ ଆଉ ଗୋଟିଏ ସ୍ଥାନରେ କୁହାଯାଇଛି 'ରାଜା ଅନ୍ତତଃ ପକ୍ଷେ ଚାରି ଦଶନ୍ଧି କାଳ ରାଜୁତି କରନ୍ତୁ '।(୬୧) ରାଜାଙ୍କ ଅଭିଷେକ ସମୟରେ ପ୍ରଜାମାନେ ଏକ ପଳାଶପତ୍ର ରାଜାଙ୍କୁ ପ୍ରଦାନ କରୁଥିଲେ । ଏହାକୁ ମଣି ବୋଲି କୁହାଯାଉଥିଲା । ରାଜା ମଣିର ଦାୟିତ୍ୱ ସୁଚାରୁ ରୂପେ ନିର୍ବାହ କରିବା ପାଇଁ ଅଥର୍ବ ବେଦରେ ବର୍ଣ୍ଣିତ ହୋଇଛି ।(୬୨) ଅଥର୍ବ ବେଦରେ କେତେକ ମନ୍ତ୍ର ଅଛି ଯାହାକୁ 'ମୃଗାର ମନ୍ତ୍ର' କୁହାଯାଏ । ଏହା ଅଘ୍ନ ବା ଦୁଃଖରୁ ଉଦ୍ଧାର କରେ । କୌଣସି ଦୁଃଖ ସମୟରେ ଏହି ମନ୍ତ୍ରକୁ ଉଚ୍ଚାରଣ କରିବାକୁ ହୋଇଥାଏ ।(୬୩)

ପୂର୍ବରୁ କୁହାଯାଇଛି ଅଙ୍ଗିରସଙ୍କ ମନ୍ତ୍ର ଗୁଡିକ ଅନ୍ୟର କ୍ଷତି କାରକ ଏବଂ ଶରଣାଦି ବିଦ୍ୟା ସଂବଳିତ । ଶତ୍ରୁର କ୍ଷତି କରି ନିଜର ଭଲ କରିବାରେ ଏହାର ଉଦ୍ଦେଶ୍ୟ । ପୁରୁଷ କିମ୍ବା ସ୍ତ୍ରୀର ପ୍ରେମ ହାସଲ କରିବାକୁ ହେଲେ ଆବଶ୍ୟକ ସ୍ଥଳେ ସେମାନଙ୍କୁ ବଶୀକରଣ କରିବାକୁ ହୋଇଥାଏ । ତାହା ଅଥର୍ବ ବେଦରେ କେତେକ ସ୍ଥାନରେ ବର୍ଣ୍ଣିତ ।(୬୪) ଆଉ କେତେକ ମନ୍ତ୍ରରେ ସ୍ତ୍ରୀର ପ୍ରଜନନ କ୍ଷମତା ନଷ୍ଟ କରିଦେବା ଲାଗି ଅଭିପ୍ରେତ ।(୬୫) ଅଥର୍ବ ବେଦରେ ବିବାହ ଅନୁଷ୍ଠାନ ଗୋମହାତ୍ମ୍ୟ ଇତ୍ୟାଦି ସଂପର୍କରେ ଯେଉଁ ମନ୍ତ୍ର ଗୁଡିକ ବର୍ଣ୍ଣିତ ହୋଇଛି ସେଥିରେ ଉଚ୍ଚ ଦାର୍ଶନିକ ଚିନ୍ତାଧାରା ପ୍ରତିଫଳିତ ହୋଇଛି । ରାଜ ଧର୍ମ ଓ ଶାସନ ସଂପର୍କୀୟ ଯେଉଁ ମନ୍ତ୍ର ଗୁଡିକ ରହିଅଛି ସେଗୁଡିକ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛି ।

**(ଗ) ସାମବେଦ ସଂହିତା –**

ସାମବେଦ ଏକ ଯଜ୍ଞନିଷ୍ଠ ସଂହିତା । ଏହାର ମନ୍ତ୍ର ଗୁଡିକ ଯଜ୍ଞର ବିଧିବିଧାନ ଉପରେ ପର୍ଯ୍ୟବେସିତ । ଏହା ସଂଗୀତାତ୍ମକ । ଏହାର ପ୍ରାୟ ସମସ୍ତ ମନ୍ତ୍ର ଋଗ୍‌ବେଦରୁ ଆହୃତ । ସାମବେଦରେ

ଅଧିକାଂଶ ମନ୍ତ୍ର ଇନ୍ଦ୍ରଙ୍କ ପାଇଁ ଉଦ୍ଦିଷ୍ଟ । ଅଳ୍ପ କିଛି ଅଗ୍ନିଙ୍କ ଲାଗି ଉଦ୍ଦିଷ୍ଟ । ସାମ ମନ୍ତ୍ର ଗୁଡିକ ସଂପୂର୍ଣ୍ଣ ଭାବରେ ସ୍ତୁତି ମୂଳକ ତେଣୁ ଏହାକୁ ଭକ୍ତିବାଦର ଜନକ ବୋଲି କୁହାଯାଏ ।

**(ଘ) ଯଜୁର୍ବେଦ ସଂହିତା –**

ଯଜୁର୍ବେଦ ସଂହିତା ଦୁଇ ଭାଗରେ ବିଭକ୍ତ । କୃଷ୍ଣ ଯଜୁର୍ବେଦ ଓ ଶୁକ୍ଳ ଯଜୁର୍ବେଦ । କୃଷ୍ଣ ଯଜୁର୍ବେଦରେ ମନ୍ତ୍ର ଓ ବ୍ରାହ୍ମଣ ସନ୍ନିବିଷ୍ଟ । ମନ୍ତ୍ର ପଦ୍ୟାତ୍ମକ ହେଲା ବେଳେ ବ୍ରାହ୍ମଣ ହେଉଛି ଗଦ୍ୟାତ୍ମକ । ମନ୍ତ୍ରରେ ପିତୃ ପୁରୁଷଙ୍କୁ ପିଣ୍ଡ ଦେବାକଥା ଉଲ୍ଲିଖିତ । ତାହାକୁ କିପରି ଭାବରେ କରିବାକୁ ହେବ ତାହା ବ୍ରାହ୍ମଣରେ ଲେଖା ଯାଇଅଛି । କୃଷ୍ଣ ଯଜୁର୍ବେଦର ମନ୍ତ୍ର ଓ ବ୍ରାହ୍ମଣ ଏକତ୍ର ଥାଇ ମନ୍ତ୍ର ନିର୍ଦ୍ଦିଷ୍ଟ ବିଷୟ ବସ୍ତୁ କିପରି ଭାବରେ ବିଭିନ୍ନ କର୍ମକାଣ୍ଡ ମାଧ୍ୟମରେ ସମାହିତ କରିବାକୁ ହେବ ସେ ବିଷୟରେ ନିର୍ଦ୍ଦେଶ ଦିଆଯାଇଛି । ଶୁକ୍ଳ ଯଜୁର୍ବେଦକୁ ବାଜସନେୟି ସଂହିତା ବୋଲି କୁହାଯାଏ । ବାଜସନିଙ୍କ ପୁତ୍ର ଯାଜ୍ଞବଲ୍କ୍ୟ ଏହାର ସଂକଳନ କରିଅଛନ୍ତି । ଏହାର ମନ୍ତ୍ର ଓ ବ୍ରାହ୍ମଣ ପୃଥକ ପୃଥକ ଗ୍ରନ୍ଥ । ଶୁକ୍ଳ ଯଜୁର୍ବେଦରେ ୪୦ ଅଧ୍ୟାୟ ଅଛି । ଏହାର ଶେଷ ଅଧ୍ୟାୟ ର ନାମ ହେଉଛି ଇଶାବାସ୍ୟୋପନିଷଦ୍ । ଏହାର ବ୍ରାହ୍ମଣ ଅଂଶଟି ଶତପଥ ବ୍ରାହ୍ମଣରେ ରହିଅଛି ।

ଶତପଥ ବ୍ରାହ୍ମଣରେ ବିଭିନ୍ନ ଯଜ୍ଞ ସଂପର୍କରେ କୁହାଯାଇଛି । ସେଗୁଡିକ ହେଉଛି ପାଞ୍ଚ ପ୍ରକାର ମହାଯଜ୍ଞ । ଏଗୁଡିକୁ ମହାସତ୍ର ମଧ୍ୟ କୁହାଯାଏ । ଏଗୁଡିକ ହେଲେ ଭୂତ ଯଜ୍ଞ, ମନୁଷ୍ୟ ଯଜ୍ଞ, ପିତୃ ଯଜ୍ଞ, ଦେବ ଯଜ୍ଞ ଓ ବ୍ରହ୍ମ ଯଜ୍ଞ ।(୬୬) ତୈତ୍ତିରୀୟ ଆରଣ୍ୟକରେ ମଧ୍ୟ ଅନୁରୂପ ଚିନ୍ତାଧାରା ଅନୁରଣିତ । ଏହି ପଞ୍ଚ ମହାଯଜ୍ଞ ଥିଲା ପ୍ରତ୍ୟେକ ଗୃହସ୍ଥଙ୍କ ପାଇଁ ଏକ ପୂତ ପବିତ୍ର କର୍ତ୍ତବ୍ୟ । ଏହାର ଉଲଙ୍ଘନ ପାପ ବୋଲି ଧରା ଯାଉଥିଲା ।

ଶୁକ୍ଳ ଯଜୁର୍ବେଦରେ କର୍ମକାଣ୍ଡର ତାତ୍ପର୍ଯ୍ୟ କଣ ତାହା ବର୍ଣ୍ଣିତ ହୋଇଅଛି । ସେଗୁଡିକ ହେଲା-

| କର୍ମକାଣ୍ଡର ନାମ | ତାତ୍ପର୍ଯ୍ୟ | କେଉଁଠାରେ ବର୍ଣ୍ଣିତ |
|---|---|---|
| (କ)ଦଶପୂର୍ଣ୍ଣ ମାସ- | ପୂର୍ଣ୍ଣିମା ଓ ଅମାବାସ୍ୟାରେକରାଯାଏ | ଅଧ୍ୟାୟ ୨୧.୨ |
| (ଖ) ପିଣ୍ଡ ପିତୃ ଯଜ୍ଞ- | ପିତୃମାନଙ୍କୁ ପିଣ୍ଡ ଦେବା ଲାଗି | ଅଧ୍ୟାୟ-୨ |
| (ଗ)ଅଗ୍ନ୍ୟାଧାନ ଓ ପୁନରାଧେୟ | ଅଗ୍ନିଙ୍କର ସ୍ଥାପନ ଓ ପୁନଃ ସ୍ଥାପନ | ଅଧ୍ୟାୟ୩ |
| (ଘ) ଅଗ୍ନିହୋତ୍ର- | ସକାଳେ ଓ ସଂଧ୍ୟାରେ ଅଗ୍ନିଙ୍କୁ ହବିଦାନ | ଅଧ୍ୟାୟ ୩ |
| (ଙ) ବାଜପେୟ | ବଳ ସଂଦର୍ଶନ କରାଇବାର ଯଜ୍ଞ | ଅଧ୍ୟାୟ-୧୦ |
| (ଚ) ରାଜସୂୟ | ରାଜାଙ୍କ ସିଂହାସନ ଆରୋହଣ ସମୟ ଯଜ୍ଞ | ଅଧ୍ୟାୟ-୧୧-୧୮ |
| (ଛ) ସୌତ୍ରାମଣୀ | ଅତ୍ୟଧିକ ସୋମପାନ ଲାଗି ପ୍ରାୟଶ୍ଚିତ ଯଜ୍ଞ | ଅଧ୍ୟାୟ-୧୯-୨୧ |
| (ଜ) ଅଶ୍ୱମେଧ | ରାଜଚକ୍ରବର୍ତ୍ତୀ ଦିଗ ବିଜୟ ଲାଗି କରୁଥିବା ଯଜ୍ଞ, | ଅଧ୍ୟାୟ - ୨୨-୨୫ |

| କର୍ମକାଣ୍ଡର ନାମ | ତାତ୍ପର୍ଯ୍ୟ | କେଉଁଠାରେ ବର୍ଣ୍ଣିତ |
|---|---|---|
| (ଝ)ପୁରୁଷମେଧ ଯଜ୍ଞ | ସୃଷ୍ଟି ସଂପର୍କୀୟ ଏକ ପ୍ରତୀକାତ୍ମକଯଜ୍ଞ | ଅଧ୍ୟାୟ-୩୦-୩୧ |
| (ଞ) ସର୍ବମେଧ | ସର୍ବସ୍ୱପ୍ରଦାନ କରିବାର ଯଜ୍ଞ | ଅଧ୍ୟାୟ - ୩୨-୩୩ |

ଏହା ବ୍ୟତୀତ ଆହୁରି ଅନେକ କର୍ମ କାଣ୍ଡର ବ୍ୟବସ୍ଥା ରହିଅଛି । ଏହାର ତିରିଶ ଅଧ୍ୟାୟରେ ଦ୍ରବ୍ୟ ଅର୍ପଣ କରିବାର ଦୀର୍ଘ ତାଲିକା ଦିଆଯାଇଛି । ଏଗୁଡିକର ସଂଖ୍ୟା ହେଉଛି ୧୮୪ । ଶୁକ୍ଳ ଯଜୁର୍ବେଦ ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ନରମେଧ ଯଜ୍ଞରେ ନରବଳି ପଡୁନଥିଲା ବୋଲି ବର୍ଣ୍ଣିତ । ଶତପଥ ବ୍ରାହ୍ମଣରେ କୁହାଯାଇଛି 'ଯଜ୍ଞୋ ବୈ ବିଷ୍ଣୁଃ' ଅର୍ଥାତ୍ ଯଜ୍ଞ ହେଉଛି ଭଗବାନ । ଏହାର ତାତ୍ପର୍ଯ୍ୟ ହେଲା ଯାହାର ଯଜ୍ଞାର୍ଥ କର୍ମ ଯେତେ ବେଶି ସେ ସେତେ ଭଗବାନଙ୍କର ନିକଟତର ହୁଏ । ଯାହାର ସକଳ କର୍ମ ଯଜ୍ଞାର୍ଥ, ସେ ସ୍ୱୟଂ ଭଗବାନଙ୍କ ସହିତ ସମାନ ହୋଇଯିବ । ଏହିଭଳି ମାନସିକ ସ୍ଥିତି ଲାଗି ପ୍ରସ୍ତୁତ ହେବା ପାଇଁ ପୁରୁଷମେଧ ଯଜ୍ଞର କଳ୍ପନା କରାଯାଇଥିଲା । ଏହାର ଉଦ୍ଦେଶ୍ୟ ହେଲା ବ୍ୟକ୍ତିଗତ ପୁରୁଷାର୍ଥର ଅଭ୍ୟୁଦୟକୁ ବଳି ଦେଇ ନିଜକୁ ବିଶ୍ୱାତ୍ମା ସହିତ ସାମିଲ କରି ନେବା ଏବଂ ସାରା ବିଶ୍ୱର ଅଭ୍ୟୁଦୟ ଲାଗି ଉଦ୍ୟମ କରିବା । ପୁରୁଷମେଧ ଯଜ୍ଞର ଏହାହିଁ ହେଉଛି ପ୍ରତୀକାତ୍ମକ ଅର୍ଥ ।

ଶୁକ୍ଳ ଯଜୁର୍ବେଦର ଶେଷ ଅଧ୍ୟାୟରେ 'ଈଶାବାସ୍ୟୋପନିଷଦ' ଗ୍ରନ୍ଥଟି ରହିଅଛି । ଏଥିରେ ତ୍ୟାଗ ଓ ଭୋଗ ଏବଂ କର୍ମ ଓ ଜ୍ଞାନ ମଧ୍ୟରେ ସମନ୍ୱୟ ରକ୍ଷା କରି ନିରାସକ୍ତ କର୍ମ କରିଯିବା ପାଇଁ ଉପଦେଶ ଦିଆଯାଇଛି ।

**(ଡ) ବ୍ରାହ୍ମଣ ଗ୍ରନ୍ଥ ସମୂହ –**

ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ବେଦ ନିର୍ଦ୍ଦିଷ୍ଟ କର୍ମ କାଣ୍ଡ ମାନ ସମାହିତ କରିବା ଲାଗି ନିର୍ଦ୍ଦେଶ ଦିଆଯାଇଛି । ଐତରେୟ ବ୍ରାହ୍ମଣ, ଶତପଥ ବ୍ରାହ୍ମଣ ଓ ତାଣ୍ଡ୍ୟ ବ୍ରାହ୍ମଣ ଯଥାକ୍ରମେ ଋଗ୍ ବେଦ , ଯଜୁର୍ବେଦ ଓ ସାମବେଦର ଅନ୍ତର୍ବର୍ତ୍ତୀ । ଋଗ୍‌ବେଦରେ ବ୍ରହ୍ମଣ ହୋତାଙ୍କ ବିଭିନ୍ନ କର୍ତ୍ତବ୍ୟ ବିଷୟରେ କହିଥାଏ । ଯଜୁର୍ବେଦର ବ୍ରାହ୍ମଣ 'ଅଧ୍ୱର୍ଯ୍ୟୁ'ଙ୍କ ବିଭିନ୍ନ କର୍ତ୍ତବ୍ୟ ବିଷୟରେ କହିଥାଏ । ଅନୁରୂପ ଭାବରେ ସାମବେଦର ବ୍ରାହ୍ମଣ ଉଦ୍‌ଗାତାଙ୍କ ବିଭିନ୍ନ କର୍ତ୍ତବ୍ୟ ସଂପର୍କରେ କହିଥାଏ । ଏହି ଗ୍ରନ୍ଥ ଗୁଡିକର ଦୁଇଟି ଭାଗ ଅଛି । ଗୋଟିଏ ହେଲା ବିଧି ଅନ୍ୟଟି ହେଉଛି ଅର୍ଥବାଦ । ବିଧି ଭାଗଟିରେ ନିର୍ଦ୍ଦିଷ୍ଟ କର୍ମକାଣ୍ଡମାନ କିଭଳି ସମାହିତ ହେବ ସେ ସଂପର୍କରେ ଉପଦେଶ ଦିଆଯାଇଥାଏ । ଅର୍ଥବାଦବିଭାଗରେ ଅର୍ଥର ବିଶ୍ଳେଷଣ କରାଯାଇଥାଏ । ବ୍ରାହ୍ମଣ ଗ୍ରନ୍ଥ ଗୁଡିକ ମଧ୍ୟରେ ପ୍ରତୀକତା ରହିଅଛି ।

କୌଷୀତିକି ବ୍ରାହ୍ମଣ ଓ ଐତରେୟ ବ୍ରାହ୍ମଣ ହେଉଛନ୍ତି ଋଗ୍ ବେଦର ଅନ୍ତର୍ଗତ । ଏଗୁଡିକରେ ମୁଖ୍ୟତ ସୋମ ଯଜ୍ଞର ବିଭିନ୍ନ କର୍ମ କାଣ୍ଡ ବିଷୟରେ ଉଲ୍ଲେଖ ଅଛି । ତାଣ୍ଡ୍ୟ ବ୍ରାହ୍ମଣର ଅନ୍ୟ ନାମ ହେଉଛି ପଞ୍ଚବିଂଶ ବ୍ରାହ୍ମଣ । ଏଥିରେ ପଞ୍ଚବିଂଶ ଖଣ୍ଡ ସୂକ୍ତ ବିଦ୍ୟମାନ । ଏହା ଉଦ୍‌ଗାତାଙ୍କର ବିଭିନ୍ନ କର୍ମକାଣ୍ଡ ବିଷୟରେ ପୂର୍ଣ୍ଣ ଭାବରେ ସୂଚନା ଦେଇଥାଏ । ବିଭିନ୍ନ ସାମ ମନ୍ତ୍ରର ଉଚ୍ଚାରଣକୁ ନେଇ ଏହି ଯଜ୍ଞ ସମାହିତ ହେଉଥିବାରୁ ଏହାକୁ ସାମଯଜ୍ଞ କୁହାଯାଏ । ଏହାର ମୁଖ୍ୟତଃ ସାତଟି ନାମ ଦିଆଯାଇଥାଏ । ଯଥା- ଅଗ୍ନି ଷ୍ଟୋମ, ଅନ୍ତ୍ୟଗ୍ନି ଷ୍ଟୋମ, ଉକ୍‌ଥ୍ୟ, ଷୋଡଶୀ, ବାଜପେୟ, ଅତିରାତ୍ର ଓ ଆପ୍ତୋରାମ ।

ଆଉ ମଧ୍ୟ ବ୍ରାତ୍ୟଷ୍ଟୋମରେ ଯଜ୍ଞ ବିଷୟରେ ବିଧିବିଧାନ ଖଞ୍ଜି ଉପଦେଶ ଦିଆଯାଇଛି । ଆର୍ଯ୍ୟେତର ଗୋଷ୍ଠୀଙ୍କୁ ବ୍ରାତ୍ୟଷ୍ଟୋମ ଯଜ୍ଞ କରିବା ପରେ ଆର୍ଯ୍ୟ ସଂପ୍ରଦାୟରେ ଗ୍ରହଣ କରାଯାଉଥିଲା ।

ଯଜୁର୍ବେଦୀୟ ବ୍ରାହ୍ମଣ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ତୈତ୍ତିରୀୟ ବ୍ରାହ୍ମଣ । ଏଥିରେ ବ୍ରାହ୍ମଣ ଓ ସଂହିତା ଏକତ୍ର ଗ୍ରଥିତ । 'ଅଶ୍ୱମେଧ ଯଜ୍ଞ, ସୌତ୍ରାମଣି ଯଜ୍ଞ ଓ ପୁରୁଷ ମେଧ ଯଜ୍ଞ' ସମୟରେ କି କି କର୍ମ କାଣ୍ଡମାନ ସମାହିତ କରିବାକୁ ହେବ ସେ ବିଷୟରେ ଏଥିରେ ଉପଦେଶ ପ୍ରଦାନ କରାଯାଇଛି । ଶତପଥ ବ୍ରାହ୍ମଣ ହେଉଛି ଶୁକ୍ଳ ଯଜୁର୍ବେଦୀୟ ବ୍ରାହ୍ମଣ । ଏହାର ଅଧ୍ୟାୟକୁ 'ପଥ' ବୋଲି କୁହାଯାଏ । ତେଣୁ ଏହାର ନାମ 'ଶତପଥ ବ୍ରାହ୍ମଣ' । ଏହାର ମାଧ୍ୟାନ୍ଦିନ ଓ କାଣ୍ୱ ଶାଖା ବିଦ୍ୟମାନ । ଉପନୟନ , ସ୍ୱାଧ୍ୟାୟ (ବେଦାଧ୍ୟୟନ) ପ୍ରାୟଶ୍ଚିତ, ଅଶ୍ୱମେଧ, ପୁରୁଷ ମେଧ ଓ ସର୍ବମେଧ ଯଜ୍ଞ ଆଦି ବିଷୟରେ କି କି କର୍ମମାନ କରିବାକୁ ହେବ ସେ ସଂପର୍କରେ ଏଥିରେ ଉପଦେଶ ଦିଆଯାଇଛି । ଏହାର ଶେଷ ଛ'ଟି ଅଧ୍ୟାୟରେ ବୃହଦାରଣ୍ୟକ ଉପନିଷଦ୍‌ଟି ସ୍ଥାନିତ ।

'ଗୋପଥ' ବ୍ରାହ୍ମଣ ହେଉଛି 'ଅଥର୍ବ ବେଦୀୟ ବ୍ରାହ୍ମଣ' । ଏଥିରେ ଐତରେୟ , କୌଷୀତିକି, ଶତପଥ ଓ ପଞ୍ଚବିଂଶ ବ୍ରାହ୍ମଣ ସମୂହରୁ କିଛି ପଂକ୍ତି ସଂଗ୍ରହ କରାଯାଇ ସ୍ଥାନିତ ହୋଇଅଛି । ମୈତ୍ରାୟଣୀ ଓ ତୈତ୍ତିରୀୟ ସଂହିତାରୁ ମଧ୍ୟ କିଛି ପଂକ୍ତି ଏଥିରେ ସଂଯୁକ୍ତ ହୋଇଅଛି । 'ଗୋପଥ ଋଷି'ଙ୍କ ନାମକୁ ନେଇ ଏହାର ନାମ ଏପରି ରଖା ଯାଇଛି ବୋଲି ବିଶ୍ୱାସ । ଶୁଷ୍କ କର୍ମ କାଣ୍ଡ ବ୍ୟତୀତ ଉପରୋକ୍ତ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ନୈତିକତା , ଶୀଳ ଓ ମାନବର କର୍ତ୍ତବ୍ୟ ବିଷୟରେ ମଧ୍ୟ କୁହାଯାଇଛି ।

**(ଚ) ଆରଣ୍ୟକ ଓ ଉପନିଷଦ୍ —**

ଆରଣ୍ୟକ ଓ ଉପନିଷଦର ପୃଷ୍ଠଭୂମି ହେଲେ ବହୁ ଦେବତାଙ୍କୁ ଆରାଧନା କରିବା ପାଇଁ ଉଦ୍ଦିଷ୍ଟ ଥିବା ବିଭିନ୍ନ କର୍ମ କାଣ୍ଡ ଉପରେ କ୍ରମେ କ୍ରମେ ପଣ୍ଡିତଙ୍କର ଆସ୍ଥା ବିଚ୍ୟୁତି ଘଟିଲା। ଏହି ପୃଷ୍ଠଭୂମି ର କର୍ମକାଣ୍ଡ ଉପରେ କମ୍ ଗୁରୁତ୍ୱ ଦେଉଥିବା ଆରଣ୍ୟକର ପ୍ରଥମେ ସୃଷ୍ଟି ହୋଇଥିଲା । ଏହି ସମୟରେ ଯେଉଁ ଉପନିଷଦ୍ ସୃଷ୍ଟି ହେଲା ତାହା ସଂପୂର୍ଣ୍ଣ ଜ୍ଞାନନିଷ୍ଠ ଥିଲା । ଉପନିଷଦ୍‌ଗୁଡିକ ସତ୍ୟର ଅନୁସନ୍ଧାନ , ସତ୍ୟ ଉପରେ ଗୁରୁତ୍ୱ ଏବଂ ଜୀବନର ଲକ୍ଷ୍ୟ ସେହି ପରମ ସତ୍ୟ ନିକଟରେ ପହଞ୍ଚିବା ଏହାର ବାଣୀଥିଲା । ସତ୍ୟର ଜୟ ଏବଂ ଅସତ୍ୟର ନୁହେଁ ଉପନିଷଦ୍ କହୁଥିଲା (ସତ୍ୟମେବ ଜୟେତ ନାନୃତମ) । ଏହି ସତ୍ୟର ଅନୁସନ୍ଧାନ ପାଇଁ ଗଭୀର ଧ୍ୟାନର ଆବଶ୍ୟକତା ଥିବା ଏଥିରୁ ଅନୁମିତ ହୁଏ । ଆରଣ୍ୟକ ଉପନିଷଦ୍ ଗ୍ରନ୍ଥମାନଙ୍କରେ କର୍ମକାଣ୍ଡ ଉପରେ କମ୍ ଗୁରତ୍ୱ ଦିଆଗଲା ଓ ଜ୍ଞାନ କାଣ୍ଡ ଉପରେ ଅଧିକ ଗୁରୁତ୍ୱ ଦିଆଗଲା । 'ଚତୁରାଶ୍ରମ'ର ଶେଷ ଆଶ୍ରମ ଦ୍ୱୟ (ବାନପ୍ରସ୍ଥ ଓ ସନ୍ୟାସ) ଏହି ଜ୍ଞାନ କାଣ୍ଡର ପରିଚର୍ଯ୍ୟା ଲାଗି ସୁବିଧା ସୁଯୋଗ ଆଣି ଦେଇଥିଲା ।

**(ଛ) ସୂତ୍ରଗ୍ରନ୍ଥ ସମୂହ —**

ଉପନିଷଦ୍ ଯୁଗ ପରେ ଆସିଲା ସୂତ୍ର ଯୁଗ । ଏ ପର୍ଯ୍ୟନ୍ତ ଯେଉଁ ଗ୍ରନ୍ଥ ଗୁଡିକ ସଂପର୍କରେ ଆଲୋଚନା କରାଯାଇଛି ସେଗୁଡିକ ହେଉଛନ୍ତି ଶ୍ରୁତି । ଏହା ଶ୍ରବଣ ଲବ୍ଧ ଥିଲା । ଶ୍ରୁତିକୁ ମନେ ରଖି କର୍ମକାଣ୍ଡକୁ ସମାହିତ କରିବା ଅସମ୍ଭବ ହେବାରୁ ସୂତ୍ରର ସୃଷ୍ଟି ହେଲା । କ୍ଷୁଦ୍ର କ୍ଷୁଦ୍ର ପଂକ୍ତି ଆକାରରେ

ଏହି ନିର୍ଦ୍ଦେଶନାମା ଗୁଡିକୁ ମନେ ରଖିବାର ଉଦ୍ୟମ କରାଗଲା । ଏହାକୁ କୁହାଗଲା ସୂତ୍ର । ପ୍ରକାର ଭେଦରେ ସୂତ୍ର ହେଉଛି ଦୁଇପ୍ରକାର - ଯଥା 'ଶୌତ୍ର ସୂତ୍ର ଓ ସ୍ମାର୍ତ୍ତ ସୂତ୍ର' । 'ଶୌତ୍ର ସୂତ୍ରରେ ଶ୍ରୁତି' ନିର୍ଦ୍ଦିଷ୍ଟ ଯଜ୍ଞ ସଂପର୍କୀୟ କର୍ମକାଣ୍ଡମାନ ବର୍ଣ୍ଣିତ । ଠିକ୍ ଅନୁରୂପ ଭାବରେ 'ସ୍ମାର୍ତ୍ତ' ସୂତ୍ରରେ 'ସ୍ମୃତି' ନିର୍ଦ୍ଦିଷ୍ଟ ଯଜ୍ଞ ସଂପର୍କୀୟ କର୍ମ କାଣ୍ଡମାନ ବର୍ଣ୍ଣିତ । ଆଉ ଗୋଟିଏ ପ୍ରକାର୍ ସୂତ୍ର ଅଛି ଯାହାକୁ କୁହାଯାଏ 'ଶୁଲ୍ୱ ସୂତ୍ର । 'ଶୁଲ୍ୱ'ର ଅର୍ଥ ହେଲା ମାପିବା ଦଉଡି । ଏଥିରେ ଯଜ୍ଞ ବେଦୀ ଗଠନ ସଂପର୍କୀୟ ବିଭିନ୍ନ ମାପକଥା ବର୍ଣ୍ଣିତ । 'ସ୍ମାର୍ତ୍ତ ସୂତ୍ର' ପୁଣି ଦୁଇ ଭାଗରେ ବିଭକ୍ତ । ଗୋଟିଏ ହେଲା 'ଗୃହ୍ୟ ସୂତ୍ର' ; ଯହିଁରେ ଗୃହସ୍ଥଙ୍କର ଦୈନନ୍ଦିନ କର୍ତ୍ତବ୍ୟ ସହିତ ସଂପୃକ୍ତ କର୍ମକାଣ୍ଡମାନ ବର୍ଣ୍ଣିତ ହୋଇଅଛି । ଏଥିରେ ବିଭିନ୍ନ ସଂସ୍କାର (ଷୋଡଶ ସଂଖ୍ୟକ) ଦୈନିନ୍ଦିନ କରାଯାଉଥିବା ପଞ୍ଚମହାଯଜ୍ଞ ସଂପର୍କରେ ଟିକିନିକି ବର୍ଣ୍ଣନା ଦିଆଯାଇଛି । ଅପରଟି ହେଲା ଧର୍ମ ସୂତ୍ର ଏଥିରେ ଧର୍ମ ସଂପର୍କୀୟ ବିଭିନ୍ନ କର୍ମକାଣ୍ଡ ବର୍ଣ୍ଣିତ ।

**ପ୍ରାଚୀନ ଶ୍ରୌତ ଯଜ୍ଞ ପରମ୍ପରା –**

ପ୍ରାଚୀନ ଶ୍ରୌତ ଯଜ୍ଞ ପରମ୍ପରାରେ ଅଗ୍ନିଙ୍କ ଉଦ୍ଦେଶ୍ୟରେ ଏବଂ ଅଗ୍ନିଙ୍କ ମାଧ୍ୟମରେ ଯଜ୍ଞ ହବି ଅର୍ପଣ କରାଯିବାର ଦୃଷ୍ଟାନ୍ତ ମିଳିଥାଏ । ଏହି ଅଗ୍ନି ପୂଜା ଅତି ପ୍ରାଚୀନ । ଏଭଳିକି ଋଗ୍‌ବେଦର ଋଷି ଅଗ୍ନିଙ୍କୁ ପୂର୍ବଜମାନଙ୍କ ଦ୍ୱାରା ପୂଜିତ ବୋଲି କହିଅଛନ୍ତି । ତାଣ୍ଡ୍ୟ ବ୍ରାହ୍ମଣ କହିବା ଅନୁସାରେ ଅଗ୍ନି ହେଉଛି ଯଜ୍ଞର ମୁଖ ସ୍ୱରୂପ ।(୬୭) ଋଗ୍‌ବେଦରେ କୁହାଯାଇଛି ଅଗ୍ନି ସ୍ୱର୍ଗଲୋକର ଏବଂ ଭୂ ଲୋକର ସକଳ ହବିବହନ କରୁଥିବାରୁ ତାଙ୍କୁ ପୁରୋହିତ ଭାବରେ ଆବାହାନ କରାଯାଇଛି ।(୬୮) ଅଗ୍ନି ଦେବତା ତିନି ସ୍ଥାନରେ ସ୍ଥାନିତ ହେଉଥିଲେ । ଏହି ତିନି ଅଗ୍ନିଙ୍କ ନାମ ହେଲା 'ଗାର୍ହପତାଗ୍ନି, ଆହବହନୀୟାଗ୍ନି ଏବଂ ଦକ୍ଷିଣାଗ୍ନି' । ଗାର୍ହପତ୍ୟାଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପିତ ହେବାକୁ ଥିବା ଖାଦ୍ୟ ପଦାର୍ଥ, ଆହବହନୀୟାଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପିତ ହବି, ଦକ୍ଷିଣାଗ୍ନିରେ ପିତୃ ପୁରୁଷଙ୍କ ଲାଗି ଯଜ୍ଞ ଦ୍ରବ୍ୟ ଅର୍ପଣ କରାଯାଉଥିଲା । ପିତୃ ପୁରୁଷମାନେ ଦକ୍ଷିଣରେ ଥାନ୍ତି ବୋଲି ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା ।

ଅଗ୍ନି ପ୍ରସ୍ତୁତି ଦୁଇଟି କାଠ ଘଷି କରାଯାଉଥିଲା । ଏହି କାଠକୁ 'ଅରଣୀ' କୁହାଯାଉଥିଲା । ଏହା ଅଶତ୍ୱଥ କାଠରେ ତିଆରି ହେଉଥିଲା । ଅଶ୍ୱଥରୁ ଅଗ୍ନିଙ୍କର ଉଦ୍ଭବ ବୋଲି ଋଗ୍‌ବେଦରେ ବର୍ଣ୍ଣିତ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ବୈଦିକ ଯଜ୍ଞ ଓ ଅଗ୍ନିଙ୍କ ପୂଜା ବ୍ୟକ୍ତି କୈନ୍ଦ୍ରିକଥିଲା । ପ୍ରତ୍ୟେକ ପରିବାରରେ ଅଗ୍ନି ପୂଜାର ବ୍ୟବସ୍ଥା କରାଯାଇଥିଲା । ବୈଦିକ ସାହିତ୍ୟରେ ଯେଉଁ 'ସଭା' ଶବ୍ଦର ଉଲ୍ଲେଖ ଅଛି ସେଠାରେ ବସି ଗୋଷ୍ଠୀର ପୁରୁଖା ଲୋକ ମନ୍ତ୍ରଣା କରିଥାନ୍ତି । ସେମାନଙ୍କୁ ପାଛୋଟି ଆଣି ବସାଇବା ପାଇଁ ଯେଉଁ ଘରଟି ଥାଏ ତାହାର ନାମ ହେଉଛି 'ଆବସ୍ଥ' । ଯେଉଁମାନେ ଏହି ଘରେ ବସିବାକୁ ଯୋଗ୍ୟ ସେମାନଙ୍କୁ କୁହାଯାଉଥିଲା 'ଆବସ୍ଥୀ' । ଅଥର୍ବ ବେଦରେ ଏହି ସଭା ଗୃହରେ ଥିବା ଅଗ୍ନିଙ୍କୁ କୁହାଯାଇଛି 'ସଭ୍ୟ' । ଅଗ୍ନି ସଂସ୍ଥାପନ କରି ଅଥବା ଅଗ୍ନିଙ୍କୁ ସାକ୍ଷୀ ରଖି ବିଗ୍ରହ ଆଲୋଚନା କରାଯାଉଥିଲା

'ସଂହିତା' କାଳରେ ମଧ୍ୟ ବୈଦିକ ଯଜ୍ଞର ଖୁବ୍ ବିକାଶ ଘଟିଥିଲା ଏବଂ ଏଥି ସହିତ ଜଟିଳ କର୍ମ କାଣ୍ଡର ସଂପୃକ୍ତ ହୋଇ ପାରିଥିଲା । ଯଜ୍ଞ ନିମିତ୍ତ ନିଆଁ ଲଗାଇବା ଲୋକ ଥିଲେ 'ଅଗ୍ନୀଧ' ।

'ଯଜ୍ଞାଗ୍ନିକୁ' ସବୁବେଳେ ପ୍ରଦୀପ୍ତ କରି ରଖିବା ତାଙ୍କର କର୍ତ୍ତବ୍ୟ ଥିଲା । ବୈଦିକ ଆର୍ଯ୍ୟମାନେ ଅଗ୍ନି ଦେବତାଙ୍କୁ କେତେବେଳେ ପୁରୋହିତ ନାମ ଦେଇ ପୂଜା କରୁଥିଲେ ତ କେତେବେଳେ 'ହୋତା' ନାମ ଦେଇ ପ୍ରାର୍ଥନା କରୁଥିଲେ ।(୬୯) ଶ୍ରଦ୍ଧାର ସହିତ ପୁରୋହିତଙ୍କୁ ଦକ୍ଷିଣା ଦିଆ ଯାଉଥିଲା । ଋଗ୍‌ବେଦର ଗୋଟିଏ ସୂକ୍ତରେ ଶ୍ରଦ୍ଧାଙ୍କୁ ଦେବୀ ଭାବରେ ପ୍ରାର୍ଥନା କରାଯାଇଛି ।(୭୦) 'ଋଗ୍‌ବେଦ' କାଳୀନ ବିଭିନ୍ନ ଯଜ୍ଞ ମଧ୍ୟରେ ସୋମ ଯଜ୍ଞ ଥିଲା ପ୍ରଧାନ ।

ଶ୍ରୌତ ଯଜ୍ଞ ହେଉଛି ଦୁଇ ପ୍ରକାରର । ଗୋଟିଏ ହେଲା ନିତ୍ୟ ଅନ୍ୟଟି ନୈମିତ୍ତିକ । ନିତ୍ୟ ଯଜ୍ଞ ହେଲା ବାଧ୍ୟତାମୂଳକ । ତାହା ସମସ୍ତଙ୍କର କର୍ତ୍ତବ୍ୟ । "ଏହା କରି ଦେଲେ କିଛି ଫଳ ଶ୍ରୁତି ମିଳିବ ନାହିଁ । କିନ୍ତୁ ନକଲେ ବିପଦ ଆସିବ"।(୭୧) ଏହି ଉଦ୍ଦେଶ୍ୟ ନେଇ ବୈଦିକ ଆର୍ଯ୍ୟ 'ନିତ୍ୟ ଶ୍ରେଣୀୟ ଯଜ୍ଞ' କରୁଥିଲେ । କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ଯେଉଁ ଯଜ୍ଞ କରାଯାଏ ତାହା 'ନୈମିତ୍ତିକ' । ଉଦାହରଣ ସ୍ୱରୂପ ପୁତ୍ର ଲାଭ ପାଇଁ 'ପୁତ୍ରେଷ୍ଟି ଯଜ୍ଞ', ଦିଗ୍ ବିଜୟ ଲାଗି 'ଅଶ୍ୱମେଧ ଯଜ୍ଞ', ସିଂହାସନ ଆରୋହଣ ପରେ ଚକ୍ରବର୍ତ୍ତୀ ରାଜାଙ୍କର 'ରାଜସୂୟ ଯଜ୍ଞ' ଆଦି କରିବାର ବିଧାନ ଅଛି । ଅଗ୍ନିଙ୍କୁ ସଂସ୍ଥାପିତ କରିବା କର୍ମକୁ କୁହାଯାଏ 'ଅଗ୍ନ୍ୟାଧାନ' । ଯଜମାନଙ୍କ ବର୍ଣ୍ଣ ଉପରେ ଏହା ନିର୍ଭର କରିଥାଏ । ଏହା କୌଣସି ପର୍ବ ଦିନ, ପୂର୍ଣ୍ଣିମା, ଅମାବାସ୍ୟା ଦିନମାନଙ୍କରେ ସଂସ୍ଥାପିତ ହୋଇଥାଏ ।

ବ୍ରାହ୍ମଣଙ୍କ ଲାଗି ଦୈନିକ 'ଅଗ୍ନିହୋତ୍ର ଯଜ୍ଞ' କରିବାର ବିଧିଥିଲା । ସେଥିପାଇଁ କୁହାଯାଇଛି ବ୍ରାହ୍ମଣଙ୍କର ପ୍ରତ୍ୟହ 'ଅଗ୍ନିହୋତ୍ର' ଯଜ୍ଞ କରିବା ଉଚିତ୍ । 'ଶତପଥ ବ୍ରାହ୍ମଣ'ରେ ଏହାକୁ 'ଜରାମର୍ଯ୍ୟ' ସୂତ୍ର ବୋଲି କୁହାଯାଇଛି ।(୭୨) ଅଗ୍ନି ହୋତ୍ର ଯଜ୍ଞରେ ଦୁଗ୍ଧକୁ ହବି ସ୍ୱରୂପ ଅର୍ପଣ କରାଯାଇଥାଏ । 'ଗାର୍ହପତ୍ୟ' ଅଗ୍ନିରେ ଏହାକୁ ପାଣି ମିଶାଇ ଗରମ କରାଯାଏ ଏବଂ ଆହବନୀୟ ଅଗ୍ନିରେ ସୂର୍ଯ୍ୟ କିମ୍ବା ଅଗ୍ନି ଉଦ୍ଦେଶ୍ୟରେ ସମର୍ପଣ କରାଯାଏ ।

କୌଣସି ଜିନିଷ କାମନା କରି ଯେଉଁ ଯଜ୍ଞ କରାଯାଏ ତାହାର ନାମ 'ଇଷ୍ଟି ଯଜ୍ଞ' । 'ଇଷ୍ଟି ଯଜ୍ଞ' ନାନା ପ୍ରକାର । ସେଗୁଡିକର ଅନୁଷ୍ଠାନ ବିଧି ଦଶପୂର୍ଣ୍ଣମାସ ଯଜ୍ଞ ବିଧିର ଅନୁରୂପ । ଏହି ଦଶପୂର୍ଣ୍ଣମାସ ଯଜ୍ଞ ଅମାବାସ୍ୟା କିମ୍ବା ପୂର୍ଣ୍ଣିମାରେ ଅନୁଷ୍ଠିତ ହୋଇଥାଏ । ସେଥିପାଇଁ ବୈଦିକ ଆର୍ଯ୍ୟମାନଙ୍କ ନିକଟରେ ଏହି ଦୁଇ ଦିନ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ଅନ୍ୟାନ୍ୟ 'ଇଷ୍ଟି ଯଜ୍ଞ' ଗୁଡିକ ହେଲା- ପଶୁବନ୍ଧ, ସୋମ, ଅଗ୍ନିଷ୍ଟୋମ, ଅଶ୍ୱମେଧ, ଅଗ୍ନି ଚୟନ, ସୌତ୍ରାମଣୀ ଇତ୍ୟାଦି ।

**ବୈଦିକ ଗୃହ୍ୟ ଯଜ୍ଞ ସମୂହ –**

'ଗୃହ୍ୟ ଯଜ୍ଞ'ରେ କେବଳ ଗୋଟିଏ ପ୍ରକାର ଅଗ୍ନିଙ୍କର ପୂଜା କରାଯାଇଥାଏ । ଶ୍ରୌତ, ଯଜ୍ଞରେ ତିନି ପ୍ରକାର ଅଗ୍ନିଙ୍କର ପୂଜା କରାଯାଇଥାଏ । 'ଶ୍ରୌତ ଯଜ୍ଞ'ରେ ସୋମ ରସ ଅର୍ପଣ କରାଯାଇଥାଏ । ମାତ୍ର 'ଗୃହ୍ୟ ଯଜ୍ଞ'ରେ ତାହା କରାଯାଏ ନାହିଁ । 'ଶ୍ରୌତ ଯଜ୍ଞ'ରେ ବ୍ରାହ୍ମଣର ଆବଶ୍ୟକତା ପଡ଼ିଥାଏ ମାତ୍ର ଗୃହ୍ୟ ଯଜ୍ଞରେ ବାହାର ବ୍ରାହ୍ମଣଙ୍କର ଆବଶ୍ୟକତା ନଥାଏ । ପରିବାରର କର୍ତ୍ତାଙ୍କୁ ଏହା ସ୍ୱୟଂ ସମାହିତ କରିବାକୁ ପଡ଼ିଥାଏ । ଅତି ପ୍ରାଚୀନ କାଳରୁ ଏହି ଦୁଇ ପ୍ରକାର ଯଜ୍ଞ

ବୈଦିକ ଆର୍ଯ୍ୟମାନେ କରୁଥିଲେ । ଏପରିକି ଋଗ୍‌ବେଦ କାଳରେ ମଧ୍ୟ ଏ ବିଭାଗୀକରଣ ଥିଲା । ସୂତ୍ର ଯୁଗରେ ଗୃହ୍ୟ କର୍ମ କର୍ମାଣି ମଧ୍ୟ ସୂତ୍ରାନ୍ୱିତ କରାଯାଇଥିଲା । ଏଗୁଡିକୁ କୁହାଗଲା 'ଗୃହ୍ୟ ସୂତ୍ର' ।

ଗୃହସ୍ଥ ଅଗ୍ନିଙ୍କୁ ସବୁବେଳେ ପ୍ରଦୀପ୍ତ କରି ରଖୁଥିଲା । ଅଗ୍ନିଙ୍କର ସଂସ୍ଥାପନ ହେଉଥିଲା ବିବାହ ପରେ । ଲୋକ ମରିଗଲେ କିମ୍ବା ପରିବାର ମଧ୍ୟରେ ସଂପତ୍ତିର ବିଭାଜନ ଘଟିଲେ ମଧ୍ୟ ଅଗ୍ନିଙ୍କୁ ନୂତନ ଭାବରେ ସଂସ୍ଥାପନ କରାଯାଉଥିଲା । ସୂର୍ଯ୍ୟଙ୍କ ଉତ୍ତରାୟଣ କାଳରେ ଶୁକ୍ଳ ପକ୍ଷରେ କୌଣସି ଶୁଭ ମୂହୂର୍ତ୍ତ ଦେଖି ଅଗ୍ନି ସଂସ୍ଥାପିତ ହୋଇଥିଲେ । ସକାଳେ ଏବଂ ସଂଜରେ ଗୃହକର୍ତ୍ତାଙ୍କୁ ଏହି ଯଜ୍ଞ କରିବାକୁ ପଡୁଥିଲା । କୌଣସି କାରଣ ବଶତଃ ଗୃହପତି ଅନୁପସ୍ଥିତ ହେଲେ ବା ରୁଗ୍‌ଣାବସ୍ଥାରେ ତାଙ୍କ ସ୍ତ୍ରୀ ଏ କାର୍ଯ୍ୟ କରୁଥିଲେ । ଅଗ୍ନିଙ୍କୁ ସର୍ବଦା ପ୍ରଦୀପ୍ତ କରି ରଖିବା ଥିଲା ପରିବାରର କର୍ତ୍ତବ୍ୟ । 'ଶ୍ରୋତ ଯଜ୍ଞ' ଭଳି 'ଗୃହ୍ୟ ଯଜ୍ଞ'ରେ ପ୍ରାୟ ସମାନ ପ୍ରକାର ଦ୍ରବ୍ୟମାନ ହବି ସ୍ୱରୂପ ଅର୍ପଣ କରାଯାଉଥିଲା । ସକାଳ ବେଳା ସୂର୍ଯ୍ୟଙ୍କୁ, ଉପର ବେଳା ଅଗ୍ନିଙ୍କୁ ଆବାହନ କରି ତାଙ୍କ ଉଦ୍ଦେଶ୍ୟରେ 'ହବନ' କରାଯାଉଥିଲା । ହବନୀୟ ବସ୍ତୁଥିଲା ଗୁଉଳ କିମ୍ବା ଭାତ । ଯଜ୍ଞ ଶେଷରେ ଗୋଟିଏ କାର୍ଯ୍ୟ କରିବାକୁ ହେଉଥିଲା । ଯାହାର ନାମ ଥିଲା 'ଯଜ୍ଞବାସ୍ତୁ' । ଏଥିରେ କିଛି କୁଶକୁ ଘିଅରେ ବୁଡାଇ ତାହା ଉପରେ ପାଣି ଛିଞ୍ଚି ଅଗ୍ନିଙ୍କୁ ଅର୍ପଣ କରାଯାଉଥିଲା । ସେତେବେଳେ ରୁଦ୍ରଙ୍କ ଲାଗି ଏକ ଆବାହନୀ ମନ୍ତ୍ର ବୋଲା ଯାଉଥିଲା ।

ପ୍ରତ୍ୟେକ ବ୍ୟକ୍ତିଙ୍କୁ ପଞ୍ଚମହାଯଜ୍ଞ କରିବାକୁ ହେଉଥିଲା । ଅନ୍ୟମାନଙ୍କ ପ୍ରତି ଏଭଳିକି ଇତର ପଶୁ ପକ୍ଷୀଙ୍କ ପ୍ରତି ଥିବା କର୍ତ୍ତବ୍ୟ କୁ ଏହା ସଚେତନ କରୁଥିଲା । ପିତୃ ପରୁଷଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖାଇବା ଲାଗି ଏହା ଶିକ୍ଷା ଦେଉଥିଲା । ପ୍ରତି ଅମାବାସ୍ୟା ଓ ପୂର୍ଣ୍ଣିମା ଦିନ ଗୃହ୍ୟ ଯଜ୍ଞ କରାଯାଉଥିଲା । ଏଥିରେ ପିଠା ପରିବର୍ତ୍ତେ ଭାତ ରାନ୍ଧି କରି ଅର୍ପଣ କରାଯାଉଥିଲା । ଏହାକୁ କୁହାଯାଉଥିଲା 'ସ୍ଥାଳୀପାକ' । ଏହା ଛଡା ଅନେକ ଗୃହ୍ୟ ଯଜ୍ଞ ଥିଲା । ସେଗୁଡିକ ହେଲା- **(କ) ଶ୍ରାବଣୀ ଯଜ୍ଞ -** ଶ୍ରାବଣ ପୂର୍ଣ୍ଣିମାରେ ସର୍ପମାନଙ୍କ ଉଦ୍ଦେଶ୍ୟରେ ଏହା କରାଯାଉଥିଲା । **(ଖ) ଆଗ୍ରାହାୟଣୀ ଯଜ୍ଞ -** ଏହା ମାର୍ଗଶିର ପୂର୍ଣ୍ଣିମାରେ ସମାହିତ ହେଉଥିଲା । ଏହାର ନାମ ମଧ୍ୟ ଥିଲା ପ୍ରଣବ ରୋହଣ ବା ପୁଣି ଥରେ ତଳକୁ ଆସିବା **(ଗ) କୃଷି ଯଜ୍ଞ ସମୂହ -** ହଳ କରିବା ଠାରୁ ଆରମ୍ଭ କରି ଫସଲ ଅମଳ କରିବା ପର୍ଯ୍ୟନ୍ତ ଏହି ଯଜ୍ଞ ସମୂହ ଅନୁଷ୍ଠିତ ହେଉଥିଲା । **(ଘ) ଶୂଳଗବ ଯଜ୍ଞ -** ଏଥିରେ ରୁଦ୍ରଙ୍କ ଉଦ୍ଦେଶ୍ୟରେ ଗୋଟିଏ ଷଣ୍ଢ କିମ୍ବା ବଳଦକୁ ବଳି ସ୍ୱରୂପ ଅର୍ପଣ କରାଯାଉଥିଲା । ଏହା ଗାଁ ବାହାରେ କରାଯାଉଥିଲା । **(ଙ) ବୌଦ୍ଧ ବିହାର ଯଜ୍ଞ -** କିଛି ଭାତକୁ ଘିଅରେ ଗୋଳାଇ ତାହାକୁ 'ପଳାଶ' ପତ୍ରରେ ବାନ୍ଧି ଗଛରେ ଟାଙ୍ଗି ଦିଆଯାଉଥିଲା । **(ଚ) ସ୍ଥାଳୀପାକ ଯଜ୍ଞ -** ଏଥିରେ ରନ୍ଧା ଖାଦ୍ୟକୁ କ୍ଷେତ୍ରପତିଙ୍କ ଉଦ୍ଦେଶ୍ୟରେ ଅର୍ପଣ କରାଯାଉଥିଲା । ଷଣ୍ଢକୁ କ୍ଷେତ୍ର ପତି ଭାବି ଗୋରୁ ଗାଈଙ୍କ ଯିବା ରାସ୍ତାରେ ଏ ଖାଦ୍ୟକୁ ରଖାଯାଉଥିଲା । **(ଛ) ବୃଷୋତ୍ସର୍ଗ ଯଜ୍ଞ -** କାର୍ତ୍ତିକ ପୂର୍ଣ୍ଣିମାରେ ଭଲ ଷଣ୍ଢଟିଏ ଗାଈ ପଲ୍ଲରେ ଛାଡି ଦିଆଯାଉଥିଲା । ଏହାର ଉଦ୍ଦେଶ୍ୟ ହେଲା ଭଲ ବାଛୁରୀ ଜନ୍ମ କରାଇବା । **(ଜ) ଅତିଥି ସତ୍କାର ଯଜ୍ଞ -** ଏଥିରେ ଅତିଥିମାନଙ୍କୁ ଅଭ୍ୟର୍ଥନା କରି ଖାଇବା ପିଇବାକୁ ଦିଆଯାଉଥିଲା । ସେମାନଙ୍କୁ ମଧୁପର୍କ ଅର୍ପଣ କରାଯାଉଥିଲା । **(ଝ) ଗୃହ ନିର୍ମାଣ ଯଜ୍ଞ -** ଏହା ଘର ତିଆରି ଉଦ୍ଦେଶ୍ୟରେ କରାଯାଉଥିଲା ।

ଏହା ବ୍ୟତୀତ ପ୍ରତ୍ୟେକ ବ୍ୟକ୍ତି 'ଷୋଡ଼ଶ ସଂସ୍କାର' ମଧ୍ୟ ଦେଇ ଗତି କରୁଥିଲା । ପ୍ରତ୍ୟେକଟି ସଂସ୍କାର ସମୟରେ ଯଜ୍ଞ କରିବାକୁ ପଡୁଥିଲା ଏବଂ ପ୍ରତ୍ୟେକ ଯଜ୍ଞ ଲାଗି ସ୍ୱତନ୍ତ୍ର ବିଧି ବିଧାନ ଥିଲା ।

**ମୃତ କର୍ମ ଓ ଶ୍ରାଦ୍ଧ –**

ବୈଦିକ କାଳରେ ମୃତକର୍ମ ଲାଗି ବିଧି ବିଧାନ ଖଞ୍ଜା ଯାଇଥିଲା । ଶବ ସଂସ୍କାର ଓ କବର ଦେବା ପଦ୍ଧତି ଅନୁସୃତ ହେଉଥିଲା । ଉଚ୍ଚ ବର୍ଣ୍ଣର ଲୋକମାନଙ୍କ ପ୍ରତି ସଂସ୍କାର ବିଧି ପ୍ରଚଳିତ ଥିଲା । ଋଗ୍‌ବେଦରେ କବର ଦେବା ପ୍ରସଙ୍ଗରେ କେତେକ ମନ୍ତ୍ର ଦେଖିବାକୁ ପାଇଥାଉ । "ତୁମେ ଏବେ ଶୁଭଙ୍କରୀ ପୃଥିବୀ ମାତାଙ୍କ ବକ୍ଷକୁ ଚାଲିଯାଅ" । (୭୩) ପୁଣି·ଅନ୍ୟ ଏକ ମନ୍ତ୍ର ରେ ପୃଥିବୀ ମାତାଙ୍କୁ ଆବହ୍ୱାନ କରି କୁହାଯାଇଛି "ହେ ପୃଥିବୀ ମାତା ! ମାଆ ପୁଅକୁ କୋଳରେ ଚାପି ରଖିଲା ଭଳି ତୁମେ ଏହାଙ୍କୁ କୋଳରେ ଧରି ରଖ"।(୭୪) ଅଥର୍ବ ବେଦରେ ଯେଉଁ ମାନଙ୍କୁ ଦାହ କରାଯାଉନଥିଲା ସେମାନଙ୍କୁ କୁହାଯାଉଥିଲା "ଅନଗ୍ନି ଦଗ୍ଧାଃ"।(୭୫) କିନ୍ତୁ ଯଜୁର୍ବେଦରେ କୁହାଯାଇଛି "ପ୍ରାଣ.ବାୟୁ ହେଉଛି ଅନନ୍ତ ଜୀବନ । ଏ ଶରୀରର ଶେଷ ପରିଣତି ହେଉଛି ପାଉଁଶ"।(୭୬) ଏଥିରୁ ଅନୁମିତ ହୁଏଯେ ପ୍ରାଥମିକ ଅବସ୍ଥାରେ ଶବ ସଂସ୍କାର ଓ ଶବକୁ କବର ଦେବା ପଦ୍ଧତି ଅନୁସୃତ ଥିବାବେଳେ ଯଜୁର୍ବେଦ ସମୟକୁ ଶବ ସଂସ୍କାର ପଦ୍ଧତି ଲୋକ ପ୍ରିୟ ହୋଇଥିଲା ।

ମୃତ ବ୍ୟକ୍ତିଙ୍କୁ ମୁଣ୍ଡିତ ମସ୍ତକ କରାଯାଏ ଏବଂ ତାଙ୍କ ନଖ କଟାଯାଏ । ତତ୍‌ପରେ ଗାଇ ଟାଣୁଥିବା ଶଗଡ଼ରେ ତାଙ୍କୁ ଶ୍ମଶାନକୁ ନିଆଯାଏ । ବୈଦିକ କାଳରେ ଏହି ପଦ୍ଧତି ଅନୁସୃତ ହେଉଥିଲା । ପରବର୍ତ୍ତୀ ସମୟରେ 'କୋକେଇ ବାଉଁଶ'ର ବ୍ୟବସ୍ଥା କରାଗଲା । ଚିତାରେ ତିନି କୁଣ୍ଡରୁ ନିଆଁ ଅଣା ଯାଇଥାଏ ଏହି ତିନି ପ୍ରକାର ଜାଗାରେ ନିଆଁ ଲଗାଇ ଦିଆଯାଏ । ସଂପୃକ୍ତ ବ୍ୟକ୍ତିଙ୍କ ଘରୁ ତିନି ପ୍ରକାର ଅଗ୍ନି ଅଣା ଯାଇଥାଏ । ତାହା ହେଲା - "ଗାର୍ହପତ୍ୟାଗ୍ନି, ଆହବନୀୟାଗ୍ନି ଓ ଦକ୍ଷିଣାଗ୍ନି"। ମୃତବ୍ୟକ୍ତି ଯଦି କ୍ଷତ୍ରିୟ ହୋଇଥାନ୍ତି ତାଙ୍କ ହାତରେ ଧନୁକୁ ଧରାଇ ଦିଆଯାଏ । ତାପରେ ତାଙ୍କ ପତ୍ନୀ ତାଙ୍କ ଚିତାଗ୍ନିରେ ଶୁଅନ୍ତି । ତାଙ୍କର ଦେବର କିମ୍ବା ଦେବର ନଥିଲେ ପରିବାରର ଅନ୍ୟ କେହି ବ୍ୟକ୍ତି ତାଙ୍କୁ ଚିତାଗ୍ନିରୁ ଉଠାଇ ଆଣନ୍ତି । ଏ ପ୍ରକାର ଚିତାରେ ଶୋଇବା ଥିଲା ଏକ ପ୍ରତୀକ ଦାହ । ଏହାର ତାତ୍ପର୍ଯ୍ୟ ହେଲା ସେ ପତିଙ୍କ ସହିତ ଦାହ ହୋଇଗଲେ ଏବଂ ସେ ଏଣିକି ବିବାହ କରି ନୂତନ ଭାବରେ ଘର ସଂସାର କରିପାରିବେ । ଗୋଟିଏ ଛେଳି ଏବଂ ଗୋଟିଏ ଗାଇକୁ ଚିତାଗ୍ନି ଲାଗି ବଳି ସ୍ୱରୂପ ଅର୍ପଣ କରାଯାଏ ଏବଂ ଉକ୍ତ ପଶୁ ଦ୍ୱୟଙ୍କ ମାଂସକୁ ଶବ ପାଖରେ ରଖାଯାଏ । ଏହି ମାଂସ ଅଗ୍ନି ଏବଂ ମୃତ ବ୍ୟକ୍ତିଙ୍କ ଲାଗି ଅର୍ପଣ କରାଯାଏ । (୭୭) "ଶବ ସଂସ୍କାର ହେଉଥିବା ବେଳେ ମୃତ ବ୍ୟକ୍ତିଙ୍କ ଲାଗି ବିଭିନ୍ନ ମନ୍ତ୍ରମାନ ବୋଲାଯାଇ ତାଙ୍କୁ ପୂର୍ବଜମାନଙ୍କ ଭଳି ଯମ ଓ ବରୁଣଙ୍କ ପୁରକୁ ଯିବା ପାଇଁ କୁହାଯାଏ"।(୭୮)

ଶବ ସଂସ୍କାର ହୋଇ ସାରିବା ପରେ ସ ପିଣ୍ଡକ କୁଟୁମ୍ବମାନେ ଶ୍ମଶାନରୁ ଫେରନ୍ତି । ସେମାନେ ଚିତାଗ୍ନି ଆଡ଼କୁ ଚାହାଁନ୍ତି ନାହିଁ । ଶ୍ମଶାନରୁ ଫେରି ଘରକୁ ଯିବା ପୂର୍ବରୁ ନିଆଁ, ଗୋବର ପାଣି ଆଦିକୁ ସ୍ପର୍ଶ କରନ୍ତି । ମୃତ ବ୍ୟକ୍ତିଙ୍କର ଶୁଦ୍ଧି କାର୍ଯ୍ୟ ବାରଦିନ ପର୍ଯ୍ୟନ୍ତ ଚାଲେ । ମୃତ୍ୟୁର ଦ୍ୱାଦଶ ଦିନ ସପିଣ୍ଡୀକରଣ ବା ଶ୍ରାଦ୍ଧକର୍ମ ଅନୁଷ୍ଠିତ ହୁଏ । ଏ ପର୍ଯ୍ୟନ୍ତ ମୃତ ବ୍ୟକ୍ତିର ଆତ୍ମା ପ୍ରେତ ଅବସ୍ଥାରେ ଥାଆନ୍ତି । ଏହି

ପିଣ୍ଡଦାନ ପରେ ପିତୃ ଶ୍ରେଣୀ ଭୁକ୍ତ ହୁଅନ୍ତି । 'ପ୍ରେତ' ପିତୃ ଶ୍ରେଣୀ ଭୁକ୍ତ ହେବା ନିମିତ୍ତ ନିର୍ଦ୍ଦିଷ୍ଟ ବିଧି ବିଧାନ ମାନ ରହିଅଛି । ମୃତ ବ୍ୟକ୍ତି ଙ୍କର ଜ୍ୟେଷ୍ଠ ପୁତ୍ରଙ୍କୁ ଏହି ବିଧି ବିଧାନ କରିବାକୁ ହୋଇଥାଏ । ଚାରୋଟି ମାଠିଆରେ ପାଣି ଭର୍ତ୍ତି କରି ଅଣାଯାଏ । ଗୋଟିଏ ମାଠିଆ ପ୍ରେତଙ୍କ ଲାଗି ଉଦ୍ଦିଷ୍ଟ । ଅନ୍ୟ ତିନୋଟି ମାଠିଆ ଯଥା କ୍ରମେ ତାଙ୍କ ପିତା, ପିତା ମହ ଓ ପ୍ରପିତାମହ ଲାଗି ଉଦ୍ଦିଷ୍ଟ । ଚାରିଗୋଟି ପିଣ୍ଡ ତିଆରି କରାଯାଏ । ପ୍ରଥମ ପିଣ୍ଡଟି ଥାଏ ପ୍ରେତଙ୍କ ଲାଗି ଉଦ୍ଦିଷ୍ଟ । ଏଥିରୁ କିଛି ନେଇ ଅନ୍ୟ ତିନି ମାଠିଆରେ ପକାଇ ଦିଆଯାଏ । ସେତେବେଳେ 'ଋଗ୍‌ବେଦ'ର ଗୋଟିଏ ମନ୍ତ୍ର ପାଠ କରାଯାଇଥାଏ । (୭୯) ଏହି ପ୍ରକ୍ରିୟାରେ ପ୍ରେତ ପିତୃ ଶ୍ରେଣୀ ଭୁକ୍ତ ହୋଇଯାଏ । ଉତ୍ତମ ପୁରୁଷମାନଙ୍କ ପାଖରୁ ଶ୍ରାଦ୍ଧ ମାଧ୍ୟମରେ ପିଣ୍ଡ ପାଇବାର ଯୋଗ୍ୟତା ହାସଲ କରନ୍ତି । ପ୍ରତି ମାସରେ ଶ୍ରାଦ୍ଧ ଦିଆଯାଇଥାଏ । ଅବଶ୍ୟ ଏହା କାଳ କ୍ରମେ ବାର୍ଷିକ ଶ୍ରାଦ୍ଧ ପଦ୍ଧତିରେ ପରିଣତ ହେଲାଣି । ମୃତକ ପିଣ୍ଡ ପାଇବାର ଅଧିକାରୀ ହେବା ପରେ ତାଙ୍କ ପ୍ରପିତାମହ ପିଣ୍ଡ ପାଇବାରୁ ବଞ୍ଚିତ ହୁଅନ୍ତି । କାରଣ ସେ ପିତୃ ଗଣଠାରୁ ଉଚ୍ଚତର ସ୍ତରକୁ ଚାଲି ଯାଆନ୍ତି । ପିତା, ପିତାମହ, ପ୍ରପିତାମହଙ୍କ ଉଦ୍ଦେଶ୍ୟରେ ପିଣ୍ଡ ପ୍ରଦାନ କରାଯାଇଥାଏ ।

ମୃତ ବ୍ୟକ୍ତିଙ୍କର ଅସ୍ଥ୍ୟାଂଶ ନେଇ ସମାଧି ତିଆରି କରିବାର ବ୍ୟବସ୍ଥା ବୈଦିକ କାଳରେ ଥିଲା । 'ଶତପଥ ବ୍ରାହ୍ମଣ'ରେ ଏହା ଉଲ୍ଲିଖିତ । ଋଗବେଦରେ ଗୋଟିଏ ମନ୍ତ୍ରରେ ଏ ପ୍ରକାର ସମାଧି ଦେବା କଥାର ଉଦ୍ଦେଶ୍ୟ ଅଛି ।(୮୦) ଆର୍ଯ୍ୟମାନଙ୍କ ନିକଟରେ ପୂର୍ବଜମାନେ ଥିଲେ ପୂଜ୍ୟ । ଶ୍ରାଦ୍ଧ ସର୍ବଦା ଅମାବାସ୍ୟା ଦିନ ଅପରାହ୍ନରେ ସମାହିତ ହେଉଥିଲା । ଅମାବାସ୍ୟାର ଅନ୍ୟନାମ ପର୍ବଣ । ତେଣୁ ଏହି ଶ୍ରାଦ୍ଧକୁ କୁହାଯାଉଥିଲା 'ପାର୍ବଣ' । ଏଥିରେ ଦକ୍ଷିଣାଗ୍ନିରେ ଅନ୍ନ ଓ ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ ରାନ୍ଧି ବ୍ରାହ୍ମଣମାନଙ୍କୁ ଭୋଜନ ଦିଆଯାଏ । ଏମାନଙ୍କ ସଂଖ୍ୟା ଅତିକ୍ରମରେ ତିନି ବା ତାହାର ଗୁଣିତକ ହେଉଥିଲା । ତିନି ଜଣଙ୍କ ମଧ୍ୟରୁ ଜଣକୁ ପିତା, ଅନ୍ୟ ଜଣକୁ ପିତାମହ ଏବଂ ତୃତୀୟକୁ ପ୍ରପିତାମହ ଭାବରେ ଗ୍ରହଣ କରାଯାଏ । ଯଦି କିଛି ଅନ୍ନ ବଳେ ତାହାକୁ ନେଇ ପିଣ୍ଡଦାତା ତାଙ୍କ ତିନି ପୁରୁଷଙ୍କୁ ପିଣ୍ଡ ଦିଅନ୍ତି । ଘରର ଦକ୍ଷିଣ ଦିଗରେ ତିନୋଟି ଗାତ ଖୋଳାଯାଏ ଏବଂ ଦକ୍ଷିଣ ଦିଗକୁ ମୁହଁ କରିଥିବା ଗାତରେ ଘାସ ସବିଛା ଯାଏ । ତହିଁରେ ଜଳନ୍ତା ଅଙ୍ଗାର ରଖାଯାଏ । ତତ୍‌ପରେ ତିନୋଟି ପାତ୍ର ସେହି ଗାତ ପାଖରେ ରଖାଯାଏ । ଏହି ପାତ୍ର ମଧ୍ୟରୁ ଗୋଟିଏ ଧାତୁରେ ତିଆରି , ଅନ୍ୟଟି ପଥରରେ, ତୃତୀୟଟି ମାଟିରେ ତିଆରି ହୋଇଥାଏ । ପାଣି ଢାଳି ପିଣ୍ଡ ଦାତା ପିତୃ ପୁରୁଷଙ୍କୁ ଗାଧୋଇବାକୁ ଡାକନ୍ତି । ତାହାପରେ ପିଣ୍ଡ ଗୁଡିକ ତିନି ଗାତରେ ରଖାଯାଏ । ପ୍ରତ୍ୟେକ ପିତୃଙ୍କୁ ଡକାଯାଇ ପିଣ୍ଡ ଖାଇବାକୁ ଅନୁରୋଧ କରାଯାଏ । ପିତୃଙ୍କ ଲାଗି ସୂତା ଲୁଗା କିମ୍ବା ପଶମ ଲୁଗା ଅର୍ପଣ କରାଯାଏ । ଏହାଥିଲା ମୃତବ୍ୟକ୍ତିଙ୍କ ପାଇଁ ବୈଦିକ ପରମ୍ପରା ।



## ଅଷ୍ଟମ ପରିଚ୍ଛେଦ

# ବୈଦିକ ଦର୍ଶନ

ଋଗ୍ ବେଦ ହେଉଛି ବିଶ୍ୱର ପ୍ରାଚୀନତମ ଗ୍ରନ୍ଥ । ସେହି ଦୃଷ୍ଟିରୁ ବିଗ୍ଣର କରି ଋଗ୍ ବେଦ କାଳକୁ ବୈଦିକ ଦର୍ଶନର ପ୍ରାଥମିକ କାଳ ଭାବରେ ଗ୍ରହଣ କରାଯାଇଥାଏ । ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ ଋଗ୍‌ବେଦର ସହସ୍ର ସହସ୍ର ବର୍ଷ ପୂର୍ବରୁ ଭାରତରେ ଏକ ଆର୍ଯ୍ୟ ସଭ୍ୟତା ପ୍ରତିଷ୍ଠିତ ଥିଲା ଏବଂ ଅନେକ ଋଷି ମଧ୍ୟ ଥିଲେ । ସେମାନେ ମଧ୍ୟ ଭଗବାନ ଅଗ୍ନିଙ୍କର ପୂଜା କରୁଥିଲେ । ଏକଥା ଋଗ୍‌ବେଦରେ ମଧ୍ୟ ସ୍ୱୀକାର କରାଯାଇଛି । ଏହି ପଂକ୍ତିରେ କୁହାଯାଇଛି 'ଅଗ୍ନି ଦେବଙ୍କୁ ପୂର୍ବରୁ ଋଷିମାନେ ପୂଜା କରୁଥିଲେ ଏବଂ ଏବେ ନୂଆ ଋଷିମାନେ ମଧ୍ୟ ପୂଜା କରୁ ଅଛନ୍ତି' ।(୧) ଅନ୍ୟ ଏକ ସ୍ଥାନରେ ବର୍ଣ୍ଣିତ ହୋଇଅଛି ଯେ "ପୂର୍ବରୁ ଯେଉଁ ଋଷିମାନେ ଆମ ପାଇଁ ବାଟ ଦେଖାଇ ଯାଇ ଅଛନ୍ତି ଆମେ ସେମାନଙ୍କ ପ୍ରତି ନମସ୍କାର ଜଣାଉଛୁ"।(୨) ଏହାର ତାତ୍ପର୍ଯ୍ୟ ହେଲା ଋଗ୍‌ବେଦର ପୂର୍ବରୁ ମୁନି ଋଷିମାନେ ଥିଲେ ଏବଂ ସେମାନଙ୍କର ଏକ ଦାର୍ଶନିକ ଦୃଷ୍ଟିକୋଣ ମଧ୍ୟ ଥିଲା । ଯାହାର ପରମ୍ପରା ବୈଦିକ ସଂସ୍କୃତିରେ ପ୍ରତିଫଳିତ ।

**(କ) ଧର୍ମ ଓ ଦର୍ଶନ :-**

ଋଗ୍‌ବେଦ କାଳରେ ଧର୍ମ ଓ ଦର୍ଶନ ମଧ୍ୟରେ ବିଭାଜକ ରେଖା ନଥିଲା । ବୈଦିକ ଦେବତାଙ୍କୁ ତୁଷ୍ଟ କରିବା ପାଇଁ ବିଭିନ୍ନ ପ୍ରାର୍ଥନା ଓ ଯଜ୍ଞ ବିଧିର ଆବିଷ୍କାର ଆଦି ଥିଲା ବୈଦିକ ଧର୍ମ ଧାରଣାର ସାଧାରଣ ବିଷୟବସ୍ତୁ । ଏହିସବୁ ବିଷୟ ବସ୍ତୁକୁ କେନ୍ଦ୍ର କରି ବୈଦିକ ଦର୍ଶନ ଗଢି ଉଠିଥିଲା । ବୈଦିକ ଦେବତାଙ୍କ ବିଭିନ୍ନତା ସତ୍ତ୍ୱେ ବୈଦିକ ଋଷିମାନେ ସେମାନଙ୍କ ମଧ୍ୟରେ ଏକ ପରମେଶ୍ୱରଙ୍କ ଅଭିପ୍ରକାଶକୁ ଉପଲବ୍ଧି କରୁଥିଲେ ।(୩) ଏହି ଏକେଶ୍ୱରବାଦ ଉପନିଷଦରେ ପରଂବ୍ରହ୍ମ ଆକାରରେ କଳ୍ପିତ ହେଲା । ଏହି ଚିନ୍ତାଧାରାକୁ କେନ୍ଦ୍ର କରି ଯେଉଁ ଦର୍ଶନ ଗଢି ଉଠିଥିଲା ତାହାକୁ ବେଦାନ୍ତ ଦର୍ଶନ କୁହାଗଲା । ଏହି ଧର୍ମକୁ ବା ଦର୍ଶନକୁ ଆର୍ଯ୍ୟ ଋଷିମାନେ କେବଳ ସ୍ଥୂଳ ଦେହରେ କିମ୍ବା ମନରେ ଉପଲବ୍ଧି କରୁ ନଥିଲେ । ସେମାନେ ଏହାକୁ ସହଜାତ ଜ୍ଞାନ ଦ୍ୱାରା ଅନୁଭବ କରି ପାରୁଥିଲେ । ବୈଦିକ ଋଷିମାନଙ୍କ ମନୋରାଜ୍ୟରେ ଯେଉଁ ସତ୍ୟର ଆଲୋକ ଉଦ୍‌ଭାସିତ ହୋଇ ଉଠିଥିଲା ତାହାକୁ ସେ ପ୍ରକୃତ ମାନବ ଜୀବନରେ ଉପଲବ୍ଧ କରାଇ ପାରିଥିଲେ ।

ବୈଦିକ କାଳରୁ ଧର୍ମ ଓ ଦର୍ଶନ କାୟା ସହିତ ଛାୟା ଲାଗି ରହିଥିବା ଭଳି ଜଡିତ ହୋଇ ରହିଅଛନ୍ତି । ବୈଦିକ ଦର୍ଶନ ଜୀବନକୁ କେବେ ଛାଡି ନାହିଁ । ଦୁଃଖକୁ ଚିହ୍ନିବାର ଚେଷ୍ଟା କରିଛି ଏବଂ ଏହାର ନିରାକରଣ ପାଇଁ ନିର୍ଦ୍ଦିଷ୍ଟ ପନ୍ଥା ଆବିଷ୍କାର କରିଅଛି । ଜୀବନରେ ଦୁଃଖ ଥିଲେ ସୁଖ କିଭଳି ମିଳିବ; ନିରାନନ୍ଦ ଥିଲେ ଆନନ୍ଦ କିଭଳି ମିଳିବ, ମୃତ୍ୟୁ ଯଦି ଅଛି ସେଥିରୁ ଉତ୍ତୀର୍ଣ୍ଣ ହେବା ପାଇଁ ପଥ ଆବିଷ୍କାର କରିଛି । ବୈଦିକ ଦର୍ଶନରେ ଆଧ୍ୟାତ୍ମିକତା ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି । ଆର୍ଯ୍ୟ ଶବ୍ଦ କୌଣସି ଧର୍ମ କିମ୍ବା ଜ୍ଞାନ ସହିତ ସମ୍ପର୍କିତ ନୁହେଁ .ଆର୍ଯ୍ୟୋତ୍ତର ଜୀବନ ଚର୍ଯ୍ୟା ସହିତ ସମ୍ବନ୍ଧ ଅଛି । ଠିକ୍ ସେହିଭଳି ଆର୍ଯ୍ୟ ଦର୍ଶନ ଜୀବନ ସହିତ ସଂବନ୍ଧିତ ।

ବୈଦିକମନ୍ତ୍ର ଗୁଡିକ ଅନୁଧ୍ୟାନ କଲେ ଦେଖିବାକୁ ମିଳେ ଆର୍ଯ୍ୟମାନେ ଜୀବନର ଆନନ୍ଦରେ ସର୍ବଦା ଅଧୀର ଥିଲେ । "ଏହାର ପବନରେ ମହୁ ଝରୁ ଥିଲା ଏହାର ସମୁଦ୍ରରୁ ମହୁ ଝରୁ ଥିଲା । ଏହାର ବନୌଷଧରୁ ମହୁ ଝରୁ ଥିଲା । ପୃଥିବୀ ସାରା ବହି ଯାଉଥିଲା ମହୁର ଝରଣା । ସେମାନେ ଜୀବନର ପୂର୍ଣ୍ଣତା ଓ ଆନନ୍ଦରେ ଉଛୁଳି ପଡୁଥିଲେ" । (୪) ଏହି ଆନନ୍ଦର ଚେତନା ବୈଦିକ ଧର୍ମ, ଦର୍ଶନ ଓ ଜୀବନକୁ ଏପରି ଭାବରେ ଆଚ୍ଛନ୍ନ କରି ରଖିଥିଲା ଯେ ଉପନିଷଦ୍ ଯୁଗରେ ପରଂବ୍ରହ୍ମଙ୍କୁ ଆନନ୍ଦମୟ ବୋଲି କୁହାଯାଉଥିଲା । ଏହାକୁ ବାଖ୍ୟା କଲେ ଜଣାପଡ଼େ "ଆନନ୍ଦ ଯେ ବ୍ରହ୍ମ ଏକଥା ଜାଣିବାକୁ ହେବ । ନିଶ୍ଚିତ ଭାବରେ ଆନନ୍ଦରୁ ଏହି ଜୀବମାନଙ୍କର ସୃଷ୍ଟି ହୋଇଛି । ଆନନ୍ଦ ଦ୍ୱାରା ହିଁ ଏହି ଜୀବମାନେ ଜୀଇଁ ଥାଆନ୍ତି । ଆନନ୍ଦରେ ପ୍ରବେଶ କରି ସେମାନେ ସେଠାରେ ଲୀନ ହୋଇଥାଆନ୍ତି । ଆନନ୍ଦରୁ ଜନ୍ମ ନେଇ ଆନନ୍ଦରେ ଜୀଇଁ ଶେଷରେ ଆନନ୍ଦରେ ଲୀନ ହେବା ହେଉଛି ଜୀବର ଧର୍ମ"।(୫) ଉପନିଷେଦର ଏହି ମୌଳିକ ବୀଜ ବୈଦିକ ସଂହିତାରେ ନିହିତ ଅଛି । ଏହାକୁ କାଳ୍ପନିକ ଧାରଣାରେ ପର୍ଯ୍ୟବେସିତ ନକରି ବାସ୍ତବ ଜୀବନରେ ଉପଲବ୍ଧି କରିବାର ଉଦ୍ୟମ କରାଯାଇଛି । ଜୀବନର ଚରମ ଆନନ୍ଦ ମୋକ୍ଷରେ ମିଳି ପାରିବ ବୋଲି କୁହାଯାଇଛି ।

ବେଦ ବ୍ୟାଖ୍ୟାକାର ସାୟଣ ବେଦ ଶବ୍ଦର ଅର୍ଥ କରିବାକୁ ଯାଇ କହିଅଛନ୍ତି "ଅନିଷ୍ଟକୁ ଛାଡି ଇଷ୍ଟ ପ୍ରାପ୍ତି ଲାଗି ଅଲୌକିକ ଉପାୟଟି ଯେଉଁ ଗ୍ରନ୍ଥ ବତାଇ ଦିଏ ତାହା ହେଉଛି ବେଦ" ।(୬) ତେଣୁ କୁହାଯିବ ବୈଦିକ ଦର୍ଶନର ମୂଳ ଲକ୍ଷ୍ୟ ହେଲା ଇଷ୍ଟ ପ୍ରାପ୍ତି । ବୈଦିକ ଦର୍ଶନ ଗତିଶୀଳ ଥିଲା । ଜୀବନର ବିବର୍ତ୍ତିତ ଗତିରେ ଯେଉଁ ନୂତନ ନୂତନ ସମସ୍ୟା ସବୁ ଦେଖା ଯାଉଥିଲା ତାହାର ସମାଧାନ ଲାଗି ନୂତନ ନୂତନ ସୂତ୍ରମାନଙ୍କର ଆବିଷ୍କାର ଘଟିଲା ଏବଂ ନୂତନ ଦୃଷ୍ଟି ଭଙ୍ଗୀ ନେଇ ଜୀବନକୁ ଦେଖିବାକୁ ପଡିଲା । ଫଳରେ ଧର୍ମ ଓ ଦର୍ଶନ ବିବର୍ତ୍ତିତ ହେବାକୁ ଲାଗିଲା ।

ମାନବ ଜୀବନର ଚରମ ଲକ୍ଷ୍ୟ ହେଲା ମୋକ୍ଷ । ସେହି ମୋକ୍ଷ ପ୍ରାପ୍ତି ଲାଗି ବିଭିନ୍ନ ପନ୍ଥା ବୈଦିକ ଦର୍ଶନରେ ଦେଖିବାକୁ ପାଇଥାଉ । ସେଗୁଡିକ ମୁଖ୍ୟତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ । ଯଥା - ଜ୍ଞାନ ମାର୍ଗ, କର୍ମ ମାର୍ଗ ଓ ଭକ୍ତି ମାର୍ଗ । ଏହି ତିନି ମାର୍ଗର ଆଦ୍ୟ ଝଂକାର ବେଦରେ ରହିଥିଲା । ତେଣୁ ବୈଦିକ ଆର୍ଯ୍ୟମାନଙ୍କର ଧର୍ମ ସଂପର୍କୀୟ ଜ୍ଞାନ ଓ ତାହାର ଜୀବନନିଷ୍ଠତା ବହୁମୁଖୀ ଥିଲା । ବେଦରେ ତାହାକୁ କୁହାଯାଇଛି "ବିଶ୍ୱତୋ ମୁଖମ୍" ବା ବହୁମୁଖୀ । "ଧର୍ମ ଗତ ବାସ୍ତବ ଅନୁଭୂତିର ସୂତ୍ର ଗୁଡିକୁ ଏକତ୍ର ବାନ୍ଧି ରଖିବା ଏବଂ ଏକ ସମନ୍ୱିତ ଦାର୍ଶନିକ ଧାରା ପ୍ରବର୍ତ୍ତନ କରିବା ଥିଲା ବୈଦିକ ଧର୍ମ ଓ ଦର୍ଶନର ଲକ୍ଷ୍ୟ"।(୭) ବୈଦିକ ଯୁଗରେ ବୁଣା ଯାଇଥିବା ମୂଳବୀଜ ବେଦୋତ୍ତର କାଳରେ ଫଳଶ୍ରୁତି ହୋଇଥିଲା ଭାରତୀୟ ଷଡ୍ ଦର୍ଶନରେ ।

**ବୈଦିକ ଦେବ ମଣ୍ଡଳ :-**

ବୈଦିକ ସଂହିତା ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ବୈଦିକ ଆର୍ଯ୍ୟମାନେ ବିଭିନ୍ନ ଅଦୃଶ୍ୟ ଶକ୍ତିମାନଙ୍କ ପ୍ରତି ସେମାନଙ୍କ ପ୍ରାର୍ଥନା ବାଣୀ ଢାଳିଛନ୍ତି । ସେମାନଙ୍କ ନାମ ସେମାନେ ଦେଇଥିଲେ 'ଦେବ ବା ଉଜ୍ଜ୍ୱଳ ସତ୍ତା' । ସେମାନଙ୍କ ସ୍ଥିତି ନେଇ ବୈଦିକ ଆର୍ଯ୍ୟମାନେ ସେମାନଙ୍କୁ ତିନି ଭାଗରେ ବିଭକ୍ତ କରିଥିଲେ । ସେମାନେ ହେଲେ 'ଦ୍ୟୁସ୍ଥାନ' ବା ସ୍ୱର୍ଗର ଦେବଗଣ, 'ଅନ୍ତରୀକ୍ଷ' ବା ପୃଥିବୀ ଓ ସ୍ୱର୍ଗର ମଧ୍ୟବର୍ତ୍ତୀ ସ୍ଥାନର ଦେବଗଣ ଏବଂ ପୃଥିବୀ ସ୍ଥାନର ଦେବଗଣ । ଇନ୍ଦ୍ର, ଅଗ୍ନି, ବରୁଣ, ସୂର୍ଯ୍ୟ

ଆଦି ଏହି ଦେବ ମଣ୍ଡଳ ଅନ୍ତର୍ଭୁକ୍ତ । ବିଶ୍ୱ ଏକ ନିୟମରେ ବନ୍ଧା ବୋଲି ବୈଦିକ ଆର୍ଯ୍ୟମାନେ ବୁଝିଥିଲେ ଏବଂ ସେମାନେ ଏହାକୁ 'ଋତ୍' ବା ଚିରନ୍ତନ ନିୟମ ବୋଲି କହୁଥିଲେ । ଦେବତା ଓ ମାନବ ସମସ୍ତେ ଏହି 'ଋତ୍' ର ଅଧୀନ ଥିଲେ । ଏହି ନିୟମକୁ ପରିଚାଳିତ କରିବା ପାଇଁ ଜଣେ କେହି ନିର୍ଦ୍ଦେଶ ଦେଉଛନ୍ତି ବୋଲି ବୈଦିକ ଆର୍ଯ୍ୟମାନେ ବିଶ୍ୱାସ କରୁଥିଲେ । ଋଗ୍‌ବେଦୀୟ ଋଷି ଦୀର୍ଘତମା ତାଙ୍କ ବାଣୀରେ କହିଥିଲେ 'ଏକ ସତ୍‌କୁ ପଣ୍ଡିତମାନେ ବହୁ ପ୍ରକାର କୁହନ୍ତି । (୮) ଏହି ସତ୍ୟଟି କେବଳ ବୈଦିକ ଦର୍ଶନକୁ ନୁହେଁ, ସମଗ୍ର ଭାରତୀୟ ଦର୍ଶନକୁ ମଧ୍ୟ ଯୁଗ ଯୁଗ ଧରି ପରିଶୀଳିତ କରିଆସିଛି । ବୈଦିକ ଆର୍ଯ୍ୟମାନେ ବହୁ ଦେବତାଙ୍କୁ ପୂଜା କରୁଥିଲେ ମଧ୍ୟ ସକଳ ଦେବତା ମଧ୍ୟରେ ସେ ଏକ ଦେବତାର ସନ୍ଧାନ ପାଇଥିଲେ । ସେ ଦେବତା ଥିଲେ ଗୁଣହୀନ, ରୂପହୀନ, ଲିଙ୍ଗହୀନ । ତେଣୁ ତାହାଙ୍କୁ 'ତଦେକମ୍' ବା ସେହି ଏକ ବୋଲି କୁହାଯାଇଛି । ଅତଏବ 'ଏକେଶ୍ୱର' ବାଦ ଚିନ୍ତାଧାରାର ମୂଳ ଉତ୍ସ ହେଉଛି ବେଦ । ବିଶ୍ୱ ସ୍ରଷ୍ଟାଙ୍କର ଆଦି ଅନ୍ତ ନଥିଲା ଭଳି 'ଋତ' ବା ଚିରନ୍ତନ ନିୟମର ଆଦି ଅନ୍ତ ନାହିଁ । ଏହା ପ୍ରସାରଣଶୀଳ । ସାରା ବିଶ୍ୱ ଏକ ଜୀବନ୍ତ ବସ୍ତୁ ଯାହାକି ଚେତନାଶୀଳ । ଶ୍ରୀ ଅରବିନ୍ଦଙ୍କ ମତରେ 'ଜଡ଼ର ମଧ୍ୟ ଚେତନା ଅଛି । ଏ ଚେତନା ସଚ୍ଚିଦାନନ୍ଦଙ୍କର ଚେତନା ଯାହାକି ଋଗ୍‌ବେଦୀୟ 'ପୁରୁଷ ସୂକ୍ତ'ରେ ପ୍ରଥମ ମନ୍ତ୍ର ଅନୁସାରେ ସାରା ବିଶ୍ୱକୁ ଆବୃତ କରି ରଖିଅଛି ।

**ଇଷ୍ଟ ଦେବତା :-**

ଭାରତୀୟ ଧର୍ମ ଚେତନାରେ 'ଇଷ୍ଟ ଦେବତା' ସଂପର୍କୀୟ ଚିନ୍ତା ଧାରାର ମୂଳଉତ୍ସ ହେଉଛି ବେଦ । ବେଦରେ ଦେବତାମାନଙ୍କର ଆରାଧନାର ସୂତ୍ର ନିହିତ ଅଛି । ମାତ୍ର ସେଥିରେ କାହାକୁ ବଡ କାହାକୁ ସାନ ବୋଲି ପ୍ରତିପାଦିତ କରାଯାଇ ନାହିଁ । ମାତ୍ର ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ଯେତେବେଳେ ସ୍ତୁତି କରାଯାଇଛି ସେଠାରେ ତାଙ୍କୁ ସର୍ବ ଶ୍ରେଷ୍ଠ ଦେବତା ଭାବରେ ମାନ୍ୟତା ଦିଆଯାଇଛି । ବହୁ ଦେବତାଙ୍କ ମଧ୍ୟରୁ ଜଣକୁ କାହାକୁ ଇଷ୍ଟ ଦେବତା ଭାବରେ ଗ୍ରହଣ କରି ତାଙ୍କୁ ପୂଜା କରିବା ଥିଲା ବୈଦିକ ବିଶ୍ୱାସ । ଇଷ୍ଟ ଦେବତା ଚିନ୍ତାଧାରାଟି ଯେଉଁ ମୌଳିକ ସତ୍ୟ ଉପରେ ଭିତ୍ତି କରି ପ୍ରତିଷ୍ଠିତ ତାହା ବହୁ ଦେବତାଙ୍କ ମଧ୍ୟରେ ଏକ ଦେବତାଙ୍କର ଆବିଷ୍କାର ବା ସଂକ୍ଷେପରେ 'ଏକେଶ୍ୱର ବାଦ' ।

**ବେଦରେ ଅଦ୍ୱୈତ ବାଦ :-**

ଏହି ଏକେଶ୍ୱରବାଦ ଚିନ୍ତାଧାରାରେ ଅଦ୍ୱୈତବାଦର ମୂଳ ବୀଜ ନିହିତ । ବେଦ କୁହେ 'ତତ୍ ଏକମ' ବା ସେ ହେଉଛନ୍ତି ଏକ । ଉପନିଷଦ୍ ମତରେ ସେ 'ଏକ ମେ ବା ଦ୍ୱିତୀୟମ୍' ବା ସେ ହେଉଛନ୍ତି ଏକ ଓ ଅଦ୍ୱିତୀୟ । ବେଦାନ୍ତୀମାନଙ୍କ ମତରେ ତାଙ୍କର ଏ ପ୍ରକାର ସ୍ଥିତି ହେଉଛି 'ଅନିର୍ବଚନୀୟ' ଅର୍ଥାତ୍ ତାହାକୁ ବର୍ଣ୍ଣନା କରି ହେବ ନାହିଁ । ମାତ୍ର ଭାବ ଜଗତରେ ଉପଲବ୍ଧି କରିହେବ । ଏହି କାରଣ 'ସତ୍ତା' ହେଉଛନ୍ତି 'ଏକ ଦେବତା' ଏବଂ ଉପନିଷଦ୍‌ର 'ପରଂବ୍ରହ୍ମ' । ପରମାତ୍ମାଙ୍କ ସର୍ବ ବ୍ୟାପିତ୍ୱ ସଂପର୍କରେ ଯଜୁର୍ବେଦରେ କୁହାଯାଇଛି ସେହି ପରମାତ୍ମା ଓତଃପ୍ରୋତଃ ଭାବରେ ସକଳ ପ୍ରାଣୀଙ୍କ ମଧ୍ୟରେ ଜଡିତ ।(୯) ପୁଣି ସେହି ବେଦ ଅନୁସାରେ ସେ ପରମାତ୍ମା ସର୍ବତ୍ର ବ୍ୟାପ୍ତ ।(୧୦) ଅଥର୍ବ ବେଦରେ ସେହି ପରମାତ୍ମାଙ୍କ ସଂପର୍କରେ କୁହାଯାଇଛି "ସେହି ପ୍ରଭୁ ଅନନ୍ତ ଓ ସର୍ବ ବ୍ୟାପକ"।(୧୧) ଏଥିରୁ ଅନୁମିତ ହୁଏ 'ଅଦ୍ୱୈତ ବାଦ'ର ମୂଳ ବୀଜ ବେଦରେ ନିହିତ ଥିଲା ଏବଂ ଉପନିଷଦ ଏହାକୁ ପୁଷ୍ପିତ ବୃକ୍ଷ ରୂପରେ ଦେଖିଲା ।

ଋଗ୍‌ବେଦରେ ଦେବତାଙ୍କୁ ଅସୁର ବୋଲି କୁହାଯାଇଛି କାରଣ 'ଅସୁ' ହେଉଛି 'ବଳ' ଅଥବା ପ୍ରାଣ । ଏହାର ଦାତା ଯିଏ ସିଏ ହେଲେ ଅସୁର । ସେଥିପାଇଁ ଏହି ବେଦରେ କୁହାଯାଇଛି ଦେବତାମାନଙ୍କର ଏକ ମହାନ୍ 'ଅସୁର ପଣିଆ' ବା ବଳଦାନ କରିବାର ଗୁଣ ଅଛି ।(୧୨) ଏହି ବଳକୁ ଆମେ ଶାରିରୀକ ବଳ ଭାବରେ ଗ୍ରହଣ କରିପାରିବା ନାହିଁ । ବରଂ ଏହା ହେଉଛି ଆଧ୍ୟାତ୍ମିକ ବଳ । ଋଗ୍‌ବେଦରେ ପୁନଶ୍ଚ କୁହାଯାଇଛି "ସେହି ଏକ ସମସ୍ତ ରୂପ ନେଇ ଥିଲେ ବା ସର୍ବତ୍ର ପ୍ରତିଭାତ ହୋଇଥିଲେ" । (୧୩) "ବହୁତ୍ୱରେ ଏକତ୍ୱ ଦେଖିବା ଏବଂ ସେହି ଏକଜ ବ୍ୟତୀତ ଅନ୍ୟ କାହାକୁ ନ ଦେଖିବା ହେଉଛି ଅଦ୍ୱୈତବାଦ" । ଅତଏବ ଏହି ଅଦ୍ୱୈତବାଦର ମୂଳ ବୀଜ ଯେ ବେଦରେ ନିହିତ ଥିଲା ଏକଥା ନିଃସନ୍ଦେହରେ କୁହାଯିବ । ବୈଦିକ ଇଷ୍ଟ ଦେବତା ସଂପର୍କୀୟ କଳ୍ପନାରେ 'ଅଦ୍ୱୈତବାଦ'ର ଚିନ୍ତାଧାରା ନିହିତ ।

ସର୍ବ ଦେବତାଙ୍କ ମଧ୍ୟରେ ଏକତାର ସୂତ୍ର ଆବିଷ୍କାର କରି ନିଜକୁ ସେହି ଦେବତାଙ୍କ ସହିତ ଚିହ୍ନିତ କରିବା ହେଉଛି ଅଦ୍ୱୈତବାଦର ଏକ ବିଶିଷ୍ଟ ବିଭାବ । ଗୋଟିଏ ଋଗ୍‌ବେଦ ମନ୍ତ୍ରରେ କୁହାଯାଇଛି 'ସେ ହେଉଛନ୍ତି ଆକାଶରେ ରହୁଥିବା ସୂର୍ଯ୍ୟ, ଅନ୍ତରିକ୍ଷରେ ରହୁଥିବା ବାତ, ଯଜ୍ଞ ବେଦୀରେ ରହୁଥିବା ଅଗ୍ନି, ଘରେ ରହୁଥିବା ଅତିଥି, ମନୁଷ୍ୟ ମଧ୍ୟରେ ଥିବା ଚେତନା ଏବଂ ସର୍ବୋତ୍ତମ ସୂର୍ଯ୍ୟ ମଣ୍ଡଳର ଅଧିବାସୀ । ସେ ଥାଆନ୍ତି ବିଶ୍ୱର ଚିରନ୍ତନ ନିୟମ ଭିତରେ , ପବନରେ, ଜଳରେ, ଆଲୋକ-ରେଖାରେ ଏବଂ ସତ୍ୟରେ' (୧୪) । ବୈଦିକ ଆର୍ଯ୍ୟ ଋଷି ନିଜକୁ ବିଶ୍ୱାତ୍ମା ସହିତ ସଂପୂର୍ଣ୍ଣ ଭାବେ ସାମିଲ କରିଦେଇ ଅଛନ୍ତି । ଆଉ ଏକ ସ୍ଥାନରେ ବାମ ଦେବ ଋଷି କହିଛନ୍ତି 'ମୁଁ ହେଉଛି ମନୁ, ମୁଁ ହେଉଛି ସୂର୍ଯ୍ୟ, ମୁଁ ହେଉଛି କକ୍ଷୀବାନ ଋଷି'।(୧୫) ଆଉ ଟିଏ ମଧ୍ୟ ଆର୍ଯ୍ୟ ଋଷି କହିଛନ୍ତି 'ମୁଁ ହେଉଛି ରାଜା ବରୁଣ' (୧୬) ଏଥିରୁ ଅନୁମିତ ହୁଏ ବୈଦିକ ଋଷିମାନେ 'ଅଦ୍ୱୈତବାଦ' ଚିନ୍ତାଧାରା ଦ୍ୱାରା ଯଥେଷ୍ଟ ଅନୁପ୍ରାଣୀତ ହୋଇଥିଲେ । ଗୀତାରେ ସେଦିନ ଶ୍ରୀକୃଷ୍ଣ ଅର୍ଜୁନକୁ କହିଥିଲେ 'ହେ ଅର୍ଜୁନ ଭଗବାନ ସବୁ ଜୀବଙ୍କ ହୃଦୟରେ ଥାଆନ୍ତି'।(୧୭) ଏହି ବାଣୀର ମୂଳଉତ୍ସ ବେଦରେ ରହିଅଛି ।

**ବୈଦିକ ସଂଶୟ ବାଦ :-**

ଦର୍ଶନର ପ୍ରେରଣା ମିଳିଥାଏ ସଂଶୟରୁ । ବେଦର ମନ୍ତ୍ର ଗୁଡିକରେ ଭଗବାନଙ୍କର ଅସ୍ତିତ୍ୱ ସ୍ୱୀକୃତ । ମାନବ ଜୀବନରେ 'ଦିବତ୍ୱ' ପାଇବାର ସମ୍ଭାବନା ଅଛି ସେହି ବିଶ୍ୱସର ଧାରା କ୍ଷରିତ । 'ବୃହଦାରଣ୍ୟକ ଉପନିଷଦ'ରେ ପରଂବ୍ରହ୍ମ ବିଷୟରେ କୁହାଯାଇଛି "ପରଂବ୍ରହ୍ମଙ୍କ ବିଷୟରେ ଶୁଣିବାକୁ ହେବ । ଯେଉଁମାନେ ବ୍ରହ୍ମଜ୍ଞାନୀ ସେମାନଙ୍କ ପାଖରୁ ବ୍ରହ୍ମଙ୍କର ସ୍ୱରୂପ ବିଷୟରେ ଶୁଣିବାକୁ ହେବ । ଖାଲି ଶୁଣିଲେ ଚଳିବ ନାହିଁ ସେ ବିଷୟରେ ବାରମ୍ବାର ମନନ କରିବାକୁ ହେବ । ବାରମ୍ବାର ମନନ ନକଲେ ସେ ଜ୍ଞାନ ପାଶୋରି ଯିବାର ଆଶଙ୍କା ରହିଛି । ଏହି ମନନରେ କାମ ସରିଗଲା ନାହିଁ । ଏ ବିଷୟରେ ନିଦିଧ୍ୟାସନ କରିବାକୁ ହେବ"।(୧୮) ଅର୍ଥାତ୍ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଗ୍ଚର କରିବାକୁ ହେବ । ହେତୁବାଦୀ ଦୃଷ୍ଟିକୋଣରୁ ବିଗ୍ଚର କରି ଏହି ନିର୍ଣ୍ଣୟ ଠିକ୍ କି ଭୁଲ୍ ତାହା ଠିକଣା କରିବାକୁ ହେବ । (ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତି ପଞ୍ଚମ ଖଣ୍ଡ- ବୈଦିକ ପର୍ବ- ଚତୁର୍ଥ ଭାଗ-ପୃଷ୍ଠା ୨୪୯ରୁ ଉଦ୍ଧୃତ) । ଏ ପ୍ରକାର ଦାର୍ଶନିକ ବିଗ୍ଚରଧାରାର ମୂଳରେ ଅଛି ସଂଶୟ ବାଦ । ମାତ୍ର

ବୈଦିକ ସଂଶୟବାଦ ନାସ୍ତି ବାଚକ ନଥିଲା ବରଂ ଏହା ଆସ୍ତି ବାଚକ ଥିଲା । ଏହି ଦୃଷ୍ଟିରୁ ବିଗ୍ଚର କଲେ ଉକ୍ତ ସଂଶୟ ବାଦ ଆର୍ଯ୍ୟ ଚିନ୍ତାଧାରାକୁ ପ୍ରଗତି ଆଡକୁ ଅଗ୍ରସର କରାଇ ନେଇଛି ।

ସତ୍ୟର ଅନୁସନ୍ଧାନ କରିବା ହେଉଛି ସମଗ୍ର ବେଦାନ୍ତ ଦର୍ଶନର ମୂଳ ଲକ୍ଷ୍ୟ । ଏହି ସତ୍ୟାନୁସନ୍ଧାନ ପାଇଁ ବେଦ ମନ୍ତ୍ର ଗୁଡିକ ନିର୍ଦ୍ଦେଶ, ଉପଦେଶ ଓ ପ୍ରୋତ୍ସାହନ ଦେଇଛନ୍ତି । ଶ୍ରଦ୍ଧା ଥିଲେ ବିଶ୍ୱାସ ଆସିବ । ବୈଦିକ ଋଷି ଶ୍ରଦ୍ଧାକୁ ଏକ ସ୍ୱତନ୍ତ୍ର 'ସୂକ୍ତ'ରେ ଆବାହନ କରିଅଛନ୍ତି । 'ହେ ଶ୍ରଦ୍ଧା ଆମ୍ଭମାନଙ୍କ ଲାଗି ଶ୍ରଦ୍ଧା ଆଣି ଦିଅ '। (୧୯) ଏହି ଶ୍ରଦ୍ଧାନ୍ୱିତ ବିଶ୍ୱାସ ଆର୍ଯ୍ୟମାନଙ୍କୁ ସାରା ବିଶ୍ୱରେ ଏକ ଦିବତ୍ୱର ସ୍ପର୍ଶ ଦେଇଥିଲା । ବୈଦିକ ଆର୍ଯ୍ୟମାନଙ୍କଠାରେ ଶ୍ରଦ୍ଧା ଓ ନିଦିଧ୍ୟାସନ ବା ବୈଜ୍ଞାନିକ ଦୃଷ୍ଟି ଭଂଗୀରେ ବିଗ୍ଚର କରିବାର ଧାରା ଥିଲା ପ୍ରବହମାନ ।

**ସୃଷ୍ଟିର ରହସ୍ୟ –**

ସୃଷ୍ଟିର ରହସ୍ୟ ସଂପର୍କରେ ଋଗ୍‌ବେଦରେ ଦୁଇଟି ପ୍ରମୁଖ ସୂକ୍ତ ଦୃଷ୍ଟି ଗୋଚର ହୁଏ । ଗୋଟିଏ ହେଲା 'ନାସଦୀୟ ସୂକ୍ତ' ଏବଂ ଅନ୍ୟଟି ହେଲା 'ପୁରୁଷ ସୂକ୍ତ' । ଶୂନ୍ୟରୁ ସୃଷ୍ଟି ସମ୍ଭବ ହୋଇଥିଲା ହେଉଛି 'ନାସଦୀୟ' ସୂକ୍ତର ପ୍ରତିପାଦ୍ୟ ବିଷୟ । ଏହା ସପ୍ତ ମନ୍ତ୍ର ସମ୍ବଳିତ । ପ୍ରଥମ ମନ୍ତ୍ରରେ କୁହାଯାଇଛି 'ସେତେବେଳେ ସ୍ଥିତି ନଥିଲା କି ଅସ୍ଥିତି ନଥିଲା, ସେତେବେଳେ ଅନ୍ତରୀକ୍ଷ ନଥିଲା ବା ତାହାକୁ ଅତିକ୍ରମ କରି ଆକାଶ ନଥିଲା । କିଏ କେଉଁଠି କାହାକୁ ଆବୃତ୍ତ କରିଥିଲା ତାହାର ମଙ୍ଗଳ ବିଧାନ ନିମିତ୍ତ ? ସେତେବେଳେ ମାପି ହୋଇ ନ ପାରିବା ଗଭୀର ଜଳ ଥିଲାକି '? (୨୦) ଏହି ସୂକ୍ତରେ ଅନ୍ୟତ୍ର କୁହାଯାଇଛି 'ସେତେବେଳେ ମୃତ୍ୟୁ ନଥିଲା କି ଅମୃତ ନଥିଲା '। (୨୧) ବିଶ୍ୱନିୟନ୍ତାଙ୍କ ମନରେ ସୃଷ୍ଟି କରିବା ଲାଗି କାମନା ଜାତ ହେଲା । ଏହି ଯେଉଁ କାମନାର ସମୟଟି ଆସି ଗଲା, ତାହା ଫଳରେ ସାରା ସୃଷ୍ଟି ସମ୍ଭବ ହୋଇପାରିଲା ।(୨୨) ଏବେ ମଧ୍ୟ ବିଶ୍ୱ ବ୍ରହ୍ମାଣ୍ଡର ସୀମା ବଢି ବଢି ଗ୍ଚଲିଛି ବୋଲି ବୈଜ୍ଞାନିକମାନେ ମତ ଦେଇଥାନ୍ତି । ଆର୍ଯ୍ୟ ଋଷିମାନେ ନିଜର ଆତ୍ମବୋଧ ବଳରେ ଏହି ସତ୍ୟଟିକୁ ଆବିଷ୍କାର କରିଥିଲେ । ଏବେ ମଧ୍ୟ ବୈଜ୍ଞାନିକମାନେ ଏହି ସତ୍ୟର ପାଖାପାଖି ହେଲେଣି । ଏହି ସୂକ୍ତର ଶେଷ ମନ୍ତ୍ରଟି ସଂଶୟବାଦ ଦ୍ୱାରା ଅଭିପ୍ରେତ । ତାହା ହେଉଛି 'ଏହି ସୃଷ୍ଟି ଯାହାଙ୍କ ଠାରୁ ହୋଇଥିଲା ସେ ହୁଏତ ଏହାକୁ ଧାରଣ କରିଥିଲେ ବା କରିନଥିଲେ । ଉଚ୍ଚତମ ଆକାଶରେ ଯେ ଏହାର ଅଧ୍ୟକ୍ଷ ସ୍ୱରୂପ ଅଛନ୍ତି ସେ ହୁଏତ ଏହା ଜାଣିଥିବେ ଅଥବା ନଥିବେ' ।(୨୩) ଏହି ଭଳି ଅନେକ ପ୍ରଶ୍ନ ଆର୍ଯ୍ୟ ଋଷିଙ୍କ ମୁଣ୍ଡରେ ଘାରିଥିବ ନିଶ୍ଚୟ । ଏହାକୁ କେନ୍ଦ୍ରକରି ଭାରତ ଭୂମିରେ ଅନେକ ଦାର୍ଶନିକ ଚିନ୍ତାଧାରା ସୃଷ୍ଟି ହୋଇଅଛି ।

"ନାସଦୀୟ ସୂକ୍ତ"ରେ ଋଷି ହେଉଛନ୍ତି "ପରମେଷ୍ଠୀ ପ୍ରଜାପତି" । ଏ ଋଷି କୌଣସି ଐତିହାସିକ ବ୍ୟକ୍ତିତ୍ୱ ନୁହଁନ୍ତି । ୟେ ହେଉଛନ୍ତି ଏକ ଭାବ ଧାରାର ବାହାକ । ପରମେଷ୍ଠୀ ହେଉଛନ୍ତି 'ସ୍ୱୟଂଭୂ' ଅର୍ଥାତ୍ ସେ ନିଜେ ନିଜ ଠାରୁ ଜାତ ଓ ସ୍ୱୟଂ ସଂପୂର୍ଣ୍ଣ । ଏହି ସୂକ୍ତରେ ଯେଉଁ ମୃତ୍ୟୁ, ଅମୃତ, ଆଲୋକ ଓ ଅନ୍ଧକାରର ବର୍ଣ୍ଣନା ରହିଅଛି ସେ ହେଉଛନ୍ତି ଏହାର ଅତୀତ । ସୃଷ୍ଟି ସଂପର୍କରେ ତାଙ୍କ ଠାରୁ ଠିକଣା ଜ୍ଞାନ ପାଇହେବ । ସେ ହେଉଛନ୍ତି ଏ ଜ୍ଞାନର ପ୍ରକୃଷ୍ଟ ଦ୍ରଷ୍ଟା ଋଷି । ଏହି ସୂକ୍ତର ଚତୁର୍ଥ ମନ୍ତ୍ରର ଦ୍ୱିତୀୟ ପଂକ୍ତିଟି ହେଲା 'ଋଷିମାନେ ସେମାନଙ୍କ ହୃଦୟର ଅନ୍ତଃଦୃଷ୍ଟି ବଳରେ 'ସତ୍' ର

'ଅସତ୍' ସହିତ ବନ୍ଧୁତା ଥିବାର ଜାଣିପାରିଲେ ।(୨୪) 'ସତ୍' ଅର୍ଥ 'ଜଡ଼ ବସ୍ତୁ', 'ଅସତ୍' ହେଲା 'ପ୍ରାଣ' । ମଣିଷକୁ ଯଦି ଏହାର ଉଦାହରଣ ଭାବରେ ଗ୍ରହଣ କରାଯାଏ ତାହେଲେ ଏହାକୁ ଦେହ ଓ ପ୍ରାଣ ଅର୍ଥରେ ନେବାକୁ ହେବ । ପ୍ରାଣକୁ ବେଦରେ 'ଅସତ୍' ଅର୍ଥରେ କୁହାଯାଇଛି ବୋଲି 'ଶତପଥ ବ୍ରାହ୍ମଣ'ରେ ଉଲ୍ଲେଖ ଅଛି ।(୨୫) ପ୍ରାଣରୁ ଜଡ଼ ବା ଦେହର ସୃଷ୍ଟି । 'ଅସତ୍'ରୁ ବା ପ୍ରାଣରୁ 'ସତ୍' ବା 'ଜଡ଼'ର ସୃଷ୍ଟି ହେଲା ।(୨୬) ଯଦି ଜଡ଼ ପ୍ରାଣରୁ ସୃଷ୍ଟ ତାହା ହେଲେ ତାହା ମଧ୍ୟ ପ୍ରାଣମୟ । ତାହାର ମଧ୍ୟ ଚେତନା ଅଛି । ଜଡ଼ରେ କିଭଳି ଚେତନା ଅନୁପ୍ରବିଷ୍ଟ ତାହା ହେଉଛି ରହସ୍ୟମୟ । ଏହି ରହସ୍ୟକୁ ଉଦ୍‌ଘାଟିତ କରିବା ପାଇଁ ଆର୍ଯ୍ୟ ଋଷି ସର୍ବଦା ଚେଷ୍ଟିତ ଥିଲେ ।

"ପୁରୁଷ ସୂକ୍ତ" ଷୋଳ ଗୋଟି ମନ୍ତ୍ର ସମ୍ବଳିତ । ଏହା 'ନାସଦୀୟ ସୂକ୍ତ'ର ପରବର୍ତ୍ତୀ ରଚନା । ଏଥିରେ ବ୍ରାହ୍ମଣ, ରାଜନ୍ୟ, (କ୍ଷତ୍ରିୟ) ବୈଶ୍ୟ ଓ ଶୂଦ୍ର ଏହି ଚାରି ବର୍ଣ୍ଣର ଜନ୍ମ କଥା ସହିତ ଅନ୍ୟାନ୍ୟ କଥାର ଉଲ୍ଲେଖ ରହିଅଛି । ଏହି ସୂକ୍ତର ସୃଷ୍ଟି ଚାରିବର୍ଣ୍ଣର ସୃଷ୍ଟି ସମୟର ବୋଲି ମନେହୁଏ । ଏଥିରେ କେଉଁ କ୍ରମରେ ମନୁଷ୍ୟ, ପଶୁପକ୍ଷୀ ଆଦିଙ୍କର ସୃଷ୍ଟି ହୋଇଥିଲା ତାହା ବର୍ଣ୍ଣିତ । 'ପୁରୁଷ ସୂକ୍ତ' ଅନୁସାରେ ସୃଷ୍ଟି ପ୍ରାରମ୍ଭରେ ଏକ ଆଦିମ ସତ୍ତା ଥିଲା ଯାହାକି ନିଜ ଇଛା ଅନୁସାରେ ବିକଶିତ ହେଲା । 'ସେହି ବିରାଟ ପୁରୁଷଙ୍କର ହଜାରେ ମୁଣ୍ଡ, ହଜାରେ ଆଖି, ହଜାରେ ଗୋଡ଼ ଥିବାର ଯାହା ବର୍ଣ୍ଣନା କରାଯାଇଛି ତାହା ପ୍ରତୀକାତ୍ମକ' । ମାତ୍ର ସଂଖ୍ୟା ବାଚକ ନୁହେଁ । ପ୍ରଥମ ମନ୍ତ୍ରର ଦ୍ୱିତୀୟ ପଂକ୍ତିରେ କୁହାଯାଇଛି' ସେ (ପୁରୁଷ) ବିଶ୍ୱ ବ୍ରହ୍ମାଣ୍ଡକୁ ଚାରିଆଡେ ଆବରଣ କରି 'ଦଶାଙ୍ଗୁଳ' ଜାଗା ଅଧିକ ସ୍ଥାନରେ ରହିଲେ ।(୨୭) ଏଥିରେ ବିଶ୍ୱ ସ୍ରଷ୍ଟାଙ୍କର ସୃଷ୍ଟି ସହିତ ଅବିଛିନ୍ନ ସଂପର୍କର ସୂଚନା ଦେଉଛି । ବିରାଟ ପୁରୁଷ ତାଙ୍କ ସୃଷ୍ଟ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ ଅନୁପ୍ରବିଷ୍ଟ ଅଛନ୍ତି ବୋଲି ଯଦି କୁହାଯାଏ ତା ହେଲେ ସେ ସସୀମ ହୋଇଯିବେ । ତେଣୁ ଆର୍ଯ୍ୟ ଋଷିମାନେ କହିଅଛନ୍ତି "ସେ ବିରାଟ ପୁରୁଷ ତାଙ୍କ ସୃଷ୍ଟ ବିଶ୍ୱ ବ୍ରହ୍ମାଣ୍ଡ ଠାରୁ ସେ ଦଶ ଅଙ୍ଗୁଳି ଜାଗା ଅତିକ୍ରମ କରିଅଛନ୍ତି" । ଏହାର ଅର୍ଥ ସେ ବିଶ୍ୱବ୍ରହ୍ମାଣ୍ଡକୁ ଆବରଣ କରିଥିଲେ ମଧ୍ୟ ତାହାକୁ ଅତିକ୍ରମ କରିଅଛନ୍ତି । ଅର୍ଥାତ୍ ସଂକ୍ଷେପରେ କହିବାକୁ ଗଲେ ସାରା ବ୍ରହ୍ମାଣ୍ଡ ତାଙ୍କ ସତ୍ତାର ଆଂଶିକ ଅଭିପ୍ରକାଶ ମାତ୍ର । ଏହାକୁ ଉପନିଷଦ୍‌ର ଋଷିମାନେ କହିବାକୁ ଲାଗିଲେ ଯେ 'ପରଂବ୍ରହ୍ମ ହେଉଛନ୍ତି ଏକ ମାତ୍ର ସତ୍ୟ ଏବଂ ସାରା ଜଗତରେ ସେ ପରିବ୍ୟାପ୍ତ । ତାଙ୍କ ମାୟା ବଳରେ ସେ ଏହି ପରିବ୍ୟାପ୍ତି କରି ରହି ପାରନ୍ତି' । ଏହାଙ୍କ ସ୍ୱରୂପ ସଂପର୍କରେ ସେମାନେ ସଂପୂର୍ଣ୍ଣ ଅବହିତ ନଥିବାରୁ ଏହାକୁ 'ଅନିର୍ବଚନୀୟ' ବା ବାକ୍ୟରେ ପ୍ରକାଶ କରିବାର ଅଯୋଗ୍ୟ ବୋଲି କହିଅଛନ୍ତି । ସୃଷ୍ଟି ସଂପର୍କୀୟ ବୈଦିକ ଚିନ୍ତାଧାରା ଉପନିଷଦୀୟ ଦର୍ଶନର ବିବର୍ତ୍ତନ ଉପରେ ଯଥେଷ୍ଟ ପ୍ରଭାବ ପକାଇ ଅଛି ।

**ବୈଦିକ ଦର୍ଶନର ପ୍ରତୀକତା :-**

ଋଗ୍‌ବେଦ କାଳରୁ ପ୍ରତୀକତା ବୈଦିକ ଦର୍ଶନରେ ପ୍ରତିପାଦିତ ହୋଇଅଛି । ଶ୍ରୀ ଅରବିନ୍ଦ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି 'ବେଦ ମନ୍ତ୍ର' ଗୁଡିକର ପ୍ରତୀକାତ୍ମକ ବ୍ୟାଖ୍ୟା କରିବାର ଉଦ୍ୟମ କରିଅଛନ୍ତି । ସେ ଅବଶ୍ୟ ସବୁ ମନ୍ତ୍ର ଗୁଡିକର ବ୍ୟାଖ୍ୟା କରିପାରି ନାହାଁନ୍ତି । ପ୍ରତୀକତାର ଅର୍ଥ ନୁହେଁ ପ୍ରତିମା ପୂଜା, କୌଣସି ବସ୍ତୁ ବା ମୂର୍ତ୍ତିକୁ ପ୍ରତୀକ ଭାବରେ ଗ୍ରହଣ କରାଯାଇପାରେ । ତାହା ସସୀମ ଓ

ମରଣଶୀଳ । ତାହାରି ମାଧ୍ୟମରେ ଅସୀମ ଅମରଣଶୀଳଙ୍କର ଆରାଧନା କରାଯାଇଥାଏ । ବୈଦିକ ମନ୍ତ୍ରରେ ମରଣଶୀଳ ବସ୍ତୁ ମାଧ୍ୟମରେ ଅମରଣଶୀଳଙ୍କର ଆରଧନା କରାଯାଇଥାଏ । (ମୂର୍ତ୍ତୈରମୂର୍ତଃ) ପ୍ରତୀକ ପୂଜା ବେଦ ବିରୋଧି ନୁହେଁ । ଯଜୁର୍ବେଦରେ କୁହାଯାଇଛି 'ତାଙ୍କର (ପରମାତ୍ମାଙ୍କର) କିଛି ପ୍ରତିମା ନାହିଁ ।(୨୮) ସେ ନାହାଁନ୍ତି ବୋଲି କୁହାଯାଇନାହିଁ । ଖାଲି ତାଙ୍କର ପ୍ରତିମା ନାହିଁ ବୋଲି କୁହାଯାଇଛି । ବୈଦିକ ଆର୍ଯ୍ୟମାନେ ପ୍ରତିମା ପୂଜକ ନଥିଲେ । ଭଗବାନଙ୍କ ଉପାସନାରେ ତାଙ୍କର ଦୃଢ ବିଶ୍ୱାସ ଥିଲା । ତାଙ୍କ ସ୍ଥିତିକୁ ସେ ପୂର୍ଣ୍ଣମାତ୍ରାରେ ସ୍ୱୀକାର କରୁଥିଲେ । ଅଥର୍ବ ବେଦରେ ତାଙ୍କୁ 'ଚିରଯୁବା' ବୋଲି କଳ୍ପନା କରାଯାଇଛି '। 'ସେ ଧୀର, ଜରାଶୂନ୍ୟ, ଚିରଯୁବା, ଆତ୍ମାକୁ ଜାଣି ପାରିଲେ ମଣିଷ ମୃତ୍ୟୁକୁ ଡରେ ନାହିଁ । ଆତ୍ମଜ୍ଞାନ ଫଳରେ ମନୁଷ୍ୟ ଅମୃତତ୍ତ୍ୱ ପାଇ ପାରିବ '।(୨୯) ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା ଯେ ବିଶ୍ୱଧର୍ମ ଗୋଟିଏ, ମାନବ ଧର୍ମ ଗୋଟିଏ ଏବଂ ଦେବତା ମଧ୍ୟ ସେହିପରି ଗୋଟିଏ । ସେ କେବଳ ବିଭିନ୍ନ ରୂପରେ ପ୍ରତିଭାତ ହୁଅନ୍ତି । ତେଣୁ ସେମାନେ ସାରା ବିଶ୍ୱକୁ ଆର୍ଯ୍ୟାନ୍ୱିତ କରାଇବାର ପ୍ରଚେଷ୍ଟା କରିଥିଲେ । (କୃଣନ୍ତ ବିଶ୍ୱାର୍ଯ୍ୟମ୍) ତାଙ୍କ ଦେବତା ମଧ୍ୟରେ ସଂକୀର୍ଣ୍ଣ ସାଂପ୍ରଦାୟିକତା ନଥିଲା । ତେଣୁ ସେମାନେ ମାନବ କଲ୍ୟାଣ ଲାଗି 'ଏକେଶ୍ୱରବାଦର' ଉପାସକ ଥିଲେ । ବୈଦିକ ପ୍ରତୀକବାଦ କିନ୍ତୁ ଆର୍ଯ୍ୟମାନଙ୍କ ହୃଦୟକୁ ଖୁବ୍ ପ୍ରସାରିତ କରି ଦେଇଥିଲା । ବିଶ୍ୱର ପ୍ରତୀୟମାନ ଅନୈକ୍ୟ ମଧ୍ୟରେ ଏକ ଐକ୍ୟର ସ୍ପନ୍ଦନ ସେମାନେ ଅନୁଭବ କରି ପାରୁଥିଲେ ।

ନିଶ୍ରେୟସ୍ ପାଇବା ପାଇଁ ମଣିଷ ତାର ଜୀବନ ଯାତ୍ରା ପଥରେ ଯେଉଁ ନିଃସ୍ୱାର୍ଥପର କର୍ମ କରିଥାଏ ତାହା ଯଜ୍ଞ ନାମରେ ଅଭିହିତ ହୋଇଅଛି । ଭାରତୀୟ ଦାର୍ଶନିକମାନେ ଯଜ୍ଞର ପ୍ରତୀକାତ୍ମକ ଅର୍ଥ ବର୍ତ୍ତମାନ ପ୍ରକାଶ କରିବାକୁ ସମର୍ଥ ହୋଇଅଛନ୍ତି ।
(କ) ଯଜ୍ଞ ଉପନିଷଦୀୟ ଦର୍ଶନକୁ ପ୍ରଭାବିତ କରିଅଛି । (ଖ) ଯଜ୍ଞ ପୁରୁଷଙ୍କର ବିଭିନ୍ନ ରୂପର ଆରାଧନା କରିବାରୁ ଆତ୍ମା ସଂପର୍କୀୟ ଦର୍ଶନର ଉଦ୍ଭବ ହୋଇଛି ।(୩୦) (ଶ୍ରୀ ଅରବିନ୍ଦ କହିଛନ୍ତି ଯାହା 'ଗୋପନକରେ' ସକଳ ଧାରାକୁ ଧାରଣ କରି ଚାଲିଛି, ପ୍ରକୃତିର କ୍ରିୟା ଧାରାକୁ କ୍ରମେ ବିକଶିତ କରୁଛି । ସେଇ ସାର୍ବ ଜନୀନ ଶକ୍ତିରାଜିସହ ବ୍ୟକ୍ତିର ଯେଉଁ ଅବିରତ-ବିନିମୟ ଚାଲିଛି ତାହାରି ନିଗୂଢ ତତ୍ତ୍ୱ ଉପରେ ହିଁ ଯଜ୍ଞର ପ୍ରତିଷ୍ଠା ।)

**ଆତ୍ମା –**

ପ୍ରାଚୀନତମ ଋଗ୍‌ବେଦ କାଳରୁ ଆର୍ଯ୍ୟ ଋଷିମାନେ ଆତ୍ମା ସଂପର୍କରେ ବିଭିନ୍ନ ପ୍ରଶ୍ନ ପଚାରି ସେଗୁଡିକର ଉତ୍ତର ଦେବାକୁ ଉଦ୍ୟମ କରି ଆସିଅଛନ୍ତି । ଆତ୍ମା ସଂପର୍କୀୟ ଜ୍ଞାନକୁ ଶ୍ରେଷ୍ଠ ଜ୍ଞାନ କୁହାଯାଇଥାଏ । ଆତ୍ମା ଓ ବ୍ରହ୍ମ ହେଉଛନ୍ତି 'ଏକାର୍ଥ ବାଚକ' । ଆତ୍ମଜ୍ଞାନ ଅର୍ଥ ହେଲା 'ବ୍ରହ୍ମଜ୍ଞାନ' । ଋଗ୍‌ବେଦରେ କୁହାଯାଇଛି 'କୋନୁ ଆତ୍ମା' ।(୩୧) ଏହାର ଉତ୍ତରରେ କୁହାଯାଇଛି 'ଅଜୋଭାଗଃ'(୩୨) । ଅର୍ଥାତ୍ ଏ ଜୀବର ଦେହକୁ ନିୟନ୍ତ୍ରଣ କରିଥାନ୍ତି ଏବଂ ଥାଆନ୍ତି ଅଜନ୍ମା । ଜୀବର ମୃତ୍ୟୁ ପରେ ଏ ମଧ୍ୟ ଅମର ଥାନ୍ତି । ତେଣୁ ଆତ୍ମା ଓ ଶରୀର ପରସ୍ପର ଠାରୁ ପୃଥକ୍ ।(୩୩) ଋଗ୍‌ବେଦର 'ଦ୍ୱାସୁପର୍ଣ୍ଣା' ମନ୍ତ୍ରରେ ଜୀବାତ୍ମା ଓ ପରମାତ୍ମା ମଧ୍ୟରେ ଥିବା ପାର୍ଥକ୍ୟକୁ ଖୁବ୍ ସୁନ୍ଦର ଭାବରେ ଗୋଟିଏ ଗଳ୍ପ ମାଧ୍ୟମରେ ବୁଝାଇ ଦିଆ ଯାଇଛି । ସେଥିରେ କୁହାଯାଇଛି ଗୋଟିଏ ଅଶ୍ୱଥ

ବୃକ୍ଷରେ ସୁନ୍ଦର ଡେଣାଥିବା ଚଢେଇ ଦିଓଟି ବସିଛନ୍ତି । ଗୋଟିଏ ଅଶ୍ୱଥ ଫଳକୁ ଖାଉଛି ଏବଂ ଅନ୍ୟଟି ସେମିତି ଚୁହିଁ ରହିଛି । ଶରୀର ରୂପକ ବୃକ୍ଷରେ 'ଜୀବାତ୍ମା ଓ ପରମାତ୍ମା' ଉଭୟ ଅଛନ୍ତି । ଜୀବାତ୍ମା ସୁଖ ଦୁଃଖର ଫଳ ଭୋଗ କରୁଥିଲା ବେଳେ ପରମାତ୍ମା 'ନିର୍ମମ, ନିରପେକ୍ଷ ଓ ଉଦାସୀନ' ହୋଇ ଚୁହିଁ ରହିଅଛନ୍ତି । ଲୌକିକ ଭାବରେ ଜୀବାତ୍ମା ଓ ପରମାତ୍ମା ପୃଥକ୍ ପୃଥକ୍ ବୋଲି ଅବଶ୍ୟ ଜଣାଯାନ୍ତି । କିନ୍ତୁ ଅତିନ୍ଦ୍ରିୟ ଅବସ୍ଥାରେ ଏ ପ୍ରଭେଦ ଜମା ରହେ ନାହିଁ । ସେଠି ପରମାତ୍ମା ଓ ଜୀବାତ୍ମା ଏକାକାର ହୋଇ ଥାଆନ୍ତି ।(୩୪) ଏହି ଅଭିନ୍ନତାର ଜ୍ଞାନ ହେଉଛି 'ଅଦ୍ୱୈତ ବାଦ' । ଋଗ୍ ବେଦ ରେ କୁହାଯାଇଛି ଯେଉଁ ବ୍ୟକ୍ତି ଏହି ଅଭିନ୍ନତା ସଂପର୍କରେ ସଚେତନ ନୁହଁନ୍ତି ସେତାଙ୍କ ବାପାଙ୍କୁ ଚିହ୍ନି ନାହଁନ୍ତି ।(୩୫)

ଏହି ଆତ୍ମା ବିଷୟକ ଚିନ୍ତାଧାରାର 'ଭୂୟୋବିକାଶ ଘଟିଥିଲା ଉପନିଷଦ ସମୟକୁ' । ଏହା ଏକ ବିଧିବଦ୍ଧ ଦର୍ଶନର ରୂପ ନେଇଥିଲା । ଯାହାକି ବେଦାନ୍ତ ଦର୍ଶନ ନାମରେ ଖ୍ୟାତ । ଏ ହେଉଛି ଅଦ୍ୱୈତବାଦ । ପରମାତ୍ମା ଓ ଜୀବାତ୍ମାଙ୍କୁ ପୃଥକ୍ ଭାବରେ ବିଚାର କରିବା ହେଉଛି ଦ୍ୱୈତବାଦ । ବେଦ ଓ ଉପନିଷଦର ମନ୍ତ୍ର ଗୁଡିକ ହେଉଛି ଋଷିମାନଙ୍କର ଅନୁଭୂତି ସମ୍ପନ୍ନ ଜ୍ଞାନ । ଋଷିମାନଙ୍କର ଆଧ୍ୟାତ୍ମିକ ସିଦ୍ଧି ମଧ୍ୟରେ ପାର୍ଥକ୍ୟ ସ୍ୱାଭାବିକ୍ । ସେମାନେ ଯାହା ଅନୁଭବ କରିଛନ୍ତି ତାହାହିଁ କହିଛନ୍ତି । ତେଣୁ ତାହା ଅନେକ ସମୟରେ ରହସ୍ୟମୟ ହୋଇଛି ।

**ମାନବର ବର୍ଗୀକରଣ –**

ବୈଦିକ ମନ୍ତ୍ରରେ ବିଭିନ୍ନ ଲୋକଙ୍କ ଲାଗି ବିଭିନ୍ନ ଉପାଦାନ ରହିଅଛି । ଏଥିରେ ଯେପରି ଦିବ୍ୟ ଜୀବନ ଲାଭ କରିବାର ମାର୍ଗ ପ୍ରଦର୍ଶିତ ହୋଇଛି ସେହିପରି ଗାଈ, ଗୋରୁ, ଧନରତ୍ନ ପାଇବା ଲାଗି ଏବଂ ଯୁଦ୍ଧରେ ଜୟୀ ହେବା ପାଇଁ ଦେବତାଙ୍କୁ ପ୍ରାର୍ଥନା କରାଯାଇଛି । ଏଥିରେ ଚାରି ପ୍ରକାର ସାଧକଙ୍କ କଥା କୁହାଯାଇଛି । ସେମାନେ ହେଲେ 'ଅର୍ଥାର୍ଥୀ', 'ଆର୍ତ୍ତ', 'ଜିଜ୍ଞାସୁ ଓ ଜ୍ଞାନୀ' ପ୍ରଥମ ଦୁଇ ଶ୍ରେଣୀୟ ସେମାନଙ୍କ କାମନା ବାସନାର ପୂର୍ତ୍ତିପାଇଁ ସର୍ବଦା ବ୍ୟସ୍ତ ଥାନ୍ତି । ଧନ, ଜନ, ଗୋପ, ଲକ୍ଷ୍ମୀ ପାଇବା ପାଇଁ ସେମାନେ ଲାଳାୟିତ । ନପାଇବାର ଦୁଃଖରେ ସେମାନେ ଅଧୀର ହୁଅନ୍ତି । ଦୁଃଖ, ଯନ୍ତ୍ରଣା ସେମାନଙ୍କୁ 'ଆର୍ତ୍ତ' କରିଥାଏ । ଏହାର ଲାଘବ ପାଇଁ ସେମାନେ ଭଗବାନଙ୍କୁ ପ୍ରାର୍ଥନା କରିଥାନ୍ତି । ଏହାଦ୍ୱାରା ସେମାନଙ୍କର ଭଗବାନଙ୍କ ପ୍ରତି ଆସ୍ଥା ବଢେ । ସେତେବେଳେ ସେମାନେ ଜିଜ୍ଞାସୁ ହୋଇ ଉଠନ୍ତି । ଦିବ୍ୟସତ୍ୟ ସଂପର୍କରେ ସେମାନେ ଅନୁସନ୍ଧାନ କରନ୍ତି । ଶେଷରେ ମାନସିକ ସ୍ତରରେ ଭଗବାନଙ୍କ ସହିତ ସେମାନଙ୍କର ଏକତ୍ୱ ବୋଧ ଆସେ । ସେତେବେଳେ ସେମାନଙ୍କୁ ଜ୍ଞାନୀ ବୋଲି କୁହାଯାଏ । ଜ୍ଞାନୀ ହେବାର ଅଧିକାର ସମସ୍ତଙ୍କର ରହିଅଛି ।

**ବୈଦିକ ଦର୍ଶନର ଲକ୍ଷ୍ୟ –**

ବୈଦିକ ଆର୍ଯ୍ୟମାନଙ୍କର ଜୀବନ ଥିଲା ଆନନ୍ଦମୟ । ଇହଲୋକ ଏବଂ ପରଲୋକରେ ସେମାନେ ଆନନ୍ଦପାଇଁ ଆଶାୟୀ, ସେମାନେ ଅନ୍ତର୍ଦୃଷ୍ଟି ବଳରେ ଚିର ଆନନ୍ଦମୟ ସତ୍ତାଙ୍କର ଅନୁସନ୍ଧାନ କରନ୍ତି । ସେମାନଙ୍କର ଚରମ ଲକ୍ଷ୍ୟ ଥିଲା ଦୁଃଖକୁ ଜୀବନରୁ ଅପସାରିତ କରି ସୁଖମୟ କରିବା । ଏହିଠାରୁ ମୋକ୍ଷ ବା ମୁକ୍ତିର ଚିନ୍ତା ଉତ୍ପତ୍ତି ହୁଏ । ବ୍ୟବହାରିକ ଜୀବନର ଦୁଃଖରୁ କିଭଳି ମୁକ୍ତି ମିଳିବ ତାହା ଥିଲା ବୈଦିକ ଦର୍ଶନର ଲକ୍ଷ୍ୟ ।

**ଉପନିଷଦୀୟ ଦର୍ଶନ –**

ଉପନିଷଦ ହେଉଛି ବେଦର 'ଅନ୍ତ' ବା ଯେଉଁଥିରେ ବେଦର ସାରକଥା ନିହିତ ହୋଇଅଛି । ଏହାର ଆବିର୍ଭାବ ବେଦର ଶେଷରେ ଘଟିଛି । କାଳାନୁକ୍ରମେ ସଜାଇଲେ ବୈଦିକ ସାହିତ୍ୟରେ ଶେଷ ପର୍ଯ୍ୟାୟରେ ଉପନିଷଦ ଆସିଛି । ବେଦ ପରେ ବ୍ରାହ୍ମଣ, ତତ୍ ପରେ ଆରଣ୍ୟକ ଓ ଶେଷରେ ଆସିଛି ଉପନିଷଦ୍ । ଉପନିଷଦ୍ ହେଉଛି – 'ଉପ ଅର୍ଥ' ନିକଟରେ, 'ନି' ଅର୍ଥ ତଳେ ଏବଂ 'ସଦ୍' ଧାତୁ ବସିବା ଅର୍ଥରେ ବ୍ୟବହୃତ । ଉପନିଷଦର ଅର୍ଥ ହେଲା ନିକଟରେ ବସିବା । ମୁନିଋଷିମାନେ ଶିଷ୍ୟଙ୍କୁ ପାଖରେ ବସାଇ ଗଭୀର ତତ୍ତ୍ୱ ଜ୍ଞାନ ବୁଝାଉ ଥିଲେ । ଏହି ଗଭୀର ତତ୍ତ୍ୱ ଜ୍ଞାନ ହେଲା 'ଉପନିଷଦ୍' ଶଙ୍କରାଚାର୍ଯ୍ୟଙ୍କ ମତରେ 'ଯାହା ଦ୍ୱାରା ମନୁଷ୍ୟର ଅବିଦ୍ୟା ଓ ଅଜ୍ଞାନ ନାଶ ହୁଏ ତାହାକୁ କୁହାଯାଏ ଉପନିଷଦ୍' । ଉପନିଷଦ୍‌କୁ ମଧ୍ୟ ରହସ୍ୟ ବୋଲି କୁହାଯାଇଥାଏ । କାରଣ ଏଥିରେ ଆର୍ଯ୍ୟ ଋଷିମାନଙ୍କର ରହସ୍ୟବାଦୀ ଦୃଷ୍ଟିଭଂଗୀ ନିହିତ । ଏହାକୁ ଯେତେ ଅନୁଧ୍ୟାନ କଲେ ମଧ୍ୟ ଆଉ କିଛି ରହି ଗଲା ଭଳି ମନେହୁଏ ।

ବୈଦିକ ସଂହିତା ଗୁଡିକରେ ଯେଉଁ ଭାବଧାରା ଗୁଡିକର ମୂଳ ବୀଜ ନିହିତ ଥିଲା ଉପନିଷଦରେ ତାହାର ଭୂୟୋବିକାଶ ଘଟିଅଛି । ଉପନିଷଦ୍‌ମାନଙ୍କର ବକ୍ତବ୍ୟ ହେଲା ମାନବ ଜୀବନରେ ସର୍ବଦା 'ପ୍ରେୟସ' ଓ 'ଶ୍ରେୟସ' ମଧ୍ୟରେ ଦ୍ୱନ୍ଦ ଲାଗିଛି । ମଣିଷ ପ୍ରକୃତ ଆନନ୍ଦ ପାଇବାକୁ ହେଲେ 'ଶ୍ରେୟସ୍' ପ୍ରତି ଅଭୀପ୍ସା ବଢାଇ 'ପ୍ରେୟସ'କୁ ଛାଡିଦେବା ଉଚିତ୍ । 'ଉପନିଷଦ୍' ଉଦ୍ଦେଶ୍ୟ ହେଲା ମନୁଷ୍ୟକୁ ସାରା ଦୃଶ୍ୟମାନ ଜଗତଠାରୁ ଦୂରେଇ ନେଇ ନିଜ ଅନ୍ତଃସ୍ଥଳ ପ୍ରତି ଦୃଷ୍ଟି ଦିଆଇବା । ଯେତେବେଳେ ସାରା ବ୍ୟକ୍ତ ଜଗତ ସହିତ ତାହାର ଆତ୍ମିକ ସତ୍ତାକୁ ସାମିଲ କରି ଦିଏ । ଏହି ଭଳି ମାନସିକ ସ୍ଥିତିରେ ମନୁଷ୍ୟ, ଜଗତ ଓ ପରମାତ୍ମା ଏକୀଭୂତ ହୋଇଯାନ୍ତି । ଏହା ହେଉଛି 'ପରମ ଜ୍ଞାନ' ବା 'ବ୍ରହ୍ମ ଜ୍ଞାନ' । ଏହା ଅସଂପୂର୍ଣ୍ଣ ମଣିଷକୁ ସଂପୂର୍ଣ୍ଣତା ଆଡକୁ ଟାଣିନିଏ । ଆତ୍ମ ଉପଲବ୍ଧ ଜ୍ଞାନ ବଳରେ ବ୍ୟକ୍ତିଙ୍କର ପୁରୁଷ ସଂପର୍କୀୟ ଜ୍ଞାନ ଓ ଉପଲବ୍ଧ ଆସିଥାଏ । ସେଥିପାଇଁ ଅଧିକ ସମୟ ମୌନ ହେବାକୁ ହୋଇଥାଏ । ଉପନିଷଦର ମୁଖ୍ୟ 'ଉପଜୀବ୍ୟ' ବିଷୟ ବସ୍ତୁ ହେଲା ଅନୈକ୍ୟ ମଧ୍ୟରେ ଐକ୍ୟର ଅନୁସନ୍ଧାନ କରିବା । ପୃଥିବୀରେ ମଣିଷ ଭଳି ଅନେକ ଜୀବ ଜନ୍ତୁ ବାସ କରୁଅଛନ୍ତି । ଏ ସମସ୍ତ ପ୍ରତ୍ୟେକ ଅପର ଠାରୁ ଭିନ୍ନ । ଏଭଳି ଭିନ୍ନତା ସତ୍ତ୍ୱେ ଏମାନଙ୍କ ମଧ୍ୟରେ ଗୋଟିଏ ଏକତା ଅଛି । ଋଗ୍ ବେଦ ର ଋଷି ଏହି ଏକତାକୁ ସ୍ୱୀକାର କରିଅଛନ୍ତି । ଦୀର୍ଘତମା ଋଷିଙ୍କ ବାଣୀ 'ଏକ ସଦ୍‌ବିପ୍ରାଃ ବହୁଧା ଭବନ୍ତି' ଏହାର ନିଦର୍ଶନ । ଋଗ୍ ବେଦୀୟ ଋଷି ସଂଶୟ କଣ୍ଠରେ କହୁଥିଲା ଯେ "ଯେ ଏହାର (ସୃଷ୍ଟିର) ଅଧକ୍ଷ ହୋଇ ବିରାଟ ଆକାଶ ମଣ୍ଡଳରେ ରହଛନ୍ତି । ସେ ହୁଏତ ଏହି ରହସ୍ୟକୁ ଜାଣି ଥିବେ ଅଥବା ଜାଣି ନଥିବେ" ।(୩୬) ମାତ୍ର ଉପନିଷଦରେ ଏହାର ସଠିକ ଉତ୍ତର ମିଳିଛି । ଉପନିଷଦ କହିଛି 'ଏ ସାରା ବିଶ୍ୱ ବ୍ରହ୍ମାଣ୍ଡତ କେବଳ ସେହି ଏକ ପରଂବ୍ରହ୍ମଙ୍କ ଠାରୁ ଆସି ନାହିଁ, ଏହା ପରିଶେଷରେ ଦିନେ ତାଙ୍କରି ଠାରେ ଲୀନ ହେବ ଏବଂ ସକଳ ସୃଷ୍ଟ ବସ୍ତୁର ସ୍ଥିତି ତାଙ୍କରି ଯୋଗୁହିଁ ସମ୍ଭବ' ।(୩୭) ଛାନ୍ଦୋଗ୍ୟ ଉପନିଷଦ୍ ମତରେ ଆମେ ମାଟି ପିଣ୍ଡୁଳାଟି ବିଷୟରେ ଜାଣି ପାରିଲେ ମାଟିରେ ତିଆରି ସବୁ ଜିନିଷ ବିଷୟରେ ଜାଣିପାରିବା, ଅନୁରୂପ ଭାବରେ ଆମେ 'ବ୍ରହ୍ମ' ସଂପର୍କରେ ଜାଣି ପାରିଲେ

ବିଶ୍ୱ ବ୍ରହ୍ମାଣ୍ଡ ସଂପର୍କରେ ଜାଣି ପାରିବା ।(୩୮) ଉପନିଷଦ୍‌ର ଋଷିମାନେ ନିଜର ଆତ୍ମବୋଧ ବଳରେ ଯେଉଁ ସତ୍ୟର ଆବିଷ୍କାର କରିଥିଲେ ତାହା ଜଗତର ମଙ୍ଗଳ ଲାଗି ଛାଡି ଯାଇଛନ୍ତି । ଅବଶ୍ୟ ଉପନିଷଦୀୟ ଋଷିମାନେ କୌଣସି ନିର୍ଦ୍ଦିଷ୍ଟ ଦାର୍ଶନିକ ଚିନ୍ତାଧାରାକୁ ଆଖି ଆଗରେ ରଖି ଏଭଳି ସତ୍ୟବାଣୀ ଗୁଡିକୁ ଉଦ୍‌ଘାଟନ କରି ନାହାଁନ୍ତି । ସେମାନେ ସତ୍ୟକୁ ସତ୍ୟ ଅର୍ଥରେ ଗ୍ରହଣ କରିଅଛନ୍ତି । ଯେତେବେଳେ ଯେଉଁ ସତ୍ୟଟିକୁ ସେମାନେ ଆବିଷ୍କାର କରିଛନ୍ତି ତାହାକୁ ସଂଗେ ସଂଗେ ବ୍ୟକ୍ତ କରି ଦେଇଛନ୍ତି ।

ଉପନିଷଦର ଦୁଇଟି ପ୍ରତିପାଦ୍ୟ ବିଷୟ ହେଉଛି ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି ଶୂନ୍ୟରୁ ହୋଇନାହିଁ । ଏହା ହୋଇଛି ଭଗବାନ ଠାରୁ । ପରିଶେଷରେ ଦିନେ ବିଶ୍ୱ ବ୍ରହ୍ମାଣ୍ଡ ଯେଉଁ ଭଗବାନଙ୍କ ଠାରୁ ଆସିଛି ସେହିଠାକୁ ହିଁ ଫେରିଯିବ । ଉପନିଷଦ ଯୁଗରେ ବିଶ୍ୱାସ ଥିଲା ଯେ 'ସୃଷ୍ଟିର ଅବ୍ୟବହିତ ପୂର୍ବରୁ ଯାହା ଅବସ୍ଥା ଥିଲା ତାହାର କ୍ରମ ବିବର୍ତ୍ତନ ଘଟି ଆସିଛି ଏବଂ ବର୍ତ୍ତମାନ ଯେଉଁ ଅବସ୍ଥାରେ ତାହା ଆସି ପହଞ୍ଚିଛି ତାହାର ମଧ୍ୟ ବିର୍ବତ୍ତନ ଘଟିବ । ଯେଉଁ ନିୟମରେ ବିବର୍ତ୍ତନ ଘଟିଛି ତାହାର ବିପରୀତ ନିୟମରେ ଅନୁବର୍ତ୍ତନ ଘଟିବ । ସୃଷ୍ଟିର ପୂର୍ବବର୍ତ୍ତୀ ଅବସ୍ଥା ଫେରି ଆସିବ । ସାରା ବିଶ୍ୱ ବ୍ରହ୍ମାଣ୍ଡ ଏକ ବିରାଟ ଜୀବନୀ ଶକ୍ତି ଯାହାକି ହୃତ୍‌ପିଣ୍ଡ ଭଳି ପ୍ରସାରିତ ଓ ସଂକୁଚିତ ହେଉଛି । ଏହା ଯଥାକ୍ରମେ ସୃଷ୍ଟି ଓ ପ୍ରଳୟ ନାମରେ ଅଭିହିତ '।(ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତି- ପଞ୍ଚମ ଖଣ୍ଡ- ବୈଦିକ ପର୍ବ- ଚତୁର୍ଥ ଭାଗ, ପୃଷ୍ଠା ୨୮୨ରୁ ଉଦ୍ଧୃତ)

ଉପନିଷଦ୍ କହେ ସର୍ବଦା ଏକ ମୌଳିକ ଏକତା ଅଛି । ତାହା ହେଉଛି 'ଚିତ୍' । ଏହା ସର୍ବତ୍ର ବିଦ୍ୟମାନ । ଏହାକୁ 'ପ୍ରଜ୍ଞାନ'ଙ୍କର ଗୋଟିଏ ଗୋଟିଏ ନାମ କହିବାକୁ ହେବ । ଐତରେୟ ଉପନିଷଦ୍‌ରେ କୁହାଯାଇଛି 'ଏ ସମସ୍ତେ ହେଉଛନ୍ତି ସେହି ପ୍ରଜ୍ଞାନଙ୍କର ନାମ ବା ଅଭିପ୍ରକାଶ'। ସାରା ବିଶ୍ୱ ବ୍ରହ୍ମାଣ୍ଡ ପ୍ରକୃତରେ ଏକ, ଅଥଚ ଏହା ଆମକୁ ଭିନ୍ନ ଭିନ୍ନ ଦେଖାଯାଇଥାଏ । ଏହା ହେଉଛି ମାୟା ।(୩୯)

**ଉପନିଷଦୀୟ ଦର୍ଶନର ବ୍ୟବହାରିକତା –**

ଏହା କେବଳ ପୋଥିବାଇଗଣ ନୁହେଁ । ଏହା ଦୈନନ୍ଦିନ ଜୀବନରେ ବଞ୍ଚି ରହେ । ତାହା ଶ୍ୱେତକେତୁ ଓ ଆରୁଣିଙ୍କ ଗଳ୍ପରୁ ଅନୁମିତ ହୁଏ । ଗତିରେ ହିଁ ଜୀବନ । ସ୍ଥାଣୁତ୍ୱରେ ମୃତ୍ୟୁ । ସେଥିପାଇଁ 'ଐତରେୟ ଉପନିଷଦ୍' ଗତିର ଗାନ କରି କହିଅଛି – 'ଚରୈବେତି ଚରୈବେତି', ଆଗେଇ ଚାଲ, ଆଗେଇ ଚାଲ । ଏ ଗତିର ଏକ ଶୃଙ୍ଖଳା ଅଛି । ଏକ ନୀତି ନିୟମ ଅଛି । ଧୀରେ ଧୀରେ ସେହି ବାଟରେ ଆଗେଇବାକୁ ହେବ । ସେଥିପାଇଁ 'ବେଦାନ୍ତ' ଏକ ଆଦର୍ଶ ମନୁଷ୍ୟ ଆଗରେ ରଖିଥାଏ । ଉପନିଷଦରେ ଗୁରୁ ଶିଷ୍ୟଙ୍କୁ କୁହୁଛନ୍ତି 'ତତ୍ତ୍ୱମସି' । ଅର୍ଥାତ୍ 'ତୁମେ ହେଉଛ ସେହି ବ୍ରହ୍ମ' । ମୁଁ ହେଉଛି ବ୍ରହ୍ମ ଏହି ଧାରଣା ଯେତେବେଳେ ମନୁଷ୍ୟର ଆସିବ ସେତେବେଳେ ସମସ୍ତ 'ଦିବତ୍ୱ' ସେ ପାଇଯିବ । ମାନବ ଜୀବନକୁ ଛାଡି ଭଗବାନଙ୍କ ବିଷୟରେ ଚିନ୍ତା କରାଯାଇ ପାରିବ ନାହିଁ । 'ଈଶାବାସ୍ୟୋପନିଷଦ'ରେ ଆଧ୍ୟାତ୍ମିକତା ଓ ବସ୍ତୁବାଦର ଏକ ସମନ୍ୱିତ ଦୃଷ୍ଟିଭଂଗୀ ଅଣାଯାଇଛି । ଏହି ଦୃଷ୍ଟିଭଂଗୀକୁ ଅନୁସରଣ କରୁଥିବା ବ୍ୟକ୍ତି ସଫଳ ଆଧ୍ୟାତ୍ମିକ ଜୀବନ ଯାପନ କରି ମୁକ୍ତିପଥରେ ଅଗ୍ରସର ହୋଇ ପାରିବ ବୋଲି

କୁହାଯାଇଛି । ରବୀନ୍ଦ୍ରନାଥ ଠାକୁର ଅନୁରୂପ କଥା କହିଛନ୍ତି ।(୪୦) ଅତଏବ 'ଉପନିଷଦୀୟ ଋଷିମାନେ ଜଗତକୁ ଛାଡି ଆଧ୍ୟାତ୍ମଜ୍ଞାନର କଥା କଳ୍ପନା କରି ନଥିଲେ । ବରଂ ବ୍ୟକ୍ତି, ଜଗତ ଓ ପରମାତ୍ମାଙ୍କ ମଧ୍ୟରେ ଯେଉଁ ଘନିଷ୍ଠ ସଂପର୍କ ଅଛି ତାହାକୁ ଆବିଷ୍କାର କରିବା ପାଇଁ ସେମାନେ ଉଦ୍ୟମ କରିଥିଲେ । ଏହି ଅନିର୍ବଚନୀୟ ଏକତା ଋଗ୍‌ବେଦରେ 'ତତ୍ ଏକଂ' ଛଡା ଅନ୍ୟ କିଛି ନୁହେଁ । ଏହା 'ତତ୍ତ୍ୱମସି 'ସୋଽହଂ' ଆଦି ଉପନିଷଦୀୟ ମହାବାକ୍ୟ ଗୁଡିକରେ ଅନୁରଣିତ ।(୪୧)

ବେଦାନ୍ତ ପାପକୁ ସ୍ୱୀକୃତି ଦିଏ ନାହିଁ । ବରଂ ଭ୍ରାନ୍ତିକୁ ସ୍ୱୀକୃତି ଦିଏ । ବେଦାନ୍ତ ନିକଟରେ ମନୁଷ୍ୟ କେବେ ପାପୀ ହୋଇନାହିଁ । ସେ ଭୁଲ କରି ପାରେ । ଯାହାର ସଂଶୋଧନ ଅଛି । ମନୁଷ୍ୟର ସହଜାତ ସ୍ୱଭାବ ହେଲା ସେ ପବିତ୍ର । ତେଣୁ ପାପ ତାକୁ ମଳିନ କରି ପାରିବ ନାହିଁ । ପାପବୋଧରେ ଅଯଥାରେ ମଣିଷକୁ ଦୁର୍ବଳ ନକରି ବେଦାନ୍ତ ତାକୁ ସୁଧାରି ନେବାକୁ ସୁଯୋଗ ଦେଉଥିଲା । ଅନ୍ଧାରରୁ ଆଲୋକକୁ ଆସିବା ପାଇଁ ବାଟ ଦେଖାଉଥିଲା । ଏଥିରୁ ଅନୁମିତ ହୁଏ ଉପନିଷଦୀୟ ଦର୍ଶନର ବ୍ୟବହାରିକ ଜୀବନ ସହିତ ଘନିଷ୍ଠ ସମ୍ବନ୍ଧ ଥିଲା ।

**ଉପନିଷଦର ବୈଜ୍ଞାନିକ ଦୃଷ୍ଟି ଭଂଗୀ –**

ସତ୍ୟର ଉପଲବ୍ଧି ନିମିତ୍ତ ଆତ୍ମା ସଂପର୍କରେ ଚରମ ଜ୍ଞାନ ପାଇବା ପାଇଁ ଉପନିଷଦୀୟ ଋଷିମାନେ ତିନୋଟି ପର୍ଯ୍ୟାୟର ବ୍ୟବସ୍ଥା କରିଅଛନ୍ତି । ଏହି ପର୍ଯ୍ୟାୟ ଗୁଡିକ ହେଲା 'ଶ୍ରବଣ, ମନନ, ଓ ନିଦିଧ୍ୟାସନ' । 'ବୃହଦାରଣ୍ୟକ ଉପନିଷଦ୍'ରେ ଯାଜ୍ଞବଲ୍କ୍ୟ 'ମୈତ୍ରେୟୀ'ଙ୍କୁ ଉପଦେଶ ଦେଇ କହିଅଛନ୍ତି 'ସେହି ଆତ୍ମାଙ୍କ ବିଷୟରେ ଶୁଣିବାକୁ ହେବ । ଚିନ୍ତା କରିବାକୁ ହେବ ଏବଂ ନିଦିଧ୍ୟାସନ କରିବାକୁ ହେବ । ନିଦିଧ୍ୟାସନର ଅର୍ଥ ହେଲା ହେତୁବାଦର କଷଟି ପଥରରେ ପରୀକ୍ଷା ନିରୀକ୍ଷା କରି ନେଇ ଶେଷରେ ସତ୍ୟାସତ୍ୟ ବିଷୟ ଜାଣିବା ' ।(୪୩) ଆତ୍ମାଙ୍କର ସ୍ଥିତି ବା ପରଂବ୍ରହ୍ମଙ୍କ ସ୍ଥିତିକୁ ନେଇ ଉପନିଷଦୀୟ ଦର୍ଶନ ଗଢା । ଉପନିଷଦରେ ରୁଦ୍ଧ ମନର ଆଦୌ ଅବକାଶ ନଥିଲା ; ସର୍ବଦା ମୁକ୍ତମନା ହୋଇ ରହିବାକୁ କୁହାଯାଇଛି । ସତ୍ୟ ହେଉଛି ଚିରନ୍ତନ । ସର୍ବଦା ସତ୍ୟର ସନ୍ଧାନରେ ମନୁଷ୍ୟ ଅନୁବର୍ତ୍ତୀ ହେବାପାଇଁ ଉପନିଷଦ୍ କହିଅଛି । ମନୁଷ୍ୟର ଐହିକ ଓ ପାରଲୌକିକ ଉନ୍ନତି ସାଧନ ପାଇଁ ଚିରନ୍ତନ ସତ୍ୟର ଅନୁସନ୍ଧାନ କରିବା ଆବଶ୍ୟକ । 'ନିଦିଧ୍ୟାସନ'ର ଚରମ ପରୀକ୍ଷା ମଧ୍ୟରେ ସତ୍ୟର ଆବିଷ୍କାର ସମ୍ଭବ ହୋଇ ପାରିବ ।

**ଉପନିଷଦର ରହସ୍ୟବାଦୀ ଦୃଷ୍ଟି ଭଂଗୀ –**

ଉପନିଷଦ ଆମ ଚିନ୍ତାଧାରାକୁ ଆଧ୍ୟାତ୍ମିକତାର ରସରେ ରସାଣିତ କରିଅଛି । ସତ୍ୟକୁ ଉଦ୍‌ଘାଟିତ କରିବାକୁ ହେଲେ ଚୈତ୍ୟସ୍ତରରେ କ୍ରମିକ ବିକାଶ ଘଟାଇବାକୁ ହେବ । ବେଦ, ବ୍ରାହ୍ମଣ, ଉପନିଷଦ୍ ସବୁଥିରେ ଭଗବାନଙ୍କ ସଂପର୍କରେ କୁହାଯାଇଛି । ଉପନିଷଦରେ ନିଜେ ଭଗବାନ ବୋଲି ଦାବି କରିଛି । ଉପନିଷଦର ମହାବାକ୍ୟ ସମୂହ ହେଉଛି ସୋଽହଂ (ସେ ହେଉଛି ମୁଁ) 'ତତ୍ତ୍ୱମସି'

(ତୁମେ ହେଉଛ ସେ) ଏହାର ନିଦର୍ଶନ । ସେତେବେଳେ ସେ ପରମ ବ୍ରହ୍ମଙ୍କ ସହିତ ନିଜକୁ ସାମିଲ କରି ଦେଇଛି ଏବଂ ନିଜେ ଯେ ତାଙ୍କର ଅଂଶ ସ୍ୱରୂପ ଦାବି କରିଅଛି । ଏହାକୁ ଦାର୍ଶନିକ ରୂପ ଦିଆଯାଇ କୁହାଯାଇଛି 'ବେଦାନ୍ତ ଦର୍ଶନ' । ତେଣୁ ବୈଦିକ ସଂହିତା ଯୁଗରୁ ଉପନିଷଦ୍ ଯୁଗ ପର୍ଯ୍ୟନ୍ତ ଯାହା କିଛି ବିବର୍ଦ୍ଧନ, ବିକାଶ ଓ ଉତ୍ତରଣ ଘଟି ଅଛି ତାହା ମୂଳରେ ଭଗବାନ ଅଛନ୍ତି । ନିଜର ଦିବ୍ୟତ୍ୱ ବିଷୟରେ ଜ୍ଞାନ ଆସିଗଲେ ମନୁଷ୍ୟ ଦିବ୍ୟ ହୋଇଯାଏ ଏବଂ ସେଭଳି ମାନସିକ ସ୍ଥିତିରେ ସେ ଭଗବାନଙ୍କ ସହିତ ସମାନ ହୋଇଯାଏ । ଏହା ହେଲା ଉପନିଷଦର ସାରକଥା ।

'ମାଣ୍ଡୁକ୍ୟୋପନିଷଦ' ଚେତନାର ଚତୁର୍ଥ ସ୍ତରର କଥା କହିଥାଏ । ଚତୁର୍ଥ ସ୍ତରକୁ ଶେଷ ସ୍ତର ବୋଲି କୁହାଯାଏ । ଏହି ସ୍ତରରେ 'ବ୍ରହ୍ମୋପଲବଧି' ସମ୍ଭବ ହୋଇଥାଏ । ଏହି ସ୍ତର ଗୁଡିକ ହେଲା 'ଜାଗୃତି, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ' । ଜୀବକୁ ଗୋଟିଏ ପରେ ଗୋଟିଏ କରି ଏହି ଅବସ୍ଥାକୁ ପ୍ରାପ୍ତ ହେବାକୁ ହୁଏ । 'ପ୍ରଥମଟି ହେଲା ଜାଗୃତି ଅବସ୍ଥା । ଏହି ଅବସ୍ଥାରେ ଜୀବର ଇନ୍ଦ୍ରିୟ ଗୁଡିକ କାର୍ଯ୍ୟ କରିଥାନ୍ତି ଏବଂ ସେ ବାହାର ଜଗତକୁ ଇନ୍ଦ୍ରିୟ ମାଧ୍ୟମରେ ଉପଭୋଗ କରିଥାଏ । ଏହା ହେଉଛି ଚେତନାର ନିମ୍ନତମସ୍ତର । ଯେଉଁଠି କି ଏହା ଦୈହିକ ଶରୀର ସହିତ ନିଜକୁ ସାମିଲ କରିଥାଏ' । ବହ୍ମୋପଲବଧି ଦୃଷ୍ଟିରୁ ଏହି ଅବସ୍ଥାକୁ ବୈଶ୍ୱାନର କୁହାଯାଏ । ପ୍ରକାଶମାନ ବ୍ୟକ୍ତି ସତ୍ତା ହେଉଛି 'ବୈଶ୍ୱାନର' ଓ ବିଶ୍ୱ ହେଉଛି 'ବିରାଟ୍' । ଅତଏବ ବୈଶ୍ୱାନର ଚେତନା ହେଉଛି ବିରାଟ ଚେତନାର ଅଂଶବିଶେଷ । ଏହି ଚେତନାରେ ଜୀବ ଭୌତିକ ଜଗତ ସହିତ ଜଡ଼ିତ ଥାଏ । ଦ୍ୱିତୀୟ ଅବସ୍ଥାକୁ କୁହାଯାଏ 'ସ୍ୱପ୍ନ' । ଯାହା 'ବହ୍ମୋପଲବ୍ଧି' ଦୃଷ୍ଟିରୁ 'ତୈଜସ' ନାମରେ ଖ୍ୟାତ । ଏହି ଅବସ୍ଥାରେ ଜୀବର ଇନ୍ଦ୍ରିୟମାନେ କାର୍ଯ୍ୟ କରୁନଥିଲେ ମଧ୍ୟ, ସେ ଦେଖିପାରେ, ଶୁଣିପାରେ, ଅନୁଭବ କରିପାରେ ଓ ଭାବିପାରେ । ଏହି ଅବସ୍ଥାରେ ମନ ଭୌତିକ ଶରୀରର ଊର୍ଦ୍ଧ୍ୱକୁ ଚାଲିଯାଇଥାଏ । ଏହା ହେଉଛି 'ଜାଗୃତି ଓ ସୁଷୁପ୍ତି'ର ମଧ୍ୟବର୍ତ୍ତୀ ଅବସ୍ଥା । ଏହି ଅବସ୍ଥାରେ ଅନ୍ତର୍ଦୃଷ୍ଟି ବଳରେ ମନରେ ବିଭିନ୍ନ ଛାପ ପଡି ଯାଇଥାଏ । ବହ୍ମୋପଲବ୍ଧି ଦୃଷ୍ଟିରୁ ମନର ଏହି ଅବସ୍ଥାକୁ କୁହାଯାଏ 'ହିରଣ୍ୟ ଗର୍ଭ' । ଏହା 'ପ୍ରଜାତ ବ୍ରହ୍ମା' ଭାବରେ ପ୍ରତିଭାତ ହୁଅନ୍ତି । 'ହିରଣ୍ୟ ଗର୍ଭ' ହେଉଛନ୍ତି ଫଳ ଶ୍ରୁତିର ଦେବତା । ସେ 'କାରଣ ଦେବତା', 'ଈଶ୍ୱର' କିନ୍ତୁ ନୁହଁନ୍ତି । ତୃତୀୟ ଅବସ୍ଥା ହେଲା 'ସୁଷୁପ୍ତି' । ଏହି ଅବସ୍ଥାରେ ଚେତନାକୁ କୁହାଯାଏ 'ପ୍ରଜ୍ଞ' । ଜୀବର ଭୌତିକ ଶରୀର ବିଷୟରେ ସଚେତନତା ଦୂରୀଭୂତ ହୋଇଯାଏ । ସେ ମନ ଠାରୁ ଆହୁରି ଉଚ୍ଚତର ଅବସ୍ଥାକୁ ଚାଲିଯାଏ । 'ପଞ୍ଚକୋଷୀ' ଜୀବର ଏହା ହେଉଛି 'ବିଜ୍ଞାନମୟ କୋଷ'ରେ ଅଧିଷ୍ଠାନ କରିବା ଅବସ୍ଥା । ବ୍ରହ୍ମୋପଲବ୍ଧି ଦୃଷ୍ଟିରୁ ଏହା ହେଉଛି ଈଶ୍ୱରୋପଲବଧିର ଅବସ୍ଥା । ବ୍ରହ୍ମ ଏଠାରେ ଜୀବ ନିକଟରେ ଈଶ୍ୱର ରୂପେ ପ୍ରତିଭାତ ହୁଅନ୍ତି । ଶେଷ ଅବସ୍ଥା ହେଉଛି 'ତୁରୀୟ' ଅବସ୍ଥା । ଯେତେବେଳେ କି ଜୀବ ଆନନ୍ଦମୟ ବ୍ରହ୍ମଙ୍କର ସ୍ଥିତି ଉପଲବ୍ଧି କରେ । ତାର ପାଞ୍ଚ କୋଷ ମଧ୍ୟରୁ ଚାରିକୋଷର ଆବରଣ ଦୂର ହୋଇଯାଏ ଏବଂ ସେ 'ଆନନ୍ଦମୟ' କୋଷର ଅବସ୍ଥାରେ ଆସି ପହଞ୍ଚେ '।(ସୁରେନ୍ଦ୍ର ନାଥ ଶତପଥୀଙ୍କ ଭାରତୀୟ ଦର୍ଶନ ପଞ୍ଚମ ଖଣ୍ଡ, ବୈଦିକ ପର୍ବ - ଚତୁର୍ଥ ଖଣ୍ଡ ପୃ ୨୯୩-୯୪ରୁ ଉଦ୍ଧୃତ) ।

ଆନନ୍ଦମୟ କୋଷ ସଂପର୍କରେ ଉପନିଷଦ୍‌ରେ ବର୍ଣ୍ଣିତ ହୋଇନାହିଁ । ବ୍ରହ୍ମଙ୍କ ସ୍ୱରୂପ ସଂପର୍କରେ ଉପନିଷଦ୍ ନୀରବ । ତାଙ୍କର ସ୍ୱରୂପ ସଂପର୍କରେ କିଛି କୁହାଯାଇ ପୁଣି ଉପନିଷଦ 'ନେତି ନେତି'ବା ଏହା 'ନୁହେଁ ନୁହେଁ' ବୋଲି କହିଛି । ବ୍ରହ୍ମ ହେଉଛନ୍ତି 'ଅବାଙ୍ ମାନସ ଗୋଚର' । ତାଙ୍କୁ ମନରେ ଚିନ୍ତା କରି ହେବ ନାହିଁ କି ବାକ୍ୟରେ ପ୍ରକାଶ କରିହେବ ନାହିଁ । ଉପନିଷଦ୍‌ରେ ଜୀବ ପାଇଁକି ବ୍ରହ୍ମୋପଲବ୍ଧି କିପରି କ୍ରମାନ୍ୱୟରେ ଆସିଥାଏ ତାହା ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯାଇଛି । ଜୀବ ଶରୀରର ପଞ୍ଚବିଧ କୋଷ ହେଲା — 'ଅନ୍ନମୟ କୋଷ', 'ପ୍ରାଣମୟ କୋଷ', 'ମନୋମୟ କୋଷ', 'ବିଜ୍ଞାନମୟ କୋଷ' ଓ 'ଆନନ୍ଦମୟ କୋଷ' । ବାହ୍ୟ ଶରୀର ଅନ୍ନମୟ କୋଷରେ ଗଠିତ । ପ୍ରାଣମୟ କୋଷ ତାର ଗତିଶୀଳତା ଆଣିଥାଏ । ମନୋମୟ କୋଷ ଯାହାର ସଂପର୍କ ଥାଏ ଚେତନା ସ୍ତରରେ ଏହା ପରେ ଆସେ ବିଜ୍ଞାନମୟ କୋଷ । ଏହି କୋଷ ଆମକୁ ପ୍ରଜ୍ଞାର ଅଧିକାରୀ କରାଇଥାଏ । ଏହାପରେ ଆସେ ଆନନ୍ଦମୟ କୋଷ । ଏଠାରେ ଜୀବଠାରୁ ଦ୍ୱୈତ ଭାବନା ଦୂରେଇ ଯାଏ । ସେତେବେଳେ କର୍ତ୍ତା ଓ କ୍ରିୟା ସବୁ ଏକାକାର ହୋଇ ଯାଆନ୍ତି । ଜୀବର ପୃଥକ୍ ବ୍ୟକ୍ତି ସତ୍ତା ନଷ୍ଟ ହୋଇଥାଏ । ଏହା ଆନନ୍ଦମୟ ବ୍ରହ୍ମରେ ନିଜକୁ ସାମିଲ କରିଦିଏ । ଜୀବର ଆତ୍ମବୋଧ ବିକଶିତ ହୋଇଉଠେ ଏବଂ ଜୀବ ବ୍ରହ୍ମଙ୍କ ପୂର୍ଣ୍ଣତା ଉପଲବ୍ଧି କରେ । ତେଣୁ ଉପନିଷଦରେ 'ବ୍ରହ୍ମବିତ୍' ସାକ୍ଷାତ 'ବ୍ରହ୍ମ' ହୋଇ ଯାଆନ୍ତି ବୋଲି କୁହାଯାଇଛି ।

ସବୁଠାରୁ ସୂକ୍ଷ୍ମତମ କୋଷ ହେଉଛି ଆନନ୍ଦମୟ କୋଷ । ଏହି ଆନନ୍ଦମୟ ସ୍ଥିତିରେ ବ୍ରହ୍ମୋପଲବ୍ଧି ହୁଏ । 'ତୈତ୍ତିରୀୟ ଉପନିଷଦ'ରେ କୁହାଯାଇଛି ବ୍ରହ୍ମଙ୍କୁ ଆନନ୍ଦ ବୋଲି ଜାଣି ଥାଅ । ଆନନ୍ଦରୁ ନିଶ୍ଚିତ ଭାବରେ ଏହି ସବୁ ଜୀବମାନଙ୍କର ସୃଷ୍ଟି । ଆନନ୍ଦ ଦ୍ୱାରା ଜୀବମାନେ ବଞ୍ଚନ୍ତି । ଶେଷରେ ଆନନ୍ଦ ଭିତରେ ଲୀନ ହୁଅନ୍ତି ।(୪୩) ଏହା ହେଉଛି ବ୍ରହ୍ମତ୍ୱ ପ୍ରାପ୍ତି । ମୁକ୍ତି ବା ମୋକ୍ଷ ।

ଆନନ୍ଦ ହେଉଛି ମନୁଷ୍ୟର ସ୍ୱଭାବ । ଦୁଃଖ ନୁହେଁ, ଜୀବନ ଯେଉଁଠି ଆନନ୍ଦ ଅଛି ସେଇଠି । ଯେଉଁଠି ଆନନ୍ଦ ନାହିଁ ସେଠି ଜୀବନ ନାହିଁ । ଯେଉଁଠି ଆନନ୍ଦ ଅନନ୍ତ, ସେଠି ଜୀବନ ଅନନ୍ତ । ଅନନ୍ତ ଜୀବନର ଅବିଚ୍ଛିନ୍ନ ଆନନ୍ଦମୟତା ବିଷୟରେ ମନୁଷ୍ୟକୁ ଅବହିତ କରାଇବା ଥିଲା ଉପନିଷଦ୍‌ର ଲକ୍ଷ୍ୟ । ଆମ ଶରୀରର ଭୌତିକ, ପ୍ରାଣିକ, ମାନସିକ, ନୈତିକ ଓ ଆଧ୍ୟାତ୍ମିକ ସ୍ତର ମଧ୍ୟରେ ପଶି ତାହାର ତାତ୍ପର୍ଯ୍ୟ ବୁଝିବା ପାଇଁ ଉପନିଷଦ୍ ଶିକ୍ଷା ଦିଏ । ପ୍ରକୃତ ଜିଜ୍ଞାସୁ ଏ ସମସ୍ତ ଶକ୍ତିକୁ ନିଜ ନିୟନ୍ତ୍ରଣରେ ରଖିପାରି ଥିବାରୁ ତାଙ୍କ ପକ୍ଷରେ ଆଧ୍ୟାତ୍ମିକ ଉପଲବ୍ଧି ସମ୍ଭବ ହୋଇପାରେ । ଉପନିଷଦ ସ୍ଥୂଳ ଜୀବନ ବିଷୟରେ ଗୁରୁତ୍ୱ ଦେଉଥିଲେ ମଧ୍ୟ ମନୁଷ୍ୟକୁ ଏହି ସ୍ଥୂଳକୁ ତ୍ୟାଗ କରି ସୂକ୍ଷ୍ମତର ଅବସ୍ଥାକୁ କ୍ରମେ କ୍ରମେ ପ୍ରାପ୍ତ ହେବାକୁ କହିଥାଏ । ପ୍ରାଣିକ ଶକ୍ତିକୁ ଦିବ୍ୟତାର ଆଲୋକରେ ଆଲୋକିତ ହେବାକୁ କୁହେ । ଚେତନାର ଉର୍ଦ୍ଧ୍ୱତର ସ୍ତରକୁ ଆଗେଇ ଯିବାକୁ ଉପଦେଶ ଦିଏ । ମାନସିକ ଅବସ୍ଥା ଅତିକ୍ରମ କରି ଅତି ମାନସିକ ଅବସ୍ଥା ପ୍ରାପ୍ତ ହେବା ପାଇଁ ପ୍ରୋତ୍ସାହନ ଦିଏ । ଏହି ଅତିମାନସ ଚେତନା ହେଉଛି ଏକ ନିରପେକ୍ଷ ବାସ୍ତବତା ଏବଂ ଏକ ନିରାଲମ୍ବ ମୁକ୍ତ ସତ୍ୟ ଚେତନା । ଏହା ହେଉଛି ଏକ ପର୍ଯ୍ୟବେକ୍ଷଣକାରୀ ସତ୍ୟ ଚେତନା ଯାହା ପରମାତ୍ମା - ଜୀବାତ୍ମା ଜଗତ ସହିତ ସଂଯୋଜନା ସାଧିତ କରିବା ସଂଗେ ସଂଗେ ତାହାକୁ ବୁଝାଇବା ପାଇଁ ସହାୟକ ହୋଇଥାଏ । ଶ୍ରୀ ଅରବିନ୍ଦଙ୍କ ଦ୍ୱାରା ବ୍ୟାଖ୍ୟାତ ଅତିମାନସ ଚେତନାର

ସ୍ବରୂପ ମଧ୍ୟ ଅନୁରୂପ । ମହେନ୍ଦ୍ର ନାଥ ସରକାରଙ୍କର ବକ୍ତବ୍ୟ ଏ ସ୍ଥାନରେ ପ୍ରଣିଧାନ୍ୟ ଯୋଗ୍ୟ ।(୪୪) କେବଳ ବିଶ୍ୱାତ୍ମାକୁ ଚିହ୍ନିତ କରିଦେବା ପାଇଁ ନୁହେଁ ବରଂ ମନୁଷ୍ୟ ଭିତରେ ଯେଉଁ ବିଶ୍ୱାତ୍ମା ସୁପ୍ତ ଅବସ୍ଥାରେ ଅଛି ତାହାକୁ ଜାଗ୍ରତ କରାଇବା ହେଉଛି ଉପନିଷଦର ଲକ୍ଷ୍ୟ । ମନୁଷ୍ୟ ମଧ୍ୟରେ ଥିବା ଦେବତ୍ୱକୁ ଅନାବରଣ କରି ଦେବା ଲାଗି ଏହା ସତତ ଚେଷ୍ଟିତ ।

**ଉପାସନା –**

ଏକାଗ୍ରତା ଅବଲମ୍ବନ କରି କୌଣସି ବିଷୟକୁ ଧ୍ୟାନ କରିବା ହେଉଛି ଉପାସନା । ଉପନିଷଦ୍‌ର ରହସ୍ୟବାଦୀ ଚିନ୍ତାଧାରାରେ ଉପାସନା ଉପରେ ଖୁବ୍ ଗୁରୁତ୍ୱ ଦିଆଯାଇଛି । 'ଛାନ୍ଦୋଗ୍ୟ ଉପନିଷଦ୍'ରେ ତେଣୁ କୁହାଯାଇଛି 'ତୁମେ ଯେଉଁ ସାମ ମନ୍ତ୍ର ବୋଲୁଛ ସେ ବିଷୟରେ ଧ୍ୟାନ କରିବା ଉଚିତ୍ । ଯେଉଁ ଋଷି ଏହି ଋକ୍ ମନ୍ତ୍ରର ଦ୍ରଷ୍ଟା, ତାଙ୍କ ବିଷୟରେ ଧ୍ୟାନ କରିବା ଉଚିତ୍ । ଉପାସ୍ୟ ଦେବତାଙ୍କ ବିଷୟରେ ଧ୍ୟାନ କରିବା ଉଚିତ'।(୪୫) ଶବ୍ଦଗତ ଅର୍ଥ ମଧ୍ୟ ଏହା ସୂଚାଇଥାଏ । ଉପାସନା ଫଳରେ ଉପାସ୍ୟ ଦେବତାଙ୍କର ଖୁବ୍ ନିକଟକୁ ଉପାସକ ଚାଲି ଆସିଥାନ୍ତି । ଏହା ମନକୁ ଶୁଦ୍ଧପୂତ କରାଇ ଏକନିଷ୍ଠ ଧ୍ୟାନ ମାଧ୍ୟମରେ ସିଦ୍ଧିରେ ପହଞ୍ଚିବା ପାଇଁ ସାହାଯ୍ୟ କରିଥାଏ । ଧ୍ୟାନ କରିବା ଓ ଜାଣିବା ଉଭୟ ଅବଶ୍ୟ ମାନସିକ ପ୍ରକ୍ରିୟା ଅଟେ । ଗୋଟିଏ ସତ୍ୟରେ ପହଞ୍ଚିବାକୁ ଜ୍ଞାନ ବୋଲି କୁହାଯାଏ ।

ଉପାସନା ଭେଦରେ ଦୁଇ ପ୍ରକାର । ଏହା ବ୍ରହ୍ମ ଉପାସନା ହୋଇପାରେ ବା ପ୍ରତୀକ ଉପାସନା ହୋଇପାରେ । ଶାଳଗ୍ରାମ କିମ୍ବା ବିଭିନ୍ନ ପ୍ରତିମା ଗୁଡିକୁ ପ୍ରତୀକ ଭାବରେ ବିଗ୍ରହ କରି ପରଂବ୍ରହ୍ମଙ୍କର ଉପାସନା କରାଯାଇପାରେ । ସାଧନାର ପ୍ରାଥମିକ ଅବସ୍ଥାରେ 'ପ୍ରତୀକ ଉପାସନା' ମାର୍ଗରେ ଅଗ୍ରସର ହେବାକୁ ପଡିଥାଏ । ଯଥେଷ୍ଟ ଅଗ୍ରଗତି କରି ପାରିଲା ପରେ 'ବ୍ରହ୍ମ ଉପାସନା' ପାଇଁ ଉଦ୍ୟମ କରେ । ପ୍ରତୀକ ଅର୍ଥ ହେଉଛି ନିକଟରେ ଥିବା । ଯାହା ଉପାସକଙ୍କୁ କାମ୍ୟ ଦେବତାଙ୍କ ନିକଟକୁ ନେଇଯାଏ, ତାହା ହେଲା ପ୍ରତୀକ । କୌଣସି ଉପାସକ ହଠାତ୍ ଉପାସନାର ଚରମ ସୀମାରେ ପହଞ୍ଚି ପାରିବ ନାହିଁ । ତାଙ୍କୁ ଧୀରେ ଧୀରେ ଏହି ପଥରେ ଆଗେଇ ବାକୁ ହୁଏ । 'ତୈତ୍ତିରୀୟ ଉପନିଷଦ'ରେ କୁହାଯାଇଛି 'ଓଁ ଇତିବ୍ରହ୍ମ', ଅର୍ଥାତ୍ 'ଓଁ' ହେଉଛି ବ୍ରହ୍ମ । ଏଇଠି ଆସେ ପ୍ରତୀକର ଚିନ୍ତା ଏବଂ 'ଓଁ' ଏହି ପ୍ରତୀକକୁ ଉପାସନା କରି 'ବ୍ରହ୍ମୋପଲବ୍ଧି' ଜନିତ ଆନନ୍ଦ ପାଇବାର ଉଦ୍ୟମ । ଏହି ଉପାସନା ଭକ୍ତି ଭାବ ଜାଗ୍ରତ କରାଇ ଥାଏ । ଭକ୍ତି ଶ୍ରଦ୍ଧା ଉପରେ ପ୍ରତିଷ୍ଠିତ ହୁଏ ଏବଂ ପ୍ରେମ ଦ୍ୱାରା ମଧୁରାୟିତ ହୁଏ । ଉପାସକ ନିଜକୁ 'ସତ୍, ଚିତ୍ ଓ ଆନନ୍ଦ ମୟ' ବ୍ରହ୍ମଙ୍କଠାରେ ହଜାଇ ଦେଇଥାନ୍ତି ।(୪୬)

ଉପନିଷଦ୍ କୁହେ ଉପାସନା ମାଧ୍ୟମରେ ଶାଶ୍ୱତଙ୍କ ପ୍ରାପ୍ତି ଲାଗି ଉଦ୍ୟମ କରିବାକୁ ହେଲେ ଅଶାଶ୍ୱତକୁ ତ୍ୟାଗ କରିବାକୁ ପଡିବ । ନିଜକୁ ସାକ୍ଷୀ ଭାବରେ ଭାବି ନିରପେକ୍ଷ ଓ ଉଦାସୀନ ଭାବରେ ସାରା ଜଗତକୁ ଦେଖିବା ପାଇଁ ସ୍ୱାମୀ ବିବେକାନନ୍ଦ କହିଛନ୍ତି ।(୪୭) ସେ ଅନ୍ୟତ୍ର କହି ଅଛନ୍ତି 'ଆତ୍ମା ନିଜ ବିଷୟରେ ଭାବୁଛି । ଆତ୍ମା ନିଜକୁ ଧ୍ୟାନ କରୁଛି ଏବଂ ପରିଶେଷରେ ଆତ୍ମା ନିଜ ଠାରେ ମିଶୁଛି'। ଏହି ପ୍ରକାର ମାନସିକ ସ୍ଥିତିରେ ମନୁଷ୍ୟକୁ ପହଞ୍ଚାଇବା ଲାଗି ଉପନିଷଦୀୟ ଉପାସନା ପ୍ରଚୋଦନା

ଦେଇଥାଏ । ଏହି ସାଧନା ବଳରେ ମନୁଷ୍ୟ ନିଜର ମନକୁ ଜିଣି ପାରିବ । ଯାହା ମୁନି ଋଷିମାନଙ୍କ ପକ୍ଷରେ ସମ୍ଭବ ଥିଲା । ଉପନିଷଦୀୟ ଉପାସନା ଏହି ମନକୁ ଆୟତ୍ତ କରିବା ଉପରେ ଗୁରୁତ୍ୱ ଦେଇଥାଏ ।

**କର୍ମ ଓ ମୁକ୍ତି –**

ଉପନିଷଦ ମାନବ ଜୀବନକୁ କର୍ମମୟ କରିବା ପାଇଁ ଉପଦେଶ ଦେଇଥାଏ । କର୍ମ ଜୀବନକୁ ଗତିଶୀଳ କରାଇ ପରିଶେଷରେ ପରମ ଗତି ଓ ମୁକ୍ତିର ଧାମରେ ନେଇ ପହଞ୍ଚାଇ ଦେଇଥାଏ । ଏହି କର୍ମ ଉପରେ ବୈଦିକ ଆର୍ଯ୍ୟମାନେ ଗଭୀର ବିଶ୍ୱାସ ରଖିଥିଲେ । ଏ ପରିକି 'ଶତପଥ ବ୍ରାହ୍ମଣ'ରେ ଯଜ୍ଞକୁ ( ନିଃସ୍ୱାର୍ଥପର କର୍ମ) ସ୍ୱୟଂ ଭଗବାନ ବୋଲି କୁହାଯାଇଛି (ଯଜ୍ଞୋବୈ ବିଷ୍ଣୁ ) । ଉପନିଷଦୀୟ ଦର୍ଶନରେ କର୍ମ ଉପରେ ଗୁରୁତ୍ୱ ଦିଆ ହୋଇ କୁହାଯାଇଛି – 'ଏ ସଂସାରରେ କର୍ମ କରି କରି ଶହେ ବର୍ଷ ବଞ୍ଚି ରହିବାର ଇଚ୍ଛା ମଣିଷ କରିବା ଉଚିତ୍ । ଏମିତି କଲେ କର୍ମ ତାକୁ ଲିପ୍ତ କରି ପାରିବ ନାହିଁ । ଯା ଛଡା ଆଉ ଅନ୍ୟ ବାଟ ନାହିଁ '।(୪୮) 'ଶତଂସମାଃ' ବା ଶହେ ବର୍ଷ ଏଠାରେ ପ୍ରତୀକାତ୍ମକ ଅର୍ଥରେ ବ୍ୟବହୃତ । ଏହା ଅନନ୍ତ ବର୍ଷକୁ ବୁଝାଉ ଅଛି । ଅନ୍ୟ ଭାଷାରେ କର୍ମ ଜରିଆରେ ମଣିଷ ଅନନ୍ତ ଜୀବନ ଲାଭ କରିପାରିବ ଓ ଅମୃତତ୍ୱ ପାଇବ । ଅନନ୍ତ ଜୀବନର ଅର୍ଥ ହେଲା ଜନ୍ମ ଓ ମୃତ୍ୟୁରୁ ମୁକ୍ତି । ଏହି କର୍ମ ହେଉଛି ନିଷ୍କାମ ଓ ନିସ୍ୱାର୍ଥପର । ମଣିଷ ଉପରେ ମାୟାର ଆବରଣ ଥିବାରୁ ସେ ପ୍ରକୃତ ସତ୍ୟଟିକୁ ଦେଖିପାରୁ ନାହିଁ । 'ଈଷ ଉପନିଷଦ୍'ରେ କୁହାଯାଇଛି ସୁନା ତିଆରି ପାତ୍ରର ଢାଙ୍କୁଣିରେ ସତ୍ୟର ମୂହଁଟି ଘୋଡାଇ ହୋଇ ରହିଅଛି । ଏ ଢାଙ୍କୁଣିଟି ଖୋଲି ସତ୍ୟକୁ ଆବିଷ୍କାର କରିବା ଲାଗି ସମୟ ଲାଗିବ '।(୪୯) ସେଥିପାଇଁ ମନୁଷ୍ୟ ସାଧାରଣତଃ ନିଜ ପାଇଁ, ନିଜ ପରିବାର ପାଇଁ କର୍ମ କରୁଥାଏ । ମନୁଷ୍ୟ ଉଦ୍ୟମ କଲେ ସ୍ୱାର୍ଥପର କର୍ମ କରୁ କରୁ ନିଃସ୍ୱାର୍ଥପର କର୍ମ କରିବାକୁ ସମର୍ଥ ହେବ । ଧିରେ ଧିରେ ଅଗ୍ରସର ହୋଇ ପୂର୍ଣତା ପ୍ରାପ୍ତ ହେବ । ଏହା ପ୍ରତି ଉପନିଷଦୀୟ ଋଷିମାନଙ୍କର ଗଭୀର ବିଶ୍ୱାସ ଥିଲା ।

କାମନା ପୀଡିତ କର୍ମ ବନ୍ଧନରୁ ମଣିଷ ମୁକ୍ତ ହେଲେ ଜୀବନର ପରମ ଲକ୍ଷ୍ୟ ମୁକ୍ତିର ସ୍ୱାଦ ଗ୍ରହି ପାରିବ । ମାତ୍ର 'ଶ୍ରେୟସ୍'ର ଅନୁସନ୍ଧାନ କରୁଥିବା ମନୁଷ୍ୟକୁ ସାରା ଜୀବନ କର୍ମରେ ବ୍ୟାପୃତ ରହିବାକୁ ପଡିବ । ବୈଦିକ ଆର୍ଯ୍ୟମାନେ ସ୍ୱର୍ଗ ସୁଖ କାମନା କରୁଥିଲେ । ମାତ୍ର ପରମ ସୁଖ ସଂପର୍କୀୟ ଚିନ୍ତାଧାରାର ବିକାଶ ଘଟିଲା ଉପନିଷଦ୍ ଯୁଗରେ । ଏହାକୁ କୁହାଗଲା ମୋକ୍ଷ ବା ମୁକ୍ତି । 'ସ୍ୱର୍ଗ' ହେଉଛି ସୃଷ୍ଟ ଏବଂ ଏହା ବ୍ୟକ୍ତ ଜଗତର ଅଂଶ । ଏହା ଚିରନ୍ତନ ନୁହେଁ । ମୁକ୍ତି ହେଉଛି ପରମାତ୍ମାଙ୍କ ସହିତ ସ୍ଥାୟୀ ମିଳନ । ସେଠିକୁ ଗଲେ ଆଉ ଫେରି ଆସିବାକୁ ପଡେ ନାହିଁ । ତେଣୁ ମୁକ୍ତି ହେଉଛି କାଳାତୀତ । ଉପନିଷଦ ତେଣୁ କହିଥାଏ ଯେ 'ବ୍ରହ୍ମବିତ୍' ସ୍ୱୟଂ ବ୍ରହ୍ମ ହୋଇ ଯାଆନ୍ତି ।(୫୦) ଏହା ଜୀବାତ୍ମା ଓ ପରମାତ୍ମାଙ୍କର ପାରସ୍ପରିକ ନିବିଡ଼ ସଂପର୍କ; ଅନନ୍ୟତାର ସୂଚନା ଦେଇଥାଏ । ଏହି ପ୍ରକାର ମାନସିକ ସ୍ଥିତି ଆସି ଗଲେ ମଣିଷ ମୁକ୍ତ ହୋଇପାଏ ।

ଉପନିଷଦ୍ ମତରେ ଏହି ମୁକ୍ତି ହେଲା ଦୁଇ ପ୍ରକାର । ଗୋଟିକର ନାମ 'ବିଦେହ ମୁକ୍ତି', ଅପରଟିର ନାମ 'ଜୀବନ୍ମୁକ୍ତି' । 'ବିଦେହ' ମୁକ୍ତି ଦେହ ହୀନ ଅବସ୍ଥାରେ ମୃତ୍ୟୁ ପରେ ଉପଲଭ୍ୟ । ସାଧକ ମହାନନ୍ଦମୟ ସ୍ଥିତିରେ ରହିଥାନ୍ତି ଏବଂ ତାଙ୍କର ଅବିଦ୍ୟା ନଷ୍ଟ ହୋଇ ଯାଇଥାଏ । ସେ

'ବିଦେହ କୈବଲ୍ୟ'.ବା ରକ୍ତ ମାଂସର ଦେହ ଛାଡି 'କୈବଲ୍ୟ' ବା 'କେବଳି ଭାବ' ପାଇଥାନ୍ତି ବୋଲି କୁହାଯାଏ । ତାଙ୍କର ସମସ୍ତ କର୍ମ ଫଳର ବୀଜ ଗୁଡିକ ନଷ୍ଟ ହୋଇ ଯାଇଥାଏ । ତେଣୁ ତାଙ୍କୁ ପୁନର୍ବାର ଜନ୍ମ ନେବାକୁ ପଡିନଥାଏ । ସେଥିପାଇଁ ଏହାକୁ 'ବିଦେହ ମୁକ୍ତି' କୁହାଯାଏ । ଅନ୍ୟ ପକ୍ଷରେ 'ଜୀବନ୍ମୁକ୍ତି' ଏହି ଜୀବନରେ ଉପଲଭ୍ୟ । ଅନେକ ସାଧକ ଅଛନ୍ତି ତାଙ୍କର ଜନ୍ମରୁ ହିଁ ପରମାତ୍ମାଙ୍କ ସହ ମିଳନ ଘଟିଥାଏ । ସେମାନେ ଚିରନ୍ତନ ଏକତା ସହିତ ନିଜକୁ ସାମିଲ କରିଥାନ୍ତି । ସେମାନଙ୍କର ବ୍ୟକ୍ତି ସତ୍ତା ଲୋପ ପାଇ ଯାଇଥାଏ । ପ୍ରାରବ୍ଧ କର୍ମ ଫଳ ଯୋଗୁ ସେମାନେ ଜାଗତିକ ଜୀବନକୁ ଫେରି ଆସିଥାନ୍ତି । ଅଳ୍ପ ସମୟ ପାଇଁ ଏହା ଘଟିଥାଏ । ପୁଣି ସେମାନେ ନୈର୍ବ୍ୟକ୍ତିକ ସତ୍ତାକୁ ଫେରିଯାଆନ୍ତି । ଏହି ମୁକ୍ତି ତାଙ୍କର ଜନ୍ମଗତ ଅଧିକାର ଏବଂ ଏହା ତାଙ୍କ ପାଖରେ ଥାଏ । ସେ 'ଜୀବନ୍ମୁକ୍ତ' ହୋଇ ଜନ୍ମ ହୋଇଥାଏ । ଏହି ଅବସ୍ଥାକୁ କୁହାଯାଏ 'ଜୀବନ୍ମୁକ୍ତି' । ଏହି ଉଭୟ ବିଧ ମୁକ୍ତିର ଦ୍ୱାର ହେଉଛି ଗୋଟିଏ ତାହା ହେଉଛି ଜ୍ଞାନ । ଏହି ଜ୍ଞାନ କର୍ମ ବଳରେ ଅଥବା ଭକ୍ତି ବଳରେ ପ୍ରାପ୍ତ ହୋଇଥାଏ । ତାହାର 'ଫଳଶ୍ରୁତି' ସ୍ୱରୂପ ଏହି ଦୁଇ ପ୍ରକାର ମୁକ୍ତିରୁ ଗୋଟିଏ ପ୍ରକାର ମୁକ୍ତି ପାଇବାର ଅଧିକାରୀ ହୋଇପାରିବ ।

**ବ୍ରହ୍ମ –**

ଉପନିଷଦର ବ୍ରହ୍ମ ପରମ ସତ୍ୟ ନାମରେ କଳ୍ପିତ । ଏହାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ଏ ଚିରନ୍ତନ, ପୂର୍ଣ୍ଣ ଭାବରେ ଥାଆନ୍ତି । ଏ ଥାଆନ୍ତି ପୂର୍ଣ୍ଣ, ଏହାଙ୍କ ଠାରୁ ଆସିଥିବା ବ୍ୟକ୍ତି ବିଶ୍ୱ ମଧ୍ୟ ପୂର୍ଣ୍ଣ । ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ଅବଶେଷ ପୂର୍ଣ୍ଣହିଁ ରହିଥାଏ ।(୫୧) 'ବୃହଦାରଣ୍ୟକ ଉପନିଷଦ୍'ରେ କୁହାଯାଇଛି 'ବ୍ରହ୍ମ' ହେଉଛନ୍ତି 'ସତ୍ୟର ସତ୍ୟ'।(୫୨) ତହିଁରେ ଅନ୍ୟତ୍ର କୁହାଯାଇଛି 'ସନ୍ମାତ୍ରହିଁ ବ୍ରହ୍ମ' ଅର୍ଥାତ୍ ସତ୍ୟ ହିଁ ହେଉଛି ବ୍ରହ୍ମ । ବିଭିନ୍ନ ଉପନିଷଦ ବ୍ରହ୍ମଙ୍କ ସ୍ୱରୂପ ସଂପର୍କରେ କିଛିଟା ସୂଚନା ଦେଇଥାନ୍ତି । ମାତ୍ର ଶେଷରେ କହିଥାନ୍ତି 'ସେ ଏହା ନୁହଁନ୍ତି ସେ ଏହା ନୁହଁନ୍ତି' । ସେ ହେଉଛନ୍ତି ଏହା ଠାରୁ ଆହୁରି ଅଧିକ । ବାକ୍ୟ ଏବଂ ମନର ଅଗୋଚର । ତାହାଙ୍କୁ ବାକ୍ୟରେ ପ୍ରକାଶ କରିହେବ ନାହିଁ । କିମ୍ବା ମନରେ ଚିନ୍ତା କରିହେବ ନାହିଁ । ମନର ଅତୀତ 'ପ୍ରଜ୍ଞାନ'ର ଦ୍ୱାର ଖୋଲି ଆନନ୍ଦମୟ ସ୍ଥିତିରେ କେବଳ ତାଙ୍କୁ ଉପଲବ୍ଧି କରିହେବ । ସେହି ଉପଲବ୍ଧି ଅନିର୍ବଚନୀୟ । ଉପନିଷଦର ସେହି ପଂକ୍ତି ଗୁଡିକ ହେଲା –

(କ) "ହେ ବତ୍ସ, ସୃଷ୍ଟିର ଆରମ୍ଭରେ କେବଳ ସତ୍ ସ୍ୱରୂପ ମାତ୍ର ଥିଲା" ।(୫୩)

(ଖ) "ଯେଉଁଠାରେ କୌଣସି ପ୍ରକାର ଅନ୍ୟତ୍ୱର ବୋଧ ଆସେ ନାହିଁ ।(ତାହା ବ୍ରହ୍ମ)" (୫୪)

(ଗ) "ଆରମ୍ଭରେ ଏହି ସମସ୍ତ ସୃଷ୍ଟି କେବଳ ଆତ୍ମା ରୂପରେ ଥିଲା" ।(୫୫)

(ଘ) "ଏ ସମସ୍ତ ହେଉଛି ବ୍ରହ୍ମ"।(୫୬)

(ଙ) "ଯାହା ପ୍ରାଣ ଓ ମନର ଅତୀତ (ତାହା ବ୍ରହ୍ମ)" (୫୭)

(ଚ) "ଅର୍ଥାତ୍ ଏହା ନୁହେଁ ନୁହେଁ" - (୫୮)

(ଛ) "ଏହା ଜ୍ଞାନର ଘନୀଭୂତ ବିକାଶ" -(୫୯)

(ଜ) "ଯେ ସତ୍ୟ , ଜ୍ଞାନ ଓ ଅନନ୍ତରୂପୀ ( ସେ ବ୍ରହ୍ମ)" (୬୦)

ଏହା ବ୍ୟତୀତ ଉପନିଷଦରେ ଚାରୋଟି 'ମହାବାକ୍ୟ' ଅଛି । ଯାହାକୁ ଅନୁଧ୍ୟାନ କଲେ ବ୍ରହ୍ମଙ୍କ ସଂପର୍କରେ କିଛି ଅବଗତ ହେବାକୁ ହୁଏ । ସେଗୁଡିକ ହେଲା — (କ) 'ଅହଂ ବ୍ରହ୍ମାସ୍ମି' - ମୁଁ ହେଉଛି 'ବ୍ରହ୍ମ', (ଖ) 'ଅୟମାତ୍ମା ବ୍ରହ୍ମ' - ଏହି ଆତ୍ମା ବ୍ରହ୍ମ । (ଗ) 'ପ୍ରଜ୍ଞାନଂ ବ୍ରହ୍ମ'- ବ୍ରହ୍ମ ହେଉଛନ୍ତି ଜ୍ଞାନମୟ, (ଘ) 'ତତ୍ତ୍ୱମସି' ତୁମେ ଓ ସେ ଏକ । ଏହି ବାକ୍ୟ ଗୁଡିକ ଜୀବ ଓ ବ୍ରହ୍ମର ଅଭିନ୍ନତାର ସୂଚନା ପ୍ରଦାନ କରିଥାଏ । ଉପନିଷଦ୍ କହୁଅଛି 'ବ୍ରହ୍ମଙ୍କର ହାତ ନାହିଁ । ମାତ୍ର ସେ ଗ୍ରହଣ କରିପାରନ୍ତି । ତାଙ୍କର ପାଦ ନାହିଁ, ସେ କିନ୍ତୁ ଚାଲି ପାରନ୍ତି' ।(୬୧) ତାଙ୍କର ଏହି ସର୍ବଦ୍ରଷ୍ଟତ୍ୱଭାବ ପ୍ରତି ଲକ୍ଷ୍ୟ କରି 'ବୃହଦାରଣ୍ୟକ ଉପନିଷଦ୍' କୁହେ 'ଏହାଙ୍କ ଠାରୁ ଆଉ କେହି ଦ୍ରଷ୍ଟା ନାହାଁନ୍ତି' ।(୬୨) ବ୍ରହ୍ମଙ୍କ ଶକ୍ତି ଓ ସ୍ୱରୂପ ସଂପର୍କରେ 'କଠୋପନିଷଦ୍'ରେ ଏକ ସୁନ୍ଦର ଗଳ୍ପ ଅଛି । ଯେଉଁଥିରେ ସକଳ ଦେବତା— 'ଅଗ୍ନି, ବାୟୁ, ଇନ୍ଦ୍ର, ପ୍ରମୁଖ ନିଜର ଶକ୍ତିର ପରୀକ୍ଷା ବ୍ରହ୍ମଙ୍କ ନିକଟରେ ଦେଇଥିଲେ । ସେମାନେ ସାମାନ୍ୟ ଘାସଟିକୁ ପୋଡ଼ି ପାରିଲେ ନାହିଁ କି ଉଡାଇ ଦେଇ ପାରିଲେ ନାହିଁ । ଶେଷରେ ଦେବତାମାନେ ବୁଝିଲେ ସେମାନେ ସମସ୍ତେ ବ୍ରହ୍ମଙ୍କ ଶକ୍ତିରେ ଶକ୍ତିମାନ । ବ୍ରହ୍ମଙ୍କ ତେଜରେ ଉଦ୍ଭାସିତ' ।(୬୩) ଏଥିରୁ ଅନୁମିତ ହୁଏ ବ୍ରହ୍ମ ହେଉଛନ୍ତି ବିଶ୍ୱ ବ୍ରହ୍ମାଣ୍ଡର ସକଳ ଶକ୍ତିର ମୂଳ ଉତ୍ସ ଏବଂ ସେ କୌଣସିରେ ସଂପୃକ୍ତ ନଥାନ୍ତି । "ତାଙ୍କର ପ୍ରତିନିଧି ଭାବରେ ଈଶ୍ୱର ରହିଅଛନ୍ତି । ଆମେ ତାଙ୍କୁ ଭଗବାନ କହିଥାଉଁ" ।

ତୈତ୍ତିରୀୟ ଉପନିଷଦ ଚତୁର୍ଥ ଅନୁଭାଗରେ 'ତ୍ରିସୁପର୍ଣ୍ଣ' । (ତିନୋଟି ସୁନ୍ଦର ଡେଣା ଥିବା ଚଢେଇ) ର କଳ୍ପନା କରାଯାଇଛି । ଏଥିରେ ବ୍ରହ୍ମଙ୍କୁ ଏକ ନୀଡ଼ ବୋଲି କଳ୍ପନା କରାଯାଇଅଛି । ଏଥିରେ ତିନୋଟି ସୁନ୍ଦର ଡେଣାଥିବା ଚଢେଇ ବାହାରିଛନ୍ତି । ଏମାନେ ହେଲେ 'ବିରାଜ, ହିରଣ୍ୟଗର୍ଭ ଓ ଈଶ୍ୱର' । ନିରପେକ୍ଷ ଭାବରେ ନିଜ ନିଜ ଭାବରେ ସ୍ଥିତ ବୋଲି ଯେତେବେଳେ କୁହାଯାଏ, ସେତେବେଳେ ଏ ବ୍ରହ୍ମ ନାମରେ ବିଦିତ ହୁଅନ୍ତି । ଏ ନିଜେ ନିଜକୁ ବ୍ୟକ୍ତ କରିଛନ୍ତି ବୋଲି ଯେତେବେଳେ କଳ୍ପନା କରାଯାଏ ସେତେବେଳେ ଏ ହୁଅନ୍ତି 'ବିରାଜ' । ଯେତେବେଳେ ଏହାଙ୍କୁ ବିଶ୍ୱର ଆତ୍ମା ସ୍ୱରୂପ ଚିନ୍ତା କରାଯାଏ ସେତେବେଳେ ସେ ହୁଅନ୍ତି 'ହିରଣ୍ୟ ଗର୍ଭ' । ଯେତେବେଳେ ଏହାଙ୍କୁ ବିଶ୍ୱର ସ୍ରଷ୍ଟା , ରକ୍ଷକ ଓ ସଂହାରକ ବୋଲି କଳ୍ପନା କରାଯାଏ , ସେତେବେଳେ ଏହାଙ୍କ ନାମ ହୁଏ 'ଈଶ୍ୱର' । ଈଶ୍ୱରଙ୍କ ଏହି ତିନି କାର୍ଯ୍ୟକୁ ଆମେ ନିତି ପ୍ରକାର ଦୃଷ୍ଟି ଭଂଗୀ ନେଇ ଦେଖିଲେ ସେ ହୁଅନ୍ତି 'ବ୍ରହ୍ମା, ବିଷ୍ଣୁ ଓ ଶିବ' ।(୬୪) ଯେଉଁ ଅନୁକ୍ରମରେ ସୃଷ୍ଟିର କଳ୍ପନା କରାଯାଇଛି ତାହାର ବିପରୀତ ଅନୁକ୍ରମରେ ପ୍ରଳୟର କଳ୍ପନା କରାଯାଇଛି । ଗୋଟିଏ ବିବର୍ତ୍ତନର ସୂଚନା ଦେଉଥିଲା ବେଳେ ଅନ୍ୟଟି ଅନୁବର୍ତ୍ତନର ସୂଚନା ଦେଇଥାଏ । ସାରା ଜଗତ ଦିନେ 'ହିରଣ୍ୟ ଗର୍ଭ' ବା ବିଶ୍ୱାତ୍ମାଙ୍କ ସାଥିରେ 'ଈଶ୍ୱର'ଙ୍କ ଠାରେ ଲୀନ ହେବ ଏବଂ ଏଇ ସମସ୍ତଙ୍କୁ ନେଇ ବ୍ରହ୍ମଙ୍କ ଠାରେ ଲୀନ ହେବ । ସେଥିପାଇଁ ମୁକ୍ତିର ପ୍ରକୃତ ପରିଭାଷା ହେଲା 'ବ୍ରହ୍ମତ୍ୱ' ପ୍ରାପ୍ତି । ଉପନିଷଦ୍ ମତରେ ଏ ବ୍ରହ୍ମ ତେଣୁ ହେଉଛନ୍ତି 'ଅବାଙ୍ମ ମାନସ ଗୋଚର' ଅର୍ଥାତ ମନରେ ଚିନ୍ତା କରି ହେବ ନାହିଁ । ବାକ୍ୟରେ ପ୍ରକାଶ କରିହେବ ନାହିଁ । ଅତଏବ 'ବ୍ରହ୍ମ' ହେଉଛନ୍ତି ସତ୍ୟ ।

**ଜୀବାତ୍ମା –**

ଜୀବ ଶବ୍ଦଟି 'ଜୀବ' ଧାତୁରୁ ନିଷ୍ପନ୍ନ । ଏହାର ଅର୍ଥ ହେଲା ଶ୍ୱାସ ନେବା । ଯିଏ ଶ୍ୱାସ ନିଏ ସେ 'ଜୀବ' । ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷଲତା ଆଦି ଶ୍ୱାସ ନେଉ ଥିବାରୁ ଏ ସମସ୍ତେ ଜୀବ । ଏହାର ବାହାର ଶରୀର ଗୋଟିଏ ଏବଂ ଯାହା ହେତୁ ଶ୍ୱାସ ନିଆଯାଏ ସେ ଆଉ ଗୋଟିଏ । ଏହା ସୂକ୍ଷ୍ମ, ରୂପହୀନ, ସର୍ବଦା ଚେତନାଶୀଳ ଓ ଚିତ୍ ଶକ୍ତି ଦ୍ୱାରା ସ୍ପନ୍ଦିତ । ସେ ଜାଗରଣ, ନିଦ୍ରା, ସ୍ୱପ୍ନ, ସବୁ ଅବସ୍ଥାରେ କାର୍ଯ୍ୟ କରୁଥାଏ । ଏହା ଯେତେବେଳେ ଶରୀରକୁ ଛାଡିଯାଏ, ସେତେବେଳେ ଶରୀର ଶବ ହୋଇଯାଏ । ଏହାକୁ କୁହାଯାଏ 'ଜୀବାତ୍ମା' । ଜୀବନ ଯେଉଁଠି ଅଛି ଜୀବାତ୍ମା ସେଠି ଅଛି । ଏହି 'ଚିତ୍' ଶକ୍ତିକୁ ନିମ୍ନତର ଶ୍ରେଣୀଙ୍କ ପାଇଁ କହୁ ପ୍ରବୃତ୍ତି ଏବଂ ମନୁଷ୍ୟ ମାନଙ୍କ ପାଇଁ କୁହାଯାଏ 'ଆତ୍ମବୋଧ' । ଏହି 'ଆତ୍ମବୋଧ'ର ଉଚ୍ଚତମ ସ୍ତରରେ ପହଞ୍ଚିଲେ ପରମାତ୍ମାଙ୍କ ସଂପର୍କରେ ଉପଲବ୍ଧି ଆସେ ।

ମଣିଷର ସକଳ ସମସ୍ୟା ମଧ୍ୟରେ ରହସ୍ୟାବୃତ୍ତ ସମସ୍ୟା ହେଉଛି ମୃତ୍ୟୁ । ସମସ୍ତ ଉପନିଷଦରେ ଏହି ମୃତ୍ୟୁ ସମସ୍ୟାର ସମାଧାନ ହିଁ କରାଯାଇଛି । ଏହି ମୃତ୍ୟୁକୁ କିଭଳି ଅତିକ୍ରମ କରିବାକୁ ହେବ ସେ ସଂପର୍କରେ ମାର୍ଗ ଦର୍ଶନ କରାଯାଇଛି । 'କଠ' ଉପନିଷଦର ଆରମ୍ଭ ହୋଇଛି ଏହି ମୃତ୍ୟୁ ସଂପର୍କୀୟ ପ୍ରଶ୍ନରୁ । ସେଗୁଡିକର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା – "(କ) ଆମ ସ୍ଥୂଳ ଶରୀର ବ୍ୟତୀତ ଆଉ ଏକ ସୂକ୍ଷ୍ମତର ସ୍ଥିତି ଅଛି । ଯାହା ଆତ୍ମା ନାମରେ ବିଦିତ । (ଖ) ଏହା ବିଭିନ୍ନ ଇନ୍ଦ୍ରିୟ ଠାରୁ ଭିନ୍ନ । (ଗ) ଏହା ମଧ୍ୟ ମନର ଦ୍ୱିବିଧ ଅଭିପ୍ରକାଶ 'ମନସ ଓ ବୁଦ୍ଧି ବା ଚିନ୍ତା ଓ ପ୍ରଜ୍ଞା'ଠାରୁ ଭିନ୍ନ । (ଘ) ଆଉ ମଧ୍ୟ ଏହା ପ୍ରାଣ ଶକ୍ତି ଠାରୁ ଭିନ୍ନ । କାରଣ ପ୍ରାଣର ପ୍ରାଣତ୍ୱର ଏହା ହେଉଛି ହେତୁ । (ଙ) ଏହାର ବସ୍ତୁତ୍ୱ ନାହିଁ । ଏହା ଅଜନ୍ମା ତେଣୁ ଏହାର ମୃତ୍ୟୁ ମଧ୍ୟ ନାହିଁ । ଶରୀର ଭଳି ଏହା କ୍ଷୟ ହୋଇପାରେ ନାହିଁ । ଶରୀର ମଧ୍ୟରେ ଥାଇ ମଧ୍ୟ ଏହା ଶରୀର ଠାରୁ ବିଚ୍ଛିନ୍ନ । (ଚ) ଶରୀରର ବିନାଶରେ ଏହା ଉଚ୍ଚ ଅଥବା ନୀଚ ବିଭିନ୍ନ ଲୋକକୁ ଯାଏ । ଏହି ଗତି ମନୁଷ୍ୟର କର୍ମକୁ ଅନୁସରଣ କରିଥାଏ । ଏହା ମଧ୍ୟ ଏହି ସଂସାରକୁ ପୁନର୍ବାର ଫେରି ଆସେ । (ଛ) ମନୁଷ୍ୟ ସ୍ୱଭାବତଃ ଜ୍ଞାନମୟ ; କିନ୍ତୁ ଅବିଦ୍ୟାର ଆବରଣ ତାହାର ଏହି ଜ୍ଞାନକୁ ଆବୃତ୍ତ କରି ରଖିଥାଏ । ତେଣୁ ତାର ଜ୍ଞାନ ସହିତ ପରିଚୟ ହୋଇ ପାରି ନଥାଏ । ଏହି ଅବିଦ୍ୟାର ଅନାବରଣରେ ତାର ଆତ୍ମୋପଲବ୍ଧି ହୋଇଥାଏ । (ଜ) ଅବିଦ୍ୟା ମନୁଷ୍ୟର ନିଜ ସୃଷ୍ଟ ଏକ ଆବରଣ । ଏଣୁ ସେ ଚାହିଁଲେ ତାହାକୁ ଦୂର କରି ଦେଇପାରିବ" । ( ସୁରେନ୍ଦ୍ର ନାଥ ଶତପଥୀଙ୍କ - ଭାରତୀୟ ସଂସ୍କୃତି - ୫ମ ଖଣ୍ଡ- ବୈଦିକ ପର୍ବ ଚତୁର୍ଥ ଖଣ୍ଡ ପୃଷ୍ଠା ୩୧୭-୩୧୮ରୁ ଉଦ୍ଧୃତ) ।

ପ୍ରାୟ ସବୁ ଉପନିଷଦ୍‌ରେ ଏହି କଥା କୁହାଯାଇଛି । ପରମାତ୍ମାଙ୍କର ଜୀବାତ୍ମା ସହିତ ସଂପର୍କ କ'ଣ ତାହା ବିଭିନ୍ନ ମୁନିଙ୍କ ଦ୍ୱାରା ଭିନ୍ନ ମତ ନେଇଛି । ଏହି ମତ ଗୁଡିକୁ ନେଇ ତିନୋଟି ମତବାଦ ସୃଷ୍ଟି ହୋଇଛି । ସେଗୁଡିକ ହେଲା ଶଙ୍କରଙ୍କ ଅଦ୍ୱୈତବାଦ, ରାମାନୁଜଙ୍କ ବିଶିଷ୍ଟଦ୍ୱୈତବାଦ ଓ ମାଧ୍ୱଙ୍କ ଦ୍ୱୈତବାଦ । ଅଦ୍ୱୈତବାଦ ରେ ପରମାତ୍ମା ଓ ଜୀବାତ୍ମା ଅଭେଦ । ଏହା ଅଦ୍ୱୈତ ଦର୍ଶନରେ କୁହାଯାଇଛି । 'ମାଣ୍ଡୁକ୍ୟ ଉପନିଷଦ୍'ରେ ଏହାର ମୂଳ ବୀଜ ନିହିତ ଅଛି । ଆଚାର୍ଯ୍ୟ ଗୌଡପାଦ ଏହାର ପ୍ରଥମ

ବ୍ୟାଖ୍ୟାକାର (୬ଷ୍ଠ ଶତାବ୍ଦୀ) । ଉକ୍ତ ଉପନିଷଦ୍‌ର ଟୀକା ସ୍ୱରୂପ ଯେଉଁ 'ମାଣ୍ଡୁକ୍ୟ କାରିକା' ଗ୍ରନ୍ଥଟି ଲେଖିଛନ୍ତି ତହିଁରେ ଅଦ୍ୱୈତ ଦର୍ଶନର ବିଭିନ୍ନ ଦିଗ ଉପରେ ଆଲୋକ ପାତ କରାଯାଇଛି । ତାଙ୍କ ଶିଷ୍ୟ ହେଉଛନ୍ତି ଗୋବିନ୍ଦ ଏବଂ ତାଙ୍କ ଶିଷ୍ୟ ହେଉଛନ୍ତି ଶଙ୍କର । **ଶଙ୍କର** (ଅଷ୍ଟମ ଶତାବ୍ଦୀ) ହିଁ ବେଦାନ୍ତ ଦର୍ଶନର ପ୍ରବକ୍ତା । ଶଙ୍କର ବ୍ରହ୍ମଙ୍କୁ ସତ୍ୟ ବୋଲି ପ୍ରତିପାଦିତ କରିଅଛନ୍ତି । ଋଗ୍‌ବେଦର 'ତତ୍ ଏକମ୍' ବା ସେହି ଏକ ହେଉଚନ୍ତି ବ୍ରହ୍ମ । ଅଦ୍ୱୈତ ଦର୍ଶନର ମୂଳ ତତ୍ତ୍ୱ ହେଲା 'ବ୍ରହ୍ମ ହେଉଛି ସତ୍ୟ । ଜଗତ ହେଉଛି ମିଥ୍ୟା' । ଜୀବ ଓ ବ୍ରହ୍ମ ଏକ ଓ ଅନନ୍ୟ । ବ୍ରହ୍ମ ସଦାବେଳେ ବିଦ୍ୟମାନ, ତେଣୁ ସେ ସତ୍ୟ ।(୬୫)

ବ୍ରହ୍ମ ହେଉଛି ବିଶୁଦ୍ଧ 'ଚିତ୍' । ଜୀବାତ୍ମାଠାରେ ବ୍ରହ୍ମଙ୍କର ସ୍ଫୁରଣ ଥିବାରୁ ତାହା ମଧ୍ୟ ବିଶୁଦ୍ଧ 'ଚିତ୍' । ଅବିଦ୍ୟା ହେଉଛି ବନ୍ଧନର କାରଣ ଏବଂ ଏହା ଆତ୍ମାକୁ ଘୋଡାଇ ରଖିଥାଏ । 'ମାୟା'ହେଉଛି ଅବିଦ୍ୟାର ଜନନୀ । 'ମାୟା' ସତ୍ ନୁହେଁ କିମ୍ବା ଅସତ୍ ମଧ୍ୟ ନୁହେଁ । ଏହି ମାୟାକୁ ବେଦାନ୍ତ ଅନିର୍ବଚନୀୟ ବୋଲି କହିଅଛି । 'ମାୟା' ବ୍ରହ୍ମଙ୍କର ଶକ୍ତି ରୂପରେ କାମ କରିଥାଏ । ତେଣୁ ବ୍ରହ୍ମଙ୍କ ଭଳି ଚିରନ୍ତନ । ମାୟା ଜଗତର ଉପାଦାନର କାରଣ । ବ୍ରହ୍ମ ନିର୍ଗୁଣ ଓ ନିର୍ଲିପ୍ତ । ସେ ମଧ୍ୟ ନିଷ୍କ୍ରିୟ । ବ୍ରହ୍ମ ନିର୍ଗୁଣ, ମାତ୍ର ମାୟା ଜଗତ ପାଇଁ ସେ ସଗୁଣ । ବ୍ରହ୍ମଙ୍କର ଏହି ସଗୁଣତା ହିଁ ଈଶ୍ୱର ନାମରେ ବିଦିତ । ପ୍ରଳୟ ସମୟରେ ଜଗତ ମାୟାରେ ଲୀନ ହୋଇଥାଏ ଏବଂ ଈଶ୍ୱର ଆଉ ରହନ୍ତି ନାହିଁ । ମାତ୍ର ଉଭୟ କଳ୍ପରେ ଆଉ କଳ୍ପ ଶେଷରେ ନିର୍ଗୁଣ ବ୍ରହ୍ମ ରହିଅଛି । ସୃଷ୍ଟିର ଆରମ୍ଭରେ ବ୍ରହ୍ମ ସଗୁଣ ହୋଇ ଈଶ୍ୱରଙ୍କ କାର୍ଯ୍ୟ ସମାହିତ କରିଥାନ୍ତି । ଅଦ୍ୱୈତ ବେଦାନ୍ତ ଅନୁସାରେ 'ମୋକ୍ଷ'ର ଅର୍ଥ ଈଶ୍ୱରଙ୍କ ଠାରେ ଲୀନ ହେବାକୁ ହିଁ ବୁଝାଇଥାଏ । ପରଂବ୍ରହ୍ମଙ୍କ ଠାରେ ନୁହେଁ, ପରେ ଈଶ୍ୱର ସତ୍ତା ପରଂବ୍ରହ୍ମଙ୍କ ଠାରେ ଲୀନ ହୁଅନ୍ତି । ମାୟାର ଦୁଇଟି ଶକ୍ତି ଅଛି ଗୋଟିଏ ଆବରଣ ଶକ୍ତି ଅନ୍ୟଟି ବିକ୍ଷେପଣ ଶକ୍ତି । ଆବରଣ ଶକ୍ତି ଦ୍ୱାରା ବ୍ରହ୍ମ ଜ୍ଞାନକୁ ଘୋଡାଇ ରଖେ । ଜ୍ଞାନର ଉଦୟ ହେଲେ ଏହି ଆବରଣ ଅପସରି ଯାଏ । 'ଈଶୋପନିଷଦ୍'ରେ ଋଷି ଏହି ଆବରଣ ଖୋଲିବା ପାଇଁ 'ପୁଷନ୍' ଦେବତାଙ୍କୁ ପ୍ରାର୍ଥନା କରିଅଛନ୍ତି । ସେ କହିଛନ୍ତି ଏ 'ପୋଷଣ କର୍ତ୍ତା ପ୍ରଭୋ ! ସୁନାରେ ତିଆରି ପାତ୍ରର ଢାଙ୍କୁଣିଟିରେ ସତ୍ୟର ମୁହଁ ଘୋଡେଇ ହୋଇ ରହିଅଛି । ସତ୍ୟ ପଛରେ ଧାଉଁ ଥିବା ମୋର ଆଖି ଖୋଲି ଦେବା ଲାଗି ତୁମେ ତାହାକୁ ଟେକି ଦିଅ '।(୬୬) ଏହି ଢାଙ୍କୁଣିଟି ମାୟାର ଆବରଣ ଶକ୍ତିର ପ୍ରଭାବ । ଅପର ଶକ୍ତିଟି ହେଲା ବିକ୍ଷେପଣ ଶକ୍ତି । ଏହା ସଂସାର ପ୍ରପଞ୍ଚର ସୃଷ୍ଟି କରାଏ । ଏହା ସଂସାରର ଆପାତ- ପ୍ରତୀୟ ମାନତାକୁ ସତ୍ୟ ବୋଲି ଦେଖାଏ । କିନ୍ତୁ ଜ୍ଞାନର ଉଦୟ ହେଲେ ଏହି ଭ୍ରାନ୍ତ ଧାରଣା ଗ୍ଳାଯାଏ । 'ତତ୍ତ୍ୱମସି, ସୋଽହଂ' ଆଦି ବେଦାନ୍ତର ମହାବାକ୍ୟମାନ ଅଦ୍ୱୈତବାଦୀମାନଙ୍କୁ ମହାପ୍ରେରଣା ଯୋଗାଇଅଛି ।

ବିଶିଷ୍ଟାଦ୍ୱୈତ ଦର୍ଶନର ପ୍ରବର୍ତ୍ତକ ହେଉଛନ୍ତି **ରାମାନୁଜ** । (ଏକାଦଶ-ଦ୍ୱାଦଶଶତାବ୍ଦୀ) ସେ ମଧ୍ୟ ଶଙ୍କରଙ୍କଭଳି ଅଦ୍ୱୈତବାଦୀ । ସେ ଉପନିଷଦ୍ ଓ ବ୍ରହ୍ମସୂତ୍ର ଉପରେ ନିର୍ଭର କରି ତାଙ୍କ ଦର୍ଶନର ପ୍ରତିଷ୍ଠା କରିଅଛନ୍ତି । ସେ 'ବ୍ରହ୍ମସୂତ୍ର'ର ଯେଉଁ ଭାଷ୍ୟ କରିଛନ୍ତି ତାହା 'ଶ୍ରୀ ଭାଷ୍ୟ' ନାମରେ ଖ୍ୟାତ । ଶଙ୍କରଙ୍କ ଦର୍ଶନ ଶୁଦ୍ଧ ଜ୍ଞାନମାର୍ଗୀ ଥିଲାବେଳେ ରାମାନୁଜଙ୍କ ଦର୍ଶନ ଥିଲା ଜ୍ଞାନ ଓ ଭକ୍ତିର ଏକ ସମ୍ମିଶ୍ରଣ । ରାମାନୁଜ ନିଜେ ଜଣେ ବୈଷ୍ଣବ ଥିଲେ । ସେ ବିଷ୍ଣୁଙ୍କୁ ବ୍ରହ୍ମଙ୍କ ସହିତ ତୁଳିତ କରିଅଛନ୍ତି ।

ବିଷ୍ଣୁ ଭକ୍ତିକୁ ବେଦାନ୍ତ ଦର୍ଶନ ଉପରେ ପ୍ରତିଷ୍ଠିତ କରାଇଅଛନ୍ତି । ଉପନିଷଦ୍ ଗୁଡିକୁ ଅନୁଧ୍ୟାନ କଲେ ଦେଖାଯାଏ କେତେକ ପଂକ୍ତି ଅଛି ଯାହା ଦ୍ୱୈତ ଦର୍ଶନ ବା ଅଦ୍ୱୈତ ଦର୍ଶନକୁ ସ୍ପୃଶ୍ୟ ନାହିଁ । ତହା ମଧ୍ୟ ମଝି କୌଣସି ଏକ ଦର୍ଶନକୁ ସୂଚାଇଥାଏ । ଏହି ପଂକ୍ତି ଗୁଡିକୁ ଭିତ୍ତିଭୂମି କରି ରାମାନୁଜଙ୍କ 'ବିଶିଷ୍ଟା ଦ୍ୱୈତ' ଦର୍ଶନ ଗଢି ଉଠିଲା ।(୬୭) 'ବିଶିଷ୍ଟାଦ୍ୱୈତ' ଦର୍ଶନରେ ଈଶ୍ୱର ହେଉଛନ୍ତି 'ଅଦ୍ୱୈତ'। ତାଙ୍କୁ ଅତିକ୍ରମ କରିବାକୁ ଆଉ କେହି ନାହାଁନ୍ତି । କିନ୍ତୁ ଶଙ୍କରଙ୍କ ମତରେ ଈଶ୍ୱର ସତ୍ୟ ନୁହଁନ୍ତି । କେବଳ ନିର୍ଗୁଣ ବ୍ରହ୍ମ ହିଁ ସତ୍ୟ । ଅନ୍ୟ ପକ୍ଷରେ ରାମାନୁଜ ଈଶ୍ୱର ଓ ଜୀବ ମଧ୍ୟରେ ପ୍ରଭୁ ଦାସ ସଂପର୍କ ସ୍ଥାପିତ କରିଅଛନ୍ତି । ତାଙ୍କ ମତରେ କିଙ୍କର ଭାବ ନେଇ ଜୀବ ଈଶ୍ୱରଙ୍କୁ ପାଇ ପାରିବ । 'ଅହଂ ବ୍ରହ୍ମାସ୍ମି, ସୋଽହଂ, ତତ୍ତ୍ୱମସି' ଆଦି ଅଦ୍ୱୈତ ଚିନ୍ତାଧାରାର ସେ ବିରୋଧ କରନ୍ତି । ରାମାନୁଜଙ୍କ ମତରେ ଜଗତ ସତ୍ୟ, ଜୀବମାନେ ସତ୍ୟ ଏବଂ ପରସ୍ପର ଠାରୁ ଭିନ୍ନ, ଆଉ ମଧ୍ୟ ସେମାନେ ବ୍ରହ୍ମଙ୍କ ଠାରୁ ଭିନ୍ନ । ମାତ୍ର ଈଶ୍ୱରଙ୍କ ଭଳି ଜଗତ ଓ ଜୀବ ମଧ୍ୟ ସତ୍ୟ । ଈଶ୍ୱର ହେଲେ ମୂଳ ତତ୍ତ୍ୱ । ଜଗତ ( ଅଚିତ୍) ଓ ଜୀବ ତାଙ୍କ ଉପରେ ନିର୍ଭରଶୀଳ । ତେଣୁ ଶଙ୍କରଙ୍କ ଠାରୁ ତାଙ୍କ ଦର୍ଶନରେ କିଛିଟା ବିଶିଷ୍ଟତା ଥିବାରୁ ତାଙ୍କ ପ୍ରଖ୍ୟାପିତ ଦର୍ଶନକୁ କୁହାଯାଏ 'ବିଶିଷ୍ଟାଦ୍ୱୈତ' ଦର୍ଶନ ।

ଶଙ୍କର ଜୀବାତ୍ମା ଏକ ବୋଲି କହିଲା ବେଳେ ରାମାନୁଜ ପ୍ରତ୍ୟେକ ଜୀବାତ୍ମା ଅପର ଠାରୁ ଭିନ୍ନ ବୋଲି କହିଥାନ୍ତି । ତାଙ୍କ ମତରେ ଜୀବମାନେ ହେଉଛନ୍ତି ତିନି ଶ୍ରେଣୀର । ଯଥା 'ନିତ୍ୟ, ମୁକ୍ତ ଓ ବଦ୍ଧ' । ଯେଉଁମାନେ ଏ ପର୍ଯ୍ୟନ୍ତ ସଂସାରକୁ ଆସି ନାହାଁନ୍ତି ସେମାନେ ହେଲେ ନିତ୍ୟ ଜୀବ । ଯେଉଁମାନେ ସଂସାରରେ ଜନ୍ମ ନେଇ ସାରିବା ପରେ ସ୍ୱୀୟ କର୍ମ ବଳରେ ପୁନର୍ଜନ୍ମ ମୁକ୍ତ ହୋଇ ଯାଇଛନ୍ତି ସେମାନେ ହେଲେ ମୁକ୍ତ ଜୀବ । ଯେଉଁମାନେ ସଂସାର ବନ୍ଧନରେ ପଡି ଦୁଃଖ ପାଉଛନ୍ତି ସେମାନେ ହେଲେ ବଦ୍ଧ ଜୀବ । ଜୀବ ନିଜ ଇଚ୍ଛାରେ କର୍ମ କରି ଚାଲିଥାଏ ଏବଂ ତାହାର ଫଳ ଭୋଗିଥାଏ । ଏଥିରେ ଈଶ୍ୱର ଆଦୌ ସଂପୃକ୍ତ ନୁହଁନ୍ତି । ସେ କେବଳ ତାର କର୍ମ ଫଳକୁ ଦେଇଥାନ୍ତି । ଭଲ କର୍ମ କଲେ ସେ ଭଲ ଫଳ ପାଏ । ମନ୍ଦ କର୍ମ କଲେ ସେ ମନ୍ଦ ଫଳ ପାଇଥାଏ । ଅବିଦ୍ୟାର କୁପ୍ରଭାବରେ ଜୀବ ମନ୍ଦ କର୍ମ କରିଥାଏ । ରାମାନୁଜ ମାୟାକୁ ଅସ୍ୱୀକାର କଲେ ମଧ୍ୟ ଅବିଦ୍ୟାକୁ ଅସ୍ୱୀକାର କରି ନାହାଁନ୍ତି । ଅବିଦ୍ୟାରୁ ମୁକ୍ତ ହୋଇ ଈଶ୍ୱର ଅନୁଗ୍ରହ ପ୍ରାପ୍ତ ହେଲେ ଜୀବ ସଂସାରରୁ ମୁକ୍ତ ହୁଏ । ଶଙ୍କର କିନ୍ତୁ 'ଜୀବନ୍ମୁକ୍ତି'ରେ ବିଶ୍ୱାସ କରିଥାନ୍ତି । ଶଙ୍କର ଭବ ସାଗରକୁ ପାରି ହେବା ପାଇଁ ଜ୍ଞାନକୁ ନୌକା ବୋଲି କହିଥିଲା ବେଳେ ରାମାନୁଜ ଭକ୍ତିକୁ ନୌକା ବୋଲି କହିଅଛନ୍ତି ।

**ମଧ୍ୱ** (୧୧୯୯-୧୨୭୮) ହେଉଛନ୍ତି ଦ୍ୱୈତବାଦର ପ୍ରବର୍ତ୍ତକ । ସେ ଦ୍ୱୈତବାଦ 'ଉପନିଷଦ୍'ର ବାଣୀ ଉପରେ ଆଧାରିତ ବୋଲି କହିଥାନ୍ତି । ମଧ୍ୱ ଈଶ୍ୱର ଓ ଜୀବ ମଧ୍ୟରେ ଭେଦଭାବ ଦର୍ଶାଇଛନ୍ତି । ଗୋଟିକୁ ଅପର ଠାରୁ ଭିନ୍ନ ବୋଲି ଚିନ୍ତା କରିଛନ୍ତି । ତେଣୁ ଏହି ଦର୍ଶନର ନାମ 'ଦ୍ୱୈତ ଦର୍ଶନ' । ଏଥିରେ ଈଶ୍ୱରଙ୍କ ସତ୍ତାକୁ ପ୍ରଥମ ଓ ଅନ୍ୟ ସତ୍ତାକୁ ଦ୍ୱିତୀୟ ବୋଲି ଗ୍ରହଣ କରିଥାନ୍ତି । ଜୀବମାନଙ୍କ ମଧ୍ୟରେ ବିଭିନ୍ନତା ସେ ଦେଖୁଛନ୍ତି । ଦ୍ୱୈତ ଦର୍ଶନରେ ବିଷ୍ଣୁ ହେଉଛନ୍ତି ସନାତନ । ସେହିପରି ଜୀବ ଓ ଜଡ ଜଗତ ମଧ୍ୟ ସନାତନ । ବିଷ୍ଣୁ ହେଉଛନ୍ତି ସ୍ୱୟଂ ସଂପୂର୍ଣ୍ଣ ଏବଂ ଗୁଣର ଆଧାର । ସେ ଜଗତର କାରଣ । ସୃଷ୍ଟି, ସ୍ଥିତି ଓ ପ୍ରଳୟର ସେ ହେଉଛନ୍ତି ହେତୁ ସ୍ୱରୂପ । ଏଠାରେ କାରଣ ନିମିତ୍ତ କାରଣ ହୋଇଅଛନ୍ତି । ଏହାର ତାତ୍ପର୍ଯ୍ୟ ହେଲା ବିଷ୍ଣୁ ଜଗତର ଉପାଦାନର କାରଣ

ନୁହଁନ୍ତି । ଅର୍ଥାତ୍ ତାଙ୍କର ବିଭିନ୍ନ ଅଂଶକୁ ନେଇ ଜଗତ ଗଢ଼ା ଯାଇନାହିଁ । ସେ ହେଉଛନ୍ତି ଜଗତର ନିମିତ୍ତ କାରଣ । ଲକ୍ଷ୍ମୀ ହେଉଛନ୍ତି ତାଙ୍କ ଶକ୍ତି ସ୍ୱରୂପିଣୀ । ବିଷ୍ଣୁ ହେଉଛନ୍ତି ସର୍ବ ପ୍ରଧାନ ଓ ସର୍ବ ପ୍ରଧାନ ଏକ ସ୍ୱତନ୍ତ୍ର ସତ୍ତା । ଆଉ ଯେଉଁ ସ୍ୱତନ୍ତ୍ର ସତ୍ତାମାନେ ରହିଲେ ତନ୍ମଧ୍ୟରେ ଲକ୍ଷ୍ମୀଙ୍କର ଆସନ ସବା ଉପରେ ଏବଂ ଅନ୍ୟମାନଙ୍କର ସ୍ଥାନ ତାଙ୍କ ତଳକୁ ତଳକୁ ।

ମଧ୍ୱଙ୍କ ମତରେ ଜୀବମାନେ ତିନି ଶ୍ରେଣୀରେ ବିଭକ୍ତ । ସେମାନେ ହେଲେ ନିତ୍ୟ, ମୁକ୍ତ ଓ ବଦ୍ଧ । ସେ ରାମାନୁଜଙ୍କ ମତକୁ କେତେକାଂଶରେ ଗ୍ରହଣ କରିଅଛନ୍ତି । ଏହି ବଦ୍ଧ ଗୋଷ୍ଠୀଙ୍କୁ ପୁଣି ସେ ଦୁଇ ଭାଗରେ ବିଭକ୍ତ କରିଅଛନ୍ତି । ସେମାନେ ହେଲେ ମୁକ୍ତିଯୋଗ୍ୟ ଓ ମୁକ୍ତି ଅଯୋଗ୍ୟ । ବିଭୁ କୃପା ନିମିତ୍ତ 'ଭକ୍ତି' ହେଉଛି ଏକମାତ୍ର ମାର୍ଗ । ଏହି ବିଭୁ କୃପା ଲାଭ କଲେ ମୁକ୍ତି ସମ୍ଭବ ହୋଇଥାଏ । ମଧ୍ୱଙ୍କ ମତରେ ମୁକ୍ତ ଜୀବମାନେ ବୈକୁଣ୍ଠକୁ ଆସି ଆନନ୍ଦମୟ ସ୍ଥିତିରେ ରହିଥାନ୍ତି ।

ଏହି ତିନି ବାଦ ସଂପର୍କରେ କିଂଚିତ ଆଲୋଚନା କରିବାର ଉଦ୍ଦେଶ୍ୟ ହେଲା ଶଙ୍କର, ରାମାନୁଜ ଓ ମଧ୍ୱ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଦର୍ଶନ ଉପନିଷଦ୍‌ଗୁଡ଼ିକୁ କେନ୍ଦ୍ର କରି ଗଢ଼ି ଉଠିଛି ବୋଲି ଦାବୀ କରିଥାନ୍ତି । ଏହା ବ୍ୟତୀତ ଭାରତୀୟ ଦର୍ଶନ ନ୍ୟାୟ , ବୈଶେଷିକ, ସାଂଖ୍ୟ, ଯୋଗ, ମୀମାଂସା ଓ ବେଦାନ୍ତ ଆଦିର ମୂଳବୀଜ ଉପନିଷଦ୍‌ରେ ନିହିତ । ତେଣୁ ଉପନିଷଦକୁ ସମସ୍ତ ଦର୍ଶନର ଜନନୀ କହିଲେ ଅତ୍ୟୁକ୍ତି ହେବନାହିଁ ।

**ମାୟା –**

ଉପନିଷଦ୍‌ର ମାୟାବାଦ ଅତ୍ୟନ୍ତ ରହସ୍ୟପୂର୍ଣ୍ଣ । ଋଗ୍‌ବେଦର କେତେକ ପଂକ୍ତି ଅନୁଧ୍ୟାନ କଲେ ଏହା ସହଜରେ ଜଣା ପଡିବ । ଋଗ୍ ବେଦରେ କୁହାଯାଇଛି 'ଇନ୍ଦ୍ର ମାୟା ବଳରେ ଅନେକ ରୂପ ଧାରଣ କରିଥିଲେ '।(୬୮) ମାୟା ହେଉଛି ଈଶ୍ୱରଙ୍କ ସେହି ଶକ୍ତି ଯାହା ସାହାଯ୍ୟରେ ସାରା ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟ । ଜଗତର ସକଳ କାର୍ଯ୍ୟ ଏହା ଦ୍ୱାରା ସଂଘଟିତ । ଏହା ତିଆରି କରିବା କର୍ମ ସହିତ ସଂପୃକ୍ତ । 'ମାୟା' ଶବ୍ଦଟି 'ମା' ଧାତୁରୁ ନିଷ୍ପନ୍ନ । ଏହାର ଅର୍ଥ ହେଉଛି ତିଆରି କରିବା, ସଜାଡ଼ିବା, ମାପିବା । ବେଦରେ ମାୟା ସକାରତ୍ମକ ଅର୍ଥରେ ବ୍ୟବହୃତ ହେଉଛି । ରାଧାକୃଷ୍ଣନ୍ 'ମାୟା' ସଂପର୍କୀୟ ବିଭିନ୍ନ ମତ ଉପରେ ଆଲୋଚନା କରି ଛଅ ଗୋଟି ଅର୍ଥ ପ୍ରତିପାଦିତ କରିଅଛନ୍ତି । ସେଗୁଡିକ ହେଲା -

**(କ) ମାୟା ଅନିର୍ବଚନୀୟ :-**

'ପରଂବ୍ରହ୍ମ' ହେଉଛନ୍ତି ସତ୍ୟ, ସେ ଅପରିବର୍ତ୍ତନୀୟ । ବିଶ୍ୱ ବ୍ରହ୍ମାଣ୍ଡ କିନ୍ତୁ ପରିବର୍ତ୍ତନୀୟ । ପରଂବ୍ରହ୍ମ ନିଜକୁ ବିଶ୍ୱବ୍ରହ୍ମାଣ୍ଡରେ ପରିପ୍ରକାଶ କଲେ ମଧ୍ୟ ନିଜର ଅପରିବର୍ତ୍ତନୀୟତାକୁ ଅକ୍ଷୁର୍ଣ୍ଣ ରଖିଛନ୍ତି । ଏହା ନିଷ୍ଟୟ ଏକ ରହସ୍ୟ । ଏହି ଭଳି ସ୍ଥିତି କିଭଳି ସମ୍ଭବ ହେଉଛି ତାହା ହେଉଛି ଆଶ୍ଚର୍ଯ୍ୟ । ତାହାକୁ କୁହାଯାଏ ମାୟା । ତାହାକୁ ବାକ୍ୟରେ ପ୍ରକାଶ କରି ହେବ ନାହିଁ । ଅଥଚ ତାହାର ସ୍ଥିତିକୁ ଜ୍ଞାନ ଚକ୍ଷୁରେ ଦେଖି ହେବ । ତେଣୁ ତାହା ମାୟା । ଋଗ୍‌ବେଦରେ କୁହାଯାଇଛି 'କିଏ ବା ଜାଣନ୍ତି ଏ ସୃଷ୍ଟି କେଉଁଠୁ ହେଲା '।(୬୯) ଶଙ୍କର ମଧ୍ୟ ମାୟାର ଅନିର୍ବଚନୟୀତା ଉପରେ ଗୁରୁତ୍ୱ ଆରୋପ କରିଅଛନ୍ତି ଏବଂ ଏହାରି ଯୋଗୁ ଆମେ ବିଶ୍ୱ ବ୍ରହ୍ମାଣ୍ଡକୁ ଉପଲବ୍ଧି କରୁଛୁ ବୋଲି କହିଅଛନ୍ତି । ଏହା ପ୍ରକୃତରେ ଅଛି, କିନ୍ତୁ

କିପରି ଅଛି ତାହା କହି ହେବ ନାହିଁ । ତାହା ହେଉଛି ମାୟା । ଋଗ୍ ବେଦରେ ମଧ୍ୟ ଜଗତର ଅସ୍ତିତ୍ୱକୁ ସ୍ୱୀକାର କରାଯାଇଛି । ତହିଁରେ ପରମାତ୍ମାଙ୍କର ତୁଳନା ଗୋଟିଏ ବଢେଇ ବା କମାର ସହିତ କରାଯାଇଛି । ଆଉ କେବେ ମଧ୍ୟ କୁହାଯାଇଛି ସେ ହେଉଛନ୍ତି ସକଳ ବସ୍ତୁର ଜନ୍ମଦାତା । ସେ ସକଳ ବସ୍ତୁ ମଧ୍ୟରେ ପରିବ୍ୟାପ୍ତ । ପ୍ରାଣ ଭଳି ମାନବ ଶରୀରକୁ ବଞ୍ଚାଇ ରଖିବାରେ ଏ ସାରା ଜଗତକୁ ବଞ୍ଚାଇ ରଖିଛନ୍ତି । ତେଣୁ ସେ ହେଉଛନ୍ତି ପ୍ରାଣର ପ୍ରାଣ । ମାତ୍ର ସେ ନିଜର ସ୍ଥିତିକୁ ବଜାୟ ରଖି କିଭଳି ଅନୁପ୍ରବିଷ୍ଟ ଥିଲେ ତାହା ବୈଦିକ ଋଷିଙ୍କୁ ଜଣା ନଥିଲା । ଉପନିଷଦର ଋଷିଙ୍କୁ ମଧ୍ୟ ତାହା ଥିଲା ଅଜଣା । ଏହା ହେଉଛି ମାୟା, ଯାହାକୁ କୁହାଯାଏ ଅନିର୍ବଚନୀୟ । ରାଧାକୃଷ୍ଣନ୍ କହିଛନ୍ତି 'ଋଗ୍ ବେଦ ମେଁ ଇସ୍ ଅନୁଭୂତ ଜଗତ୍ କୋ ମାୟା ମାନନେକୋ କୋଇ ସଂକେତ ନହୀଁ ହୈ' । (୭୦)

**(ଖ) ମାୟା ଆତ୍ମା ବିଭୂତିର ଶକ୍ତି –**

ଆତ୍ମା ହେଉଛନ୍ତି ଋଗ୍ ବେଦରେ 'ତଦେକମ୍' ବା ସେହି ଏକ ।(୭୧) ଅତଏବ ସେହି ଏକ ଯେଉଁ ଶକ୍ତି ବଳରେ ବିଭିନ୍ନ ଭାବରେ ପ୍ରକାଶିତ ହୁଅନ୍ତି ତାହାକୁ କୁହାଯାଏ ମାୟା । ରାଧାକୃଷ୍ଣନ୍ଙ୍କ ମତରେ ଆତ୍ମା ହେଉଛନ୍ତି ବ୍ରହ୍ମ । ଅତଏବ ସାରା ବିଶ୍ୱ ବ୍ରହ୍ମାଣ୍ଡକୁ ତାଙ୍କରି ପରିପ୍ରକାଶ ବୋଲି ଗ୍ରହଣ କରିବାକୁ ହେବ । ଏହା ହେଉଛି ତାଙ୍କର 'ଆତ୍ମ ବିଭୂତି' । ଏଥିରେ ବାହ୍ୟ ବିଭିନ୍ନତା ପରିପ୍ରକାଶ ହେଲେ ମଧ୍ୟ ବିଶ୍ୱ ବ୍ରହ୍ମାଣ୍ଡ ଗୋଟିଏ ଐକ୍ୟ ସୂତ୍ରରେ ବନ୍ଧା ; ଯେଉଁ ଶକ୍ତି ଏଭଳି ଐକ୍ୟ ସୂତ୍ରରେ ବାନ୍ଧି ରଖିଛି ତାହା ହେଉଛି ମାୟା' । 'ଶ୍ୱେତାଶ୍ୱେତର' ଉପନିଷଦ୍ ଭଗବାନଙ୍କୁ 'ମାୟୀ' ବୋଲି କହିଅଛି । ଭଗବାନ ଦିବ୍ୟ ଶକ୍ତି ବଳରେ ନିଜ ପ୍ରତିରୂପରେ ବିଶ୍ୱ ବ୍ରହ୍ମାଣ୍ଡକୁ ନିର୍ମାଣ କରିଅଛନ୍ତି । ତହିଁରେ ଅନୁପ୍ରବିଷ୍ଟ ଅଛନ୍ତି ବୋଲି ଋଗ୍‌ବେଦ କହିଅଛି । ମାୟା ହେଉଛି ଭଗବାନଙ୍କର ଆକୃତି ପ୍ରଦାନକାରୀ ଶକ୍ତିର ସଙ୍କେତ । 'ଆତ୍ମା ବିଭୂତି ଲାଗି ଭଗବାନଙ୍କର ଶକ୍ତି ବିନିଯୁକ୍ତ ହୁଏ ଏବଂ ଯାହାକୁ ବିନିଯୋଗ କରିବା ପରେ ମଧ୍ୟ ତାଙ୍କର ଅକ୍ଷରତ୍ୱ, ଅବ୍ୟୟତ୍ୱ ନଷ୍ଟ ହୁଏ ନାହିଁ ତାହା ହେଉଛି ମାୟା ଏବଂ ଏହି ଶକ୍ତି ବଳରେ ଯେଉଁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ହୁଏ, ତାହା ପ୍ରହେଳିକାମୟ ମରିଚୀକା ନୁହେଁ' । (୭୨)

**(ଗ) ମାୟା ପୁରୁଷ ଓ ପ୍ରକୃତିର ଦ୍ୱୈତ ଚେତନା –**

ଈଶ୍ୱର ତାଙ୍କ ସତ୍ତାର ଦୁଇଟି ବିଭାବ ଦ୍ୱାରା ଏହି ବିଶ୍ୱବ୍ରହ୍ମାଣ୍ଡକୁ ସୃଷ୍ଟି କରି ଅଛନ୍ତି । ସେମାନେ ହେଲେ ପୁରୁଷ ଓ ପ୍ରକୃତି । ପୁରୁଷ ଚିତ୍ ହେଲେ ପ୍ରକୃତି ଜଡ଼ । ସାରା ବିଶ୍ୱ ପ୍ରକ୍ରିୟାକୁ ଲକ୍ଷ୍ୟ କଲେ ଆମେ ଜାଣି ପାରିବା ଯେ ଏଥିରେ ଏହି ଦ୍ୱୈତ ଚେତନା କାର୍ଯ୍ୟ କରୁଛି । ଏପରିକି ଈଶ୍ୱରଙ୍କ ସ୍ୱଭାବ ମଧ୍ୟ ଦ୍ୱୈତ । ରାଧାକୃଷ୍ଣନ୍ଙ୍କର ଏହା ଏକ ବୈପ୍ଳବିକ ସମନ୍ୱୟ ବାଦୀ ଚିନ୍ତାଧାରା । ରାଧାକୃଷ୍ଣନ୍ ଜଣେ ଅଦ୍ୱୈତବାଦୀ ହେଲେ ହେଁ ସାଂଖ୍ୟ ଦର୍ଶନର ପୁରୁଷ ଓ ପ୍ରକୃତି ସଂପର୍କୀୟ ଦ୍ୱୈତବାଦକୁ ସ୍ୱୀକାର କରିଅଛନ୍ତି । ଏହି ଦ୍ୱୈତ ଚେତନା ହେଉଛି ମାୟା ।

(ଘ) ମାୟା ବିଶ୍ୱ ନିର୍ମାଣର ଆଦିପିଣ୍ଡ :-

ଈଶ୍ୱର ହେଉଛନ୍ତି ଆଦି ପୁରୁଷ । ପ୍ରକୃତି ହେଉଛି ଆଦି ପିଣ୍ଡ । ଏହି ଆଦିପିଣ୍ଡକୁ ନେଇ ଈଶ୍ୱର ବିଶ୍ୱ ନିର୍ମାଣ କରିଅଛନ୍ତି । ପ୍ରକୃତିର ଅନ୍ୟ ନାମ ମଧ୍ୟ ମାୟା । ଯାହାକୁ ମୂଳକ ପିଣ୍ଡ ଭାବରେ ଗ୍ରହଣ କରି ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟ । ପ୍ରକୃତି ବା ମାୟା ହେଉଛି 'ବ୍ରହ୍ମ' ନିର୍ଭର । ସେହିପରି ପୁରୁଷ ମଧ୍ୟ ବ୍ରହ୍ମ ନିର୍ଭର । ବ୍ରହ୍ମଙ୍କୁ ଛାଡି ଉଭୟଙ୍କର ପୃଥକ୍ ପୃଥକ୍ ସତ୍ତା ବିଷୟରେ କଳ୍ପନା କରାଯାଇ ପାରିବ ନାହିଁ । ରାଧାକୃଷ୍ଣନ୍ ଭାଷାରେ 'ବ୍ରହ୍ମ ସ୍ୱତଃ ଥାଆନ୍ତି ନିର୍ଗୁଣ । ସେ ପ୍ରକୃତି ସହିତ ମିଶିଲେ ହୁଅନ୍ତି ସଗୁଣ । ସେହି ଈଶ୍ୱର ବିଶ୍ୱ ବ୍ରହ୍ମାଣ୍ଡର ସକଳ ଜୀବ ଓ ବସ୍ତୁ ମଧ୍ୟରେ ପରି ପ୍ରକାଶିତ ହୁଅନ୍ତି ।(୭୩) 'ଶ୍ୱେତାଶ୍ୱତର' ଉପନିଷଦର ଗୋଟିଏ ପଂକ୍ତିକୁ ଅନୁବାଦ କରି ରାଧାକୃଷ୍ଣନ ଯାହା କହିଅଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । ଏହି ଦୃଷ୍ଟିରୁ ବିଗ୍ଭର କଲେ ମାୟା ହେଉଛି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ପାଇଁ ବ୍ୟବହୃତ ହୋଇଥିବା ଆଦି ପିଣ୍ଡ ।(୭୪)

(ଙ) ମାୟାର ଆବୃତ୍ତ କରି ରଖିବା ଶକ୍ତି –

ମାୟା ଯେତିକି ଖୋଲି ରଖିଥାଏ ତା ଠାରୁ ଅଧିକ ଘୋଡାଇ ରଖିଥାଏ । ଆମେ ଜଗତକୁ ଯେପରି ଭାବରେ ଦେଖୁ ତାହା ସେପରି ନୁହେଁ । ତାହା ଆହୁରି ଅଧିକ । ଏହା ମିଛ ନୁହେଁ ମାତ୍ର ଆମ ଠାରୁ ଏହା ଦୂରକୁ ଦୂର ରହିଥାଏ । ଆମେ ମାୟା ରେ ଆବୃତ ହୋଇ ରହିଥିବାରୁ ଆମର ପ୍ରକୃତ ସ୍ୱରୂପ ବିଷୟରେ ଅବହିତ ହୋଇ ପାରୁନାହିଁ । ମାୟା ଆମର ଦୃଷ୍ଟି ଶକ୍ତିକୁ ବିକୃତ କରି ଦେଇଥିବାରୁ ଏପରି ଘଟିଥାଏ । ପରସ୍ପର ବ୍ୟକ୍ତିତ୍ୱକୁ ଭିନ୍ନ ଭିନ୍ନ ବୋଲି ଭାବୁ । ମାୟାର ପ୍ରଭାବ ଗ୍ଭଲିଗଲେ ଆମେ ନିଜକୁ ଚିହ୍ନି ପାରୁ । ଅତଏବ ମାୟାକୁ ଅତିକ୍ରମ କରିବାକୁ ହେଲେ ଆମେ ବ୍ୟକ୍ତିଗତ ପୃଥକ୍ ପୃଥକ୍ ସତ୍ତାକୁ ଭୁଲିଯାଇ ବିଶ୍ୱ ସତ୍ତାର ଏକତା ସହିତ ସାମିଲ କରିବାକୁ ହେବ । ଏହି ଆବରଣ ବିଷୟରେ 'ଈଶୋପନିଷଦ'ର ଋଷି ସମ୍ୟକ ଭାବରେ ଅବଗତ ଥିଲେ । ତେଣୁ ସେ ଏହି ଆବରଣଟିକୁ ଖୋଲି ଦେବାପାଇଁ 'ପୁଷନ୍' ଦେବତାଙ୍କୁ ପ୍ରାର୍ଥନା କରି କହିଥିଲେ 'ହେ ପୋଷଣ କର୍ତ୍ତା ସୂର୍ଯ୍ୟ ସୁନାର ତିଆରି ଢାଙ୍କୁଣିଟିରେ ସତ୍ୟର ମୁହଁଟି ଘୋଡାଇ ହୋଇ ରହିଅଛି । ସତ୍ୟ ପଛରେ ଧାଉଁ ଥିବା ମୋର ଆଖି ଖୋଲି ଦେବା ଲାଗି ତୁମେ ତାହାକୁ ଟେକି ଦିଅ '। (୭୫) ଏହି ଆବରଣ ଆଉ କିଛି ନୁହେଁ ତାହା ହେଉଛି ମାୟା । ଯାହାର ସ୍ୱଭାବ ହେଲା ସବୁବେଳେ ଘୋଡାଇ ରଖିବା । ସ୍ୱୟଂ ସ୍ରଷ୍ଟା ମଧ୍ୟ ତାଙ୍କ ଦ୍ୱାରା ଆବୃତ ହୋଇ ରହିଯାଆନ୍ତି ।

(ଚ) ମାୟାର ଏକପକ୍ଷୀୟ ନିର୍ଭର ଶୀଳତା –

ଜଗତ ଏକପକ୍ଷୀୟ ଭାବରେ ବ୍ରହ୍ମଙ୍କ ଉପରେ ନିର୍ଭରଶୀଳ । କିନ୍ତୁ ଜଗତ ଉପରେ ନିର୍ଭର ଶୀଳ ନୁହଁନ୍ତି । ଏହି ନିର୍ଭରଶୀଳତାକୁ କୁହାଯାଏ ମାୟା । ଶଙ୍କର ସର୍ପ ରଜ୍ଜୁର ଉଦାହରଣ ଦେଇ ରଜ୍ଜୁ ଠାରେ ସର୍ପଭାବ ଆରୋପ କରିବାର ଉଦ୍ୟମକୁ ସାରା ଜଗତର ବ୍ରହ୍ମଙ୍କ ଉପରେ ନିର୍ଭରଶୀଳତାକୁ ଅର୍ଥରେ ହିଁ ନେଇଛନ୍ତି । ବେଦାନ୍ତୀମାନେ ଏହି ଏକପକ୍ଷୀୟ ନିର୍ଭରତାକୁ 'ବିବର୍ତ୍ତ' ବୋଲି ଆଖ୍ୟାତ

କଲେ । ଏହି 'ବିବର୍ତ୍ତବାଦ' ଅନୁସାରେ ଜଗତ ବ୍ରହ୍ମଙ୍କ ଉପରେ ନିର୍ଭର ଶୀଳ, କାରଣ ବ୍ରହ୍ମ ହେଉଛନ୍ତି ଏହାର କାରଣ । ତେଣୁ ମାୟାବାଦ ସ୍ୱୀକାର କରେ ଯେ ଜଗତର ସୃଷ୍ଟି ହେଉଛି ଅକ୍ଷୟ, ଅବ୍ୟୟ ଚିରନ୍ତନ ବିରାଜମାନ କରୁଥିବା ବ୍ରହ୍ମଙ୍କଠାରୁ । ଜଗତ ପରିବର୍ତ୍ତନ ଶୀଳ ମାତ୍ର ବ୍ରହ୍ମ ଅପରିବର୍ତ୍ତନୀୟ । ଏ ଦୃଷ୍ଟିରୁ ରାଧାକୃଷ୍ଣନ୍‌ଙ୍କ ବ୍ୟାଖ୍ୟା ତାତ୍ପର୍ଯ୍ୟପୂର୍ଣ୍ଣ ।

**ଅବିଦ୍ୟା –**

ଅବିଦ୍ୟାର ଅର୍ଥ ହେଲା ଅଜ୍ଞାନ, ଏହା ମାୟା ସହିତ ତୁଳନୀୟ । ମାୟା ବିଶ୍ୱ ବ୍ରହ୍ମାଣ୍ଡରେ ଥିବା ଚିରନ୍ତନ ସତ୍ୟକୁ ଘୋଡାଇ ଦେଇଥାଏ । ଅବିଦ୍ୟା ବ୍ୟକ୍ତି ବିଶେଷ ମଧ୍ୟରେ ଥିବା ଚିରନ୍ତନ ସତ୍ୟକୁ ଘୋଡାଇ ଦେଇଥାଏ । ଏହା ଫଳରେ ସେ ତାର ପ୍ରକୃତ ପରିଚୟ ପାଇପାରେ ନାହିଁ । ଫଳରେ ଜୀବନ ମରଣର ଚକ୍ରରେ କଷ୍ଟ ପାଉଥାଏ । ସେଥିପାଇଁ 'ଈଶ ଉପନିଷଦ୍'ରେ ଯଥାର୍ଥରେ କୁହାଯାଇଛି 'ଯେଉଁମାନେ ଅବିଦ୍ୟାର ଉପାସନା କରନ୍ତି ସେମାନେ ଅନ୍ଧକାରରେ ପଡିଥାନ୍ତି । ସେ ନିଜ ମଧ୍ୟରେ ଓ ସାରା ବିଶ୍ୱ ବ୍ରହ୍ମାଣ୍ଡରେ ଯେଉଁ ଏକ ସତ୍ୟ ଅଛି ତାହାକୁ ଦେଖିପାରନ୍ତି ନାହିଁ ।(୭୬) ଉପନିଷଦର ମହାବାକ୍ୟଗୁଡିକ ମନ ପ୍ରାଣ ଦେଇ ଅନୁଭବ କଲେ ଏ ଅବିଦ୍ୟା ଦୂର ହୋଇଯିବ । ମହାବାକ୍ୟ ଓ ଉପଦେଶ ବାକ୍ୟକୁ ଅବିଦ୍ୟା ଭାବରେ ଗ୍ରହଣ କରାଯାଇଛି ।(୭୭) କେବଳ ଅନୁଭୂତି ବାକ୍ୟହେଲା ବିଦ୍ୟାବୋଲି କୁହାଯାଇଛି । ଏହାର ଅର୍ଥ ନୁହେଁ ଯେ ବେଦକୁ ଅବିଦ୍ୟା ବୋଲି କୁହାଯାଇଛି । ଏଠାରେ ଉଦ୍ଧାଳକ ଆରୁଣି ତାଙ୍କ ପୁତ୍ର ଶ୍ୱେତକେତୁଙ୍କୁ ଦେଇଥିବା ବ୍ରହ୍ମଜ୍ଞାନ ଉପଦେଶର କଥା ଏଠାରେ ସ୍ମରଣ କରାଯାଇପାରେ । ଅବିଦ୍ୟା ମନୁଷ୍ୟକୁ ଅଜ୍ଞାନର ଗୋଟିଏ ବେଡ଼ିରେ ଛନ୍ଦି ଦେଇଥାଏ । ତେଣୁ ଜୀବନର ପରମ ଲକ୍ଷ୍ୟ ମୋକ୍ଷ ପାଇବାକୁ ହେଲେ ଅବିଦ୍ୟାର ନାଶ ସର୍ବାଦୌ କର୍ତ୍ତବ୍ୟ ।

**ସଦାଗ୍ରହ –**

'ଉପନିଷଦ୍' ସଦାଗ୍ରହ ଉପରେ ଅଧିକ ଗୁରୁତ୍ୱ ଦେଇଅଛି । ଯାହାଠାରେ ଆଗ୍ରହ ନାହିଁ, ବେଦମାନେ ତାକୁ ଶୁଦ୍ଧ ପୂତ କରିପାରନ୍ତି ନାହିଁ । ମନୁଷ୍ୟର ସିଦ୍ଧି ଲାଗି ଏକ ସଦାଗ୍ରହୀ ଓ ନୈତିକ ଜୀବନ ଯାପନ କରିବାକୁ ହେବ । ଏହା ଉପରେ ଉପନିଷଦ୍ ଗୁରୁତ୍ୱ ଦେଇ ଆସିଛି । ଉପନିଷଦ୍ ଆମକୁ ଆଧ୍ୟାତ୍ମିକ ଜୀବନ ଯାପନ ଲାଗି ଉପଦେଶ ଦେଇଥାଏ । ମାତ୍ର ଦେହକୁ ଛାଡି ଆତ୍ମାଙ୍କର ସନ୍ଧାନ କରିହେବ ନାହିଁ ବୋଲି ମଧ୍ୟ କହିଅଛି । ଉପନିଷଦ୍ ଆମକୁ ତ୍ୟାଗ କରିବା ପାଇଁ କହିଥାଏ । ମାତ୍ର ତାହା ସଂସାର ଛାଡି ସନ୍ନ୍ୟାସୀ ହୋଇଯିବା କଥା ନୁହେଁ । 'ଈଷଉପନିଷଦ'ର ପ୍ରଥମ ମନ୍ତ୍ରରେ ତେଣୁ କୁହାଯାଇଛି 'ହେ ମନୁଷ୍ୟ ତୁମେ ତ୍ୟାଗ ମୁଖୀ ହୋଇ ଜଗତକୁ ଉପଭୋଗ କର । ଏହାର ତାତ୍ପର୍ଯ୍ୟ ହେଲା ମନୁଷ୍ୟକୁ ପରମ ଲକ୍ଷ୍ୟ ମୁକ୍ତି ପାଖରେ ପହଞ୍ଚିବା ପାଇଁ ତ୍ୟାଗ ଓ ଭୋଗର ସମନ୍ୱିତ ଜୀବନ ଯାପନ କରିବାକୁ ହେବ । 'ଛାନ୍ଦୋଗ୍ୟ ଉପନିଷଦ୍'ରେ ସଦାଗ୍ରହ ସଂପର୍କରେ ଆଲୋଚନା କରାଯାଇ କୁହାଯାଇଛି – 'ଜୀବନ ଏକ ଯଜ୍ଞ । ଏହି ଯଜ୍ଞର ଦକ୍ଷିଣା ହେଉଛି ତପଃ, ଦାନ, ସାଧୁତା, ଅହିଂସା ଓ ସତ୍ୟବାଦୀତା '।(୭୯) ସଦାଗ୍ରହ ସଂପର୍କରେ 'ବୃହଦାରଣ୍ୟକ ଉପନିଷଦ୍'ରେ ଏକ ରୋଚକ ଗଳ୍ପରେ କୁହାଯାଇଛି କେଉଁ ପ୍ରକାର ବ୍ୟକ୍ତିଙ୍କ ପାଇଁ କି ପ୍ରକାର ଆଗ୍ରହ ଅବଲମ୍ବନୀୟ ।(୮୦) ଏହି ଗଳ୍ପଟି

ହେଲା— 'ଥରେ ଦେବତା, ମଣିଷ, ଅସୁର ତାଙ୍କ କର୍ତ୍ତବ୍ୟ ସଂପର୍କରେ ଜାଣିବାକୁ ପ୍ରଜାପତିଙ୍କ ନିକଟକୁ ଗଲେ । ପ୍ରଜାପତି ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଘଡ ଘଡି ଗର୍ଜନ ସୃଷ୍ଟି କଲେ । 'ଦ, ଦ, ଦ' ଶବ୍ଦ କରି ଆକାଶ କମ୍ପି ଉଠିଲା । ଦେବତାମାନେ ବୁଝି ଗଲେ ତାଙ୍କୁ କୁହାଗଲା ଦମ୍ୟତ ଅର୍ଥାତ୍ ତୁମେମାନେ ଆତ୍ମ ନିଗ୍ରହ କର । ପ୍ରଥମ 'ଦ' ଟି ଥିଲା ତାଙ୍କ ପାଇଁ ଉଦ୍ଦିଷ୍ଟ । ଦେବତାମାନେ ହେଉଛନ୍ତି ସମସ୍ତଙ୍କ ଅପେକ୍ଷା ବେଶି ଶକ୍ତିଶାଳୀ । ସେମାନେ ଯଦି ଆତ୍ମ ନିଗ୍ରହ ନ କରିବେ ତେବେ ସେମାନଙ୍କ ଶକ୍ତିର ଅପବ୍ୟବହାର ହେବାର ଆଶଙ୍କା ରହିବ । ଏଥିରେ ଦୁର୍ବଳମାନେ ପୀଡ଼ିତ ହେବେ । ଅତଏବ ଶକ୍ତି ଶାଳୀ ବ୍ୟକ୍ତି 'ଆତ୍ମ ନିଗ୍ରହ' କରିବା ଉଚିତ୍ ବୋଲି ଏହି ଶିକ୍ଷାଟି ଉପନିଷଦ ଆମକୁ ଦେଇଥାଏ । ଦ୍ୱିତୀୟ 'ଦ' ଟି ଥିଲା ମନୁଷ୍ୟଙ୍କ ପାଇଁ ଉଦ୍ଦିଷ୍ଟ । ସେମାନେ ଭାବିଲେ ପ୍ରଜାପତି କହିଲେ 'ଦତ୍ତ' ଅର୍ଥାତ୍ ଦିଅ । ମନୁଷ୍ୟମାନେ ଦାନ - କର୍ମ ଦ୍ୱାରା ସିଦ୍ଧି ଲାଭ କଲେ । ଏହି ଦାନ ଉପରେ ଉପନିଷଦ ଗୁରୁତ୍ୱ ଦେଇ ଆସିଛି ।xxx ତୃତୀୟ 'ଦ' ଟି ହେଲା ଅସୁରଙ୍କ ପ୍ରତି ଉଦ୍ଦିଷ୍ଟ । ସେମାନେ ବୁଝିନେଲେ ପ୍ରଜାପତି ସେମାନଙ୍କୁ କହୁଛନ୍ତି 'ଦୟଧ୍ୱ' ଅର୍ଥାତ୍ ଦୟା କର ବୋଲି । ଅସୁରମାନେ ସ୍ୱଭାବତଃ ହେଉଛନ୍ତି ନିଷ୍ଠୁର । ସେମାନଙ୍କ ମନରେ ଦୟା ଭାବର ଉଦ୍ରେକ ହେଲେ ଏହି ନିଷ୍ଠୁର ପ୍ରକୃତିର ଉପଶମ ହୋଇ ପାରିବ । xxx ଏହି ତିନି ପ୍ରକାର ଲୋକେ ପୃଥିବୀରେ ଅଛନ୍ତି । ସେମାନଙ୍କୁ ଯଥାକ୍ରମେ ଦମ, ଦାନ ଓ ଦୟା ମାଧ୍ୟମରେ ସିଦ୍ଧି ଲାଭ କରିବାକୁ ହେବ । (ସୁରେନ୍ଦ୍ର ନାଥ ଶତପଥୀଙ୍କର ଭାରତୀୟ ସଂସ୍କୃତିର ପଞ୍ଚମ ଖଣ୍ଡ, - ବୈଦିକ ପର୍ବ ୪ର୍ଥ ଭାଗ - ପୃ ୩୫୧-୫୨ ରୁ ଉଦ୍ଧୃତ ) ଏହିପରି ଉପନିଷଦର ଛତ୍ରେ ଛତ୍ରେ ସଦାଗ୍ରର କଥା କୁହାଯାଇଛି ।

ଉପନିଷଦର ଶୀଳ ଗୁଡିକ ବସ୍ତୁନିଷ୍ଠ । ଏଗୁଡିକ ଜୀବନରେ ପାଳି ହେବ । ଶୀଳନିଷ୍ଠ ଜୀବନ ଯାପନ ମାଧ୍ୟମରେ ଚରମ ସତ୍ୟ ନିକଟରେ ପହଞ୍ଚି ହେବ । ଯାହା କଲେ 'ନିଃ ଶ୍ରେୟସ୍' ମିଳି ପାରିବ ତାହା ହେଉଛି ସତ୍ କର୍ମ । ଏହା ବ୍ୟକ୍ତିକୁ ଉପର ସ୍ତରକୁ ନେଇଯାଏ । ଉପନିଷଦର ଋଷିମାନେ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ ସତ୍ୟଂବଦ, ଧର୍ମ-ଚର । ଅର୍ଥାତ୍ ସତ କୁହ, ଧର୍ମ ଆଚରଣ କର । ଆଉ ମଧ୍ୟ ସେ କହୁଥିଲେ 'ମାତୃ ଦେବୋ ଭବ, ପିତୃ ଦେବୋ ଭବ, ଅତିଥି ଦେବୋ ଭବ ଅର୍ଥାତ୍ ମାଆଙ୍କୁ ଦେବତା ବୋଲି ଜ୍ଞାନ କର, ବାପାଙ୍କୁ ଦେବତା ବୋଲି ଜ୍ଞାନ କର ଓ ଅତିଥିମାନଙ୍କୁ ଦେବତା ବୋଲି ଜ୍ଞାନ କର । ଏ ସବୁ ଉପଦେଶ ଶିଷ୍ୟମାନଙ୍କୁ ଭଲ ମଣିଷ କରି ଗଢି ତୋଳୁଥିଲା । ସକଳ ଜୀବଙ୍କୁ ନିଜ ଠାରେ ଦେଖିବା ଏବଂ ସକଳ ଜୀବଙ୍କ ଠାରେ ନିଜକୁ ଦେଖିବା ଏହା ହେଉଛି ଉପନିଷଦ୍‌ର ବାଣୀ । ନିଜେ ସୁଖ ପାଇବାକୁ ହେଲେ ଅନ୍ୟମାନଙ୍କୁ ସୁଖ ଦେବାକୁ ପଡିବ । ସେଥିପାଇଁ 'ଈଶଉପନିଷଦ୍'ରେ କୁହାଯାଇଛି 'ଯେ ନିଜଠାରେ ସକଳ ଭୂତଙ୍କୁ ଦେଖିପାରନ୍ତି ଏବଂ ସକଳ ଭୂତଙ୍କ ଠାରେ ନିଜକୁ ଦେଖିପାରନ୍ତି ସେହି ହେତୁରୁ ସେ କାହାକୁ ଘୃଣା କରନ୍ତି ନାହିଁ '।(୮୧) ସମସ୍ତଙ୍କଠାରେ ନିଜର ପ୍ରତିବିମ୍ବ ଆବିଷ୍କାର କରିବାପାଇଁ ଉପନିଷଦ୍ ମାନବ ସମାଜକୁ ନିର୍ଦ୍ଦେଶ ଦେଇଛି । ମନୁଷ୍ୟକୁ ସଦାଗ୍ରୀ କରିବା ପାଇଁ ଉପନିଷଦ ବହୁ ଉପଦେଶ ପ୍ରଦାନ କରିଛି ।

**ବେଦାନ୍ତ ଦର୍ଶନ ଓ ଆଧୁନିକତା –**

ବୃହଦାରଣ୍ୟକ ଉପନିଷଦ ମତରେ ଆତ୍ମାଙ୍କ ବିଷୟରେ ଶୁଣିବା ଉଚିତ୍ । ତାଙ୍କ ବିଷୟରେ ଚିନ୍ତା କରିବା ଏବଂ ତାଙ୍କ ବିଷୟରେ ହେତୁବାଦୀ ଦୃଷ୍ଟିଭଂଗୀ ନେଇ ବିଗ୍ରର କରିବା ଉଚିତ୍ ।

(ଅରେ ବା ଆତ୍ମା ଶ୍ରୋତବ୍ୟ ମନ୍ତବ୍ୟଃ ନିଦିଧ୍ୟାସିତ ବ୍ୟଃ) ଶେଷୋକ୍ତ ନିଦିଧ୍ୟାସନ ପର୍ଯ୍ୟାୟଟି ବିଜ୍ଞାନ ସମ୍ମତ ଦୃଷ୍ଟିଭଂଗୀ ସହିତ ମେଳଖାଇ ଯାଉଛି । 'ଐତରେୟ ଉପନିଷଦ୍'ବାଣୀ 'ଚରୈବତି, ଚୈରବତି' ବା ଆଗେଇ ଚ୍ଲ, ଆଗେଇ ଚ୍ଲ, ସର୍ବଦା ମଣିଷ ମନରେ ଗୁଞ୍ଜରିତ ହେଉଥାଏ । ସତ୍ୟାନୁସନ୍ଧାନ ପଥରେ ଆଗେଇ ଯିବାକୁ ନିରନ୍ତର ଅନୁପ୍ରେରଣା ଦେଇଥାଏ । କଠୋପନିଷଦ୍ ମନୁଷ୍ୟ ମାନଙ୍କୁ ଚିର ଉଦାତ୍ତ ଆହ୍ୱାନ କରି କହିଥାଏ 'ଉତ୍ତିଷ୍ଠତ, ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ '।(୮୨) ଅର୍ଥାତ୍ ତୁମ୍ଭେମାନେ ଉଠ ! ତୁମ୍ଭେମାନେ ଜାଗ୍ରତ ହୁଅ । ତୁମ୍ଭେମାନେ ଶ୍ରେଷ୍ଠ ମାନଙ୍କୁ (ବ୍ୟକ୍ତିମାନଙ୍କୁ ଅଥବା ଜ୍ଞାନୀମାନଙ୍କୁ) ପାଇ ନିଜକୁ ଆଲୋକିତ କର । ଚିର ଜାଗ୍ରତ ରହିବା ପାଇଁ ଏହାହିଁ ହେଉଛି ଅନୁପ୍ରେରଣା । 'କଠ ଉପନିଷଦ୍'ରେ ଯେଉଁ ଲୋକ 'ବିତ୍ତ' ମୋହରେ ପଡି ବିପଦ ଗ୍ରସ୍ତ ତାକୁ ଓଜସ୍ୱିନୀ ବାଣୀରେ କହିଛି 'ବିତ୍ତ' ମୋହରେ ନପଡିବାର ବାରମ୍ବାର ଆତ୍ମ ଜିଜ୍ଞାସ କର, ସଫଳ ଜୀବନ ଯାପନ କର । (ପ୍ରମାଦ୍ୟନ୍ତଂ ବିତ୍ତମୋହେନ ମୂଢଂ)(୮୩) । ମଣିଷ ମଧ୍ୟରେ ଯେଉଁ ଅନ୍ତର୍ନିହିତ ଶକ୍ତି ଅଛି, ଯେଉଁ ଦିବ୍ୟ ଚେତନା ଅଛି ତାହାକୁ ଜାଗ୍ରତ କରାଇ ଦେବାପାଇଁ ବେଦାନ୍ତ ଦର୍ଶନ ଅନୁପ୍ରେରଣା ଦେଇଅଛି । ମଣିଷକୁ ଆଶା, ଭରସା ଓ ବିଶ୍ୱାସ ଦେଇଅଛି । ଏହା ହେଉଛି ବେଦାନ୍ତ ଦର୍ଶନର ଆଧୁନିକତା । ଯାହା ଚିରନ୍ତନ, ଯାହା ଅସ୍ଥିର ଜୀବନକୁ ସ୍ଥିର କରେ । ଅଶାନ୍ତ ମନକୁ ଶାନ୍ତକରେ । ଅନ୍ଧକାରାଚ୍ଛନ୍ନ ଜୀବନରେ ଆଲୋକ ବର୍ତ୍ତିକା ଜଳାଏ ।



## ନବମ ପରିଚ୍ଛେଦ

# ବୈଦିକ ଆର୍ଥିକ ଜୀବନ

ବୈଦିକ ଆର୍ଯ୍ୟମାନଙ୍କର ଚତୁର୍ବର୍ଗ ଫଳ ପ୍ରାପ୍ତି ଲାଗି ଜୀବନର ଯେଉଁ ଲକ୍ଷ୍ୟ ଥିଲା ତହିଁରେ ଅର୍ଥ ଥିଲା ଅନ୍ତର୍ଭୁକ୍ତ । ଆର୍ଥିକ ଜୀବନ ପ୍ରତି ବୈଦିକ କାଳରେ ସମୁଚିତ ଗୁରୁତ୍ୱ ଦିଆଯାଉଥିଲା । ବ୍ୟକ୍ତି, ପରିବାର, ଗୋଷ୍ଠୀ, ତଥା ଦେଶର ଆର୍ଥିକ ଅଭ୍ୟୁଦୟ ଲାଗି ସର୍ବଦା ଉଦ୍ୟମ କରାଯାଉଥିଲା । ରାଜନ୍ୟ ଓ ବୈଶ୍ୟ ସଂପ୍ରଦାୟର ଲୋକେତ ଧନୀ ଥିଲେ ; ତା ସହିତ ବ୍ରାହ୍ମଣମାନେ ମଧ୍ୟ ବେଳେ ବେଳେ ଧନୀ ଥିଲେ । ସେମାନେ ମଧ୍ୟ ଅନ୍ୟମାନଙ୍କ ପରି ବ୍ୟବସାୟ ବାଣିଜ୍ୟ କରି ଧନ ଉପାର୍ଜନ କରୁଥିଲେ । ଭୃଗୁ ଗୋଷ୍ଠୀର ବ୍ରାହ୍ମଣମାନେ ବାଣିଜ୍ୟ ବ୍ୟବସାୟ କରିବା କଥା ବେଦରେ ଉଲ୍ଲିଖିତ । ଏ ଗୋଷ୍ଠୀର ପ୍ରମୁଖ ଦାୟାଦମାନେ ଥିଲେ ଜମଦଗ୍ନି ଓ ପରଶୁରାମ ଆଦି ଋଷିଗଣ । ସେମାନଙ୍କ ଦ୍ୱାରା ଅଧ୍ୟୁଷିତ ଅଞ୍ଚଳକୁ କୁହାଯାଉଥିଲା ଭୃଗୁକଚ୍ଛ । ନର୍ମଦା ନଦୀରେ ଗୋଟିଏ ବନ୍ଦର ଥିଲା, ତାହାର ନାମ ମଧ୍ୟ ଭୃଗୁକଚ୍ଛ । ଏହି ଗୋଷ୍ଠୀର ଲୋକମାନେ ସମୁଦ୍ର ପଥର ବହିର୍ବାଣିଜ୍ୟ କରୁଥିବା କଥା ମଧ୍ୟ ବେଦରେ ଉଲ୍ଲିଖିତ । ଏହି ଭୃଗୁକଚ୍ଛ ବନ୍ଦର ଭାରତର ଏକ ପ୍ରାଚୀନ ବନ୍ଦର ।(୧) ସେତେବେଳେ ଆର୍ଯ୍ୟ ବିରୋଧି ପଣିମାନେ ମଧ୍ୟ ବ୍ୟବସାୟୀ ଥିଲେ । ବ୍ୟବସାୟ କ୍ଷେତ୍ରରେ ପ୍ରତିଯୋଗିତା ନକରି ପଣିମାନଙ୍କ ସହିତ ମିତ୍ରତା ସ୍ଥାପନ ଭୃଗୁମାନେ କରିଥିଲେ । କିନ୍ତୁ ଅନ୍ୟ ଗୋଷ୍ଠୀର ଆର୍ଯ୍ୟମାନେ ଏହାକୁ ଭଲ ଦୃଷ୍ଟିରେ ଦେଖି ନପାରିବାରୁ ଆର୍ଯ୍ୟ ରାଜା ସହସ୍ରାର୍ଜୁନ ଭୃଗୁମାନଙ୍କ ବିରୁଦ୍ଧରେ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରିଥିଲେ । ମାତ୍ର ପରେ ପରଶୁରାମ ଏ ଗୋଷ୍ଠୀର ନେତୃତ୍ୱ ନେଇ ସହସ୍ରାର୍ଜୁନ ସମେତ ଅନ୍ୟାନ୍ୟ ରାଜାମାନଙ୍କୁ ପରାସ୍ତ କରିଥିଲେ । ଋଗ୍ ବେଦରେ ଧନ ପାଇଁ ଦେବତାମାନଙ୍କୁ ପ୍ରାର୍ଥନା କରିଥିବାର ବହୁ ଦୃଷ୍ଟାନ୍ତ ମିଳେ । ବୈଦିକ ଆର୍ଯ୍ୟମାନେ ଦରିଦ୍ରତାକୁ ଘୃଣା କରୁଥିଲେ । କୃଷି ଓ ଗୋ ପାଳନ ବୈଦିକ ଆର୍ଯ୍ୟମାନଙ୍କର ପ୍ରଧାନ ଜୀବିକା ଥିଲା । ସେଗୁଡିକ ସଂପର୍କରେ ନିମ୍ନରେ ଆଲୋଚନା କରାଗଲା ।

**କୃଷି –** ବୈଦିକ ଆର୍ଯ୍ୟମାନଙ୍କର ଅର୍ଥନୀତି ଥିଲା କୃଷିଭିତ୍ତିକ । ବୈଦିକ ସାହିତ୍ୟରେ କୃଷିକୁ ବହୁ ମାନ୍ୟତା ଦିଆ ଯାଇଛି । ଦ୍ୟୁତ କ୍ରୀଡାରେ ପରାଜିତ ଦ୍ୟୁତକାରକୁ ଋଗ୍‌ବେଦରେ ଋଷି ଜୁଆଖେଳ ଛାଡି କୃଷି କର୍ମ କରିବାକୁ ଆଦେଶ ଦେଇ ଅଛନ୍ତି ।(୨) ଋଗ୍‌ବେଦ ଅନୁସାରେ 'ଅଶ୍ୱିନ୍' ସର୍ବପ୍ରଥମେ ଆର୍ଯ୍ୟମାନଙ୍କୁ କୃଷି କର୍ମ ଶିକ୍ଷା ଦେଇଅଛନ୍ତି । ଋଗ୍ ବେଦ ଓ ପରବର୍ତ୍ତୀ ଗ୍ରନ୍ଥରେ ଗୃଷ ଜମି ପାଇଁ 'ଉର୍ବର' ଓ 'କ୍ଷେତ୍ର' ଶବ୍ଦ ପ୍ରଯୁକ୍ତ ହୋଇଛି । କ୍ଷେତ୍ର ଖଣ୍ଡ ଖଣ୍ଡ ଭାବରେ ବିଭକ୍ତ ହୋଇଥିଲା ଓ ଭିନ୍ନ ଭିନ୍ନ ଭାବରେ ନିଜ ନିଜର ଜମି ଚଷୁ ଥିଲେ । ଏହି ଜମି ବା ଭୂମିକୁ ବହୁ ମାନ୍ୟତା ଦିଆଯାଉଥିଲା । ଅଥର୍ବ ବେଦରେ ଏଥିପାଇଁ 'ଭୂମିସୂକ୍ତ' ପ୍ରସିଦ୍ଧ । ପୃଥିବୀ ମା'ର ବକ୍ଷରେ ଆର୍ଯ୍ୟମାନଙ୍କ ଲାଗି ଖାଦ୍ୟ ଶସ୍ୟ ଭରି ରହିଥିଲା ବୋଲି ଆର୍ଯ୍ୟମାନେ ବିଶ୍ୱାସ କରୁଥିଲେ । ଅଥର୍ବ ବେଦରେ ଋଷି ତେଣୁ ଯଥାର୍ଥରେ କହିଛନ୍ତି 'ଭୂମି ହେଉଛି ମା' ସମାନ । ମୁଁ ପୃଥିବୀର ପୁଅ ଭଳି । (୩) ଋଗ୍‌ବେଦରେ ମଧ୍ୟ କୁହାଯାଇଛି 'ଏଇ ବିରାଟ ପୃଥିବୀ ହେଉଛି ଆମର ମା' ସମାନ । ପୃଥିବୀ ଅନ୍ନଦାତ୍ରୀ.'(୪) ସେଥିପାଇଁ ବେଦରେ ଏଭଳି ମାନ୍ୟତା ପ୍ରଦର୍ଶନ କରାଯାଇଛି । ବ୍ରାହ୍ମଣ କାଳରେ କୃଷି ଉପରେ ସମଧିକ ଗୁରୁତ୍ୱ ଦିଆଯାଉଥିଲା । ଶତପଥ ବ୍ରାହ୍ମଣରେ କୁହାଯାଇଛି 'ଅନ୍ନ ହେଉଛି କୃଷି '।(୫)

ଋଗ୍‌ବେଦକାଳୀନ ଆର୍ଯ୍ୟମାନେ ଯେତେବେଳେ 'ସପ୍ତସିନ୍ଧୁ' ଅଞ୍ଚଳରେ ରହୁଥିଲେ ସେତେବେଳେ ଗଭୀର କୃଷି ପ୍ରଣାଳୀ ଜଣା ନଥିଲା । ସେମାନେ ପୂର୍ବ ଭାରତରେ ଅବସ୍ଥାନ କଲା ପରେ ଲୁହାର ସନ୍ଧାନ ପାଇଲେ । ଲୁହାର ବ୍ୟବହାର ଯଜୁର୍ବେଦ ସୃଷ୍ଟି ବେଳକୁ ସମ୍ଭବ ହୋଇଥିଲା । ତାହା ପୂର୍ବରୁ ସେମାନେ ସୁନା, ତମ୍ବା ଓ ବ୍ରୋଞ୍ଜର ବ୍ୟବହାର କରୁଥିଲେ ।(୬) ଯଜୁର୍ବେଦ, ଅଥର୍ବ ବେଦର ତଥା ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଗଭୀର କୃଷି ସଂପର୍କରେ ବହୁ ବର୍ଣ୍ଣନା ଦେଖିବାକୁ ମିଳେ । ସେତେବେଳକୁ ଶରତ ଋତୁର ପ୍ରାଧାନ୍ୟ ବଢ଼ିବାକୁ ଲାଗିଲା । ତାହା ଥିଲା ଧାନ ଅମଳର ସମୟ । ସେଥିପାଇଁ 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି ଶରତ ହେଉଛି ଋତୁମାନଙ୍କ ମଧ୍ୟରେ ଶ୍ରେଷ୍ଠ । କାରଣ ସେତେବେଳେ ଶସ୍ୟ ପାଚେ, ଏଠାରେ ଶସ୍ୟ ହେଉଛି ଧାନ, ଯାହାର ପାଚିବା ସମୟ ହେଉଛି ଶରତ କାଳ '।(୭) ଏହି ବ୍ରାହ୍ମଣର ବର୍ଣ୍ଣନାନୁସାରେ ଫସଲ ଉତ୍ପାଦନ ଚାରୋଟି ଅବସ୍ଥା ଦେଇ ଗତି କରୁଥିଲା । ପ୍ରଥମ ଅବସ୍ଥା ହେଲା କର୍ଷଣ ବା ହଳ କରିବା, ଦ୍ୱିତୀୟ ଅବସ୍ଥା ହେଲା ବପନ ବା ବୁଣିବା, ତୃତୀୟଟି ହେଲା ଲବନ ବା କାଟିବା, ଶେଷଟି ହେଲା ମର୍ଦ୍ଦନ ବା ମଡାଇବା । ଫସଲକୁ ମଡ଼ାଇ ସାରିବା ପରେ 'ସୂର୍ପ' ବା 'କୁଲା' ସାହାଯ୍ୟରେ ତାହାକୁ ଉଡ଼ା ଯାଉଥିଲା ଏବଂ ଶସ୍ୟ ଅଗାଡିକୁ ଅଲଗା କରାଯାଉଥିଲା (୮) ।

ଅଥର୍ବ ବେଦରେ କୃଷି ସଂପର୍କରେ ଯେଉଁ ବର୍ଣ୍ଣନା ମିଳେ ସେଥିରୁ ଜଣାପଡେ ତାହା ଗଭୀର କୃଷି ପ୍ରତି ଲକ୍ଷ୍ୟ କରି କୁହାଯାଇଛି ଏବଂ ସେତେବେଳକୁ ଲଙ୍ଗଳ ଲୁହାର ଆବିଷ୍କାର ହୋଇସାରିଲାଣି । ଏହା ଧାନ କୃଷି ପାଇଁ ମୁଖ୍ୟତଃ ପ୍ରୟୋଗ କରାଯାଇଥାଏ । ଧାନ କୃଷି ଉପଯୋଗୀ ଭୂମିକୁ 'ଉର୍ବରା' (ଉର୍ବରା କ୍ଷେତ୍ର) କୁହାଯାଉଥିଲା । ଜମି ସାଧାରଣତଃ ଦୁଇ ପ୍ରକାରର ଥିଲା । ଗୋଟିଏ କୃଷୋପଯୋଗୀ ଓ ଅନ୍ୟଟି ପଡ଼ିଆ । 'ଅପ୍ନସ୍ୱତୀ' କୃଷୋପଯୋଗୀ ଓ 'ଆର୍ତନା' ବା ପଡିଆ ଜମି ଭାବରେ ପରିଚିତ ଥିଲା । ଆଉ ଗୋଟିଏ ପଡ଼ିଆ ଜମିକୁ 'ଖିଲ୍ୟ ବା ଖଲ୍ୟ' ବୋଲି କୁହାଯାଉଥିଲା । ଯାହା ଗୋ ଚାରଣ ନିମିତ୍ତ ଉଦ୍ଦିଷ୍ଟ ଥିଲା । (୧୦)

ହଳର ନାମ ଥିଲା ଲାଙ୍ଗଳ ବା ଲଙ୍ଗଳ । ଏହାକୁ 'ସୀର' ମଧ୍ୟ କୁହାଯାଉଥିଲା । ଏହାର ଅଗରେ ଲୁହା ଲାଗୁଥିଲା । ତାହାର ନାମ ଥିଲା ଫାଳ । ହଳର ମୁଠିଟି ଥିଲା ଖୁବ୍ ଚିକ୍‌କଣ । ହଳରେ ଗୋଟିଏ ଲମ୍ବା ବାଉଁଶ ବନ୍ଧା ଯାଉଥିଲା ଯାହାର ନାମ ଥିଲା ଇଶ ବା ଇଶା । ଏହି ଇଶ ଉପରେ ଯୁଗ ବା ଜୁଆଳିକୁ ରଖାଯାଉଥିଲା । ଯାହାକୁ 'ବରତ୍ରା' ବା ଯୋତରେ ବନ୍ଧା ଯାଉଥିଲା । ଏହି ଜୁଆଳି ବଳଦମାନଙ୍କର କାନ୍ଧରେ ବନ୍ଧା ଯାଉଥିଲା । ହଳିଆ ଲଙ୍ଗଳ ମୁଠିକୁ ଧରି ବଳଦମାନଙ୍କୁ ଅତାଉ ଥିଲା । ତହାର ହାତରେ ଚାପ ଦ୍ୱାରା ଲଙ୍ଗଳ ଲୁହା ଜମିଚାଷ କରୁଥିଲା । ହଳିଆର ପାଞ୍ଚଣକୁ 'ତୋତ୍ର' କୁହାଯାଉଥିଲା । ସେ କାଳର ହଳ ଟାଣିବା ପାଇଁ ଛଅ, ଆଠ, ବାର, କିମ୍ବା, ଚବିଶ ବଳଦ ଟାଣୁ ଥିଲେ । ଏଥିରୁ ଅନୁମିତ ହୁଏ ହଳଟି ଖୁବ୍ ଓଜନିଆ ଥିଲା । ଭୂମି ସେତେବେଳେ ଉର୍ବର ଥିଲା । ବେଳେବେଳେ ଆହୁରି ଉର୍ବର କରିବାପାଇଁ ଗୋବର ପକାଉଥିଲେ । ଗୋବରର ନାମ ଥିଲା 'କରୀଷ' । ଚାଷର ବର୍ଣ୍ଣନା ଯାହା ଅଥର୍ବ ବେଦରେ ଉଲ୍ଲିଖିତ ତାହା ଆଜି କାଲିର ଧାନ ଚାଷ ପ୍ରଣାଳୀ ସହିତ ସମାନ । ଏଥିରୁ ସୂଚନା ମିଳୁଛି ଧାନ ଚାଷ ଋଗ୍‌ବେଦ ସୃଷ୍ଟିର ପରବର୍ତ୍ତୀ ।

ଜମିର ମାଲିକାନା ସତ୍ତ୍ୱ ଋଗ୍‌ବେଦକାଳରେ ଦୃଢତର ଥିଲା । ଏହା ଉପରେ ରାଜା ହସ୍ତକ୍ଷେପ କରୁ ନଥିଲେ ବା ତାଙ୍କର  କିଛି ନିୟନ୍ତ୍ରଣ ନଥିଲା । ଜମିର ବ୍ୟକ୍ତିଗତ ମାଲିକାନା ଥିବାର କଥା ଋଗ୍ ବେଦରେ ବର୍ଣ୍ଣିତ ।(୧୧) ଏହି ମନ୍ତ୍ରରେ 'ଅତ୍ରି'ଙ୍କ କନ୍ୟା 'ଅପାଳ', ଇନ୍ଦ୍ରଙ୍କୁ ବର ପ୍ରାର୍ଥନା କରି କହୁଛନ୍ତି ଯେ 'ତାଙ୍କ ପିତାଙ୍କର ଜମି ଉର୍ବର ହେଉ ଏବଂ ସେଥିରେ ଭଲ ଫସଲ ହେଉ । ଋଗ୍ ବେଦରେ ଆଉ ଗୋଟିଏ ମନ୍ତ୍ରରେ ବିଭକ୍ତ ହୋଇଥିବା ଜମି ଗୁଡିକ ସଂପୃକ୍ତ ବ୍ୟକ୍ତିର ଧନ୍ତାନ ବୋଲି କୁହାଯାଇଛି ।(୧୨) ପୁନଶ୍ଚ ଏହି ଋଗ୍‌ବେଦରେ ଅନ୍ୟତ୍ର ଜମି ଗୁଡିକ ମପା ଯାଇ ଭାଗ ଭାଗ କରାଯିବା କଥା କୁହାଯାଇଛି ।(୧୩) ଏଥିରୁ ମନେ ହେଉଛି ବୈଦିକ କାଳରେ ଜମି ଉପରେ କୃଷକର ମାଲିକାନା ସତ୍ତ୍ୱ ଥିଲା । ସେତେବେଳେ ଜମି କୁଟୁମ୍ବଗତ ଥିଲା । ସତ୍ତ୍ୱ ସଂପର୍କୀୟ ଚିନ୍ତାଧାରା ଉଦାର ଥିବାରୁ ଏହା ଅଧିକ ଫସଲ ଉତ୍ପାଦନ ଲାଗି ଅଧିକ ସହାୟକ ହେଉଥିଲା ।

ଶସ୍ୟକୁ ମାପି କୋଠିରେ ରଖା ଯାଉଥିଲା । ଯେଉଁଥିରେ ଏହାକୁ ମପା ଯାଉଥିଲା ତାହାକୁ 'ଉର୍ଦର' କୁହାଯାଉଥିଲା ।(୧୪) ଋଗ୍ ବେଦରେ ଆଉ ଗୋଟିଏ ମନ୍ତ୍ରରେ 'ସ୍ଥିବି' ଶବ୍ଦର ଉଲ୍ଲେଖ ଅଛି । ଏହା ହେଉଛି ଅମାର ଘର । ଯେଉଁଠି ଉତ୍ପନ୍ନ ଶସ୍ୟକୁ ମହଜୁଦ କରି ରଖାଯାଉଥିଲା ।(୧୫) ଏହା ଶସ୍ୟର ଭଣ୍ଡାର ଘର । 'ବ୍ରୀହୀ'(ବିରି), 'ମୁଦ୍‌ଗ' (ମୁଗ), ମାଷ(ହରଡ଼), ଗୋଧୂମ (ଗହମ), ନୀବାର (ଜଙ୍ଗଲିଧାନ), ପ୍ରିୟଙ୍ଗୁ (ମସୁର), ଶ୍ୟାମକ (ସୁଆଁ) ଓ ତିଳ (ରାଶି) ଆଦି ଫସଲ ସେତେବେଳେ ଉତ୍ପନ୍ନ ହେଉଥିବାର ପ୍ରମାଣ ମିଳେ  ।(୧୬) କୃଷ୍ଣ ଯଜୁର୍ବେଦରେ (ତୈତ୍ତିରୀୟ ସଂହିତା) ତିନି ପ୍ରକାର ଧାନର ଉଲ୍ଲେଖ ମିଳେ । ଯଥା 'କୃଷ୍ଣ' (କଳା) 'ଆଶୁ' (ଶୀଘ୍ର ପାଚିଯାଉଥିବା ଧାନ) ଓ 'ମହାବ୍ରୀହି' (ବଡବଡ ଦାନା ଥିବା ଧାନ) ଆଶୁ ଧାନକୁ କୁହାଯାଉଥିଲା ଷଷ୍ଠିକା ବା ଷାଠିଏ ଦିନିଆ । ଏହା ଷାଠିଏ ଦିନରେ ପାଚୁଥିଲା । 'ମହାବ୍ରୀହି' ଏଥିରୁ ବଡ ବଡ ଚାଉଳ ବାହାରୁଥିଲା ।(୧୭)

'ବ୍ରାହ୍ମଣ ସୂତ୍ର' ଯୁଗ ବେଳକୁ ଧାନ ଓ ଯ'ଅ ଦୁଇଟି ପ୍ରଧାନ ଶସ୍ୟ ହିସାବରେ ଗଣା ହୋଇ ସାରିଲାଣି । ବର୍ଷା ଋତୁରେ ଧାନ ବୁଣାଯାଉଥିଲା ଓ ଧାନ ଆମଦାନୀ ହେଉଥିବାର ସୂଚନା ମିଳେ । ତିଳ ଓ ରବି ଫସଲ ପ୍ରାୟ ଶୀତ ଋତୁରେ ବୁଣାଯାଉଥିଲା । 'କୌଷତିକୀ' ବ୍ରାହ୍ମଣ ଅନୁସାରେ ଶୀତକାଳର ଫସଲ ଚୈତ୍ରମାସରେ ପାଚି ଯାଉଥିଲା ।(୧୮) ଜମିକୁ ମାପିବା ପାଇଁ ମାପର ଏକକକୁ କୁହାଯାଉଥିଲା 'ପ୍ରାସ୍ଥିକ' ।

କୃଷି ଉତ୍ପାଦନ ମୁଖ୍ୟତଃ ବୃଷ୍ଟି ଜଳ ଉପରେ ନିର୍ଭର କରୁଥିଲା । ଜଳ ସେଚନ ପ୍ରଣାଳୀ ଆର୍ଯ୍ୟମାନଙ୍କୁ ମଧ୍ୟ ଜଣାଥିଲା । ଆର୍ଯ୍ୟମାନେ ଇନ୍ଦ୍ରଙ୍କୁ ବୃଷ୍ଟିର ଦେବତା ବୋଲି ମାନୁଥିଲେ । ଋଗ୍‌ବେଦ କୁହଯେ 'ବୃତ୍ର' ତା' ଶକ୍ତି ବେଳରେ ମେଘ ଗର୍ଭରେ ଥିବା ତାର ଜଳକୁ ଅଟକାଇ ରଖିଥିଲା ଏବଂ ଇନ୍ଦ୍ର ବଜ୍ରାଘାତରେ ତାର ବୁକୁ ବିଦୀର୍ଣ୍ଣ କରି  ଜଳଧାରାକୁ ମୁକ୍ତ କରିଥିଲେ । ସେହି କାରଣରୁ କୃଷିଜୀବ ଆର୍ଯ୍ୟମାନଙ୍କ ନିକଟରେ ଇନ୍ଦ୍ର ବିଶେଷ ମାନ୍ୟତା ପାଉଥିଲେ । ଇନ୍ଦ୍ରଙ୍କ ପ୍ରାଧାନ୍ୟ ଉପରେ ଦୃଷ୍ଟି ଆରୋପ କରିବାକୁ ଯାଇ 'ଋଗ୍‌ବେଦ'ର ଋଷି ସେଦିନ କହିଥିଲେ 'ଆମ କ୍ଷେତର ସିଆରର ଦାୟିତ୍ୱ ଇନ୍ଦ୍ର ଦେବତା ନିଅନ୍ତୁ । 'ପୁଷୁନ୍' ଦେବତାଙ୍କ ଦ୍ୱାରା ତାହା ରକ୍ଷିତ ହେଉ' ।(୧୯) ଏଥିରୁ ଅନୁମିତ ହୁଏ ବୈଦିକ ଆର୍ଯ୍ୟମାନେ ବହୁ ଭାବରେ କୃଷି ଉତ୍ପାଦନ ପାଇଁ ବୃଷ୍ଟି ଉପରେ ନିର୍ଭରଶୀଳ ଥିଲେ ।

**ବୈଦିକ ଜଳସେଚନ –**

ସେତେବେଳେ ଜଳସେଚନର ପ୍ରଚଳନ ଥିଲା । ନଦୀଜଳ ଓ କୂପଜଳକୁ ସେଚନରେ ବ୍ୟବହୃତ କରାଯାଉଥିଲା । ଋଗ୍‌ବେଦର ଗୋଟିଏ ସ୍ଥାନରେ ନଦୀ ଜଳକୁ 'ସ୍ୱୟଜା' ଓ କୂପ ଜଳକୁ 'ଖନିତ୍ରିମା' ବୋଲି ବର୍ଣ୍ଣନା କରାଯାଇଛି । (ଯେଉଁ ଜଳ ସ୍ୱର୍ଗୀୟ ଏବଂ ଝରି ଝରି ଯାଏ, ଯାହାକୁ ଖୋଳି କରି ସୃଷ୍ଟି କରାଯାଇଥାଏ ଏବଂ ଯାହା ମନକୁ ମନ ସୃଷ୍ଟ ହୋଇଥାଏ) (୨୦) । ପ୍ରାକୃତିକ ଉପାୟରେ ମନକୁ ମନ ଯେଉଁ ଜଳ ସୃଷ୍ଟି ହୋଇଥାଏ ତାହାକୁ ଏଠାରେ ନଦୀ ଜଳ ବୋଲି ଗ୍ରହଣ କରିବାକୁ ହେବ । ନଦୀ, ଝରଣା ଆଦି ଏହାର ଅନ୍ତର୍ଗତ । କୂପ ଶବ୍ଦର ବ୍ୟବହାର ଋଗ୍ ବେଦରେ ଦେଖିବାକୁ ମିଳେ ।(୨୧) ଏହା ହେଲା ବାମ୍ଫୀ ବା ବଡ଼ କୂଅ । ଏହା ବ୍ୟତୀତ ଜମି ମଝିରେ ମଝିରେ ଛୋଟ ଚୁଆ ଖୋଳା ଯାଉଥିଲା । ଯାହାର ନାମ ଥିଲା 'ଅବଟ' । ଋଗ୍‌ବେଦରେ ଏହି 'ଅବଟ' ନାମରେ ଉଲ୍ଲେଖ ଦେଖିବାକୁ ମିଳିଥାଏ । (୨୨) ଏହି କୂଅ ଗୁଡିକର ପାଣି କେବେ ଶୁଖୁ ନଥିଲା । ସେଥିପାଇଁ ଋଗ୍ ବେଦରେ ଏଗୁଡିକୁ କୁହାଯାଉଥିଲା 'ଅକ୍ଷତଂ' ।(୨୩) 'ଅବଝରର' (ଖୋଳାଯାଇଥିବା ପୁଷ୍କରିଣୀ) ଉଲ୍ଲେଖ ଋଗ୍ ବେଦରେ ମିଳିଥାଏ । ପଥରରେ ବନ୍ଧା ହୋଇଥିବା 'ଚକି' ଦ୍ୱାରା କୂଅରୁ ପାଣି କଢାଯାଉ ଥିଲା । ଏହା ଆଧୁନିକ 'ଟେଣ୍ଡା'ର ପୂର୍ବଜ । ସେତେବେଳେ କୂଅରୁ ବାହାରୁଥିବା ପାଣିକୁ ବଡ଼ ବଡ଼ ନାଳୀ ସାହାଯ୍ୟରେ କ୍ଷେତକୁ ଅଣାଯାଉଥିଲା । ଋଗ୍‌ବେଦରେ ଏହାର ଉଲ୍ଲେଖ ଅଛି, ଭଲ ଭାବରେ ଚାଷ ହୋଇଥିବା ଓ ପାଣି ପାଇଥିବା କ୍ଷେତ । (୨୪)

ନଦୀ, ନାଳ, ଓ ଝରଣାର ପାଣିକୁ ମଧ୍ୟ ନାଳୀ ସାହାଯ୍ୟରେ ଜଳସେଚନ ଲାଗି କ୍ଷେତକୁ ଅଣାଯାଉଥିଲା । ଏଥିପାଇଁ ବନ୍ଧ ତିଆରି କରାଯାଇ ପାଣିକୁ ଅଟକାଇ ରଖାଯାଉଥିଲା ଏବଂ ପାଣିର ପତନ କ୍ଷେତର ପତନ ଠାରୁ ଉଚ୍ଚତର ହେଲେ ନାଳୀ ସାହାଯ୍ୟରେ ତାହାକୁ ଅଣାଇ କ୍ଷେତରେ ମଡ଼ା ଯାଉଥିଲା । ଏଥିରୁ ଅନୁମିତ ହୁଏ ନଦୀ ବନ୍ଧର ମୌଳିକ ନିର୍ମାଣ କୌଶଳ ଆର୍ଯ୍ୟମାନଙ୍କୁ ଜଣା ଥିଲା । ଋଗ୍‌ବେଦରେ ନାଳୀକୁ 'କୁଲଗା' କୁହାଯାଇଛି । ଆଉ ଠାଏ ଖୋଳା ହୋଇ ଅଣାଯାଉଥିବା ପାଣିକୁ 'ଖନିତ୍ରିମା ଆପଃ' ବୋଲି କୁହାଯାଇଛି ।(୨୫) ଜଣାପଡେ କୂଅର ପାଣି ପ୍ରାୟ ମନୁଷ୍ୟ ପଶୁ ପକ୍ଷୀ ନିମିତ୍ତ ବ୍ୟବହୃତ ହେଉ ନଥିଲା । ତାହା କେବଳ କୃଷି ଜମିରେ ବ୍ୟବହୃତ ହେଉଥିଲା । ଅତିବୃଷ୍ଟି ଓ ଅନାବୃଷ୍ଟି ସମୟେ ସମୟେ କୃଷି କର୍ମକୁ ବିଫଳ କରୁଥିଲା । ଏହା ଛଡ଼ା କୀଟ, ପତଙ୍ଗମାନଙ୍କର ନାମୋଲ୍ଲେଖ ମିଳେ । ଯଥା- 'ଉପକ୍ୱସ, ଜଯ୍ୟ ଓ ପତଙ୍ଗ' । ଋଗ୍‌ବେଦରେ କୃଷି ପ୍ରେମୀ ଆର୍ଯ୍ୟ କ୍ଷେତ୍ର ପ୍ରତି ଦେବତାର କଳ୍ପନା କରି ଉତ୍ତମ ଫସଲ ନିମିତ୍ତ ପ୍ରାର୍ଥନା କରିଛି ।

**ପଶୁପାଳନ –**

କୃଷି କର୍ମ ବ୍ୟତୀତ ପଶୁପାଳନ ଥିଲା ସେ କାଳର ଅନ୍ୟତମ ପ୍ରଧାନ ବ୍ୟବସାୟ । ପଶୁ ବିନା କୃଷି କାର୍ଯ୍ୟ ଅସମ୍ଭବ । ଯେ କୃଷକ ସେ ପଶୁ ପାଳକ ହେବା ଅବଶ୍ୟମ୍ଭାବୀ । ସେମାନେ କୃଷି ଓ ପଶୁ ପାଳନ ଉପରେ ସମଭାବରେ ଥିଲେ ନିର୍ଭର ଶୀଳ । 'ଶତପଥ ବ୍ରାହ୍ମଣ'ରେ କୁହାଯାଇଛି ପଶୁମାନେ ହେଉଛନ୍ତି ଅନ୍ନ ସଦୃଶ ।(୨୬) ଏହାର ତାତ୍ପର୍ଯ୍ୟ ହେଲା ସେମାନଙ୍କ ଯୋଗୁହିଁ ଖାଦ୍ୟ ଉତ୍ପାଦନ ସମ୍ଭବ । ପଶୁ ଠାରୁ ଆର୍ଯ୍ୟମାନେ ମାଂସ ଓ ଚର୍ମ ପାଉଥିଲେ ଏବଂ ପଶୁର ବିନିମୟରେ ଆର୍ଯ୍ୟ ଲାଭ କରୁଥିଲା

ଅନ୍ୟାନ୍ୟ ପଦାର୍ଥ । ବୈଦିକ କାଳରେ କୃଷି ଓ ପଶୁ ପାଳନ ଉପରେ ସମାନ ଗୁରୁତ୍ୱ ଦିଆଯାଉଥିଲା । କେବଳ ସେତିକି ନୁହେଁ ପଶୁଙ୍କୁ ସମ୍ପତ୍ତି ବୋଲି ମଧ୍ୟ ଧରାଯାଉଥିଲା । ବୈଦିକ କାଳରେ ଯେଉଁମାନଙ୍କର ବେଶି ପଶୁ ସମ୍ପଦ ଥିଲା ସେମାନେ ସେତେବେଳେ ଧନୀ ବ୍ୟକ୍ତି ବୋଲି ପରିଗଣିତ ହେଉଥିଲେ । ରାଜା ମହାରାଜାଙ୍କର ଅଧିକ ପଶୁ ସମ୍ପଦ ଥିବାରୁ ସେମାନେ ଋଷି ବ୍ରାହ୍ମଣମାନଙ୍କୁ ଦାନ କରୁଥିଲେ । 'ଶତପଥ ବ୍ରାହ୍ମଣ'ରେ ଉଲ୍ଲେଖ ଅଛି 'ପଶୁମାନେ ହେଲେ ଧନ ସ୍ୱରୂପ'।(୨୭) ବ୍ରାହ୍ମଣ ଯୁଗକୁ ଛାଡି ଦେଲେ ବୈଦିକ ସଂହିତା ଯୁଗରେ ମଧ୍ୟ ଅନୁରୂପ ବ୍ୟବସ୍ଥା ଥିଲା ।

ଗାଈ, ଗୋରୁ , ଘୋଡା, ଛେଳି, ମେଣ୍ଢା ଆଦି ଅନେକ ଗୃହପାଳିତ ପଶୁ ଆର୍ଯ୍ୟମାନଙ୍କର ଥିଲେ , କିନ୍ତୁ ଗାଈ ଓ ବଳଦ ସେମାନଙ୍କ ପାଖରେ ସମସ୍ତଙ୍କ ଠାରୁ ଅଧିକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲେ । ଗାଈ ପ୍ରତି ଆର୍ଯ୍ୟର ଆନ୍ତରିକ ଭକ୍ତି ଓ ଶ୍ରଦ୍ଧା ବୈଦିକ ଗ୍ରନ୍ଥର ଛତ୍ରେ ଛତ୍ରେ ଫୁଟି ଉଠିଛି । ମୁଦ୍ରାର ଆବିଷ୍କାର ପୂର୍ବରୁ ଋଷି, ବ୍ରାହ୍ମଣମାନଙ୍କୁ ପ୍ରଥମେ ଗାଈକୁ ଦକ୍ଷିଣା ହିସାବରେ ଦିଆଯାଉଥିଲା । ସେଥିପାଇଁ ଗାଈ ର ନାମ ଥିଲା ଦକ୍ଷିଣା । ମୁଦ୍ରାର ଆବିଷ୍କାର ପୂର୍ବରୁ 'ବିନିମୟ' ଅର୍ଥ ନୀତି ଦେଶରେ ପ୍ରଚଳିତ ଥିଲା । ଲୋକେ ଗାଈକୁ ବଦଳ ଦେଇ ବିଭିନ୍ନ ଜିନିଷ କିଣୁ ଥିଲେ । ଏହି ଦୃଷ୍ଟିରୁ ଗାଈ ଗୋଟିଏ ବଡ଼ ସମ୍ପତ୍ତି ଭାବରେ ଗଣା ଯାଉଥିଲା ।

ଋଗ୍ ବେଦସ୍ଥ 'ଗୋସୂକ୍ତ' ସହିଁରେ ଗାଈକୁ କେଉଁଠି ମା' ହିସାବରେ ତ ଆଉ କେଉଁଠି ଭଉଣୀ ହିସାବରେ ଚିତ୍ରଣ କରାଯାଇଛି । ଗାଈକୁ ସ୍ୱୟଂ ଇନ୍ଦ୍ରଙ୍କ ସହିତ ମଧ୍ୟ ସମକକ୍ଷ କରାଯାଇଛି । ଭରଦ୍ୱାଜ ମୁନି କହିଛନ୍ତି 'ଗାଈ ହେଉଛି 'ଭଗ' ବା ଦେବତା । ଗାଈହିଁ ମୋ ପାଇଁ ଇନ୍ଦ୍ର । ଗାଈ ମୋ ପାଇଁ ସୋମ ରସର ପ୍ରଥମ ଢୋକ । ଆହେ ମନୁଷ୍ୟମାନେ ! ଯେତେ ଯେତେ ଗାଈ ଅଛନ୍ତି, ସମସ୍ତେ ହେଉଛନ୍ତି ଇନ୍ଦ୍ରଙ୍କର ପ୍ରତିନିଧି ସ୍ୱରୂପ । ମୁଁ ମୋ ହୃଦୟ ମନରେ ସେହି ଇନ୍ଦ୍ରଙ୍କୁ ଚାହୁଁଛି'।(୨୮) ଆର୍ଯ୍ୟମାନେ ଗାଈକୁ ଦେବତା ଭାବରେ ସ୍ଥାନ କରୁଥିଲେ, ଗାଈମାନେ ଆର୍ଯ୍ୟମାନଙ୍କର ସମ୍ପତ୍ତି ବଢାଇବାରେ ସାହାଯ୍ୟ କରୁଥିଲେ । ଋଗ୍‌ବେଦରେ ଗୋଟିଏ ମନ୍ତ୍ରରେ କୁହାଯାଇଛି ଏକା 'ବଶିଷ୍ଠ' ପାଞ୍ଚ ହଜାର ଗାଈର ମାଲିକ ଥିଲେ ।(୨୯) ଋଗ୍ ବେଦର ଅନ୍ୟ ଏକ ସ୍ଥାନରେ କୁହାଯାଇଛି ରାଜା 'ପୃଥୁ ଶ୍ରବା'ଙ୍କର ସତର ହଜାର ଘୋଡ଼ା, ଦୁଇ ହଜାର ଓଟ, ଏକ ହଜାର କାଳୀ ଘୋଡା ଏବଂ ଛଅ ଛଅକା ଦଶ ହଜାର ଗାଈ ଥିଲେ ।(୩୦) ଋଗ୍ ବେଦର ଆଉ ଗୋଟିଏ ସ୍ଥାନରେ ଯଦୁବଂଶୀୟ ରାଜା 'ଆସଙ୍ଗ' ଦଶ ହଜାର ଗାଈ ଦାନ ଦେବାର ଉଲ୍ଲେଖ ଅଛି ।(୩୧) ଏହି ବେଦର ଅନେକ ସ୍ଥାନରେ ଗାଈ ଓ ଘୋଡା ଦାନ ଦିଆ ହେବା କଥା ବର୍ଣ୍ଣିତ ହୋଇଅଛି ।(୩୨)

ବେଦୋତ୍ତର ବ୍ରାହ୍ମଣ, ଉପନିଷଦ କାଳରେ ମଧ୍ୟ ଗାଈର ମର୍ଯ୍ୟଦା ଊଣାପଡି ନଥିଲା । 'ଛାନ୍ଦୋଗ୍ୟ' ଉପନିଷଦ୍‌ର ବର୍ଣ୍ଣନାନୁସାରେ 'ଜାନୁଦ୍ରୁତି ଗୋତ୍ରାୟଣ' ବୋଲି ଜଣେ ରାଜକୁମାର ଗୁରୁ ଦକ୍ଷିଣା ସ୍ୱରୂପ ଅନ୍ୟାନ୍ୟ ବସ୍ତୁ ମଧ୍ୟରେ 'ଗୁରୁ ସଂଯୁଗ୍ମା ରୈକ୍ୱ'ଙ୍କୁ ଏକ ହଜାର ଗାଈ ଦାନ ଦେଇଥିଲେ । ଗାଈ ଓ ଘୋଡାଙ୍କ ଛଡା କୁକୁର ମଧ୍ୟ ଦାନ ଦିଆଯାଉଥିଲା । ଋଗ୍ ବେଦରେ ଅନ୍ୟତ୍ର ବର୍ଣ୍ଣିତ ହୋଇଛି ''ବୃଶ୍ୟ'' ନାମକ ଜଣେ ବ୍ରାହ୍ମଣ ଦାନ ଗ୍ରହଣ କରି ସାରି କହୁଛନ୍ତି ''ଶହେ ବାଉଁଶ , ଶହେ କୁକୁର, ଶହେ ସିଝା ହୋଇଥିବା ଗାଈ ଚମଡା, ଶହେ ବିଡ଼ା 'ବଲ୍‌ବଜ' ଘାସ ଏବଂ ଶହ ଶହ

ଚିକ୍ ଚିକ୍ କରୁଥିବା ଘୋଡା ହେଉଛନ୍ତି ମୋର ''। ବ୍ରାହ୍ମଣଙ୍କୁ ଗାଇ ଚମଡ଼ା ଦାନ ଯିବାର ତାତ୍ପର୍ଯ୍ୟ ହେଉଛି ବୈଦିକ କାଳରେ ଏହା ବିଭିନ୍ନ କାର୍ଯ୍ୟରେ ଲାଗୁଥିଲା । ଜୋତା ତିଆରି, ଢୋଲ ଆଦି ବାଦ୍ୟ ତିଆରି ବ୍ୟତୀତ ଏଥିରେ ପାଣି ଓ ଅନ୍ୟାନ୍ୟ ଜିନିଷ ରଖିବା ପାଇଁ ଥଳି ତିଆରି କରାଯାଉଥିଲା । ବେଦୋତ୍ତର କାଳରେ ଅଶ୍ୱ ଦାନ ଅପେକ୍ଷା ଗୋଦାନ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ବ୍ରାହ୍ମଣମାନଙ୍କ ପାଇଁ ଅଶ୍ୱର ଆବଶ୍ୟକତା କମିଗଲା ।

ସେ କାଳରେ ଗାଇ ତିନି ଥର ଦୁହାଁ ହେଉଥିଲେ । ସକାଳେ, ଖରାବେଳେ ଓ ସନ୍ଧ୍ୟା ସମୟରେ ।(୩୩) ଗାଇଠାରୁ ଆର୍ଯ୍ୟ ଅତି ଆଦରଣୀୟ କ୍ଷୀର ପାଉଥିଲା ଯାହାକି ଥିଲା ତାହାର ପ୍ରଧାନ ପାନୀୟ । କ୍ଷୀରକୁ ସୋମରସରେ ମିଶାଇ ସେ ଦେବତାଙ୍କୁ ଅର୍ପଣ କରୁଥିଲା ଓ ନିଜେ ମଧ୍ୟ ପାନ କରୁଥିଲା । ଗାଇ ତିନି ଥର ଗୋଚରଣ ଭୂମିକୁ ଚରିବାକୁ ଯାଉଥିଲା ଏବଂ ତାର ବାଛୁରୀ 'ଶାଳା'ରେ ରହୁଥିଲା । ଗୋଚରଣ ଭୂମିରେ ଗାଇ ମାନଙ୍କୁ ଯେ ଚରାଉଥିଲା ତାଙ୍କୁ 'ଗୋପ' କୁହାଯାଉଥିଲା । ସେ ଗାଇମାନଙ୍କର ରକ୍ଷାକାରୀ ଥିଲେ । ସେ ବ୍ୟବହାର କରୁଥିବା ପାଞ୍ଚଣ ବାଡିକୁ 'ଅଷ୍ଟ୍ରା' କୁହାଯାଉଥିଲା । ଗାଇମାନେ ବାହାରେ ରହୁଥିବା ସ୍ଥାନକୁ 'ଗୋଷ୍ଠ' କୁହାଯାଉଥିଲା । ଦୁହାଁଳିଆ ଗାଇ କେବଳ 'ଶାଳା'ରେ ରହୁଥିଲେ । ଗୋଷ୍ଠ ବ୍ୟତୀତ ରହିବା ପାଇଁ ଅନ୍ୟ ଗୋଟିଏ ସ୍ଥାନ ଥିଲା ଯାହାକୁ କୁହାଯାଉଥିଲା 'ସଙ୍ଗବିନୀ' । 'ଐତରେୟ ବ୍ରାହ୍ମଣ'ର ଗୋଟିଏ ସ୍ଥାନରେ କୁହାଯାଇଛି କରୁମାନଙ୍କର ପଶୁ ସମୂହ ସନ୍ଧ୍ୟାରେ ଗୋଷ୍ଠରେ ରହୁଥିଲେ ଏବଂ ମଧ୍ୟାହ୍ନରେ 'ସଙ୍ଗବିନୀ' ରେ ରହୁଥିଲେ ।(୩୪) 'ସଙ୍ଗବିନୀ' ହେଉଛି କୌଣସି ଛାଇ ସ୍ଥାନ । ଖରାବେଳେ ଗାଇମାନେ ସେଠାରେ ଆଶ୍ରୟ ନେଉଥିଲେ । ଯେଉଁଠି ସେମାନଙ୍କୁ ଦୁହାଁ ଯାଉଥିଲା ।

ଋଗ୍‌ବେଦରେ ବିଭିନ୍ନ ପ୍ରକାର ଗାଇର ଉଲ୍ଲେଖ ମିଳେ । ଯଥା- ରୋହିତ(ଲାଲ) ଶୁକ୍ର (ଧଳା) ପୃଶ୍ନି (ଚିତ୍ରିତବା ଛଉକା) ଓ କୃଷ୍ଣ (କଳା) । ଗାଇମାନେ ବେଳେ ବେଳେ ହଜି ଯାଉଥିଲେ । ବେଳେ ବେଳେ ସେମାନଙ୍କୁ ଆର୍ଯ୍ୟ ବିରୋଧୀ ପଣିମାନେ ଘେରାଇ ନେଉଥିଲେ । ଏହା ଋଗ୍ ବେଦରେ ବର୍ଣ୍ଣିତ । ଗାଇମାନଙ୍କୁ ସକଳ ବିପତ୍ତିରୁ ରକ୍ଷା କରିବାପାଇଁ ଆର୍ଯ୍ୟମାନେ 'ପୁଷନ୍' ଦେବତାଙ୍କୁ ଆବାହନ କରୁଥିଲେ । ସେମାନେ ବିଶ୍ୱାସ କରୁଥିଲେ 'ପୁଷନ୍' ହେଉଛନ୍ତି ଗୋଧନର ରକ୍ଷକ । 'ପୁଷନ'ଙ୍କ ଲାଗି ଋଗ୍ ବେଦରେ ବହୁଳ ସ୍ତୁତି କରାଯାଇଛି । ବୈଦିକ ଗ୍ରନ୍ଥରେ ଗାଇର ବିଭିନ୍ନ ଅବସ୍ଥା ସୂଚକ ବିଭିନ୍ନ ଶବ୍ଦ ମଧ୍ୟ ପ୍ରଯୁକ୍ତ ହୋଇଛି । ଧଳା ଗାଇକୁ 'କର୍କୀ', ଗର୍ଭିଣୀ ଗାଇକୁ 'ଗୃଷ୍ଟି', ଦୁହାଁଳିଆ ଗାଇକୁ ଧେନା ବା ଧେନୁ ବନ୍ଧ୍ୟା ଗାଇକୁ 'ସ୍ତରୀ', ଧେନୁଷ୍ଟରୀ ବା ବଶା, ପ୍ରସବ ପରେ ବନ୍ଧ୍ୟା ହୋଇଥିବା ଗାଇକୁ 'ସୂତବଶା' ଏବଂ ଯେଉଁ ଗାଇର ଗର୍ଭ ଅକାଳରେ ନଷ୍ଟ ହୋଇଥାଏ ତାହାକୁ 'ବେହତ୍' କହୁଥିଲେ । ବାଛୁରୀର ହଂବା ରବ ସେକାଳ ଆର୍ଯ୍ୟର ଅତି ଶ୍ରୁତି ସୁଖକର ଧ୍ୱନିଥିଲା ।

ସେତେବେଳେ ବହୁ ସଂଖ୍ୟାରେ ଗାଇ ଥିବାରୁ ଗୋଟିଏ ଗାଇ ଠାରୁ ଅନ୍ୟ ଗାଇକୁ ଚିହ୍ନିବା ପାଇଁ କାନରେ ବିଭିନ୍ନ ପ୍ରକାର ଚିହ୍ନ ଦିଆ ହେଉଥିଲା । ତହିଁରେ ଗାଇର ମାଲିକ କିଏ ସହଜରେ ଜଣା

ପଡୁଥିଲା । ଋଗ୍ ବେଦରେ ୦।୬ 'ଅଷ୍ଟକର୍ଣ୍ଣୀ' ଗାଇ କଥା ଲେଖାଯାଇଛି ।(୩୫) ଆଠ ଅଙ୍କଟି ଯେଉଁ ଗାଇର କାନରେ ଲେଖା ଯାଉଥିଲା ତାହାକୁ 'ଅଷ୍ଟକର୍ଣ୍ଣୀ' କୁହାଯାଉଥିଲା । ଏଥିରୁ ମନେ ହୁଏ ବୈଦିକ ଆର୍ଯ୍ୟମାନେ ବିଭିନ୍ନ ଅଙ୍କ ସହିତ ପରିଚିତ ଥିଲେ । ଏହି ଭଳି ଚିହ୍ନ ଗୁଡିକ ଅନୁସରଣ କରି ଗାଇମାନଙ୍କୁ ଭିନ୍ନ ଭିନ୍ନ ନାମରେ ଡକାଯାଉଥିଲା । ସେଗୁଡିକ ହେଲା **(କ) କର୍କରି କର୍ଣ୍ଣୀ** - ଯାହା କାନରେ ବଂଶୀର ଚିହ୍ନଥାଏ । **(ଖ) ଦାତ୍ରକର୍ଣ୍ଣୀ** - ଯାହା କାନରେ 'ଦାଆ'ର ଚିହ୍ନ ଥାଏ । **(ଗ) ସ୍ଥୁଣାକର୍ଣ୍ଣୀ** - ଯାହା କାନରେ 'ଖୁମ୍ବ'ର ଚିହ୍ନ ଥାଏ, **(ଘ) ଛିଦ୍ର କର୍ଣ୍ଣୀ** - ଯାହା କାନ ଫୋଡା ଯାଇଥାଏ । **(ଙ) ମିଥୁନ କର୍ଣ୍ଣୀ** - ଯାହା କାନରେ ପ୍ରଜନନ କ୍ରିୟାର ସଂକେତ ସ୍ୱରୂପ ମିଥୁନ ରୂପର ଚିତ୍ରଣ କରାଯାଇଥାଏ ।(୩୬)

ଗାଇକୁ ବେଦରେ 'ଅଘ୍ନ୍ୟା' ବା ହନନର ଅଯୋଗ୍ୟା ବୋଲି କୁହାଯାଇଛି । ବେଦର ଅନ୍ୟ କେତେକ ପଂକ୍ତିରେ ମଧ୍ୟ ବୈଦିକ ଆର୍ଯ୍ୟମାନେ 'ଗୋ ମାଂସ' ଖାଉଥିବାର କଥା ଉଲ୍ଲେଖ ଅଛି । ସେମାନେ ସାଧାରଣତଃ ବଳଦ ମାଂସ ଖାଉଥିଲେ । କେବଳ ବାଂଝ ଗାଇର ମାଂସ ଦେବତାଙ୍କୁ ଓ ଅତିଥିମାନଙ୍କୁ ଅର୍ପଣ କରାଯାଉଥିଲା । ଦୁହାଁଳିଆ ଗାଇକୁ କିମ୍ବା 'ପ୍ରସବ କ୍ଷମ' ଗାଇକୁ କେବେହେଲେ ମରାଯାଉ ନଥିଲା । ଗାଇ ବୈଦିକ ଅର୍ଥନୀତିରେ ଏକ ଗୁରୁତ୍ୱ ପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲା । ଗାଇକୁ ଛାଡି ବୈଦିକ ଅର୍ଥନୀତିର କିଛି ମୂଲ୍ୟ ନଥିଲା ।

ଗାଇ ପରି ବଳଦ ମଧ୍ୟ ଆର୍ଯ୍ୟମାନଙ୍କର କୃଷି ଅର୍ଥନୀତିରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଥିଲା । ଯୌବନାବସ୍ଥାରେ ଥିବା ବଳଦକୁ ବା ଦାମୁରିକୁ କୁହାଯାଉଥିଲା 'ବୃଷ ବା ଋଷଭ'। ଶଗଡ଼ ଗାଡ଼ି ଟାଣୁଥିବା ବଳଦକୁ କୁହା ଯାଉଥିଲା 'ଅନନ୍ ବାନ୍'। ଠିକ୍ ସେହିପରି ମାଂସ ଲାଗି ମରାଯିବାକୁ ଥିବା ବଳଦକୁ କୁହାଯାଉଥିଲା 'ମହା ନିରଷ୍ଟ'। ଶୁକ୍ଳ ଯଜୁର୍ବେଦରେ ବିଭିନ୍ନ ବୟସର ଅଣ୍ଡିରା ବାଛୁରୀ ଓ ମାଈ ବାଛୁରୀ ଲାଗି ଭିନ୍ନ ଭିନ୍ନ ନାମ ରଖା ଯାଇଛି ।

| **ବୟସ ସୀମା** | **ଅଣ୍ଡିରା ବାଛୁରୀ ନାଁ** | **ମାଈ ବାଛୁରୀ ନାଁ ।** |
|---|---|---|
| ଦେଢ଼ ବର୍ଷ - | ତ୍ରୈ୍ୟବି | ତ୍ରୈବୀ |
| ଦୁଇ ବର୍ଷ - | ଦିତ୍ୟବାହ | ଦିତ୍ରୌହୀ |
| ଅଢ଼େଇବର୍ଷ - | ପଞ୍ଚାବି | ପଞ୍ଚାବୀ |
| ତିନି ବର୍ଷ - | ତ୍ରିବସ୍ମ | ତ୍ରିବସ୍ମା |
| ସାଢ଼େ ତିନି ବର୍ଷ - | ତୁର୍ଯବାହ | ତୁର୍ଯୌହି |
| ଚାରିବର୍ଷ - | ପ୍ରଷ୍ଠବାହ | ପ୍ରଷ୍ଠୌହୀ -(୩୭) |

ଷଣ୍ଢ ଓ ବଳଦ ସେତେବେଳେ ଦୁଇଟି କାମରେ ଲାଗୁ ଥିଲେ । ଗୋଟିଏ ହେଲା ହଳ କରିବା ଅନ୍ୟଟି ହେଲା ଶଗଡ଼ ଟାଣିବା । ଗୋ ସେବାରେ ଏକ ଧାର୍ମିକ ଭାବ ଆରୋପ କରିବା ପାଇଁ 'ଧର୍ମ ସୂତ୍ର' ଗ୍ରନ୍ଥମାନଙ୍କରେ ଗାଇମାନେ ଚରିବାକୁ ଗଲାବେଳେ, ଚରା ଭୂଇଁରୁ ଫେରିବାବେଳେ, ଦଉଡା ଦଉଡି କଲାବେଳେ ଓ ଗୁହାଳରେ ପଶିବା ବେଳେ ନାନା ପ୍ରକାର ମନ୍ତ୍ର ପାଠ ପୂର୍ବକ କର୍ମ ବିଧିମାନ ସମାହିତ କରିବାର ବ୍ୟବସ୍ଥା ଥିଲା ।

ଗାଇ ବଳଦଙ୍କୁ ଛାଡି ଦେଲେ ଘୋଡା, ଗଧ, ହାତୀ, ମେଣ୍ଢା, ଛେଳି, କୁକୁର ଆଦି ଅନେକ ଗୃହପାଳିତ ପଶୁଙ୍କ ସହିତ ଆର୍ଯ୍ୟମାନେ ପରିଚିତ ଥିଲେ । ଏମାନଙ୍କ ମଧ୍ୟରେ ଘୋଡା ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନରେ ରହିଥିଲା । ଘୋଡାର ଅନେକ ପ୍ରତିଶବ୍ଦ ବେଦରେ ମିଳିଥାଏ । ଖୁବ୍ ଜୋରରେ ଦଉଡୁ ଥିବା ଘୋଡାକୁ 'ଅତ୍ୟ ବା ଅର୍ବନ୍ତ' କୁହାଯାଉଥିଲା । ଖୁବ୍ ବଳୁଆ ଘୋଡାକୁ 'ବାଜୀ', ଦଉଡୁ ଥିବା ଘୋଡାକୁ 'ସପ୍ତି' ଓ ଜୋରରେ ଦଉଡୁ ଥିବା ଘୋଡାକୁ 'ହୟ' କୁହାଯାଉଥିଲା । ଅଥର୍ବ ବେଦରେ କଳା କାନ ଥିବା ଘୋଡାକୁ ଖୁବ୍ ପ୍ରାଧାନ୍ୟ ଦିଆଯାଇଛି ।(୩୮) ସିନ୍ଧୁ ଓ ସରସ୍ୱତୀ ନଦୀ କୂଳରେ ଥିବା ଘୋଡା କ୍ଷିପ୍ର ଗତିରେ ଦୌଡୁଥିଲେ । ଯୁଦ୍ଧ ଯାତ୍ରା ଓ ଅଶ୍ୱମେଧ ଯଜ୍ଞ ସମୟରେ ଘୋଡାକୁ ସୁନା ଓ ମୋତିର ଅଳଙ୍କାର ଦ୍ୱାରା ସଜ୍ଜା ଯାଉଥିଲା ।

ଘୋଡା ଓ ଖଚର ପୃଥକ୍ ପୃଥକ୍ ପଶୁ ଥିଲେ । ଘୋଡୀ ଓ ଗଧର ମିଶ୍ରଣରେ ଜନ୍ମ ନେଇ ଥିବା ପଶୁକୁ 'ଅଶ୍ୱତର' ବା ଖଚର କୁହାଯାଉଥିଲା । ଖଚରୀକୁ କୁହାଯାଉଥିଲା ଅଶ୍ୱତରୀ । ଅଥର୍ବ ବେଦରେ ଅଶ୍ୱତର ନାମ ଦେଖିବାକୁ ମିଳିଥାଏ ।(୩୯) ଗଧ ମଧ୍ୟ ବୈଦିକ ଯୁଗରେ ଦେଖିବାକୁ ମିଳିଥାଏ । ଋଗ୍ ବେଦରେ ଓ ଯଜୁର୍ବେଦରେ ଏହି 'ଗର୍ଦ୍ଧଭ' ନାମ ଉଲ୍ଲେଖ ଅଛି ।(୪୦) ତୈତ୍ତରୀୟ ସଂହିତାରେ ଗଧକୁ 'ଦ୍ୱିରେତସ' ବୋଲି କୁହାଯାଇଛି ।

ପଶୁମାନଙ୍କ ମଧ୍ୟରେ ସିଂହକୁ ରାଜା ବୋଲି କୁହାଯାଉଥିଲା । ତାହାର ତଳକୁ ଥିଲା ହାତୀର ସ୍ଥାନ । ଅଥର୍ବ ବେଦରେ ହାତୀ ସଂପର୍କରେ ବହୁ ସ୍ଥାନରେ ବର୍ଣ୍ଣନା କରାଯାଇଛି । ଅଥର୍ବ ବେଦ ରଚନା ବେଳକୁ ଆର୍ଯ୍ୟମାନେ ମଧ୍ୟ ଭାରତ ଓ ପୂର୍ବ ଭାରତ ଅଞ୍ଚଳ ଅଧିକାର କରିଥିଲେ । ଏହି ଅଞ୍ଚଳରେ ଅଧିକ ହାତୀ ଦେଖିବାକୁ ମିଳିଥାନ୍ତି । ସିନ୍ଧୁ ସଂସ୍କୃତିର ଅବଶେଷରୁ ହାତୀ ଚିତ୍ର ଥିବା 'ମୃଣୟ' ମୋହରମାନ ମିଳିଅଛି । ହାତୀ ଉପରେ ବସିଲା ବେଳେ ତାକୁ ଅଙ୍କୁଶ ଦ୍ୱାରା ନିୟନ୍ତ୍ରିତ କରିବା କଥା ଋଗ୍ ବେଦରେ ବର୍ଣ୍ଣିତ ।(୪୧) ଋଗ୍ ବେଦ ଅପେକ୍ଷା ଅଥର୍ବ ବେଦରେ ହାତୀର ବହୁଳ ଉଲ୍ଲେଖ ଅଛି ।

ବୈଦିକ ଆର୍ଯ୍ୟମାନେ ଛେଳି ସହିତ ମଧ୍ୟ ପରିଚିତ ଥିଲେ । ଋଗ୍‌ବେଦ ଓ ଅଥର୍ବ ବେଦରେ ଏହାକୁ 'ଅଜ' ବୋଲି କୁହାଯାଇଛି ।(୪୨) ପୁରୁଷ ଯଜ୍ଞ ପ୍ରସଙ୍ଗରେ କେଉଁମାନେ ଏଥିରେ ବଳି ପଡିବେ ସେମାନଙ୍କ ନାମ ଶୁକ୍ଳ ଯଜୁର୍ବେଦରେ ବର୍ଣ୍ଣିତ ହୋଇଛି ।(୪୩) ଏମାନଙ୍କ ସଂଖ୍ୟା 'ସତୁରୀ' ଥିଲା । ଏମାନଙ୍କ ମଧ୍ୟରେ 'ଅଜପାଳ' ବା ଛେଳି ରଖିବା ଲୋକ ଅନ୍ତର୍ଭୁକ୍ତ । ଏହି ଅଜପାଳ ନାମ ଉଲ୍ଲେଖରୁ ଆର୍ଯ୍ୟମାନେ ଛେଳିକୁ ଗୃହ ପାଳିତ ପଶୁ ରୂପରେ ରଖୁ ଥିବାର ପ୍ରମାଣ ମିଳିଥାଏ । ଛେଳିମାନଙ୍କ ଦ୍ୱାରା ଛୋଟ ଛୋଟ ରଥ ଟଣା ଯାଉଥିଲା । ପିଲାଙ୍କ ଖେଳିବା ଲାଗି ଏହା ଖେଳନା ରଥ ଥିଲା ।

ଋଗ୍‌ବେଦ ଓ ଅଥର୍ବ ବେଦ 'ଅବି' ନାମର ବହୁବାର ଉଲ୍ଲେଖ ଅଛି ।(୪୪) 'ଅବି' ଅର୍ଥ ହେଲା ମେଣ୍ଢା । ମେଣ୍ଢାର ଉପଯୋଗୀତା ବିଶେଷ କରିଥିଲା ଏକ ପଶମ ଯୋଗାଉଥିବା ପଶୁ ହିସାବରେ । ଏହାର ମାଂସ ମଧ୍ୟ ଖିଆ ଯାଉଥିଲା । ପଶମକୁ ବୈଦିକ ସାହିତ୍ୟରେ କୁହାଯାଇଛି 'ଊର୍ଣ୍ଣା' । ସେହି ହିସାବରେ ମେଣ୍ଢୀକୁ କୁହାଯାଇଛି 'ଊର୍ଣ୍ଣାବତୀ' । ସେଥିନେଇ ସିନ୍ଧୁ ନଦୀକୁ 'ଊର୍ଣ୍ଣାବତୀ' ବୋଲି କୁହାଯାଇଛି । ଋଗ୍‌ବେଦର ବର୍ଣ୍ଣନାନୁଯାୟୀ ଗାନ୍ଧାର ମେଣ୍ଢା ପଶମ ଲାଗି ପ୍ରସିଦ୍ଧ ଥିଲା ।(୪୫)

ବୈଦିକ ସମାଜରେ କୁକୁର ମାନଙ୍କର ବହୁ ଆବଶ୍ୟକତା ଥିଲା । ଋଗ୍‌ବେଦରେ ବର୍ଣ୍ଣିତ ହୋଇଛି 'ବୃଶ୍ୟ' ନାମକ ଜଣେ ବ୍ରାହ୍ମଣ ରାଜାଙ୍କ ଠାରୁ ଅନ୍ୟାନ୍ୟ ଜିନିଷ ମଧ୍ୟରେ ଶହେ କୁକୁର ଦାନ ସ୍ୱରୂପ ଗ୍ରହଣ କରିଥିଲେ ।(୪୬) ଗଧ ଭଳି କୁକୁର ପିଠିରେ ମଧ୍ୟ ମାଲବୁହା ଯାଉଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ ।(୪୭) କୁକୁର ଗୃହର ଜଗିବାରେ ଓ ଶିକାର କରିବାରେ ମଧ୍ୟ ସହାୟକ ହେଉଥିଲେ ।

**ଶିଳ୍ପ ଓ ବ୍ୟବସାୟ –**

କୌଣସି ନିର୍ଦ୍ଦିଷ୍ଟ ବର୍ଣ୍ଣର ଲୋକ ଗୋଟିଏ ନିର୍ଦ୍ଦିଷ୍ଟ ଶିଳ୍ପ ବା ବ୍ୟବସାୟ କରିବା ତାହା ସେତେବେଳେ ଧରାବନ୍ଧା ନିୟମ ନଥିଲା । ଋଗ୍ ବେଦରେ ଗୋଟିଏ ପରିବାରର ଲୋକ କିପରି ବିଭିନ୍ନ ଶିଳ୍ପରେ ନିୟୋଜିତ ଥିଲେ ତାହା ତିନୋଟି ମନ୍ତ୍ରରେ ଉଲ୍ଲେଖ କରାଯାଇଅଛି । ତାହା ହେଲା 'ଆମ ପାଖରେ ଅନେକ କାମ ଅଛି । ଅନେକ ସଂକଳ୍ପ ଅଛି । "ବଢ଼େଇର ଇଚ୍ଛା ହେଉଛି ଭଂଗା ଜିନିଷ ଗୁଡିକ ଦେଖିବା ପାଇଁ । ବୈଦ୍ୟର ଇଚ୍ଛା ହେଉଛି ରୋଗୀ ତୁଣ୍ଡରୁ କଥା ଶୁଣିବା ପାଇଁ, ବ୍ରାହ୍ମଣ ପାଇଁ ଅଛି ସୋମରସର ତିଆରି କରୁଥିବା ଯଜମାନର ଆବଶ୍ୟକତା । ନିଜର ସେହି ଭାଟି ଆଦି ଧରି କମାର କୌଣସି ଧନୀ ଲୋକର ବାଟ ଗୃହିଁ ରହିଛି । ମୁଁ ହେଉଛି ଜଣେ ଗାୟକ । ମୋ ବାପା ଜଣେ ବୈଦ୍ୟ । ମୋ ମା' ଧାନ କୁଟୁଣୀ ଏବଂ ସେ ଚକି ଚଲାଏ । ଗାଈ ରଖୁଆଳମାନେ ଯେମିତି ଗାଈମାନଙ୍କ ପଛରେ ଧାଇଁଥାନ୍ତି, ଆମ୍ଭେମାନେ ସେହିପରି ଧନ ପଛରେ ଧାଇଁଛୁ" । (୪୮) ଆମ୍ଭେମାନେ ଧନ ପଛରେ ଧାଇଁବା କଥାରୁ ମନେ ହେଉଛି ବୈଦିକ ଆର୍ଯ୍ୟମାନେ ଆର୍ଥିକ ଜୀବନର ସମୃଦ୍ଧି ପାଇଁ ଚେଷ୍ଟିତ ଥିଲେ । ସେଥିପାଇଁ ବୈଦିକ ଚତୁର୍ବର୍ଗ ଲକ୍ଷ୍ୟ ମାଧ୍ୟମରେ ଅର୍ଥାର୍ଜନକୁ ଗୋଟିଏ ଲକ୍ଷ୍ୟ ହିସାବରେ ରଖା ଯାଇଥିଲା ।

ବୈଦିକ ଗ୍ରନ୍ଥମାନଙ୍କରେ ବଢ଼େଇ(୪୯) 'ଭିଷକ୍ ବା ବୈଦ୍ୟ' (୫୦) କର୍ମକାର ବା କମାର (୫୧) ଚର୍ମକାର ବା ଚମାର (୫୨) ରଥକାର (ରଥନିର୍ମାତା) (୫୨(କ) ଇତ୍ୟାଦି ଶିଳ୍ପୀମାନଙ୍କ ବିଷୟ ବର୍ଣ୍ଣିତ ହୋଇଛି । ବେଦ ସମୟରୁ ଆରମ୍ଭ କରି ଉପନିଷଦ ସମୟ ପର୍ଯ୍ୟନ୍ତ ଏ ଦେଶରେ ବିଭିନ୍ନ ଶିଳ୍ପର ଅଭ୍ୟୁଦୟ ଘଟିଥିଲା । ବୈଦିକ ଯୁଗରେ ୬୨ ପ୍ରକାର କର୍ମଜୀବୀ ଥିଲେ ବୋଲି କାନେ (Kane) କହିଅଛନ୍ତି ।(୫୩) ସେମାନେ ହେଲେ - ୧- ଅଜପାଳ ( ଛେଳି ରଖିବା ଲୋକ), (୨) ଅନ୍ଧ, (୩) ଆୟୋଗୁ, (୪) ଅବିପାଳ, (ମେଣ୍ଢା ପାଳୁଥିବା ଲୋକ) (୫) ଅରନ୍ଧ, (୬) ଇଷୁକାର (ଘର ତିଆରି କରୁଥିବା ଲୋକ) (୭) ଉଗ୍ର, (୮) ଅୟସ୍ତାଗ, (୯) କଣ୍ଟକକାର, (୧୦) କର୍ମାର, (୧୧) କାରି (ନର୍ତ୍ତକ) (୧୨) କିତବ (କୁହୁକିଆ) (୧୩) କିରାତ, (୧୪) କୀନାଶ, (୧୫) କୁଲାଳ ବା କୌଲାଳ, (୧୬) କୈବର୍ତ୍ତ , (୧୭) କୋଶକାରୀ, (୧୮) କ୍ଷତ୍ତା, (୧୯) ଗୋପାଳ, (୨୦) ଚର୍ମମ୍ନ, (୨୧) ଗ୍ରଣ୍ଡାଳ, (୨୨) ଜମ୍ଭକ, (୨୩) ଜ୍ୟାକାର, (୨୪) ତକ୍ଷା, (୨୫) ଦାଶ, (୨୬) ଧନୁଷ୍କାର ବା ଧନ୍ୱାକାର, (୨୭) ଧୀବର ବା ଧୈବାର, (୨୮) ନିଷାଦ ବା ନୈଷାଦ, (୨୯) ପଂଶ୍ଚଳୁ, (୩୦) ପୁଞ୍ଜିଷ୍ଠ, (୩୧) ପୁଷ୍କ୍ରୁ, (୩୨) ପୁଳିନ୍ଦ, (୩୩) ପୌଳକସ, (୩୪) ବୈନ୍ଦ, (ମାଛୁଆ) (୩୫) ଭିଷକ୍ (ବୈଦ୍ୟ), (୩୬) ଭୀମଳ, (୩୭) ମଣିକାର, (୩୮) ମାଗଧ (ଭାଟ) , (୩୯) ମାର୍ଗାର, (୪୦) ମୃତିବ,

(୪୧) ମୃଗୟୁ (ବାଣୁଆ ), (୪୨) ମୈନାଲ, (୪୩) ରଜ୍ଜୁ ପିଟ୍, (୪୪) ରଜ୍ଜୁ ସର୍ଗ (ରଜ୍ଜୁ ସର୍ଜ), (୪୫) ରଥକାର, (୪୬) ରାଜପୁତ୍ର, (୪୭) ରେଭ, (୪୮) ବଂଶନର୍ତ୍ତି, (୪୯) ବପ, (୫୦) ବଣିଜ, (୫୧) ବାସଃ ପଲ୍ ଗୁଳି (ଧୋବା) (୫୨) ବିଦଳ କାରୀ ବା ବିଦଳ, (୫୩) ବ୍ରାତ୍ୟ, (୫୪) ଶାବର, (୫୫) ଶାବଲ୍ୟ, (୫୬) ଶୈଳୁଷ, (୫୭) ସ୍ୱନୀ, (୫୮) ସଂଗ୍ରହୀତା, (୫୯) ସୁରାକାର, (୬୦) ସୂତ, (୬୧) ସେଗଳ, (୬୨) ହିରଣ୍ୟକାର ।

କାଳକ୍ରମେ ବିଭିନ୍ନ ଶିଳ୍ପ କର୍ମରେ ପ୍ରସିଦ୍ଧ ଲାଭ ପାଇଁ ଲୋକେ ପୁରୁଷାନୁକ୍ରମିକ ଭାବରେ ନିର୍ଦ୍ଦିଷ୍ଟ କର୍ମ କରିବାକୁ ଲାଗିଲେ । ଏହା ଦ୍ୱାରା ଉତ୍ପାଦନ ବୃଦ୍ଧି ସମ୍ଭବ ହୋଇଥିଲା । ବ୍ରାହ୍ମଣ କାଳ ବେଳକୁ ବିଭିନ୍ନ କର୍ମକୁ କୌଳିକ ଭିତ୍ତିରେ ସ୍ଥାପିତ କରାଗଲା । ଏହିଠାରୁ ହିଁ ଜାତି ବର୍ଣ୍ଣ ମଧ୍ୟରେ ଛୋଟ ବଡ଼ ବିଗ୍ରହ ଆରମ୍ଭ ହେଲା । ଅର୍ଥାତ ଯେଉଁ କର୍ମ ଅର୍ଥ ନୈତିକ ଭିତ୍ତିଭୂମିରେ ଆରମ୍ଭ ହୋଇଥିଲା କାଳର ଗତିରେ କ୍ରମଶଃ ସାମାଜିକ ସ୍ତରରେ କେତେକ ଲୋକଙ୍କୁ ତଳକୁ ଖସାଇ ଦେଲା । ବେଦକାଳୀନ ଶିଳ୍ପୀ ତଥା କାରିଗରମାନଙ୍କ ମଧ୍ୟରେ ରଥକାର ମାନଙ୍କର ଖୁବ୍ ପ୍ରାଧାନ୍ୟ ଥିଲା । ଏମାନେ ଥିଲେ ବଢେଇମାନଙ୍କ ଠାରୁ ଟିକିଏ ଉଚ୍ଚ ସ୍ତରର । ରାଜାଙ୍କ ପ୍ରଧାନ ଅଧିକାରୀମାନଙ୍କ ମଧ୍ୟରେ ରଥକାର ଜଣେ ଥିଲେ । ରଥକାରମାନଙ୍କର ସାମାଜିକ ମାନ୍ୟତା ରହିଥିଲା । ସେମାନେ ଯଜ୍ଞ କରିବାର ଅଧିକାର ପାଇଥିଲେ । ରଥାକାରମାନେ ବର୍ଷା ଋତୁରେ ଯଜ୍ଞ କରୁଥିଲେ । ଏମାନଙ୍କର ଆସନ ଶୁଦ୍ରମାନଙ୍କ ଠାରୁ ଉପରେ ଏବଂ ବୈଶ୍ୟମାନଙ୍କ ଠାରୁ ଟିକିଏ ତଳେ ଥିଲା । ସେତେବେଳେ ରଥର ବହୁଳ ବ୍ୟବହାର ଥିବା ଦୃଷ୍ଟିରୁ ଏହି କାରିଗରୀ ବିଦ୍ୟାଟି ଖୁବ୍ ଅର୍ଥକରୀ ଥିଲା । ରାଜାଙ୍କୁ ଦର୍ଶନ କରିବାକୁ ଗଲାବେଳେ, ଗାଧୋଇବାକୁ ଗଲା ବେଳେ ଏବଂ ଯୁଦ୍ଧରେ ଏହି ରଥ ବ୍ୟବହୃତ ହେଉଥିଲା । ରଥକୁ ସୁବର୍ଣ୍ଣ ମଣ୍ଡିତ କରାଇ ଲୋକମାନେ ବସୁଥିଲେ । ଏହାର ବର୍ଣ୍ଣନା ଋଗ୍‌ବେଦରେ ରହିଅଛି ।(୫୪) ସାଧାରଣତଃ ଦୁଇଟି ଘୋଡା ରଥକୁ ଟାଣୁଥିଲେ । ବେଳେ ବେଳେ ଅଧିକ ସଂଖ୍ୟକ ଘୋଡା ମଧ୍ୟ ଟାଣୁଥିଲେ । ତୈତ୍ତିରୀୟ ଆରଣ୍ୟକରେ ଅନେକ ଚକ ଥିବା ଏବଂ ବହୁ ଘୋଡା ଟାଣୁଥିବା ରଥର ବର୍ଣ୍ଣନା ଦେଖିବାକୁ ମିଳେ । ଏପରିକି ଏକ ହଜାର ପର୍ଯ୍ୟନ୍ତ ଘୋଡା ଟାଣୁଥିବା ରଥର ବର୍ଣ୍ଣନା ରହିଅଛି ।(୫୫) ଏହା ହୁଏତ ଏକ କାବ୍ୟିକ କଳ୍ପନା ହୋଇପାରେ ମାତ୍ର ବୈଦିକ କାଳରେ ବଡ଼ ବଡ଼ ରଥ ମଧ୍ୟ ଥିଲା । ରଥକୁ ସାଧାରଣତଃ ଘୋଡାମାନେ ଟାଣୁଥିଲେ, ବେଳେ ବେଳେ ଖଚର ଓ ଗଧମାନେ ରଥ ଟାଣୁଥିଲେ ।

ସାଧାରଣ ଗାଡ଼ିକୁ ବଳଦ ଟାଣୁଥିଲେ । ଋଗ୍ ବେଦରେ ଏହାର ନାମ 'ଅନସ' ବୋଲି କୁହାଯାଇଛି ।(୫୬) ଏହା ଆଜି କାଲିର ଶଗଡ଼ ପରି । ବୈଦିକ ଓ ବେଦୋତ୍ତର କାଳରେ ଶଗଡ଼ ଗାଡ଼ିର ବହୁଳ ବ୍ୟବହାର ହେଉଥିବାର ସୂଚନା ମିଳେ । ବୈଦିକ ସଂହିତା ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ 'କମାର' ନାମର ବହୁଳ ପ୍ରଚଳନ ଅଛି । ତାହାଙ୍କୁ କୁହାଯାଇଛି କର୍ମାର ତଥା କର୍ମକାର(୫୭) । ଅଥର୍ବ ବେଦରେ ଧିବାନଃ ବା ମାଛ ଧରୁଥିବା କେଉଟକୁ ଏକ ଶିଳ୍ପୀ ହିସାବରେ ଗ୍ରହଣ କରାଯାଇଛି ।(୫୮) ସ୍ୱ ସ୍ୱ କର୍ମରେ କୁଶଳତା ହାସଲ କରିବା ଥିଲା ଆର୍ଯ୍ୟମାନଙ୍କର ଲକ୍ଷ୍ୟ ।

ବୈଦିକ ସାହିତ୍ୟରେ ଦେଖିବାକୁ ମିଳେ ବୟନ ଶିଳ୍ପ ଏକ ପ୍ରମୁଖ ଶିଳ୍ପ ଭାବରେ ସ୍ଥାନ ପାଇଥିଲା । ଲୁଗା ବୁଣିବା ଶିଳ୍ପୀକୁ କୁହାଯାଉଥିଲା 'ବାୟଃ' । ବେଦରେ ଏହି ନାମରେ ବହୁଳ

ଉଲ୍ଲେଖ ଅଛି । ବୈଦିକ ସମାଜରେ ବୟନ ଶିଳ୍ପ ଅତି ପରିଚିତ ଥିଲା । 'ପଶମ ବସ୍ତ୍ର' ସେତେବେଳେ ଲୋକପ୍ରିୟ ଥିଲା । ମେଣ୍ଢାକୁ ବୈଦିକ ଆର୍ଯ୍ୟମାନେ ବହୁ ଉପକାରୀ ବୋଲି କହୁଥିଲେ । ଇନ୍ଦ୍ରଙ୍କ ଭଳି ଉପକାରୀ ବୋଲି ଏହାଙ୍କୁ କୁହାଯାଇଛି ।(୫୯) ପଶମ ଲାଗି 'ପୁରୁଷ୍ଣୀ' ନଦୀ ତୀରର ଗାନ୍ଧାର ଦେଶ ଖୁବ୍ ପ୍ରସିଦ୍ଧ ଥିଲା ବୋଲି ଋଗ୍ ବେଦରେ ଗୋଟିଏ ସ୍ଥାନରେ ବର୍ଣ୍ଣନା କରାଯାଇଛି ।(୬୦) ପଶମର ସୂତା କେବଳ ଲୁଗା ତିଆରି ଲାଗି ବ୍ୟବହୃତ ହେଉ ନଥିଲା । ଏହା ମଧ୍ୟ ସୋମ ରସ ଲାଗି ଏକ ପ୍ରକାର 'ଛଣା' ତିଆରି କରିବାରେ ବ୍ୟବହୃତ ହେଉଥିଲା । ଋଗ୍‌ବେଦର ବର୍ଣ୍ଣନା ଅନୁସାରେ 'ଅସୁର ରାଜ ଶମ୍ବରର ରାଜ୍ୟରେ ପଶମ ତିଆରି ଛଣା'ରେ ସୋମ ରସକୁ ଛଣା ଯାଇ ଗୋଟିଏ କାଷ୍ଠ ନିର୍ମିତ ପାତ୍ରରେ ରଖାଯାଉଥିଲା ।(୬୧)

'ପୂଷନ୍' ଦେବତାଙ୍କୁ ଋଗ୍‌ବେଦରେ 'ବାସବାୟଃ' ବା ଲୁଗା ବୁଣାଳି ବୋଲି କୁହାଯାଇଛି ।(୬୨) ଆର୍ଯ୍ୟମାନଙ୍କ ମେଣ୍ଢା ପଲକୁ ସେ ରକ୍ଷା କରୁଥିଲେ । ଏହା ଫଳରେ ପ୍ରଚୁର ପଶମ ଉତ୍ପାଦନ ହେଉଥିଲା ଏବଂ ବସ୍ତ୍ର ଉତ୍ପାଦନ ବଢ଼ି ଚାଲୁଥିଲା । ସେଥିପାଇଁ ଆର୍ଯ୍ୟମାନେ 'ପୂଷନ'ଙ୍କୁ ବସ୍ତ୍ର ବୟନର ସାହାଯ୍ୟକାରୀ ଦେବତା ଭାବରେ କଳ୍ପନା କରିଅଛନ୍ତି । ତାଙ୍କୁ ସଂକ୍ଷେପରେ 'ବାସବାୟ' ବୋଲି କୁହାଯାଉଥିଲା ।

ସୂତା ଲୁଗା. ପଶମ ଲୁଗା ଓ ଟସର ଲୁଗାର ବ୍ୟବହାର ଆର୍ଯ୍ୟମାନେ ଜାଣିଥିଲେ । ସପ୍ତସିନ୍ଧୁ ଅଞ୍ଚଳରେ ପଶମ ତିଆରି ପୋଷାକପତ୍ରର ବିଶେଷ ଆବଶ୍ୟକତା ଥିଲା । ଯେତେବେଳେ ସେମାନେ ପୂର୍ବାଭିମୁଖରେ ଗତି କଲେ ପତଳା ଲୁଗାର ଆବଶ୍ୟକତା ଅନୁଭବ କଲେ । ସେତିକି ବେଳେ ସୂତା ଓ ଟସର ତିଆରି ଲୁଗାପଟା ବିଶେଷ ଲୋକପ୍ରିୟ ହୋଇ ଉଠିଲା । ପୂର୍ବାଞ୍ଚଳରେ ସୃଷ୍ଟ ଅଥର୍ବ ବେଦ ଓ ଯଜୁର୍ବେଦରେ ସୂତା ଲୁଗା ଓ ଟସର ଲୁଗାର ବହୁଳ ଉଲ୍ଲେଖ ଏହାର ନିଦର୍ଶନ ।

ସାଧାରଣତଃ ସ୍ତ୍ରୀ ଲୋକମାନେ ଲୁଗା ବୁଣା କାମରେ ନିୟୋଜିତ ହେଉଥିଲେ । ସେମାନଙ୍କୁ କୁହାଯାଉଥିଲା 'ବାୟତ୍ରୀ' । ଅଥର୍ବ ବେଦର ଏକ ଚିତ୍ରକଳ୍ପରେ ଏହା ଦର୍ଶାଯାଇଛି ।(୬୩) ବୈଦିକ ଯୁଗରେ ଧାତୁ ଉଦ୍ୟୋଗର ମଧ୍ୟ ଅଭ୍ୟୁଦୟ ଘଟିଥିଲା । ଆର୍ଯ୍ୟମାନେ ନିର୍ଦ୍ଦିଷ୍ଟ କେତେକ ଧାତୁର ବ୍ୟବହାର ଜାଣିଥିଲେ । ଆର୍ଯ୍ୟମାନେ ବସୁଧା 'ରତ୍ନଗର୍ଭା' ବୋଲି ଜାଣିଥିଲେ । ମାଟିତଳୁ ସେଗୁଡିକ ଉଦ୍ଧାର କରିବାର ପଦ୍ଧତି ମଧ୍ୟ ସେମାନଙ୍କୁ ଜଣାଥିଲା । ଧାତୁ ପିଣ୍ଡଗୁଡିକୁ ତରଳାଇ ସେଥିରୁ ଖାଦ ବାହାର କରି ବିଭିନ୍ନ ସାମଗ୍ରୀ ଆର୍ଯ୍ୟମାନେ ତିଆରି କରୁଥିଲେ ।

ଋଗ୍‌ବେଦରେ 'ଅୟଃ' ଶବ୍ଦର ବହୁଳ ପ୍ରୟୋଗ ଦେଖିବାକୁ ମିଳିଥାଏ ।(୬୪) ଏହାର ଅର୍ଥ ହେଉଛି ତମ୍ବା । ଋଗ୍‌ବେଦରେ ଅଗ୍ନିଙ୍କୁ 'ଅୟୋଦ୍ରଂଷ୍ଟ' ବୋଲି କୁହାଯାଇଛି । ଏହାର ଅର୍ଥ 'ଅୟଃ' ଭଳି ଦାନ୍ତ ଥିଲା ବାଲା । ଏହି ଲାଲ ରଂଗ ହେଉଛି ତମ୍ବାର(୬୫) ଶତପଥ ବ୍ରାହ୍ମଣରେ କୁହାଯାଇଛି 'ଅୟଃ'କୁ ଖୁବ୍ ତତାଇ ଦେଲେ ତାହା ସୁନାର ରଂଗ ଧାରଣ କରେ । ଏହା ତମ୍ବା ପକ୍ଷରେ ସମ୍ଭବ ।(୬୬) ଅଥର୍ବ ବେଦରେ 'ଅୟଃ' ଦୁଇ ପ୍ରକାର ବୋଲି ଲେଖାଅଛି । ଯଥା ଶ୍ୟାମ ଓ ଲୋହିତ । ଶ୍ୟାମ ହେଲା ଲୁହା ଏବଂ ଲୋହିତ ହେଲା ତମ୍ବା-(୬୭) ଶୁକ୍ଳ ଯଜୁର୍ବେଦରେ ସୁବର୍ଣ୍ଣ ଆଦି ଛଅ ପ୍ରକାର ଧାତୁର

ଉଲ୍ଲେଖ ଅଛି । ସେଥିରେ 'ଅୟଃ' ଓ 'ଶ୍ୟାମକୁ' ସ୍ୱତନ୍ତ୍ର ସ୍ଥାନ ଦିଆ ହୋଇଛି । ପ୍ରଥମଟିକୁ ତମ୍ବା ଓ ଦ୍ୱିତୀୟଟିକୁ ଲୁହା ଭାବରେ ଗ୍ରହଣ କରାଯାଇଛି ।(୬୮) ସପ୍ତସିନ୍ଧୁ ଅଂଚଳରେ ଆର୍ଯ୍ୟମାନେ ଥିବା ବେଳେ ତାମ୍ରର ବ୍ୟବହାର ଜାଣିଥିଲେ । ମାତ୍ର ପୂର୍ବ ଭାରତ ଅଞ୍ଚଳକୁ ଆସିଲା ପରେ ସେମାନେ ଲୁହାର ବ୍ୟବହାର ଜଲେ । ସପ୍ତସିନ୍ଧୁର ଆର୍ଯ୍ୟମାନେ ଲଙ୍ଗଳ ଲୁହାର ବ୍ୟବହାର ଜାଣି ନଥିଲେ । ତେଣୁ ସେମାନେ ଗଭୀର ଗ୍ଷ କରି ପାରୁନଥିଲେ । ତେଣୁ ଋଗ୍‌ବେଦର ଆର୍ଯ୍ୟମାନଙ୍କର ପ୍ରଧାନ ଶସ୍ୟ ଥିଲା ଜବ, ଧାନ ନୁହେଁ । ଯଜୁର୍ବେଦରେ ଗଭୀର ଗ୍ଷର ପ୍ରମାଣ ଦେଖିବାକୁ ମିଳେ । ଯାହାକି ଲଙ୍ଗଳ ଲୁହାର ଉଦ୍ଭାବନ ଫଳରେ ଏହା ସମ୍ଭବ ହୋଇଥିଲା ।

ଲୁହା ଓ ତମ୍ବାକୁ ଛାଡି ବୈଦିକ ଆର୍ଯ୍ୟମାନେ ସୁନା, ସିସା, ଟିଣ, ବ୍ରୋଞ୍ଜ୍‌ର ବ୍ୟବହାର ମଧ୍ୟ ଜାଣି ଥିଲେ । ଶୁକ୍ଳ ଯର୍ଜୁ ବେଦରେ ଛଅ ପ୍ରକାର ଧାତୁର ଉଲ୍ଲେଖ ଅଛି । ଏଗୁଡିକ ତାହାର ଅନ୍ତର୍ଗତ । ଦାଶରାଜ୍ଞ ଯୁଦ୍ଧରେ ଖଣ୍ଡା, ବର୍ଛା, ଢାଲ, କବଚ ଆଦି ସୁନା କିମ୍ବା ତମ୍ବାରେ ତିଆରି ହୋଇଥିଲା ବୋଲି ବର୍ଣ୍ଣନା ଅଛି ।(୬୯) ଋଗ୍‌ବେଦରେ ଗୋଟିଏ ସ୍ଥାନରେ 'ରୁକ୍ମ' ଶବ୍ଦର ପ୍ରୟୋଗ ଅଛି । ଏହା ହେଉଛି ଏକ ସ୍ୱର୍ଣ୍ଣ ଆଭୂଷଣ ଯାହା ବକ୍ଷ ଦେଶକୁ ମଣ୍ଡନ କରୁଥିଲା ।(୭୦) ଶତପଥ ବ୍ରାହ୍ମଣରେ ଏହାକୁ ସୁନାର ଥାଳି କୁହାଯାଇଛି ।(୭୧) ବିଭିନ୍ନ ଧାତୁ ଉଦ୍ୟୋଗ ଆର୍ଯ୍ୟମାନେ ବ୍ୟବସାୟ ଭିତ୍ତିରେ ପ୍ରତିଷ୍ଠିତ କରିଥିଲେ । ଏହା ଆର୍ଥିକ ଉନ୍ନତିରେ ସହାୟକ ଥିଲା ।

ସେତେବେଳେ 'ମୃଣୟ' ଶିଳ୍ପର ମଧ୍ୟ ସମାଧିକ ବିକାଶ ଘଟିଥିଲା । ହାଣ୍ଡି, ମାଠିଆ ଆଦି ବିଭିନ୍ନ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ମାଟିରେ ତିଆରି ହେଉଥିଲା । ଖାଇବା ପାଇଁ ଓ ପାଣି ରଖିବା ପାଇଁ ଧାତୁରେ ଅଥବା କାଠରେ କିମ୍ବା ମାଟିରେ ବିଭିନ୍ନ ପାତ୍ର ତିଆରି କରାଯାଉଥିଲା । ଏହା ବ୍ୟତୀତ ହାଣ୍ଡିରୁ ତରଳ ପଦାର୍ଥ ବାହାର କରିବା ପାଇଁ ବଡ଼ ବଡ଼ ଡ଼ଙ୍କା, ଥାଳି, ବଡ଼ ବଡ଼ ଗ୍ରମଚର ଉଲ୍ଲେଖ ମିଳେ । ଚୁରିବା ଏବଂ ଘୋରିବା ପାଇଁ ଖଲ ଓ ପୁଆ ମଧ୍ୟ ବ୍ୟବହାର ହେଉଥିଲା । ପତ୍ର ଦ୍ୱାରା ଟୋକେଇ ବୁଣିବା, ଘାସରୁ ମସିଣା ଓ ଆସନ ତିଆରି କରିବା ଏବଂ ସେଗୁଡିକ ରଂଗ ଦ୍ୱାରା ରଂଜିତ କରିବା ପ୍ରଣାଳୀ ସେମାନଙ୍କୁ ଜଣାଥିଲା ।

ଚର୍ମ ଉଦ୍ୟୋଗ ମଧ୍ୟ ଧାତୁ ଉଦ୍ୟୋଗ ଓ ବସ୍ତ୍ର ଉଦ୍ୟୋଗ ଭଳି ବ୍ୟବସାୟିକ ଭିତ୍ତିରେ ଗ୍ଲୁଥିଲା । ଶୁକ୍ଳ ଯଜୁର୍ବେଦରେ ଚମଡା ବେପାର ଖୁବ୍ ବ୍ୟାପକ ଭାବରେ ଚଳୁଥିବାର ସୂଚନା ମିଳେ । (୭୨) ଋଗ୍‌ବେଦରେ ଗୋଟିଏ ସ୍ଥାନରେ ଉଲ୍ଲେଖ ଅଛି ଯେ ଜଙ୍ଗଲରେ ଥିବା ବେଳେ ମୁନିଋଷିମାନେ ମୃଗ ଛାଲ ପିନ୍ଧୁଥିଲେ ।(୭୩) ଅଥର୍ବ ବେଦରେ ମଧ୍ୟ ଛେଳି ଓ ମୃଗ ଚମଡାକୁ ଆଶ୍ରୟ କରି ଚଳୁଥିବା ବିଭିନ୍ନ ପ୍ରକାର ଚମଡା ବେପାର କଥା ଉଲ୍ଲେଖ ଅଛି ।(୭୪) କୃଷ୍ଣ ଯଜୁର୍ବେଦରେ 'ଉପାନହ' ଶବ୍ଦର ଉଲ୍ଲେଖ ଅଛି । ଏହାର ଅର୍ଥ ହେଉଛି ଜୋତା,(୭୫) ପୁନଶ୍ଚ ଶତପଥ ବ୍ରାହ୍ମଣରେ ଏହି ଜୋତା 'ବାରହା' ଚମଡାରେ ତିଆରି ବୋଲି କୁହାଯାଇଛି ।(୭୬) ଚମଡାକୁ ଶୁଖାଇ ଓ ସିଝାଇ ନରମ କରାଯାଉଥିଲା ଏବଂ ସେଥିରେ ବିଭିନ୍ନ ଜିନିଷ ତିଆରି ହେଉଥିଲା । ପାଣି ରଖିବା ଲାଗି ଚମଡ଼ାର ଥଳି ବ୍ୟବହୃତ ହେଉଥିଲା । ଗୋ ମହିଷାଦି ପଶୁମାନଙ୍କର ସଂଖ୍ୟା ଅଧିକ ଥିବାରୁ ସେମାନଙ୍କର ଚମଡ଼ା ବହୁଳ ଭାବରେ ବିଭିନ୍ନ ଚର୍ମ ଉଦ୍ୟୋଗରେ ବ୍ୟବହୃତ ହେଉଥିଲା । ଗୋ ଚର୍ମରେ ଧନୁ ଗୁଣ ଓ ଦୁନ୍ଦୁଭି

